ସୁମନ୍ତ - ନଈରେ ବାପ ସେ କାହିଁକି ?

ଘରୁଆ—ମାଉସି ! ତୁ ତାଙ୍କ ଦୁଆସୁଣୀକି ?

ସୁମନ୍ତ—ହଁ ରେ ବାପ ! ସେ କେଉଁ ବାଟରେ ଅଛନ୍ତି ?

ଘରୁଆ—ଗୋସାଇଁ ଏ ଜିନଷ ସବୁ ତାଙ୍କ ଘରକୁ ପଠାଇ ଅଛନ୍ତି, ଦେଖିଲୁବେଳକୁ ତାଙ୍କ ଘରଣୀ ପୋଖରୀକୁଳେ ଠିଆ । ପୁଣି ଏକୁଟିଆ, ବାଃ ବାଃ ଆଚ୍ଛା ଦୁଆସୁଣୀ ତ ।

ସୁମନ୍ତ—ହଁ ରେ କହିବା ବେଳ ପଡ଼ୁଛି, କରମ ପଡ଼ିଲା-ବେଳେ କୁକୁର ଗୋଇଠା ମାରେ, ତୁ ତ ମଣିଷ ।

ଘରୁଆ—ମାଉସି ! ମୋର ଦୋଷ ମାଫ୍ କର, ମୋର ଭାରି ହୋଇଛି । ଆସ ଘରକୁ ଆସ, ତାଲିକା ଦେଖି ତମର ଜିନଷତକ ରଖ ।

ସୁମନ୍ତ ହଉ ଚାଲ ଚାଲ, (ଘରର ସମସ୍ତ ଜିନଷ ଓ ତାଲିକା ରଖି) ପୁଅ ତୋର କେତେ ମୂଲ ହେଲା ?

ଘରୁଆ—ମାଉସି ! ଗୋସେଇଁଙ୍କଠାରୁ ମୁଁ ଆଗରୁ ଛଡ଼ାଇ ନେଇଛି, ଖାଲି ଜିନଷ ଦବାଡକ, ଏଥର ଚାଲିଲି ।

ସୁମନ୍ତ—ପୁଅ ! ତୋ ଘର କେଉଁଠି, ନାମ କ'ଣ, ତୁ କପରି ତାଙ୍କୁ ଚିହ୍ନିଲୁ ?

ଘରୁଆ—ମାଉସି ! ଖୁବ୍ ପିଲାଦିନରୁ ତାଙ୍କ ସହିତ ମୋର ପରିଚୟ ଅଛି । ମୋ ନାଁ କହ୍ନେଇ, ଘର ବୃନ୍ଦାବନ, ଜାତିରେ ଗୋପାଳ, ମାଉସି ! ମୁଁ ଆସୁଛି ମୋତେ ବେଳ ଉଛୁର ହେଉଛି ।

---

## ପଞ୍ଚମ ଦୃଶ୍ୟ

ସୁଦାମ - ଗୀତ

( କେତେ ରଙ୍ଗରେ—ବୃତ୍ତେ )

ଏ ଦୁନିଆ କେତେ ସୁନ୍ଦର ମା' !
ତନ ତନ କରି ଖୋଜି ସାରିଲିଣି,
ଗଢ଼ିଛୁ କେତେ ଛନ୍ଦର ମା । ପଦ ।
କେ ନିତ ଭୁଞ୍ଜୁଛି ଷିରସା ଭାକରି
କାରେ ମିଳୁନାହିଁ ଖଦ-ସାଉ ପୂରା,
କେ ନିନ୍ଦୁଛି ଖଟ ପଲଙ୍କ ସୁପାତି
କେ ଗଡ଼ୁଛି ଧୂଳିଦାଣ୍ଡରେ ମା' ।
କେବା ନିନ୍ଦୁଅଛି ତେମହଲା କୋଠା,
କେ ପଥ କୁଟୀରେ ଦୁଏ ହଟହଟା,
କେବା ନିନ୍ଦୁଅଛି ପାଟ ଷୀରୋଦଶା
କେ ମାଗୁଛି ଛିଣ୍ଡା ଚଦର ମା' ।
କିଏ ଧନୀ ପୁଅ ଧନରେ ଖେଳୁଛି
କିଏ ସାଇଁ ତା'ର ଦୁଆରେ ଗଡ଼ୁଛି,
କା'ର କୋଳେ ଅଛି ପଦ୍ମିନୀ ସୁନ୍ଦରୀ
କେ ମରୁଛି ପଦ ଘଣ୍ଟିର ମା' ।
କାହାପାଇଁ ଲୋଡ଼ା ଖଟମାଠ ଶେଯ,
କାହାପାଇଁ ହଦେ ଛ'କାଠିଆସଜ,
ଯା'ର ପାଦେ ଧୂଳି ଦିନେ ଲାଗି ନାହିଁ
ସେ ଦିନେ ଗଡ଼ୁଛି ଦାଣ୍ଡର ମା' ।
କେ ପେଟ ପୂରାଇ ହୋଇଛି ମହନ୍ତ,
କିଏ ପେଟଲାଗି ଦୁଏ ଛଟପଟ,
ଏ ଦୁନିଆ ହାଟ କି କରୁଛ ମାତ
ବାଳକୃଷ୍ଣ ନମେ ପଦର ମା' ।

ଜଗତରେ ସଂସାର ହେବା ବଡ଼ ଭୀଷଣ, କେତେ ଦିନେ ଆଉ ଗୃହରେ ପହଞ୍ଚିବି, ସୁମନ୍ତ ମୋ ଲାଗି ବଡ଼ ବ୍ୟସ୍ତ ହେଉଥିବ, ( ସଚକିତେ ) ଏ କ'ଣ ନିବିଡ଼ ଜଙ୍ଗଲ ପ୍ରାନ୍ତର, ଏଠାରୁ ଏମାନେ କିଏ ଏ ମଧ୍ୟରୁ ଆସିଲେ ?

( ମାୟା-କାମିନୀଗଣଙ୍କ ପ୍ରବେଶ )

ଗୀତ

( ଆହା ଆଜ—ବୃତ୍ତେ )

ଆସ ରସିକରାଜ କୁଞ୍ଜକାନନେ ।
ପ୍ରେମେ ମାତି ଆଜ ରାତି କଟାଇବା ଯତନେ । ୦ ।
ଆମ୍ଭେ ବରବର୍ଣ୍ଣୀ ନାରୀ, ବରଦେ ହେଉଛୁ ଧାରି
ଏ ଦୁଃଖ ମେଣ୍ଟା ଆମ୍ଭର ଛନ୍ଦ ତବ ଚରଣେ । ୧ ।

ସୁଦାମା—ଛାଡ଼, ଛାଡ଼, ରଣ୍ଡେ ତୁମ ଭଣ୍ଡ କଥା ନୁହେଁ ମୁଁ ଭଣ୍ଡୁଆ ମୋତେ ଜଞ୍ଜାଳିବା ବୃଥା ।

ଗୀତ

( ତୋହପଦ୍ମର ଭରି—ବୃତ୍ତେ )

ତୁ-କଥା ଅଡ଼ାରି ତୁମ୍ଭେ ଇଜତ ହାରୁଛ ଦାଣ୍ଡେ
ଲଜ୍ଜା ତୁମ୍ଭ ନାହିଁ ପିଣ୍ଡେ ଦୁଦ୍ଧଣୀ କୁଳଟା । ୧ ।

ତଣ୍ଡୁଳର ପର ତୁମ୍ଭେ ଦଣ୍ଡକୁ କଆଁଳେ ଦମ୍ଭେ
ବାରବାଣ୍ଡ ତୁଲ୍ଲ ଆମ୍ଭେ ଦ୍ରାଣ୍ଡିଭିଆ କୁଡ଼ା । ୨ ।

ମାୟାକାମିନୀ— ଗୀତ

କଢ଼ ଏ କ ଛପପାତ ଲଜାତ ନୋହିବ ହତ
ଶକ୍ତି କାର ବିଧିଲେଖା ଅନ୍ୟଥାକରଣ । ୩ ।

ବୁଝିଲୁ ବୁଝିଲୁ, ଦ୍ଵିଜ; ନାହିଁ ତୁମ୍ଭ ତହିଁ ଭଲେ ମାନ ସୁରୁଷଭ ତେଜ ।

ସୁଦାମା— ଆଲୋ ମାଆମାନେ । କ ନିମନ୍ତେ ବୃଥାର ଦେଉଅଛ ଏତେ ଲାଜ; ସୁମନ୍ତ ବ୍ୟଙ୍ଗାର ଆନ କାରେ ମୁଁ ନ ଜାଣେ ।

ମାୟାକାମିନୀ—ଦ୍ଵିଜବର ଯାଆନ୍ତୁ କୁଶଳେ, ଛଳକରି କଳିବାକୁ ଆସିଥିଲୁ ତୁମ୍ଭମନ୍ତ, ମାନ ପରାଜିତ ସକଳେ ଆମ୍ଭେ ତୁମ୍ଭ ସମକ୍ଷରେ । ଅଚିରେ ଲଭିବ ତୁମ୍ଭେ ଅକ୍ଷୟ ଧନ-ସୌଭାଗ୍ୟ ।

ସୁଦାମା— ଭଗବନ୍ ! ଏ ପର୍ଯ୍ୟନ୍ତ କ'ଣ ଏ ସୁଦାମାର ଅନ୍ତରର କଥା ଜାଣି ପାର ନାହିଁ । ତହିଁରେ ପୁଣି ଏତେ ପରୀକ୍ଷା, ଲୀଳାମୟର ଲୀଳା ଅଲୌକିକ, ତାକୁ ବୁଝିବା ଶକ୍ତି କା'ର ।

---

## ଷଷ୍ଠ ଦୃଶ୍ୟ

( ସୁମନ୍ତର ଦ୍ଵାରଦେଶରେ ଦୁଇଜଣ ସିପାହୀ )

୧ମ ସିପାହୀ—ହା ଜେ ଭୟା, ତୁମ୍ ଲୋକ୍‌କା ପାଶ୍ ଗଞ୍ଜାଜଞ୍ଜା ହୁଏ ଏକ୍ ଚିଲମ ଲଗାଓତୋ ?

୨ୟ ସିପାହୀ—ଜି, ଥୋଡ଼ାଭର୍ ହାଏ, ପଇସା ଦେକେ ଏକ୍ ଆଦ୍‌ମି ଭେଜେଥେଁ ଓ ନେଇଁ ଲାୟା, ବୋଲ୍ ଅବକାରିକା ଦାରୋଗା ଆଜ୍ ଉହାଁକା ଦୋକାନ୍ ଇନସ୍‌ପେକ୍‌ସନ୍ କରତି ହେଁ ବୋଲ୍‌କେ ମାଲ୍ ମିଲା ନେଇଁ ।

୧ମ ସିପାହୀ—ହୋଏ ଇସିମେ ଅବ କାମ ଇଞ୍ଜାମ କରଲେଙ୍ଗେ, ପିଛେ କୋଇ ଆଦମିକୁ ଏ ବସ୍ତିକୁ ଭେଜେଙ୍ଗେ, ଉଆ କୋନ ଛୁପାକେ ବିକ୍ରି କରତା ବୋଲ୍‌କେ ଶୁନାଥା ।

୨ୟ ସିପାହୀ—ହାଁ, ଓତ ସଚବାତ୍; ଲେକିନ୍ ଓ ଶାଲ୍‌ବ ପକ୍‌ଡ଼ାଗିଆ ।

୧ମ ସିପାହୀ—କେସା ପକ୍‌ଡ଼ା ହୁଆ ।

୨ୟ ସିପାହୀ—ଯେତ୍‌ନା ଉଅକ୍ତ ଦାରୋଗା ସାହେବ ଦୋକାନ ପର୍ ଉଠେ ଓତ୍‌ନା ଦଣ୍ଡ ଦୋକାନ୍‌ପର ନେଇଁଥା, ବାକି ବୁକର୍ ଆଦାୟ କର୍‌ନେ ବାହାର ଗିଆଥା, ଉସ୍‌କା ନୌକର୍ ଦୋକାନ୍ ପର୍ ଥା ।

୧ମ ସିପାହୀ—ଇସ୍‌କେ ବାଦ୍ କ୍ୟା ହୁଆ ।

୨ୟ ସିପାହୀ—ଦାରୋଗା ସାହେବ ନୌକର୍‌କୁ ଧମକ୍ ଚମକ୍ ଦେକେ ପୁଛ୍‌ନେସେ ଓ ବେ ଆଦବ୍ ନୌକର୍ ସବ୍ ସାଫ୍ ସାଫ୍ ବୋଲଦିଆ । ଲେକିନ୍ ଦାରୋଗା ସାହେବ ବହୁତ ଅଚ୍ଛା ମିଜାଜ୍‌କା ଆଦମି ବୋଲକେ ଉନ୍‌ଲୋକୋଁସେ ପାଞ୍ଚ ପାଞ୍ଚ ରୁପେୟା ଜୋରିମାନା ଲେକେ ଚାଲାନ୍ କର୍‌କେ ଛୋଡ଼୍‌ଦିଆ, ବୋଲ୍ ଫିର୍ ଯବ ଔର୍ କବି ଏସା ମାମଲତ ଦେଖେଁ ଯା ଶୁନେ ତବ୍ କ୍ୟା ହୋଗା ସମଜ୍ ଲେଗେ ।

୧ମ ସିପାହୀ—ଓତୋ ସରକାର ବାପୁକୁ ବଜାୟ କଥା ଏତୋ ଠିକ୍ ବାତ୍ ଲେକିନ୍ କେତେନା ବୁଢ଼ା ଆଦମୀକୁ ତକ୍‌ଲଫ୍ ଆୟେଗା, ଦୋକାନ ହୁଁଆସେ କୋଇ ଏକ ମାଇଲ ତଫାତ୍‌ମେ ।

୨ୟ ସିପାହୀ— କ୍ୟା କର୍‌ନାହେ, କୋଇତବେଁସେ ଗୁଜ୍‌ରାନ୍ ମିଟେଗା ।

ସୁଦାମା —(ସ୍ୱଗତ) ହଁ, ଏଇ ଗୋଟାକ ତ ମୋର ନିଜର ଗ୍ରାମ । ଏଠାକୁ ପୋଖରୀ ହୁଡ଼ା ଦିଶୁଛି ଓ ମୋର ରୋପିତ ସେହି ମନ୍ଦାର ଓ ବକୁଳ ବୃକ୍ଷ ଦୁଇଟି ମୋ ଘରର ପରିଚୟ ଦେଉଛି । ତେବେ କାହିଁ ମୋର ସୁମନ୍ତ କାହିଁ, ସେ ତ ମୋତେ ଦେଖିଲା-କ୍ଷଣି ଦୌଡ଼ି ଆସନ୍ତାଣି । ଏଠି କୋଠା କାହୁଁ ଆସିଲା । ହଉ ପଚାରିଲେ ଜଣାଯିବ ହେ ଭାଇ ! ଏଠି ସୁଦାମା ବ୍ରାହ୍ମଣର ଘର କିଏ କହି ପାରିବେ କି ?

୨ୟ ସିପାହୀ—କୋନ୍ ବୋଲତା ହାଏ, କ୍ୟା ଚଜ, ଅକିଲ୍‌ଛ ନେଇଁ ଚଲେ ।

ସୁଦାମା—ନା ଭାଇ ଏଠି କାହାର ଘର ?

୧ମ ସିପାହୀ—କ୍ୟା, କ୍ୟା, ଭାଡ଼ାଦର ?

୨ୟ ସିପାହୀ—ନେଇ, ନେଇ, ଉସ୍‌କା ଭଡ଼ାଘର ସେ କ୍ୟା ଜରୁରତ କ୍ୟା ଧରମଶାଲ୍ ? ଏଇ ଗଡ଼ାକମେ ଥୋଡ଼ ଦୂର ବଢ଼ଯାଅ ବାହ୍ୱ ବାଜୁମେ ହାଏ ।

ସୁଦାମା—ନା, ନା, ଭାଇ ! ସୁଦାମା ବ୍ରାହ୍ମଣ ଘର !

୧ମ ସିପାହୀ—ଓକେ ନହାଏଗା, ଲେକନ୍ ହମ୍ ଉନ୍‌କୁ ଜାନ୍‌ତେ ନେହିଁ ।

ସୁଦାମା—ତେବେ ଏ ଘର କାହାର ? ମୋ ଘର ତ ଏଠି ଥିଲା ।

୨ୟ ସିପାହୀ—ହୋ ପାଗଲ ଆଦମୀ, କ୍ୟା ବୋଲତା ହଏ । ଏ ତୁମାରା ଘର ହଏ, ଏତ ଏକ ବଡ଼ା ଶେଠଜୀକା ବନାଯ୍ୱା ହୁଆ ହାଏ, ହୁଁ ଆପର ଧନୀ ରହତେ ହେଁ, ଓ ବହୁତ କଡ଼ା ମିଜାଜ୍‌କା ଆପ୍ ହୁଁ ଆପର୍ କୋଇ ତଗେଁକା ହଲା ମତ୍ ଲଗାଓ, ଚଲୋ ।

ସୁଦାମା—(ସ୍ୱଗତ) ଏ କ'ଣ ମୁଁ ସ୍ୱପ୍ନ ନା ଜାଗ୍ରତ, ତେବେ ଏ କି ପରିବର୍ତ୍ତନ ( ପ୍ରକାଶ୍ୟେ ) ଭାଇ ! ମୁଁ ପାଗଳ ହେଲେ ହେଲି, ତମ ଧନୀଙ୍କ ନାମ ।

୧ମ ସିପାହୀ— କୈସା ବେଆଦବ ଆଦ୍‌ମୀ ପଣ୍ଡିତ୍‌ଜୀ, ଆପ୍‌କୋ କୁଛ୍ ଲେନେକୋ ଆସ୍ୱେ, ଉନ୍‌କା ନାମ୍‌ସେ ଆପ୍‌କା କ୍ୟା ଜରୁରତ୍ ଏସା କରକେ ମତ୍ ବୋଲୋ ।

୨ୟ ସିପାହୀ—ନେଇ ଭାଇ ଓ ପଣ୍ଡିତ ଆଦମ କୋଇ ତରକ ପାଠ ଉଠ ବନକେ କୁଛ ଲେନେକୁ ଆଯ୍ୱା, ଆଚ୍ଛ ପଣ୍ଡିତଜୀ ଆପ୍ କ୍ୟା କ୍ୟା ପୁଛତେ ହେଁ ପୁଛୋ, ହାମରା ଧନୀକା ନାମ ଶ୍ରୀମନ୍ତ ସୁମନ୍ତ ।

ସୁଦାମା—(ସ୍ୱଗତ) ନାମଟା ମିଳିଲା; ତେବେ ଏଠି କେହି ପୁରୁଷ ନାହାନ୍ତି ।

୨ୟ ସିପାହୀ—ଓ ଆଦମ ବରଘଣ୍ଟ ହୁଆ ରହତେ ନେଇ, କବ କବ ଛୁପ୍‌କେ ଯାନା ଆନା କରତେ ହେଁ ।

ସୁଦାମା—ଆଉ ସନ୍ଦେହର କାରଣ କିଛି ନାହିଁ । ସୁମନ୍ତ କେବଳ ଅର୍ଥଲୋଭରେ ପର ପୁରୁଷର ଆଶ୍ରୟ ଗ୍ରହଣ କରିଛି । ଆଉ ଏ ସ୍ଥାନରେ ରହିବି ନାହିଁ । ଆଚ୍ଛା କେବେ ସେ ପୁରୁଷଙ୍କୁ ଦେଖି-ଛୁକ ?

୧ମ ସିପାହୀ—କଣ୍ଟ ଉନକୁ ଆଖଁପର ଦେଖାଲାଇ, ଲେକନ୍ ଶୁନା ଓ ଆଦମ ଭାଲ ହୋଇତ, ଠାକୁରଜି ତୁମ ଭାଗୋ ଭାଗୋ, ଏଇ ଦେଖୋ ଘନଜୀକା ଲେଉଣ୍ଡୀ କାଏ ଇସପର ଆତହାଏ, ଭାଗୋ ।

ସୁଦାମା—ହଁ ଯାଉଛି । (ପ୍ରତ୍ୟାବର୍ତ୍ତନ)

(ସୁମନ୍ତ ଓ ଦାସୀ)

ସୁମନ୍ତ—ଦାସୀ, ନାଥ ଆମର ଘର-ଦ୍ୱାର ଚିହ୍ନି ନ ପାରି ହାଲିକା ହେଉଛନ୍ତି, ଯିବୁଟି ତାଙ୍କ ଆଣିବୁ ।

(ଦାସୀମାନଙ୍କ ପଥ ଓଗାଳିବା)

ସୁଦାମା—ଏ କ'ଣ ସେହି ଜଗଲର ମାୟା କାମିନୀ ହେବେ କି ? ମୁଁ ତ କିଛି ବୁଝିପାରୁ ନାହିଁ ।

ଦାସୀ—ମଣିମା-ମଣିମା, କ'ଣ ଗୋଟାଏ ଭାବୁଛନ୍ତି, ଆସନ୍ତୁ ଉଆସକୁ ଆସନ୍ତୁ, ଏ ଯେ ଆପଣଙ୍କ ଘର, କୁଆଡ଼େ ଯାଉଛନ୍ତି ?

ସୁଦାମ—(ସ୍ୱଗତ) ଏ ତ ସୁମନ୍ତ ନୁହେଁ, କି ତା ପାଟି ପର ଶୁଭୁ ନାହିଁ । ଏ କଣ୍ଟସ୍ୱ ମାୟା । (ପ୍ରକାଶ୍ୟେ) ବରଙ୍ଗନେ ! କି ନିମନ୍ତେ ଏ ଦରିଦ୍ର ବ୍ରାହ୍ମଣ ସଙ୍ଗତ ଅଳ ଲଗାଉଛ ? ମୋଠାରୁ କିଛି ପାଇ ପାରିବା ଆଶା ତ୍ୟାଗ କର, ମୁଁ ସେପରି ରସିକ ନୁହେଁ ।

ଦାସୀ—ଏ ତ ଯାଉ ନାହାନ୍ତି ମୁଁ କ'ଣ କରିବି ।

(ସୁମନ୍ତ ସୁଦାମାଙ୍କୁ ଧରି ପକାଇ)

ସୁଦାମା—ପାପିଣ୍ଡୀ ! ଛୁଇଁ ପକାଇଲୁ, ଆମେ ତ ସେମିତିକଆ ରସିକ ନୋହୁ ।

ସୁମନ୍ତ—(ପଦ ବନ୍ଦନା କରିବା) ନ ହୋଇଥିଲେ ଆଜି ଟିକିଏ ହୋଇଯିବ ଆସ । ତମପରି ଲୋକ ନ ହେଲେ ପଇସା ଦେବ କିଏ !

ସୁଦାମା—ମଲିରେ ବାପା, ସ୍ୱା ମୁହିଁ ତ ଶାଣ୍ଡିଆ, ହେ ତମେ ମୋତେ ଛାଡ଼ିଦିଅ ।

ଗୀତ
(ପରଜରଦ ରାଜପୁଷ୍ପ—ଝୁମ୍ପେ)

ରେ ବାଳା ନବଛଇଳା
ତୁ ମୋତେ ଆଜ ଛଳାନା
କଳକଣ୍ଠୀ ଖଳକଥା
କହି ମୋତେ ଜଳାନା । ୦ ।

ସୁମନ୍ତ ! ମୁଁ ବୁଝିଛି, ବେଶ୍ ବୁଝିଛି, ଆଉ ବୁଝିବାକୁ ନାହିଁ, ତୁ ପର ପୁରୁଷ ଆଶ୍ରୟ ନେଇଛୁ, ଆଉ ମୋତେ କଛି କହନା ।

ସୁମନ୍ତ—ହଁ ଯେଉଁ ପୁରୁଷ ଆଶ୍ରୟ ନେଇଛୁ ସେ ଉମକୁ ଡାକୁଛନ୍ତି ଆସ ।

ସୁଦାମା— (ଗୀତ)
ତୁଳମାନ ତୁ ତେଜିଲୁ
ଅନ୍ୟ ପୁରୁଷେ ମଜିଲୁ
ଧର୍ମାଧର୍ମ ପଛକଥା ନ ହେଜିଲୁ
ମୁଡ଼ା ମୋତେ ଭଳାନା ।

ସୁମନ୍ତ—ସେ ଶଠ ପୁରୁଷଟି ତମେ ପଠାଇଥିଲ ଯଦି ? ତାଙ୍କୁ ଚହ୍ନି ନାହିଁ, ଆସ ଦେଖିବ ଭିତରକୁ ଆସ ।

ସୁଦାମା— (ଗୀତ)
କାହିଁ ଗଲା ମୋ କୁଟୀର,
ଏ କୋଠା ଅଟେ କାହାର,
ଅବସନ୍ନ କୁଟା ମୋର
ନ ପାଉଛୁ କଳନା ॥

ଆଚ୍ଛା ସୁମନ୍ତ ! ମୋର ସେହି କୁଡ଼ିଆ କୁଆଡ଼େ ଗଲା, ଏଠି ଏ କୋଠାଟି କାହାର ?

ସୁମନ୍ତ—ନାଥ ! ମିଥ୍ୟା କୁହେ, ଏ ସବୁ ଆପଣଙ୍କର କୁଡ଼ିଆ ।

ସୁଦାମା—କ'ଣ କହିଲୁ, ଏ ସବୁ ସଖାଙ୍କ କୃପା, ତେବେ କପରି ?

ସୁମନ୍ତ—ନାଥ ! ଦିନେ ସନ୍ଧ୍ୟା ସମୟରେ ଅଧୀନା ଆପଣଙ୍କୁ ନ ଦେଖି ପ୍ରାଣ ବିସର୍ଜନ ନିମିତ୍ତ ପୋଖରୀକୂଳରେ ଥିବା ସମୟରେ ଜଣେ ଚିକ୍କଣ ଶ୍ୟାମଳକାୟ ଏକ ଛୁଆ ଯୁବକ ନାନାପ୍ରକାର ସରଞ୍ଜାମରେ ଭରି ଆପଣଙ୍କ ହାତ ଲେଖା ଚାଳକା ସହିତ ଆଣି ଦେଇଗଲେ ଓ ତାହାଙ୍କର ପୂର୍ବରୁ ଏକ ସନ୍ନ୍ୟାସିନୀ ଆସି ଗଣ୍ଡିକ ରନ୍ଧି ଯାହା ଦେଇ ଯାଇଅଛନ୍ତି ତାହା ଖାଇଲେ ସବୁ ନାହିଁ ।

ସୁଦାମା— ବୁଝିଲି, ଏଥିରେ ଲବେ ମାତ୍ର ସନ୍ଦେହ ନାହିଁ । ଅନ୍ତର୍ଯ୍ୟାମୀ ନାଥ ନ ହେଲେ କି ଅନ୍ତର କଥା ଜାଣନ୍ତେ । ସୁମନ୍ତ ! ତୁ ସେହି ଜଗନ୍ମାତା ଓ ଜଗତ୍ ପିତାଙ୍କୁ ପାଇ ଚରଣ ବନ୍ଦନା କରି ପାରିଲୁ ନାହିଁ ।

ସୁମନ୍ତ—ନାଥ ! ମୁଁ ତାଙ୍କୁ ଚହ୍ନିବା କାହିଁ । ସେ ଭାଗ୍ୟ ଅଧୀନାର କାହିଁ ?

ସୁଦାମା—ତେବେ କ'ଣ ସେ କାହାନ୍ତି ?

ସୁମନ୍ତ—ହଁ ନାଥ ! ସେ ଯେ ଆପଣଙ୍କର ଅପେକ୍ଷାରେ ଅଛନ୍ତି ।

ସୁଦାମା—ସୁମନ୍ତ ! ତୁ ବଡ଼ ଭାଗ୍ୟବନ୍ତୀ, ମୁଁ ଏତେ ପଥଶ୍ରମ କରି ଯାଇ ଦର୍ଶନ ପାଇଲି । ପୁଣି ମୁନି ଋଷିଗଣ ଯୁଗାବଧି ଦର୍ଶନ ନିମିତ୍ତ ତପସ୍ୟା କରି ସୁଦ୍ଧା ଦର୍ଶନ ପାଆନ୍ତି ନାହିଁ । ତୁ ଆଜ ତାଙ୍କୁ ଘରେ ବାନ୍ଧି ରଖିଛୁ । ତୁ ସାମାନ୍ୟ ରମଣୀ ନୋହୁ; ସେ କାହାନ୍ତି ମୋତେ ଦେଖା ।

(ସୁଦାମା ଓ ସୁମନ୍ତ ହାତ ଧରାଧରି ହୋଇ ଶ୍ରୀକୃଷ୍ଣଙ୍କ ନିକଟେ ଯିବା)

ସୁଦାମା—(କୃଷ୍ଣଙ୍କୁ ଅଭିବାଦନ କରି)

ଶ୍ରୀକୃଷ୍ଣ—(କୋଳକରି) ଆସ, ସଖା ଏବେ ତ ମନସ୍କାମନା ପୂର୍ଣ୍ଣ ହେଲା ?

ସୁଦାମା—ପ୍ରଭୋ ! ମୋତେ ତ ବେଶ୍ ଠକାଟାଏ ଠକିଦେଲେ । ଏ ସବୁ ମୋର କଣ ହେବ, ଆପଣ ଫେରାଇ ନିଅନ୍ତୁ, ମୁଁ ଏ ହନ୍ଦରେ ପଶି ପାରିବି ନାହିଁ ।

ଶ୍ରୀକୃଷ୍ଣ—ସଖା କିଛି ଭୟ କରନା, ଏ ସମ୍ପତ୍ତି ଧନ ଦରିଦ୍ର ଲାଗି । ତୁମେ କେବଳ ଭଣ୍ଡାରଘରିଆ । ଆସ ସଖା, ଏ ସିଂହାସନକୁ ଆସ (ସୁମନ୍ତ ପ୍ରତି) ସଖି ! ଆସ ତୁମ୍ଭ ଦୁହିଁଙ୍କୁ ସିଂହାସନରେ ବସାଇ ଧନ୍ୟ ହେବ ।

ସମନ୍ତ —ତୁମ୍ଭ ସଖାଙ୍କୁ ବୁଝାଅ, ତୁମ ସଖାଙ୍କୁ ବସାଅ, ମୋର ସିଂହାସନରେ କି ଲୋଡ଼ା ।

ରୁକ୍ମିଣୀ—ହଇ ଦେ ! ମୋତେ ଅତିଥି କରି ଗୃହରେ ରଖି ସେଦିନ ଜଳରେ ଝାମ୍ପ ଦେବାକୁ ଯାଇଥିଲ କାହିଁକି ଭଲା ?

ସୁମନ୍ତ—ଭଣ୍ଡେଇବା କଥା ତ, ଘରେ କଡ଼ାଏ କଉଡ଼ି ନ ଥିଲା । ଅତିଥିକୁ ଉପବାସ ରଖାଇବା ଅପେକ୍ଷା ମୃତ୍ୟୁକୁ ଶ୍ରେୟସ୍କର ମନେ କଲା ।

ରୁକ୍ମିଣୀ ତେବେ ଏ ସମ୍ପତ୍ତି ଆଜଠାରୁ ଭୋଗ କର । ତେବେ କେତେବେଳେ ଅତିଥି ନିର୍ବାଣ ହେବାର ଚିନ୍ତା ନ ଥିବ ।

ସୁଦାମା—ସଖା ! ତୁମ୍ଭ କଥାରେ ମୁଁ ଅବାଧ ହେବି ନାହିଁ ; କିନ୍ତୁ ଏତିକି ଆଜ୍ଞା ହେଉ ଚିରକାଳ ମୋର ଆପଣଙ୍କ ପ୍ରସାଦ-ପଦ ଭରସା ।

(ଶ୍ରୀକୃଷ୍ଣ ଓ ରୁକ୍ମିଣୀ, ସୁଦାମା ଓ ସୁମନ୍ତ ସିଂହାସନରେ ବସାଇବା ସମୟରେ ଉପରୁ ପୁଷ୍ପବୃଷ୍ଟି)

(ଜବନିକା ପତନ)



# ବାଣ ପରାଜୟ

# ହରିହର ଭେଟ

ବା

## ଉଷା ପରଣୟ ଗୀତାଭିନୟ

# ବାଣା ପରାଜୟ
# ହରିହର ଭେଟ
ବା
## ଊଷା ପରିଣୟ ଗୀତାଭିନୟ

### ପ୍ରଥମ ଅଙ୍କ
### ପ୍ରଥମ ଦୃଶ୍ୟ
(ଇନ୍ଦ୍ର, ବାଣା, ନାରଦ)

ଇନ୍ଦ୍ର—ଦେବଗଣେ ! ଏଡ଼କି ନବୋଧ ତୁମ୍ଭେ
ଏଡ଼େ ଭୟାତୁର
ସାମାନ୍ୟ ଦୈତ୍ୟର ଭୟେ
ପଳାଇଲ ଛାଡ଼ି ସ୍ୱର୍ଗପୁର
ପଥେ ଯେବେ ବାଣାସୁର ହେବ ତୁମ୍ଭ ଭେଟ
ତହିଁ କି କରିବ ? କେଉଣେ ଯିବ
ଖବୁ ନାହିଁତଲେ
ଯେଉଁ ବଳି ଛଳି ପ୍ରଭୁ ବାମନ ରୂପେଣ
ଯେଉଁ ବଳି ଛଳି ପ୍ରଭୁ ମୋହିନୀର ବେଶେ
ଦେଇଥିଲେ ଦେବଗଣେ ଅମୃତର ଭାଣ୍ଡ
ଏ ତ ସେହି ବଳିପୁତ୍ର
ଭୟ ତାକୁ କମା ଏତେ,
ଥିବେ ଯେବେ ଆମ୍ଭ ସାହା ଲକ୍ଷ୍ମୀନାରାୟଣ
କି କରିବ ଛାର ଦୈତ୍ୟ ଗୋଟା ।
ବାଣା –(ପ୍ରବେଶି) ତୁମ୍ଭେ ଏକା ଭାବୁଛରେ ମୂର୍ଖ,
ତୁମ୍ଭେ ଏକା ଜ୍ଞାନୀ ଅଟୁ ଏ ଅମର ପୁରେ
ନବୋଧ ନିର୍ଲଜ !
ଜାଣୁ ବାଣାସୁର ପରାକ୍ରମ କେତେ ।
ଇନ୍ଦ୍ର—ଜାଣିଛିରେ ମୂର୍ଖ !
ତୁ ତ କାଲିକା ମେଣ୍ଢା
ପିତା ତୋର ମୋର ସଙ୍ଗେ କରି ରଣ ଦିନେ ।
କି ଯଶ ଲଭିଛି ମୂର୍ଖ ଜାଣି ନାହିଁ ତୁମ୍ଭେ
ଇଚ୍ଛା ଯେବେ ବୁଝିବାକୁ ତାହା
ଜନନୀକୁ ପୁଚ୍ଛିବୁ ଯା ଘରେ ।
ବାଣା—ବାସବ ! ପୁଚ୍ଛିବାରେ ନାହିଁ ପ୍ରୟୋଜନ
ସତ୍ୟ ଯେବେ ପିତାଙ୍କୁ ମୋ କରିଛୁ ପରାସ୍ତ
ସତ୍ୟ ଯେବେ ବଳଠାରୁ ବଳବାନ ତୁମ୍ଭେ
କର ତେବେ ରଣ ମୋର ସଙ୍ଗେ ଆଜ
ବୃଥା କମା ବଖାଣୁ ବଡ଼ିମା
ଶୁଣିବାକୁ ଇଚ୍ଛେ ନାହିଁ ତାହା ।
ଇନ୍ଦ୍ର—ମର୍ମକଥା ଫେଡ଼ଦେଲେ ଲୋକମାନଙ୍କର
ସମ୍ମୁଖରେ ଯାଆନ୍ତି ଝାଉଁଳ, କିନ୍ତୁ ତୁ ନିର୍ଲଜ,
ଲଜ୍ଜା ଯେବେ ଥାଆନ୍ତାରେ ତୋତେ
ପୁନଃ ଯୁଦ୍ଧ କରନ୍ତୁ କି ଆଶା ?
ସୁରଙ୍କର ପିତାକୁ ତୋ କରି ଖଣ୍ଡ ଖଣ୍ଡ
ନିକ୍ଷେପିଲି କୂପ ମଧ୍ୟେ ଏହି ବାହୁ ବଳେ
ତୁ କିସ ପ୍ରତିଜ୍ଞା କରୁ ଯୁଝିବୁ ମୋ ସଙ୍ଗେ !
ବାଣା—ଅସହ୍ୟ ତୋ କଥା ରକ୍ଷା ଆଉ ନାହିଁ ତୋତେ
ନିର୍ଲଜ ତୁ ନାରୀଙ୍କର ହରି ଗୁରୁ ପତ୍ନୀ
କି ଯଶ ଲଭିଛୁ ମୂର୍ଖ ନାହିଁ କି ସ୍ମରଣ
କେ କହେ ତୋତେ ବୀର
କେ ଗଣେ ଯୋଦ୍ଧା ବୋଲି ତୋତେ
ପ୍ରଭଞ୍ଜନେ ପଶି ମାତୃ ଗର୍ଭେ ପଶି
କରିଥିଲୁ ଅଣଚାଶ ଖଣ୍ଡ
ତହିଁରେ ଲଭିଲୁ କି ଯଶ
ଅଛି ତ ସ୍ମରଣ ମୂର୍ଖ ?
ପ୍ରୟୋଜନ ନାହିଁ ବୃଥା ବାକ୍ୟାଳାପେ
ହରଗୌରୀ ପ୍ରସାଦରୁ

ମହା ଶକ୍ତିବାନ ମୁହିଁ
ନାହିଁ ଏ ବିଶ୍ୱ ଭୁବନେ ଜଣେ କେହି ଯୋଦ୍ଧା
ହେବ ମୋର ସମକକ୍ଷ
ତୁ ଛାର ଦର୍ପାନ୍ଧ ଇନ୍ଦ୍ର
କି ଠାଣି ଦେଖାଉ ମୋତେ
ଏକାବାଣେ ଖଣ୍ଡ ଖଣ୍ଡ କରିବି ତୋ ପିଣ୍ଡ
ଧର ଅସ୍ତ୍ର ବିଳମ୍ବରେ ନାହିଁ ପ୍ରୟୋଜନ ।

ଇନ୍ଦ୍ର— ପ୍ରସ୍ତୁତ ମୁଁ (ଉଭୟଙ୍କ ଯୁଦ୍ଧରେ ଇନ୍ଦ୍ର ପରାସ୍ତ)

ବାଣା—କାହିଁ, ବାସବ ବର୍ତ୍ତମାନ କେଣେ ଯିବୁ, ଦେବାଧମ, ତୋ ପରି ନିକୃଷ୍ଟ ଜୀବକୁ ମାରିବା ମୋର କର୍ତ୍ତବ୍ୟ ନୁହେଁ । ତୁ ମୋ ହସ୍ତରେ ସମ୍ପୂର୍ଣ୍ଣ ରୂପେ ପରାଜିତ ହୋଇଛୁ । ତେବେ କହ ଏ ବିଶ୍ୱ ଭୁବନେ ମୋ ସମାସ୍କନ୍ଧ ଯୋଦ୍ଧା କିଏ ଅଛି ।

ଇନ୍ଦ୍ର—ଇନ୍ଦ୍ର ତୋ ନିକଟରେ ପରାଜିତ ହୋଇଛି ଏହା କେବେ ନୁହେଁ । ଇନ୍ଦ୍ର ତୋ ପରି ଶତ ଶତ ବୀରଙ୍କ ଦର୍ପ ଚୂର୍ଣ୍ଣ କରିଛି, ତୁ ଥରେ ମାତ୍ର ଯଶସ୍ୱୀ ହୋଇଛୁ ବୋଲି ମନେ ମନେ ବଡ଼ ହୋଇଛୁ, କିନ୍ତୁ ସେ ଧାରଣା ତୋର ବୃଥା ॥

ବାଣା—ଦେବାଧମେ ! ଉପଯୁକ୍ତ ଶାସ୍ତି ହୋଇନାହିଁ ତୋତେ, ଦେଖିଲୁ ଏ କାହାର ତ୍ରିଶୂଳ, ପାରିବୁ କି ବର୍ତ୍ତି ଏହାଠାରୁ ।

ଇନ୍ଦ୍ର—କି ତ୍ରିଶୂଳ ଦେଖାଉଛୁ ମୋତେ ।
ବଜ୍ରାଘାତେ ମୁଣ୍ଡ ତୋର କରିବି ମୁଁ ଚୂର୍ଣ୍ଣ ।

ବାଣା—ଧର ଅସ୍ତ୍ର ?

ଇନ୍ଦ୍ର—କର ରଣ (ପୁନଃ ଯୁଦ୍ଧ ଇନ୍ଦ୍ର ପରାସ୍ତ ହେବାରୁ)

ନାରଦ —( ପ୍ରବେଶ ) ଶାନ୍ତ ହୁଅ ଋଷି ଶିରୋମଣି
ତୋର ସମ ଯୋଦ୍ଧା
କେହି ନାହିଁ ଏ ସାରା ସୃଷ୍ଟିରେ ।

ବାଣା —ଦେବର୍ଷି ! କିମ୍ପା ଦିଅ ମୋତେ ବାଧା
ନଚେତ୍ ଆଜ ଇନ୍ଦ୍ର ଦର୍ପ କରିବି ମୁଁ ଚୂର୍ଣ୍ଣ ।

ନାରଦ—ଇନ୍ଦ୍ରଠାରୁ ମହାବଳବାନ ତୁହି
ତାର ସଙ୍ଗେ ଯୁଦ୍ଧ ତୋତେ ନ ସାଜେରେ ବୀର ।
ଅଛି ଯେବେ ପରାକ୍ରମ ତୋର
ଅଛି ଯେବେ ବୀର ତେଜ ହୃଦେ
ଯାଇ ତୁହି ଏକ୍ଷଣି ଦ୍ୱାରିକା
କୃଷ୍ଣ ସଙ୍ଗେ କରରେ ସମର ।

ବାଣା—କୃଷ୍ଣ କିଣ ମୋର ସମଯୋଦ୍ଧା ?
ବିଶ୍ୱାସ ମୋ ହେଉନାହିଁ ମନେ
କଂସ ଡରେ ଯେହୁ ନନ୍ଦ ଘରେ ରହି
ଗୋବତ୍ସାଦି ରଖୁଥିଲା ବନେ
ସେ କି ଜାଣେ ଯୁଦ୍ଧର କୌଶଳ ।
ଦେବର୍ଷେ !
କହ କିମ୍ପା ଅସମ୍ଭବ କଥା ।

ନାରଦ—ଯାଅ ଯେବେ କୈଳାସ କନ୍ଦରେ
ପୁଚ୍ଛିବୁ ତୋ ଇଷ୍ଟ ଦେବତାଙ୍କୁ ।

ବାଣା—ମେଲାଣି ଘେନୁଛି ମୁଁ ! ଏ ମୁହୂର୍ତ୍ତେ ଯିବି କଇଳାସ । ( ପ୍ରସ୍ଥାନ )

ଇନ୍ଦ୍ର—ଦେବର୍ଷେ ! କି ଲଜ୍ଜା !! କି ଅପମାନ !!!

ନାରଦ — ଦେବେନ୍ଦ୍ର ! ବାଣାସୁର ମହାଶକ୍ତିବାନ ବିଷ୍ଣୁ ! ବିନା କେହି ତାକୁ ନ ଜିଣିବେ ଯୁଦ୍ଧେ । ସ୍ୱଲ-ଯିବା ସଦନକୁ ଫେରି ।

---

## ଦ୍ୱିତୀୟ ଦୃଶ୍ୟ

( ଶିବ, ପାର୍ବତୀ, ବାଣା)

ଶିବ—ଦୁର୍ବୃତ୍ତ ବାଣାସୁର ତୋର ଏତେ ଆସ୍ପର୍ଦ୍ଧା, ଏତେ ଦର୍ପ, ତୁ ମୋର ବଳରେ ବଳୀୟାନ ହୋଇ ଅହଙ୍କାରେ ଜ୍ଞାନଶୂନ୍ୟ ହୋଇଛୁ । ଆରେରେ ଦର୍ପାନ୍ଧ ମୂଢ଼ ବିଶ୍ୱ ସଂହାରକ, ମହାକାଳ ସହିତ ସଂଗ୍ରାମ ଇଚ୍ଛା କରିଛୁ । ମୂର୍ଖ ! ନିଶ୍ଚେ ତୋର ଗର୍ବ ଚୂର୍ଣ୍ଣ କରିବି । ନିଶ୍ଚେ ତୋର ବଳବୀର୍ଯ୍ୟ ହରଣ କରିବି, ଦେଖିବି କେ ତୋତେ ରକ୍ଷା କରିବ ।

ପାର୍ବତୀ—ଆଶ୍ଚର୍ଯ୍ୟ । ଏ କି ଭୟଙ୍କର ମୂର୍ତ୍ତି । ନାଥ ! ନାଥ ! କାହାଠାରେ ଏତେ କ୍ରୋଧ ।

( ଗୀତ )

ଯୋଗେଶ ହେ !

ବନ୍ଧୁଟ କା'ଠାରେ ଦୋଷ । ପଦ ।

କେ ତବ ସଙ୍ଗେ ବାଦ କଲାକ ଦେବ ଦେବ

କାର ଦେଖିଲ କବା ଦୋଷ । ୧ ।

ମନ ଫେଡ଼ ମୋ ଆଗେ କହହେ ନାଥ ବେଗେ

ଶୁଣିଲେ ହୋଇବ ସନ୍ତୋଷ । ୨ ।

ନାଥ ! ଅକସ୍ମାତ ଉଗ୍ରମୂର୍ତ୍ତି ଧାରଣ କରିବାର କାରଣ କଣ ?

ମହାଦେବ—ପ୍ରିୟେ ! କଣ କହିବ ? ସେ ପାପମତ ବାଣାସୁର ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତ୍ରିଭୁବନ ଜୟ କରି ତହିଁରେ ତୃପ୍ତ ନ ହୋଇ ଗୋଲକ ବିହାରି ଶ୍ରୀକୃଷ୍ଣଙ୍କ ସହିତ ସମର କରିବା ଦୃଢ଼ ଅଭିଳାଷ କରିଛି । ମୁଁ ନିଶ୍ଚୟ ଜାଣିଲଣି ମୂର୍ଖର ଅନ୍ତିମ ସମୟ ନିକଟ ହୋଇଗଲାଣି, ଆଜ ତା ସହିତ ମୋର କିଛି ସମ୍ପର୍କ ନାହିଁ ।

ଗୌରୀ—ନାଥ ! ସେଟା ତାର ଭ୍ରମ, ତାକୁ କ୍ଷମା କରନ୍ତୁ । ସନ୍ତାନ ଯେବେ କୌଣସି ଅନୁଚିତ କାର୍ଯ୍ୟ ଭ୍ରମବଶତଃ କରେ ତେବେ ପିତା କ୍ଷମା ଦେବା ଉଚିତ । ନାଥ ମୋର କାର୍ତ୍ତିକ ଓ ଗଣେଶ ଯେପରି ଆଦରର ଯାଦ ବାଣା ମଧ୍ୟ ତଦ୍ରୂପ ।

ଶିବ—ଭଦ୍ରେ ! ଗଣେଶ କି କାର୍ତ୍ତିକ ଯଦି ଗୁରୁତର ଅପରାଧ କରନ୍ତି ତେବେ ତାଙ୍କୁ ଶାସନ କରା କଣ ଉଚିତ ନୁହେଁ ?

ଗୌରୀ—ତା ଉଚିତ, କିନ୍ତୁ ବାଣା ମୋର ସ୍ନେହର ଧନ । ଯେପରି ତାର କୌଣସି ଗୁରୁତର ବାଧା ନ ହୁଏ ସେ ପ୍ରତି ଦୃଷ୍ଟି ଦେବେ ।

ଶିବ—ପ୍ରିୟେ ! ତାର ଜୀବନ ଦଣ୍ଡ କରିବ ନାହିଁ, କିନ୍ତୁ ସମ୍ପୂର୍ଣ୍ଣ ରୂପେ ତାର ଗର୍ବ ଖର୍ବ କରିବ ।

ଗୌରୀ—ନାଥ ! ଏ କାର୍ଯ୍ୟ କ'ଣ ଭଲ ମନେ କରୁଛନ୍ତି, ତାର ଦର୍ପକୁ ଆପଣ ନିଜେ ବର୍ଦ୍ଧିତ କରୁଛନ୍ତି, ପୁଣି ନିଜେ ଅପହରଣ କରିବେ ଏହା ଉଚିତ ନୁହେଁ । ଏଥିବାର କ୍ଷମା ଦିଅନ୍ତୁ, ସେ ଏଥର ସତର୍କ ହେବ ।

ଶିବ—ଦୁର୍ଗେ ! ତୁମ୍ଭର ଅନୁରୋଧ ରକ୍ଷାକରି ବାଣାକୁ କ୍ଷମା ଦେଲି । ପୁନର୍ବାର ସେ ଯଦି କୌଣସି କୁକାର୍ଯ୍ୟ କରେ ତେବେ ତାର ପରାଭବ ନିଶ୍ଚୟ ହେବ । ତୁମ୍ଭେ ବାଣାକୁ ସତର୍କ କରିଦେବ ଏଇ ତ ସେ ଆସୁଛି ।

ବାଣା—(ପ୍ରବେଶି) ଆହା ମୋର ପ୍ରଭୁ କୈଳାଶ କନ୍ଦରେ ଭଗବତୀ ଉମାଦେବୀଙ୍କ ସହିତ ବିରାଜମାନ ହୋଇଛନ୍ତି ।

ଜୟ ଶିବ ଶମ୍ଭୁ ! ଜୟ ଶିବ ଶମ୍ଭୁ ! ଜୟ ଶିବ ଶମ୍ଭୁ !

(ଆଣ୍ଠୁ ମାଡ଼ି ସ୍ତବ)

ଗଙ୍ଗାଧର ହର ମମ ଦୁର୍ଗତି

ହର ଶିବ ଶିବ ଶଙ୍କର ବଂ ବଂ ଭୋଳା ।

ଡବ ଡବ ଡମ୍ବରୁ ଡବ ଡବ ଡମ୍ବରୁ

ଡବ ଡବ ଡମ୍ବରୁ ବାଜେ ତୋ ସାଥ ।

କୈଳାସ ଶିଖରେ କର ନିତ ବାସ,

ବୃଷଭ ବାହାନେ ସଦା ତବ ଆସ,

ଭସ୍ମ ବିଭୂଷିତ ଦକ୍ଷ ଦୁଲଣା କାନ୍ତ

ବ୍ୟାଘ୍ର ଛାଲ ପଟ ଗଳେ ହାଡ଼ମାଳା ।

ଦୁର୍ଗା—ବତ୍ସ ! ତ୍ରୈଲୋକ ବିଜୟୀ ହୁଅ ।

ବାଣା—ମା କୃପାମୟୀ ! ମୋତେ ଏପରି ଆଶୀର୍ବାଦ କରିବେ ନାହିଁ । ମୋତେ ବର୍ତ୍ତମାନ କଲ୍ୟାଣ କରନ୍ତୁ ଯେପରି ମୁଁ କୌଣସି ମହାବୀର ଦ୍ୱାରା ପରାଜିତ ହୁଏଁ ।

ଦୁର୍ଗା—ବତ୍ସ ! ଏ କି ଆଶ୍ଚର୍ଯ୍ୟ କଥା, ନିଜ ମୁଖେ ନିଜର ପରାଜୟ ସ୍ୱୀକାର କରିବା ତାତ୍ପର୍ଯ୍ୟ କ'ଣ ?

ବାଣା—ହଁ ମା !

ଶିବ—ବତ୍ସ କେଉଁ ଯୋଦ୍ଧାଦ୍ୱାରା ତୋର ମାନହାନ ହୋଇଛି ?

ବାଣା—ପ୍ରଭୁ ! ଯେତେବେଳେ ଏ ଦାସ ହର ଗୌରୀଙ୍କର ଚରଣାଶ୍ରିତ ହୁଙ୍କର ସେତେବେଳେ ତାର ମାନହାନ କରିବା ବୀର ଜଗତରେ କେହି ନାହିଁ ।

ଶିବ—ବତ୍ସ ! ପ୍ରକୃତରେ ଏ ତ୍ରିଭୁବନରେ ତୋ ସମ ବୀର କେହି ନାହିଁ ।

ବାଣ—ପ୍ରଭୋ ! ତେବେ ଅକାରଣେ ଏ ବୃଥା ବଳ କାର୍ଯ୍ୟରେ ପ୍ରୟୋଜନ କଣ ?

ଶିବ—ତେବେ ବର୍ତ୍ତମାନ ତୋର କଣ ଇଚ୍ଛା ? ପରଜୟ ?

ବାଣ—ପ୍ରଭୁ ! ମୋର ଅନ୍ୟ କିଛି ଇଚ୍ଛା ନାହିଁ, କେବଳ ମୋର ସମାସ୍କନ୍ଧଯୋଦ୍ଧା ଦଅନ୍ତୁ ଯଦ୍ଦ୍ୱାରା ମୋର ମନରସାଧ ମେଣ୍ଟିବ ।

ଶିବ—ବାପା ମୁଁ ଥରେ କହିଲି ତୋ ସମ ଯୋଦ୍ଧା କେହି ନାହିଁ । ତୁ ମୋର ବରରେ ତ୍ରିଭୁବନ ବିଜୟୀ ହୋଇଛୁ !

ବାଣ—ତେବେ, ଏ ଭୃତ୍ୟ ସଙ୍ଗରେ ଆପଣ ନିଜେ ରଣବର୍ତ୍ତୀ ହୁଅନ୍ତୁ ।

ଶିବ—ପ୍ରିୟତମେ ଶୁଣିଲ ତ ବାଣର ବଚନ ? ମୋର ବର ଦେବାର ବାହାରିଲା ଫଳ । ବାଣ ! ତୁ ମୋର ବରରେ ତ୍ରିଲୋକ ବିଜୟୀ ହେଲୁ; ବର୍ତ୍ତମାନ ମୋ ସହିତ ସଂଗ୍ରାମ କାମନା କରିବା କ'ଣ ନ୍ୟାୟ ସଙ୍ଗତ ?

ବାଣ- ନା, କିଛି ଅନ୍ୟାୟ ନୁହେ । ମୁଁ ଆପଣଙ୍କୁ ଯୁଦ୍ଧରେ ବଳିଲେ ମୋର ଆଉ କାହାରିକୁ ଭୟ ନ ଥିବ, ନଚେତ୍ ସଂସାର କୁହନ୍ତୁ ମୋର ସମସ୍କନ୍ଧ ଯୋଦ୍ଧା କିଏ ? ତା ସହିତ ମୁଁ ଯୁଦ୍ଧ କରି ମନର ସାଧ ମେଣ୍ଟାଇବି ।

ଶିବ—ବତ୍ସ ବାଣ ! ଅଚିରେ ତୋର ଅଭିଳାଷ ପୂର୍ଣ୍ଣ ହେବ । ଯା, ଏହି ଅଳ୍ପ ଦିନ ମଧ୍ୟରେ ଶ୍ରୀଗୋଲକ ବିହାରୀ ଶ୍ରୀକୃଷ୍ଣଙ୍କ ସହିତ ତୋର ସମର କାମନା ମେଣ୍ଟିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ବାଣ—ପ୍ରଭୁ ଉମାକାନ୍ତ ! ମା ଭଗବତି ! ଏ ଅଧମ ସନ୍ତାନ ପ୍ରତି ଦୟା ରଖିଥିବ । ଅଧୀନ ମେଲାଣି ନେଉଛି ।

(ପ୍ରଣାମାନ୍ତର ପ୍ରସ୍ଥାନ)

ଶିବ ଦେବି ! ତୁମ୍ଭେ ମାୟାକାମିନୀମାନଙ୍କୁ ଆଜ୍ଞା ଦିଅ, ସେମାନେ ପ୍ରଦ୍ୟୁମ୍ନର ପୁତ୍ର ଅନିରୁଦ୍ଧଙ୍କୁ ବାଣକନ୍ୟା ଉଷା ସହିତ ଗୁପ୍ତ ମିଳନ କରାନ୍ତୁ । ତଦ୍ଦ୍ୱାରା ଶ୍ରୀକୃଷ୍ଣ ସହିତ ବାଣର ସନ୍ନିକଟରେ ଯୁଦ୍ଧ ହୋଇଯିବ ଓ ତାର ଗର୍ବ ଖର୍ବ ହେବ ।

[ପ୍ରସ୍ଥାନ]

## ତୃତୀୟ ଦୃଶ୍ୟ

ମାୟା କାମିନୀ—ଗୀତ

ମାୟାରେ ମୋହି ପାରୁ ଜଗତ ।
ଦେଖ ମାୟା ବଡ଼ ଅଦ୍ଭୁତ ।
ମାୟାରେ ହସାଉ   ମାୟାରେ କନ୍ଦାଉ
ମାୟାରେ ଜନମନ   ଇସିତେ ଭୁଲାଉ
ମାୟାରେ କେ ନ ପାଏ ଅନ୍ତ । ୧ ।

(ଦୁର୍ଗାପ୍ରତି) ମା, କି କାର୍ଯ୍ୟ ଆମ୍ଭମାନଙ୍କଦ୍ୱାରା ସାଧିତ ହେବ ସେ କଥା ପ୍ରକାଶ କରନ୍ତୁ ।

ଦୁର୍ଗା—ତୁମ୍ଭେ ବର୍ତ୍ତମାନ ଦ୍ୱାରକାରୁ ପ୍ରଦ୍ୟୁମ୍ନର ପୁତ୍ର ଅନିରୁଦ୍ଧଙ୍କୁ ଆଣି ବାଣ କନ୍ୟା ଉଷା ନିକଟରେ ପହଞ୍ଚାଅ, କିନ୍ତୁ ସାବଧାନ ! ଉଷା ଓ ଅନିରୁଦ୍ଧର ଶୟନାବସ୍ଥାରେ ଏ କାର୍ଯ୍ୟ ସାଧିତ ହେବ ।

ମାୟାକାମିନୀ—ମାତ, ତବ ଆଜ୍ଞା ଶିରୋଧାର୍ଯ୍ୟ ।

## ଚତୁର୍ଥ ଦୃଶ୍ୟ

ଚିତ୍ରରେଖା—ହଇହୋ ଜେମାମଣି ! ତେମେ ଦିନକୁ ଦିନ ଏପରି ଶୁଖିଲୀଟା ଦେଖାଯାଉଛ କାହିଁକି ମ ? ଯାହାର ସିନା ଚିନ୍ତା ଅଛି, ଦୁଃଖ ଅଛି, ପରପ୍ରେମ ଅଛି, ସେ ସିନା ବାର କଥାରେ ମନ ପୂରାଇ ବାଣ୍ଟି ହୋଇ ମରୁଛି । ତମର ଏବେ କୋଉ କଥାକୁ ଚିନ୍ତା ମ ?

ସରଳା—ଚିତ୍ରରେଖା ! ଚିନ୍ତା ସମସ୍ତଙ୍କୁ ଗ୍ରାସିଛି । କି ଧନୀ କି ଦରିଦ୍ର ସମସ୍ତେ ଚିନ୍ତାର ଅଧୀନ । ପିତାର ପୁତ୍ର ଚିନ୍ତା, ମାତାର କନ୍ୟା ଚିନ୍ତା, ସ୍ତ୍ରୀର ସ୍ୱାମୀ ଚିନ୍ତା ।

ଚିତ୍ରରେଖା—ସରଳା ! କହିଲୁ ଭଲ ଆମ ଜେମାକୁ କୋଉ ଚିନ୍ତା ଗ୍ରାସିଛି ।

ସରଳା—ମୋତେ କାହିଁକି ପଚାରୁଛ ମ ? ଜେମାଦେଈ, ବାସ୍ତବିକ ତୁମ୍ଭେ ଦିନକୁ ଦିନ କ୍ଷୀଣ ହୋଇ ଯାଉଛ । ଏହାର ମତଲବ ଆମ୍ଭେ କିଛି ବୁଝି-ପାରୁ ନାହୁଁ । ଆମ ଆଗରେ ମୁହଁ ଖୋଲି କହିଲେ ଆମ୍ଭେ କଣ ତାର ପ୍ରତିକାର ବାଟ କରନ୍ତୁ ନାହିଁ ?

ଉଷା—କଣ କହିବି ସଖି ।

(ଗୀତ)

ମରମର କଥା ମରମେ ମରୁଛି
କହିବି ମୁଁ କାହାରେ । (ଘୋଷା)
ମନ୍ଦ ଅନିଳ ରହିଲାଣି (ପିକ)
ବସନ୍ତ ଆଗମେ କହିଲାଣି
ମଲ୍ଲୀ ଯାଇ ଯୁଇ କେତକୀ ଗୁହିଁ
ଉଡ଼େ ମୋର ସାହାରେ । ୧ ।
ପୋଡ଼ା ପରାଣେ ନାହିଁ ମୋ ଆଶା
ଘୋଟିଲାଣି ଆସି ଘୋର ନିରାଶା ।
ଧିକ ଜନ୍ମ ଘୋଷା ନାହିଁ ଯେବେ ଆଶା
ଉଡ଼େ ମୋର ସାହାରେ । ୨ ।
ସାର ଯୌବନ ହେଉଛି ଛାର,
ମାର ଦହୁଅଛି ବାରମ୍ବାର
ନିଦାରୁଣ ପଣ କଲେ ପିତା ଜାଣ
ନ ପାଏ ମୁଁ କାହାରେ । ୩ ।

ସଖି ! ପିତାଙ୍କ ଦାରୁଣ ପ୍ରତିଜ୍ଞା ଶୁଣିଛ ତ ? ମୁଁ ଆଉ ଅଧିକ କଣ କହିବି, ମୁଁ ରାଜକୁଳରେ ଜନ୍ମ ହୋଇ କେଡ଼େ ହେଲା ଗେହ୍ଲାରେ ବଢ଼ି ଥିଲି, କିନ୍ତୁ ବିଧାତା, ମୋର ସେ ସୁଖ ବର୍ତ୍ତମାନକୁ ରହିଲା ନାହିଁ ।

ସରଳା—ଚନ୍ଦ୍ରରେଖା ! ଏକା ସତକଥା, ସୁନ୍ଦର ବେଳେ ସିନା ସିନ୍ଦୂର, ଆଜ କୋଉ କାଳେ କିଏ ଆମ ରାଜାଙ୍କୁ ଯୁଦ୍ଧରେ ହଟେଇବ ଜେମାଙ୍କୁ ବାହା ହେବ, "ଆକାଶ କଇଁଆ ଚାନ୍ଦକା ମାଛ ।"

ଚନ୍ଦ୍ରରେଖା—ଆଲୋ କଣ୍ଟୁରୀ ନନ୍ଦ ଦିନେ ଭାଗବତ ବୋଲୁଥିଲେ କ'ଣ ଗୋଟିଏ କି ସୁନ୍ଦର ପଦ ପଢ଼ିଲା, ହିଁ, "ଏ ବଡ଼ ଲୋକଙ୍କର ମତ, ଅଳପ ଲୋକେ ବିପରୀତ" । ଏ ତ ରଜାଘର କଥା, ସେଥିରେ ଭଲ ହେଲେ କେତେ ମନ୍ଦ ହେଲେ କେତେ, ଉତ୍ତର ଦେଉଛି କିଏ ? ତ୍ରେତୟା ଯୁଗରେ ଜନକ ପଣ କରିଥିଲେ, ଯିଏ ଶିବଧନୁକୁ ଭାଙ୍ଗିବ ସେ ସୀତାଙ୍କୁ ବିଭା ହେବ । ଦ୍ରୁପଦ ରାଜା ପଣ କରିଥିଲେ ଯିଏ ଜଳପାତ୍ରରେ ମାଛର ଛାଇ ଦେଖି ବାମ ହସ୍ତରେ ମାଛର ଚକ୍ଷୁକୁ ବାଣ ବିଦ୍ଧ କରିବ ସେ ଦ୍ରୌପଦୀଙ୍କୁ ବିଭା ହେବ । ଏ ବୋଧହୁଏ ସେହିପରି ପଣ କରିଛନ୍ତି ଯିଏ ଯୁଦ୍ଧରେ ତାଙ୍କୁ ହଟାଇବ ସିଏ ଉଷାଦେବୀଙ୍କୁ ବିଭା ହେବ ।

ସରଳା—ରାଇଜଯାକର ରଜା ତ ଆମ ମଣିମାକୁ ପାରିଲେ ନାହିଁ, ପୁଣି ଶିବଙ୍କ ବରରେ ତ ଏ ତ୍ରିପୁର ବିଜୟୀ । ଇନ୍ଦ୍ର ପରି ଛନ୍ଦି ଶରଣ ପଶିଲା, ଆଉ ହବ କଣ, ଜେମାଦେଈଙ୍କ କର୍ମ ।

ଚନ୍ଦ୍ରରେଖା—ଜେମାଙ୍କ କର୍ମ କଣମ, ବଢ଼ିଲା ଝିଅ ଯେବେ ବାପ ଘରେ ବର୍ଷକୁ ପାଞ୍ଚବର୍ଷ ରହିଲା ତେବେ ବାପ ମାଙ୍କୁ ନର୍କରେ ବୁଡ଼ାଇବା କଥା ।

ଉଷା—ସଖି ମୁଁ ଏଡ଼େ ହୀନ କପାଳ ।

(ଗୀତ)

ପ୍ରାଣ ସଖି ମହିରେ କି ସୁଖ ମୋର ଆଉ
ଦୁଃଖ ନିଶି ଘୋଟି ଆସିଲାଣି ଗୁହିଁ ଗୁହିଁ
କି କରିବି ଗୋ
କେମନ୍ତେ ଏ ପ୍ରାଣ ମୁଁ ଧରିବି ଗୋ । ୧ ।
ତରୁ ବିନା ଲତା କାହୁଁ ଆଶ୍ରୟ ପାଇବ
ଭୂମିରେ ଲୋଟି ସାଉଁଟି ସିନାଟି ମରିବ
ପ୍ରିୟ ଆଳି ଗୋ
ଦୁଃଖାନଳେ ପଡ଼ି ମରେ ଜ୍ୱାଳି ଗୋ । ୨ ।
ଅଭୟା ଯେବେଟି ମୋତେ କରିବେ ନିସ୍ତାର
ଜାଣିଥା ସଜନୀ ନିଶ୍ଚେ ଭଜିବି ମୁଁ ହର
ଏହିପରି ଗୋ
ନ ହେବଟି କେବେ ଆଉ ଅନ୍ୟ ଗୋ । ୩ ।

ସଖି ! ଏ ଅଲୋଡ଼ା ଜୀବନରେ କିଛି ପ୍ରୟୋଜନ ନାହିଁ । ନିଶ୍ଚୟ ଜଳରେ ଡାଲି ହୃଦୟ ବେଦନା ନିବାରଣ କରିବି ।

ସଖିମାନେ—କେମାମଣି ! ସ୍ବାନା କଣ କଥା । ଆମ ଦଅଁ ଦେବତା ପୂଜିବା କ'ଣ କୁଆଡ଼େ ଉଭେଇ ଯିବ । ତୁମ୍ଭେ କୌଣସି କଥାକୁ ଭାବନା କର ନାହିଁ । ଇଷ୍ଟଦେବ ନିଶ୍ଚୟ ଏ କଷ୍ଟ ହରଣ କରିଦେବେ ।

ଉଷା—ସଖି ! ଇଷ୍ଟଦେବ ମୋର ପିତାଙ୍କୁ ସଦ୍‌ବୁଦ୍ଧି ଦେବେ ଯଦ୍ଦ୍ୱାରା ଭାବୁଥିବ ମୁଁ ପତି ପାଇବା ଲାଗି ଆଉଳ ଝାଉଳ ହେଉଛି କିନ୍ତୁ ତା ନୁହେଁ ମୋର ଯେତେ ଦିନ କୁମାରୀ ବ୍ରତ ଅବଲମ୍ବନ କରିବାକୁ ଥିଲା ସେତେ ଦିନ ଆସି ଭୋଗ ହୋଇ ଗଲାଣି, ବର୍ତ୍ତମାନ ମୁଁ ପ୍ରତିବ୍ରତା ଧର୍ମ ଅବଲମ୍ବନ କରିବି । ସେଥିପାଇଁ ମୋର ପତିଚନ୍ତା ସ୍ବଧେସ୍ଯ ବୋଲି ମୁଁ ଲଜ୍ଜା ସଙ୍କୋଚ ତ୍ୟାଗ କରି ତୁମ୍ଭମାନଙ୍କ ଆଗରେ ମନର ଭାବ ପ୍ରକାଶ କରୁଛି ।

ଚିତ୍ରରେଖା—କେନାମଣି ! ଆମେ କ'ଣ ତୁମ୍ଭଙ୍କୁ କୋଉ କଥା କହିଲୁ ତୁମେ ଜକାଣି କଣ୍ଠ ବାଡ଼କୁ ଲୁଗା ପକାଉଛ ।

ଉଷା—ନାହିଁ ଲୋ ସଖି ! କାଳେ ତୁମ୍ଭେମାନେ କୋଉ କଥା ଭାବିଥିବ ବୋଲି ମୁଁ ବୁଝାଇ ଦେଲି; ପ୍ରକୃତରେ ସୁଗଳ ଅଙ୍ଗ ନ ହେଲେ ଭକ୍ତିର ସାଧନ ହୁଏ ନାହିଁ । ବର୍ତ୍ତମାନ ମୋତେ ନିଦ୍ରା ଆସିଲାଣି ତୁମ୍ଭେମାନେ ପଲଙ୍କ ସଜାଇ ଦଅ । (ତଥା କରଣ)

(ସଖୀଏ ଅନ୍ତର୍ଦ୍ଧାନ)

[ମାୟା କାମିନୀ ଅନିରୁଦ୍ଧଙ୍କୁ ଉଷା ନିକଟେ ପହଞ୍ଚାଇବା]

(ଅନିରୁଦ୍ଧ ଚକ୍ଷୁ ମଳି ମଳି ଉଠି) ଏ କଣ, ଏ କି ଆଶ୍ଚର୍ଯ୍ୟ ସ୍ବପ୍ନ ! କିଏ ଗୋଟିଏ ଅକଳଙ୍କ ସୁଧାଂଶୁ ବଦନା ତାର କୋମଳ ବାହୁ ପାଶରେ ମୋତେ ଆବଦ୍ଧ କରି ପୁନଶ୍ଚ ମୋ ନିକଟରୁ ଅପସାରିତ ହୋଇଗଲା । ଆହା ସେ କେଡ଼େ ରୂପବତୀ, ବିଧାତା ତାକୁ କାହାର ଅର୍ଦ୍ଧାଙ୍ଗିନୀ କରିବାକୁ ନିର୍ମାଣ କରିଛି । (ଇତଃସ୍ତତ ଚାହିଁ) କିଏ ଅଛ, ଏଁ ଏଁ କେଉଁସ୍ଥାନ, ଏତ ମୋର ଶୟନ କକ୍ଷ ନୁହେଁ । ଏ ଅପୂର୍ବ ରୂପ ଲାବଣ୍ୟ ସମ୍ପନ୍ନା ରମଣୀ ପୁଣି ଏଠାକୁ କାହିଁ ଆସିଲା । ମୁଁ ତ ଠିକ୍ ଏହି ରମଣୀକୁ ସ୍ୱପ୍ନରେ ଦେଖିଥିଲି । କି ଆଶ୍ଚର୍ଯ୍ୟ, ମୁଁ ନିଦ୍ରିତ ନା ଜାଗ୍ରତ, କିଛି ତ ବୁଝି ପାରୁନାହିଁ । ମୋର ମଥା କଣ ବିଭ୍ରମ ହୋଇ ଯାଇଛି; ମୁଁ କଣ ସ୍ୱପ୍ନରେ ଏପରି ରମଣୀୟ ଦୃଶ୍ୟ ଦେଖୁଛି ନା । ମୁଁ ତ ସମ୍ପୂର୍ଣ୍ଣ ଜାଗ୍ରତ, ତେବେ ଏ ରହସ୍ୟ ତ କିଛି ବୁଝି ପାରୁନାହିଁ । ଏହାର ରୂପ ଲାବଣ୍ୟ ମୋର ପ୍ରାଣ କିଣି ନେଲାଣି, ଏ କିଏ ?

ଗୀତ

କାହା ମନୋହରୀ ଏ ମୋ ମନ ମୋହିଲାରେ
ଦେଖି କି ମାନସୀ କଳନା ମୋହର ନୋହିଲାରେ ।
ତିଳ ପୁଷ୍ପ ଜିଣି ନାସା,
ମୃଗାକ୍ଷି ଅପୂର୍ବ ଯୋଷା
ଗୋପନେ ଆସି ମୋ ପାଶେ
ମୋ ହୃଦକୁ ଦହିଲାରେ । ୧ ।
କର ବଦନୀ ଧନୀ,
ଗଣ୍ଡ କୋକନଦ ଜିଣି
ଧନ୍ୟ ସେ ବିଧାଣୀ କେତେ-
ଯତନେ ଯାକୁ ଗଢ଼ିଲାରେ । ୨ ।
କଟି ତା ଡମ୍ବରୁ ସମ,
ପରୁଶିସ୍ର ଅନୁପମ
ଦେଖି ମୋ ମତି ବିଭ୍ରମ
ନିଶ୍ଚେ ଆସି ହୋଇଲାରେ । ୩

ସଖି ! ତୋର ଏ ରୂପକୁ ଭୁଲି ପାରିବି ନାହିଁ । ତୋର ରୂପଲାବଣ୍ୟ ମୋର ହୃଦୟକୁ କିଣି ନେଲାଣି, ସଖି ! ମୋତେ ଅନ୍ତର କରିବୁ ନାହିଁ , ମୁଁ ଆଜଠାରୁ ତୋ ନିକଟରେ ଚିର ବନ୍ଧା ରହିଲି । ତୋର ମୋର ଭିନ୍ନା ଭିନ୍ନ ନାହିଁ । ହୃଦୟେଶ୍ବରି ! ତୁହି ମୋର ଜୀବନ, ତୁହି ମୋର ଜ୍ଞାନ, ତୁହି ମୋର ସକଳ ସମ୍ପଦ । ପ୍ରାଣପ୍ରିୟେ ! ମୋର ତୋହ ପ୍ରତି କେତେଦୂର ସ୍ନେହ ମମତା ଜନ୍ମିଛି ଥରେ ଉଠି ଦେଖ । ନା, ନିଦ୍ରା ଭଙ୍ଗ କରିବି ନାହିଁ । ତେବେ ସ୍ନେହର ନିଦର୍ଶନ ସ୍ୱରୂପ ଏହି ମୁଦ୍ରି କାଢ଼ି ତୋର ହସ୍ତରେ ଅର୍ପଣ କରି ତୋର ନିଦ୍ରା ଭାଙ୍ଗିବା ପର୍ଯ୍ୟନ୍ତ ଏହିଠାରେ ଅପେକ୍ଷା କରି ରହିଲି ।

ଊଷା—(ଉଠି) ଆହା ମୁଁ କେତେ ଗୁଡ଼ାଏ ଶୋଇ ପଡ଼ିଲି । ପ୍ରଭାତ ଆଲୋକରେ ଗୃହ ଯେ ଆଲୋକିତ ହୋଇଗଲାଣି । କାହିଁ ମୋର ସହଚରୀମାନେ କାହାନ୍ତି । କାହିଁ କେହି ତ ଦେଖା ନାହାନ୍ତି । (ଦେଖି ଆଶ୍ଚର୍ଯ୍ୟ) ପୁଣି ଏ ଅପରିଚିତ ଯୁବକଟି କିଏ । ଏ ମୋ ଗୃହରେ ପ୍ରବେଶ କଲେ କିପରି । ଗୃହର ଦ୍ୱାର ତ ରୁଦ୍ଧ ହୋଇଛି, ଏ ଅବା ଆସିଲେ କିପରି ? ତେବେ କଣ କେହି ଦେବ କୁମାର ! ତା ନ ହେଲେ ଦ୍ୱାରରୁଦ୍ଧ ଗୃହରେ ପ୍ରବେଶ କରିବା ତ ସହଜ କଥା ନୁହେଁ, ବଡ଼ ଲଜ୍ଜାର କଥା । ମୁଁ ଯୁବା ନାରୀ ହୋଇ ଅପରିଚିତ ଯୁବକ ନିକଟରେ ଏତେ ସମୟ ନିଦ୍ରା ଯାଇଥିଲି । ଛି, ଛି, ଯଦି ସଖୀଗଣେ ଆସି ପହଞ୍ଚି ଯାଆନ୍ତି ମୋତେ ବଡ଼ ନିନ୍ଦା କରିବେ । ନା ବର୍ତ୍ତମାନ ଏ ସ୍ଥାନ ପରିତ୍ୟାଗ କରିବା ଦରକାର । ଆଚ୍ଛା, ଏ ସ୍ଥାନ ପରିତ୍ୟାଗ କରିବି ନିଶ୍ଚୟ ତେବେ ଭଲକରି ଏ ଯୁବକକୁ ଦେଖିଯାଏ । ସେଥିରେ କ୍ଷତି କଣ ଅଛି । ସୁନ୍ଦର ଜିନିଷଟି ଦେଖିବାକୁ ସମସ୍ତଙ୍କର ମଧ୍ୟ ଲାଳସା ବଢ଼େ । (ଦର୍ଶନ) ଆହା କି ରୂପ, କି ତେଜ, ଏପରି ରୂପକୁ ତ ତୁଳନା ନାହିଁ । ମା, ଭଗବତୀ ! ତୁମ୍ଭେ କ'ଣ ମୋର ହୃଦୟ ବେଦନା ବୁଝି ପାରି ଏ ଦୁର୍ଲ୍ଲଭ ଯୁବକଙ୍କୁ ଆଣି ମୋତେ ଦେଇଛ, ତେବେ ଏ ସୁବର୍ଣ୍ଣ ସୁଯୋଗ ଛାଡ଼ିବି କାହିଁକି । ହେ ଯୁବକ, ତୁମ୍ଭ ରୂପରେ ମୁଁ ମୁଗ୍ଧ ହୋଇ ମୋର ମନ ପ୍ରାଣ ତୁମ୍ଭ ଶ୍ରୀଚରଣରେ ଅର୍ପଣ କଲି । ଉଠ, ଉଠ ନାଥ !

ଗୀତ--(ହେ ନବଯୁବକ—ହୃତେଶ୍ୱ)

ଉଠ ପ୍ରାଣ ଧନ ମୋ ଜୀବଜୀବନ,
ଉଠ ଦୁଃଖିନୀର କଣ୍ଠମଣି ।
ତବ ଶ୍ରୀଚରଣେ ଆଜଟି ଗୋପନେ
ସମର୍ପିଲି ପ୍ରାଣ ଅଭାଗିନୀ
ଆଶ୍ରା ଦିଅ ବାରେ,
ଯବ ବିନା କେହି ନାହିଁ ଅଧୀନରେ । ୧ ।
କେତେ ଦିଅଁ ପୂଜ ପାଇଛି ମୁଁ ଆଜ
ତବ ପାଦ ଯୁଗ ଦେଖାଦେବଣ
ଥରେ ଆଲିଙ୍ଗନ କଲେ ଜୀବଧନ
ଯିବ ଦୁଃଖିନୀର ହୃଦୁତ୍ରାସ
ଦୟାକର ଥରେ ।
ଅଭାଗିନୀ ପଡ଼ି ମରେ କାମାନଳେ । ୨ ।

ନାଥ ! ଉଠିବ ନାହିଁ, ଥରେ ତୁମ୍ଭର ଦାସୀର ଅନୁରୋଧ ରକ୍ଷା କରିବ ନାହିଁ । ହଉ ଆପଣ ମୋତେ ଆଶ୍ରୟ ନ ଦିଅନ୍ତୁ, କିନ୍ତୁ ମୁଁ ଆଜଠାରୁ ତବ ଶ୍ରୀଚରଣେ ବନ୍ଧା ରହିଲି । (ପଦଧାରେ ଶୟନ)

(ମାୟାକାମିନୀ ପ୍ରବେଶ)

ଗୀତ—

କେତେ ରଙ୍ଗେ କେତେ ଢଙ୍ଗେ
ଲାଗିଛି ଏ ଦୁନିଆ ନାଟ
କେ ପ୍ରେମନୀରେ ଭାସି ଯାଉଛି
କେ ପ୍ରେମନୀରେ ତେଜ ଖେଳୁଛି
କେ ପ୍ରେମେ ହସେ କେ ପ୍ରେମେ କାନ୍ଦେ
କେ ପ୍ରେମେ ଛଟପଟ ।

(ଅନିରୁଦ୍ଧଙ୍କୁ ନେଇଯିବା)

ଊଷା (ହଠାତ୍ ଉଠି) କିଏ, କିଏ, କଣ କଲ, ମୋ ହୃଦୟେଶ୍ୱରଙ୍କୁ କୁଆଡ଼େ ନେଇ ଗଲ । ଦିଅ ! ଦିଅ !

(ପ୍ରସ୍ଥାନ)

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ବାଣା ମୋର ପ୍ରତିଜ୍ଞାରେ ବାଧା ଦେବା ତୁମ୍ଭର କଣ ଉଚିତ୍ ? ମୋତେ ବାରମ୍ବାର ବିରକ୍ତ କର ନାହିଁ, ମୁଁ କେବେ ଦୁହିତାର ଅମଙ୍ଗଳ ବାଞ୍ଛା କରୁନାହିଁ ।

ମନୋରମା ଆଜି ମଙ୍ଗଳ କେଉଁ କାଳେ ମ, ଝିଅ ତ ବରଯୋଗ୍ୟ ହୋଇ ବର୍ଷକୁ ପାଞ୍ଚବର୍ଷ ଘରେ ରହିଲା, ବାହାର ଲୋକ ଯିଏମାନେ ଯିଏ

ବାରକଥା କହୁଛନ୍ତି । ନାଥ ! ଆପଣ ସେ ଦୃଢ଼ ପ୍ରତିଜ୍ଞାରୁ ରହିତ ହୋଇ ଉପଯୁକ୍ତ ପାତ୍ର ହସ୍ତରେ ମୋର ଉଷାଙ୍କୁ ସମର୍ପଣ କରନ୍ତୁ ।

ବାଣା—ମୁଁ ବାହାର ଲୋକଙ୍କ କଥା ଶୁଣିବାକୁ ଘୃଣେଁନା । ମୁଁ ଯେଉଁ ପ୍ରତିଜ୍ଞାବଦ୍ଧ ହୋଇଛି ତା ଅନ୍ୟଥା ହୋଇ ନ ପାରେ ।

ମନୋରମା— ଗୀତ

ପ୍ରାଣପତି ଏ କେଉଁ ଅଶାନ୍ତ କଥା କହ ।
ତ୍ରିଜଗତେ ତବ ସମ ଅଛି କେହୁ ବୀର ହେ
ପ୍ରାଣନାଥ !
ଜେମାର ସେ ହୋଇବଟି କାନ୍ତ । ୧ ।
ମନକୁ ନ ଆସେ ଯାହା ଶୁଣି ନାହିଁ କର୍ଣ୍ଣ
ଅସମ୍ଭବ କଥା ସିନା କହୁଛ ଆପଣ ହେ ।
ଜୀବଧନ !
ଜେମା ଜନ୍ମ ହେଲା ଅକାରଣ ହେ । ୨ ।
ଶୋଷିବେଳେ ଗଙ୍ଗା ସିନା ବଧିର ଉଆଣ ।
ଅବୁଝା ହେଉଛ ସିନା ନାଥ ଅକାରଣ ହେ ।
କନ୍ୟାଧନ ।
ଗୃହେ ରଖି ବିପଦ କାରଣ ହେ । ୩ ।

ନାଥ ! କନ୍ୟା ବରଯୋଗ୍ୟ ହେଲେ ତାକୁ ଗୃହରେ ରଖିବା ଆମ୍ଭର ଅମଙ୍ଗଳ । ମୋ ସାନକୁହା ମାନ ଜେମା ଲାଗି ଗୋଟିଏ ବରପାତ୍ର ଠିକ୍ କରନ୍ତୁ ।

ବାଣା— ଗୀତ

ମୋତେ ବାର ବାର କର
କହନା ରେ ବରବରନା ।
(ମୁଁ) ସାର କରିଛି ଯାହା ସ୍ଥିର କରିବ କି,
ନାରଂଖାର ପଛେ ହେବ ଲଳନା । ପଦ ।

ମୁଁ ମନରେ ଯାହା କଳ୍ପନା କରିଛି ତାହା କେଭେ ଅନ୍ୟଥା ହୋଇ ନ ପାରେ, ତୁମ୍ଭେ ମୋତେ ବାରମ୍ବାର ବିରକ୍ତ କର ନାହିଁ ।

ମନୋରମା—ଆପଣ ମୋ କଥାରେ ବିରକ୍ତ ହେଉ-ଛନ୍ତି ସତ୍ୟ, କିନ୍ତୁ ଦୁହିତାର ଶୁଭ ସମୟରେ ପିତା ଶୁଭ କାମନା କରଇବା ଆବଶ୍ୟକ, କିନ୍ତୁ ତା ଯେ ନ କରେ ସେ ପିତା ନୁହେ ଶତ୍ରୁ ।

ବାଣା— ଗୀତ

କାର ବଳେ ମୋତେ କହୁ ଝିଙ୍କାସି
ଜାର ଆଶ୍ରା କଲୁଣି କ ରାକ୍ଷସୀ
ଯାର ନାମ ଶୁଣି କମ୍ପୁଛି ମେଦିନୀ
ତାର ବୁଦ୍ଧିକି ତୁ କରୁ କଳନା । ୧ ।

ରାକ୍ଷସି ! କାହା ବଳରେ ଏପରି କୁତ୍ସିତ ବାକ୍ୟ ହାବି ମୋର ହୃଦୟରେ ଶତବାଣ ବିଦ୍ଧ କରୁଛୁ, ତୁ ଜାଣୁ ମୁଁ କିଏ ?

ମନୋରମା—ବେଶ୍ ଜାଣେ, ନାଥ ! ଯେଉଁ ବୀରକୁ ତ୍ରିଜଗତରେ ନର ଦେବତା ଆଦିକରି ଉପୁରେ କରପତ୍ର ଯୋଡ଼ନ୍ତି, ସେ ବୀରର ରମଣ କ'ଣ ଏଡ଼େ ମୂଢ଼ା ଯେ ସେ ତାର ସ୍ୱାମୀଙ୍କୁ ଆଜ ପର୍ଯ୍ୟନ୍ତ ଚିହ୍ନି ନାହିଁ । ନାଥ ସେ କଥା କୁହନ୍ତୁ ନାହିଁ ।

ବାଣା—ତେବେ ମୋର ଇଚ୍ଛାରେ ବାଧା ଦେବା କାର ଅଧିକାର ନାହିଁ ।

ଗୀତ

ସଂଗ୍ରାମରେ ଯେହୁ ଜିଣିବ ମୋତେ
କନ୍ୟା ସମର୍ପିବି ମୁଁ ତାର ହସ୍ତେ ।
ଏ ମୋ ଦୃଢ଼ପଣ ନ ହେବ ଖଣ୍ଡନ
ତୁ ଭଣ୍ଡାଭଣ୍ଡି ମୋତେ କରନା । ୨ ।

ଏ ସାରା ସଂସାରେ ଯେ ମୋ ସମ ଶ୍ରେଣୀ ଥିବ ମୁଁ ତାଠାରୁ ଯୁଦ୍ଧରେ ପରାସ୍ତ ହେଲେ ସେହି ବୀରକୁ ମୋର ଉଷାକୁ ବିବାହ ଦେବି ଏହି ମୋ ଦୃଢ଼ ବ୍ରତ ।

(ପ୍ରସ୍ଥାନ)

ମନୋରମା—କାହିଁକି ତୁ ଏପରି ହତଭାଗିନୀ କୋଳରେ ଜନ୍ମହେଲୁ । ତୋ କର୍ମରେ ଏତେ ହୀନଅବସ୍ଥା ଥିଲା, ମୁଁ କଣ କରିବି, କେତେ ପ୍ରକାର ତ ବୁଝାଇଲି ଟିକିଏ ତ ମୋ କଥା ରଖିଲ ନାହିଁ । ହେ ଶିବଶଙ୍କର, ତୁମ୍ଭେ ମାତ୍ର ଭରସା ।

[ଚିତ୍ରରେଖା ପ୍ରବେଶ]

ଚିତ୍ର—ମା ମଣିମା ! ଟିକିଏ ଆଡ଼କୁ ଆସନ୍ତୁ ଜେମାମଣି କାହିଁ କ'ଣ ହୋଇ ଯାଉଛନ୍ତି, ଆମ୍ଭେ କିଛି ବୁଝି ପାରୁ ନାହିଁ ।

ମନୋରମା—ହଇଲୋ ଚନ୍ଦ୍ରରେଖା ! କ'ଣ କ'ଣ, ମୋ ଝିଅର କ'ଣ ହେଲା ?

ଚନ୍ଦ୍ରରେଖା—ଆପଣ ଶୀଘ୍ର ଆସନ୍ତୁ ।

ମନୋରମା—ହଉ ଚାଲ ।

---

## ଦ୍ୱିତୀୟ ଦୃଶ୍ୟ

ସରଳା—କେମାମଣି ! ଏ କ'ଣ ତୁମ୍ଭେ ଏପରି କାହିଁକି ହେଉଛ ? କାହିଁ କେହି ତ କୁଆଡ଼େ ନାହାନ୍ତି, ତମର ମଥା ବିଭ୍ରମ ହୋଇ ଗଲାଣି, ତେବେ ଟିକିଏ ବସିପିବଟି, କ'ଣ ଗୁଡ଼ାଏ ଆଡୁ ସାଡୁ ହେଉଛ ?

ଉଷା—ସରଳା ! ସେ କୁଆଡ଼େ ଗଲେ ତାଙ୍କୁ ମୋ କୋଳରୁ କିଏ ଛଡ଼ାଇ ନେଲା ।

ସରଳା—ମୁଁ ତ ଏଥିକି ଆଉ ପାରିବି ନାହିଁ, ତୁମ୍ଭର ମୁଣ୍ଡ କ'ଣ ହେଲାକି, ହାଦ କଣ ହେଲା ଭଲ ଟିକିଏ ଥୟ ହୋଇ ବସି ପାରୁ ତା ନାହିଁ, ଖାଲି ହୋଇଗଲା, ଏଇବାଟେ ଗଲା, ଏଇ ଚାଲିଗଲା କହି ମୋତେ ବୁଲେଇ ବୁଲେଇ ମାରିଲାଣି, ମୁଁ ତ ତମ ପାଙ୍ଗରେ ଅଧା ବାଇଆଣି ହୋଇଗଲିଣି । କେମାମଣି ! ମୋ ସାନ କଥା ମାନ ଟିକେ ବସିଯାଅ, ମୁଁ ଆଉଁସି ଦିଏଁ ।

ଉଷା— ଗୀତ

ସହିରେ କାହିଁ ଗଲେ ମୋ ମନ ଚୋରି ।

ଅତି ଗୋପନରେ ଆସି ମୋ ପାଖରେ

ଥିଲେ ସେ ପ୍ରେମ-ପସରି ।

ମୁଁ ତାଙ୍କୁ ଚରଣେ ବିକିଛି ଗୋ ଜାଣ

ସେହି ମୋ ହୃଦୟ-ହାରି । ୧ ।

ସଖି ! ସେ କୁଆଡ଼େ ଗଲେ, ମୁଁ ତାଙ୍କୁ ଦେଖି ତାଙ୍କର ରୂପ ଲାବଣ୍ୟରେ ବିମୋହିତ ହୋଇ ମୋ ମନ ପ୍ରାଣ ତାଙ୍କ ଶ୍ରୀଚରଣରେ ଅର୍ପଣ କରିଦେଲି, ସେ ମୋତେ ଛାଡ଼ି କୁଆଡ଼େ ଗଲେ ?

ସରଳା—ଆଚ୍ଛା, କହିଲ ଭଲା ଆମେ ତ ପହରେ କ ଛଅଡ଼ ଘରରେ ତୁମ୍ଭ ପାଖରୁ ଗଲୁ, ତୁମ୍ଭେ ତ କବାଟ ଦେଇ ଶୋଇଲ, ପୁଣି କିଏ ଭଲା ତୁମ୍ଭ ପାଖକୁ କେଉଁ ବାଟେ ଆସିଲା, କହିଲ ଭଲା ଇଏ ସବୁ କ'ଣ କଥା ?

ଉଷା— (ଗୀତ)

କାଲି ନିଶୀଥରେ ଥରେ ଏ ନେତ୍ରରେ

ଦେଖିଲି ନୟନ ତାରା ।

ମୃଦୁ ନେତ୍ର,ପଦ- ରୂପରେ ତାଙ୍କର

(ମୋର) ନିଦ୍ରା ବୁଡ଼ାଇଲା ଚୋରା । ୨ ।

ସଖି ! କାଲି ଅର୍ଦ୍ଧରାତ୍ର ସମୟରେ ହଠାତ୍ ମୋର ନିଦ୍ରା ଭାଙ୍ଗିଗଲା । ମୁଁ ଚାହିଁ ଦେଖନ୍ତେ ଗୋଟିଏ ଜ୍ୟୋତିର୍ମୟ ପୁରୁଷ ମୋର ପଲଙ୍କରେ ନିଦ୍ରା ଯାଇ-ଛନ୍ତି । ମୁଁ ତାଙ୍କୁ ଦେଖିଲାକ୍ଷଣି ମୋର କାହିଁକି ହସ୍ତ-ପଦ ସ୍ତମ୍ଭିତ ହୋଇଗଲା । ଭାବିଲି, ଏପରି ସୁନ୍ଦର ମୂର୍ତ୍ତି ଜୀବନରେ ଲଭି ତାଙ୍କୁ ଏ ହୃଦୟ ରାଜ୍ୟରେ ଅଧୀଶ୍ୱର ନ କରି ଛାଡ଼ିବି କାହିଁକି । ଆଜି ଏ ସୌଭାଗ୍ୟ ଘଟିବ ନାହିଁ । ଏହା ଭାବି ତାଙ୍କ ଚରଣ ଚୁପି ଚୁପି ମୋତେ ନିଦ୍ରା ଆସିଗଲା । ସେ କୁଆଡ଼େ ଗଲେ ଆଉ ଦେଖି ନାହିଁ, ସଖି ! କିଏ ତାଙ୍କୁ ଆଣି ମୋତେ ଦେବ ?

ସରଳା—କେମାଦେଈ ! ତେବେ ସପନଗୁଡ଼ାଏ କ'ଣ ଆଡ଼ୁସାଡ଼ୁ ଦେଖି ଏପରି ହେଉଛ, ଏଥିରେ ଆଉ କିଛି ନାହିଁ ; ମୁଁ ଗୋଟିଏ କଥା କହୁଛି ଶୁଣ ।

ଗୀତ

ଶୀତଳେ କି କେବେ ଫୁଟିଇ କଇଁ

ସଲିଳେ କି ଅଗ୍ନି ସଂଯୋଗ ହୋଇ ।

ଅବସନ୍ତେ କି ରାବଇ କୋକିଳ

ସ୍ୱପ୍ନ କଥାରେ ଘଟଇ କି ଫଳ

ଏ ତ ଅସମ୍ଭବ । କେତକୀ ପୁଷ୍ପେ ଚୁମ୍ବଇ କି ଭୃଙ୍ଗ । ୧ ।

କେମାମଣି ! ତେମେ ଯେଉଁ କଥାଗୁଡ଼ିକ କହୁଛ, ମତେ ବଡ଼ ଅସମ୍ଭବ ଜଣାଯାଉଛି । ଏଇ ତ ଚନ୍ଦ୍ରରେଖା ମା-ମହାରାଣୀଙ୍କି ନେଇକରି ଆସିଲାଣି, ତୁମ୍ଭେ ଆଡ଼ୁ ସାଡ଼ୁ ଗୁଡ଼ାଏ କୁହନା ।

ଉଷା – ନାହିଁ ସଖି, କ'ଣ ହେଉଛି କାହିଁ ?

ମନୋରମା ହଇଲୋ ଉଷା ! କାହିଁକି ଏମିତି କ'ଣ ହେଉଛୁ, ମୁଁ ତ ତୋର ଚିନ୍ତାରେ ସରିଗଲିଣି । ତୁ ବାପ ମାର ଝିଅ ହୋଇ ଜନ୍ମ ହୋଇଥିଲୁ,

ତୋ କର୍ମରେ ବିଧାତା ଏଡ଼କ ଗ୍ଲାନିଅବସ୍ଥା ଲେଖିଥିଲା । ମା ମୋର, ଲକ୍ଷ୍ମୀ ମୋର, କ'ଣ କହିଲୁ, ତୋର ଦେହ କଣ ଅସୁସ୍ଥ ହୋଇଛି ?

ଉଷା—ନା ମା, ମୋ ଦେହ ଅସୁସ୍ଥ ହୋଇନାହିଁ । କାଲି ରାତିରେ ହଠାତ୍ ମୋର ନିଦ୍ରା ଭାଙ୍ଗିଗଲା, ମୁଁ ଦେଖିଲି ଯେ—

ମନୋରମା—କ'ଣ କଥା କ'ଣ, ହଇଲୋ ଶଶିରେଖା କଅଣ ?

ଶଶିରେଖା—ସେ ତ ଯାହା କହୁଛନ୍ତି ଆମେ ଶୁଣି ଆଚମ୍ବିତ ହୋଇଗଲୁଣି ।

ମନୋରମା—କ'ଣ ମୁଁ ଶୁଣେ ?

ଶଶିରେଖା—ସେ ସରଳା କହୁ ।

ସରଳା—କାହିଁକି ତୁ କହୁ ନାହୁଁ ?

ମନୋରମା—ଆଲୋ କ'ଣ କହ ?

ଶଶିରେଖା—ସେ କୁଆଡ଼େ ଶୋଇଥିଲେ ତାଙ୍କ ପଲଙ୍କରେ ଗୋଟିଏ—ସେ ସରଳା କହୁ ।

ମନୋରମା—ଆଲୋ କ'ଣ କହ, ମୋତେ କାହିଁକି ଏପରି ଛନିଆଁ କରୁଛ ।

ସରଳା—କହୁ ନାହୁଁ,

ଶଶିରେଖା – ହଁ ।

ମନୋରମା—ତମେ ସବାଖାଇ ବଠା ମୋ ଝିଅକୁ ମାଇଲ ।

ଶଶିରେଖା—ଆମେ କହୁଥିଲୁ, ଜେମାମଣି ପୁଣି—

ମନୋରମା—ସେଥିରେ ଯାହା ହାନିଲାଭ ମୁଁ ବୁଝିଲେଇବି କହ ?

ଶଶିରେଖା – ତାଙ୍କ ପଲଙ୍କରେ ଗୋଟିଏ ଜ୍ୟୋତିର୍ମୟ ପୁରୁଷ ଆସି ଶୋଇଥିଲା । ସେ ତାକୁ ଦେଖି ଏପରି ହେଉଛନ୍ତି । ପୁଣି ବର୍ତ୍ତମାନ କହନ୍ତି, ସେ ପୁରୁଷକୁ ମୁଁ ବିବାହ ନ ହେଲେ ପ୍ରାଣ ରଖିବି ନାହିଁ ।

ମନୋରମା—(ଉଷାପ୍ରତି) ମା ! କ'ଣ ପାଗଳଣୀ ହୋଇଗଲୁ କି, ନଅର ଚାରିଆଡ଼େ କିଂସା କବାଟ; ତହିଁରେ ପୁଣି ଲୁହାର କଳଣୀ, ସାବଧାନ ପହରୀ ବାଲା ପହରା ଦେଉଛନ୍ତି । ଏଥିରେ ତୋ ପିତା ଯେଉଁ ପ୍ରତାପୀ ତା ତ ଜାଣୁ, ତା ଉଆସକୁ ପୁରୁଷଟାଏ ପୁଣି ପଶି ଆସିବ, ଯେଉଁଠି ମାଛି ପଡ଼ିଲେ ନବଖଣ୍ଡ । ଛି ଛି ଲୋକେ ଏ କଥା ଶୁଣିଲେ କ'ଣ କହିବେ; ପୁଣି ତୋ ପିତା ଶୁଣିଲେ କି ରଖାଅନ୍ତି । ମା ! ସ୍ୱପ୍ନରେ ଗୁଡ଼ାଏ କ'ଣ ଦେଖିପକାଇ ଏପରି ହେଉଛୁ ।

ଉଷା—ନା ମା ସ୍ୱପ୍ନ ନୁହେଁ ?

ମନୋରମା ତୁ ଜାଣିବା ଶୁଣିବା ପିଲା ହୋଇ ଏମିତି ଅବୁଝା ହେଉଛୁ । ସରଳା ଆସିଲୁ ମୋ ସଙ୍ଗରେ, ଗୋଟିଏ ଚଳ ଦେବି ତାକୁ ଝିଅ ମୁଣ୍ଡରେ ମାଲିସ କରିଦେବୁ ।

ସରଳା—ଆପଣ ଆଗରେ ଚାଲନ୍ତୁ, ମୁଁ ପାଇଟି ସାରିଦେଇ ଯାଉଛି ?

ମନୋରମା—ଆ, (ପ୍ରସ୍ଥାନ)

ଉଷା—ସଖିଏ ! ତୁମ୍ଭର ମୋର ଏଇମାତ୍ର ଶେଷଦେଖା । ଯଦି କୌଣସି କାରଣରୁ ତୁମ୍ଭମାନଙ୍କ ପ୍ରତି କିଛି ମନ୍ଦ ବ୍ୟବହାର କରିଥାଏ ତେବେ ମୋର ଦୋଷ କ୍ଷମା କରିବ । ଉଷାକୁ ଆଜଠାରୁ ମନରୁ ପାଶୋରି ଦେବ । ଦେଖ, ଏଇ ସ୍ୱର୍ଣ୍ଣମୁଦ୍ରି ଚୁମ୍ବି (ମୁଦିଦେଖି) ଏ କଣ ! ଏ ମୁଦ୍ରିକାଟି କାହାର । ମୋ ମୁଦି କିଏ ନେଲା । ଏ ତ ଅଷ୍ଟରତ୍ନରେ ଖଚିତ ହୋଇଛି । ଆଉ ସନ୍ଦେହ ନାହିଁ, ନିଶ୍ଚୟ ଜାଣିଲିଣି ନିଶ୍ଚୟ ବୁଝିଲିଣି ଏ ମୁଦ୍ରିକାଟି ମୋ ହୃଦେଶ୍ୱରଙ୍କର । ସଖି ! ମୋ କଥାକୁ ସ୍ୱପ୍ନବୋଲି ଉଡ଼ାଇ ଦେଉଥିଲ, କିନ୍ତୁ ଫଳରେ ଦେଖ ମୁଦ୍ରିକାଟି ମୋ ହସ୍ତକୁ କୁଆଡ଼ୁ ଆସିଲା ?

ଶଶିରେଖା—ଜେମାମଣି ! ଦିଅ ସେ ମୁଦ୍ରିକାଟି ଦିଅ ମୁଁ ନିଶ୍ଚୟ ଆଣି ସେ ଚୋରକୁ ତୁମ୍ଭ ନିକଟରେ ପହଁଚାଇବି । ସଖି, ଦୁର୍ଗାଙ୍କ ପ୍ରସାଦରୁ ଏ ଶଶିରେଖାକୁ କୌଣସି କଥା ଅସାଧ୍ୟ ପଡ଼ିବ ନାହିଁ । ଆଚ୍ଛା, ଦେଖିଲି ମୁଁ କେତେଗୁଡ଼ାଏ ଚିତ୍ରପଟ ଆଙ୍କିଦେଉଛି. ସେଥିମଧ୍ୟରୁ କେଉଁ ଜଣକ ତୁମ୍ଭର ସ୍ୱାମୀ ।

**ବାଣ ପରାଜୟ**

ଊଷା—ସଖି ! ନିଶ୍ଚୟ ଚିହ୍ନିବ, ସେ ରୂପଲାବଣ୍ୟ ମୋ
ଚକ୍ଷୁରେ ନାଚୁଛି ।
(ଚିତ୍ରରେଖା ଚିତ୍ର ଆଙ୍କିବା ଓ ଊଷା ନାହିଁ କରୁ କରୁ
ତାର ସ୍ୱାମୀର ପଟ ଚିହ୍ନିବା)
ଊଷା—ସଖି, ଏହି ମୋର ସ୍ୱାମୀ । ଚିତ୍ରରେଖା, ତୁମେ
କ'ଣ କେଉଁଠି ଦେଖିଛ । ଏଠାରେ କପଟରେ ମୋର
ସହଚରୀ ହୋଇ ରହିଛ । ମୁଁ ଏମାନ କିଛି ବୁଝି
ପାରୁନାହିଁ ।
ଚିତ୍ରରେଖା—ନାହିଁ ସଖି, ମୋର କିଛି ଶକ୍ତି ନାହିଁ ।
ଏହା ସବୁ ସେହି ମହାମାୟୀ ଦୁର୍ଗାଙ୍କ ଅନୁଗ୍ରହ ।
ଊଷା—ତେବେ ମୋର ଆଉ ଭାବନା କାହିଁକି । ସଖି
ମୁଁ ତୁମ ପରି ଦେବୀରୂପା ସହଚରୀ ପାଇ ମୋର
କେଉଁ କଥାକୁ ଚିନ୍ତା । ମୋତେ ଟିକିଏ ମୋର
ପ୍ରାଣବନ୍ଧୁଙ୍କୁ ଭେଟାଇ ଦିଅ । ତୁମ ନିକଟରେ
ଚିରଋଣୀ ରହିବି ।
ଚିତ୍ରରେଖା— ଗୀତ
ସରତରେ ସୁନାଝିଅ ଗୋ (ଶୁଣ ଚନ୍ଦ୍ର ବଦନା)
ଶରଧା ତୁ କଲେ ଚୋରି ଆଣିଦେବି
ନ କର ତୁ ମନେ ଖେଦ ଗୋ । ୧ ।
ଏହି ଘର କଥା ପାଇଁ ଗୋ ।
ଏହି ଲାଗେ ଯାଇ ବାନ୍ଧି ଆଣିଦେବି
ଥିବେ ତୋର କାନ୍ତ ପାଖେ ଗୋ । ୨ ।
ଆଗ ପଛ ଭଲ ମନ୍ଦ ଗୋ
ଘଟିବଟି ଯାହା ସମ୍ଭାଳିବି ତାହା
ନ ଜାଣୁଛି ଆମ୍ଭେ ଛନ୍ଦ ଗୋ । ୩ ।
(ସମସ୍ତଙ୍କର ପ୍ରସ୍ଥାନ)

---

**ତୃତୀୟ ଦୃଶ୍ୟ**

ଅନିରୁଦ୍ଧ—କେତେ ସ୍ଥାନ ବୁଲି ବୁଲି
କେତେ ବନ ଉପବନ କରିଲି ଦର୍ଶନ
କିନ୍ତୁ, କେଉଁଠାରେ ନ ପାଇଲି ଦେଖା
ହା ପ୍ରିୟେ ! ହା ପ୍ରାଣପ୍ରିୟେ,
ଦେଖା ଦିଅ ଲୁଚିଅଛ କେଉଁଠି
ସୁନ୍ଦରୀ ହା ନବୀନ ଲଳନେ, ଲଭି ମୁହିଁ ତୋତେ
କାହିଁ ପୁଣି ବସିଲି ହରାଇ
ଅହୋ କି କରିବି କେଉଁଠି ଯିବି
କିଏ ମୋତେ ଦେବ ସେହି ସ୍ୱର୍ଗୀୟା ସୁନ୍ଦରୀ ।
ଜୟନ୍ତ—(ପ୍ରବେଶି) ସଖା, ସଦାବେଳେ ଏପରି ବ୍ୟସ୍ତ
ହେବାଦ୍ୱାରା ତୁମର ଶରୀର କ୍ଷୀଣ ହୋଇ ପଡୁଛି ।
ବାରମ୍ବାର ସେହି କଥାଗୁଡ଼ାକ ମନରେ ପକାନା ।
ଜୟନ୍ତ—ଶାନ୍ତ ସୁସ୍ଥ ହୁଅ ଭାଇ ମନ କର ସ୍ଥିର
ଅସ୍ଥିର ହୋଇଲେ କିଛି ନ ହୋଇବ
ବିଶେଷତଃ, ଗୁପ୍ତକଥା ପ୍ରକାଶିବା ନୁହେଁଟି ଉଚିତ ।
କହିଲେ ଏ କଥା ଯାରେ ତାରେ
ପାଗଳାମୀ ବୋଲି ଭାଷିବେଟି ଜନେ ।
ଅନିରୁଦ୍ଧ—ସ୍ଥିର ହୋଇ ନ ପାରେ ମୁଁ ସଖା !
ଯେଉଁଠି ଚାହେଁ ସେଉଁଠି ଦିଶେ ସେ ଲାବଣ୍ୟରୂପ !
ସଖା ! କେଉଁଠି ଯିବି କେମନ୍ତେ ପାଇବି ।
କିଏ ମୋତେ ଦେବ ସେହି ଧନ
ସଖା ! ଚାଲିଯିବା ଦେଶାନ୍ତରେ;
ରାଜପୁରେ ନାହିଁ ପ୍ରୟୋଜନ ।
ଜୟନ୍ତ—ଏ କି କହ ସଖା, ସାମାନ୍ୟ ନାରୀରୂପରେ
ବିମୋହିତ ହୋଇ ପିତା, ମାତା, ଭାଇ, ବନ୍ଧୁ,
ଆତ୍ମୀୟସ୍ୱଜନଙ୍କୁ ପରିତ୍ୟାଗ କରିବ ?
ଅନିରୁଦ୍ଧ— (ଗୀତ)
କି ବୁଦ୍ଧି କରିବି ବନ୍ଧୁ କେଉଁଠିକି ମୁଁ ଯିବି ।
କେମନ୍ତେ ସେ ସୁକୁମାରୀ ତନୁକୁ ଲଭିବି ।
କହ ସଖା,
ତାର ବିନେ ନାହିଁ ମୋର ରକ୍ଷା । ୧ ।
କେଉଁଠି କମନୀୟ ରୂପ ସେ ଲାବଣ୍ୟ ନିଧି
ଗଢ଼ିଥିଲା କେତେଦିନେ ବସି ତାକୁ ବିଧି
(ତାର) ରୂପଠାଣି
ନେଇଛି ମୋ ମନ ପ୍ରାଣ କିଣି । ୨ ।
କାମାନଳେ ମୋର ପ୍ରାଣ ଜାଳେ ସେ ଲଳନା ।
ତାର ସଙ୍ଗେ ମହୀରେ ମୁଁ କି ହେବି ତୁଳନା
ଅତି ସୁକୁମାରୀ ।
ସ୍ୱର୍ଣ୍ଣଲତା ସ୍ୱଚ୍ଛ ବିମ୍ବାଧରୀ । ୩ ।

ସଖା ! ସ୍ୱର୍ଗୀୟ ସୁନ୍ଦରୀ ସେହ୍ୱ କନକ ବରନା
ନାହିଁ ତାକୁ ଉପମା ଦେବାକୁ କିଛି
କହ ସଖା ! କେମନ୍ତେ ମୁଁ ପାଇବି ତାହାକୁ ।

ଜୟନ୍ତ—ସଖା ! ଯଦି ବିଧାତା ତୁମରି ଲାଗି ତାକୁ ନିର୍ମାଣ କରିଥିବ ତେବେ ଦିନେ ପୁଣି ସେ ତୁମର ଅର୍ଦ୍ଧାଙ୍ଗିନୀ ହୋଇ ବସିବ । ସେଥିଲାଗି ଭାବନା କରିବା ପ୍ରୟୋଜନ । ଦେଖିଲଣି କିଏ ଗୋଟିଏ କି ଉଦ୍ଦେଶ୍ୟରେ ଆମ୍ଭ ଆଡ଼କୁ ଆସୁଛି ।

(ପାଗଳିନୀ ବେଶରେ ଚିତ୍ରରେଖା ଗୀତ ଗାଇ ପ୍ରବେଶ)

ଚିତ୍ରଲେଖା— (ଗୀତ)

ନାରୀ ହୃଦୟ ବେଦନା କେବା ଜାଣିବ ରେ ।
ପୁରୁଷ ସୁଖର ସାଥି ପୁରୁଷ ବିଶ୍ୱାସଘାତୀ,
ପୁରୁଷେ କରି ପୀରତି, ସଦା ଝୁରି ମରିବରେ । ୧ ।

ଅନିରୁଦ୍ଧ—ସଖା ! ଏ ଯେଉଁ ସଙ୍ଗୀତଟି ଗାଇଲା ଏଥିର ଅର୍ଥ କ'ଣ ? ଯେପରି ନିଷ୍ଠୁର ଅନିରୁଦ୍ଧକୁ ଉପହାସ । (ପାଗଳୀପ୍ରତି) ସୁନ୍ଦରୀ ! ତୁମେ କିଏ ?

ପାଗଳୀ—ମୁଁ କିଏ ? ମୋର ପରିଚୟ ତୁମ୍ଭଙ୍କୁ ଦେଲେ ତୁମ୍ଭେ କ'ଣ ବୁଝିବ ।

ଅନିରୁଦ୍ଧ—ବୁଝି ନ ପାରିଲେ ତୁମେ ବୁଝାଇ ଦେବ ।

ପାଗଳୀ—ମୋର ପରିଚୟ ପାଇବା ତୁମ୍ଭର କିଛି ଆବଶ୍ୟକ ନାହିଁ । ମୁଁ କେହି ନୁହେଁ ।

ଅନିରୁଦ୍ଧ—ଛଳନା କରନା, ସତ୍ୟକରି କହ ତୁମେ କିଏ ?

ପାଗଳୀ—ମୁଁ ଜଣେ ପାଗଳୀ ।

ଅନିରୁଦ୍ଧ—ଆଚ୍ଛା, ତୁମେ ଏ ଗୀତଟି କେଉଁଠାରୁ ଶିଖିଲ ?

ପାଗଳୀ କେଉଁ ଗୀତ ?

ଅନିରୁଦ୍ଧ—ବର୍ତ୍ତମାନ ଯେଉଁଟି ଗାଉଥିଲ ।

ପାଗଳୀ—କେଉଁ ଗୀତ ମୋର ତ ମନେ ନାହିଁ ।

ଅନିରୁଦ୍ଧ—ତା କଣ ଏତେ ମୁହୂର୍ତ୍ତ ମଧ୍ୟରେ ଭୁଲିଗଲ ।

ପାଗଳୀ—ତେବେ ପାଗଳ ଆଉ ପାଗଳୀର ମନ କ'ଣ ସଦାବେଳେ ସ୍ଥିର ଥାଏ ?

ଅନିରୁଦ୍ଧ—ତୁମ୍ଭେ ପାଗଳୀପରି ତ ଜଣା ଯାଉନାହିଁ ! ତୁମ୍ଭ କଥାବାର୍ତ୍ତାରୁ ମୁଁ ଅନୁମାନ କରୁଛି ତୁମ୍ଭେ ଜଣେ ଚତୁରା ରମଣୀ ।

ପାଗଳୀ—ନା ନା; ଏ କଥା କହନା, ମୋ ବଂଶରେ କେହି ଚତୁର ନାହାନ୍ତି । ମୋ ମା ପାଗଳୀ, ବାପ ପାଗଳ, ମୁଁ ମଧ୍ୟ ପାଗଳୀ । ଆଉ ବା ମୋର ଯିଏ ସାଙ୍ଗ ସଖୀ ଅଛନ୍ତି ସେମାନେ ମଧ୍ୟ ପାଗଳୀ ।

ଅନିରୁଦ୍ଧ—ରମଣୀ ! କପଟ କରନା, ଆମ୍ଭ ପରିଚୟ ଦିଅ ।

ପାଗଳୀ—ପାଗଳୀର ପୁଣି ଆମ୍ଭ ପରିଚୟ କ'ଣ ? ଯେବେ ତୁମ୍ଭର କିଛି ପଚାରିବାର ଉଦ୍ଦେଶ୍ୟ ଥାଏ ତେବେ ପଚାର ।

ଅନିରୁଦ୍ଧ—ଆଚ୍ଛା ଯେଉଁ ଗୀତଟି ଗାଇଲ ତାହା କାହା ଉଦ୍ଦେଶ୍ୟରେ ଗାଇଲ ?

ପାଗଳୀ—କାହାକୁ କାହିଁକି ଉଦ୍ଦେଶ୍ୟ କରି ଗାଇବି, ପାଗଳୀର ମନରେ କେତେବେଳେ କଣ ଆସିଗଲା ।

ଅନିରୁଦ୍ଧ—ନା ମୋର ବିଶ୍ୱାସ ହେଉନାହିଁ, ବୋଧହୁଏ ତୁମ୍ଭେ ମୋତେ ଉଦ୍ଦେଶ୍ୟ କରି ଗୀତଟି ଗାଇଲ ।

ପାଗଳୀ— ମାଲୋ ମା, ସେ କି କଥା, ତୁମ୍ଭେ କିଏ, ତୁମ୍ଭ ଘର କେଉଁଠି, ମୋ ଘର କେଉଁଠି, ମୁଁ ତୁମ୍ଭଙ୍କୁ କାହିଁକି ଉଦ୍ଦେଶ୍ୟ ରଖି ଗୀତ ଗାଇବି ।

ଅନିରୁଦ୍ଧ—ନିଶ୍ଚୟ, ତୁମ୍ଭେ ସଙ୍ଗୀତ ଛଳେ ମୋତେ ଉପହାସ କରୁଛ ।

ପାଗଳୀ—ତେବେ ତୁମ୍ଭେ କ'ଣ କେଉଁ ଅବଳାର ଗଳାରେ ଛୁରୀ ଦେଇଛ ?

ଅନିରୁଦ୍ଧ—ନା ନା, ମୁଁ କାହିଁକି କେଉଁ ଅବଳାର ଗଳାରେ ଛୁରୀ ଦେବି, ବରଂ ମୋ ଗଳାରେ ଗୋଟିଏ ଅବଳା ଛୁରୀ ଦେଇଛି ।

ପାଗଳୀ – ନା ନା, ତୁମ୍ଭର କଥା ବିଶ୍ୱାସ ହେଉନାହିଁ । ପୁରୁଷର ପ୍ରାଣ ଅତି କଠିନ, ସେଥିରେ ଛୁରୀର ଦାଗ ବସିବା ସହଜ ନୁହେଁ ।

ଅନିରୁଦ୍ଧ—ନିଶ୍ଚୟ ଜଣେ ରମଣୀର ବିଷମ ଆଘାତ ଦ୍ୱାରା ମୋର ହୃଦୟ ବ୍ୟଥିତ ହୋଇଯାଇଛି । ବିଦେଶିନି ! ତୁମେ ସେ କାମିନୀର ସମ୍ବାଦ ଜାଣ କି ?

ପାଗଳୀ—ମୁଁ କେମିତି ଜାଣିବି ଲୋ ମା, ସେ କେଉଁଠି, ମୁଁ କେଉଁଠି ।

ଅନିରୁଦ୍ଧ—ତୁମେ ନିଶ୍ଚୟ ଜାଣ, ତୁମ୍ଭର ପାଦ ଧରୁଛି ତୁମେ ସ୍ପଷ୍ଟ କହ ସେ ରମଣୀ କିଏ ?

ପାଗଳୀ—କି ଆଶ୍ଚର୍ଯ୍ୟ କଥା । ମୁଁ ବା ଜାଣିଲି କିପରି ? ତେବେ ଏ ପତ୍ର ଖଣ୍ଡିକ କ'ଣ ବାଟରେ ପଡ଼ିଥିଲା, ଦେଖନ୍ତୁ ତ ଏଥିରେ କ'ଣ ଲେଖା-ଅଛି ।

ଅନିରୁଦ୍ଧ—ଦେଲ ।

ପାଗଳୀ—ନିଅ ତୁମ୍ଭେ ପତ୍ର ପଢ଼, ମୁଁ ଆସୁଛି ।

ଅନିରୁଦ୍ଧ—ନା ନା, ତୁମ୍ଭେ ଯିବ କୁଆଡ଼େ ।

ପାଗଳୀ—ଏଇ ବର୍ତ୍ତମାନ ମୁଁ ଆସୁଛି ।

ଅନିରୁଦ୍ଧ—ନିଶ୍ଚୟ କଥା ତ ?

ପାଗଳୀ—ନିଶ୍ଚୟ । (ପ୍ରସ୍ଥାନ)

ଅନିରୁଦ୍ଧ—ସଖା ! ପଢ଼ ଦେଖି ଏ ପତ୍ରରେ କ'ଣ ଲେଖାଅଛି ।

ଜୟନ୍ତ—ପତ୍ର ପାଠ ।

ସ୍ୱାମିନ୍ ! ନିଶାର୍ଦ୍ଧେ ମୋର ନିର୍ଜନ ଶୟନ କକ୍ଷରେ ଆପଣଙ୍କର ଶ୍ରୀମୁଖ ପଙ୍କଜ ଦର୍ଶନ କରି ହତଭାଗିନୀ କୁଳ ମାନ ଲଜ୍ଜା ପରିତ୍ୟାଗ କରି ଆପଣଙ୍କ ଶ୍ରୀଚରଣରେ ଆଶ୍ରୟ ନେଇଥିଲି । ହୃଦୟେଶ୍ୱର ! ଗୁରୁତର ନିର୍ଦ୍ଦୟ ବ୍ୟବହାର ଦ୍ୱାରା କଙ୍କଣର ପ୍ରାଣ ହରଣ କରି ପଳାଇଯିବା କ'ଣ ଆପଣଙ୍କର କର୍ତ୍ତବ୍ୟ ? ଯଦି ନାରୀ ହତ୍ୟାକୁ ମହାପାପ ବୋଲି ମନରେ ଭୟ ଥାଏ; ଯେବେ ପଦାଶ୍ରିତ ଦାସୀ ପ୍ରତି ଅନୁରାଗ ଥାଏ ତେବେ ଶୀଘ୍ର ଦେଖା ଦିଅନ୍ତୁ । ନିବେଦନ ମିତି ।

ଶୈବକୁଳ ଚୂଡ଼ାମଣି ରକ୍ଷ ଶିରୋମଣି

ଶ୍ରୀ ଶ୍ରୀ ଗଜାଧ୍ୱଜ ବାଣାସୁରର ସ୍ନେହ ପାଳିତା

ଉଷା

ଅନିରୁଦ୍ଧ—ସଖା କଣ ଶୁଣିଲ । ଓହୋ, ହୃଦୟ ତୁ ଫାଟି ନ ଯାଇ ରହିଛୁ କିଆଁ ।

ଜୟନ୍ତ—ସଖା ! ଏ କଣ ? ସ୍ଥିର ହୁଅ ।

ଅନିରୁଦ୍ଧ—ଉଷା ! ମୁଁ ପ୍ରକୃତରେ ବିଶ୍ୱାସଘାତକ କାର୍ଯ୍ୟ କରିଛି । ମୁଁ ପ୍ରକୃତରେ ନୃଶଂସ । ମୁଁ ପ୍ରକୃତରେ ନିଷ୍ଠୁର, ମୋତେ କ୍ଷମା ଦେ, ଆଉ ଅଭିମାନ କରନା ।

ଜୟନ୍ତ—ସଖା ଏ କଣ ? (ଆତ୍ମବିସ୍ମୃତ)

ଅନିରୁଦ୍ଧ— ଗୀତ

ଆଉ କାନ୍ଦନାରେ ବିଧୁ ବଦନା

ବିଶ୍ୱାସରେ ବିଷ ଦେଇ ନାହିଁ ମୁଁ ନାରୀଣ

(ତୁ ମତେ) ଦୋଷ ଦେଇ କାନ୍ଦନାରେ । ପଦ ।

ଛନ୍ଦ ତୋଠାରେ ମୋର ନାହିଁଟି ତିଳେ ମାତର

ବାନ୍ଧିବ ତୁ ମୋ ଲୁହ ବନ୍ଦନା ।

ହୃଦୟ ଚିରି ମୋହର ଦେଖି ପାରିବୁ ଯଦି

ଯିବ ତୋ ମନୁ ଭାବନା । ୧ ।

ଫାନ୍ଦେ ପଡ଼ି ତୋହର ହଜିଛି ଜ୍ଞାନ ମୋହର

ଦେଖା ତୋ ଥରେ ମୁଖ ଚନ୍ଦ୍ରମା ।

ମନ୍ଦ ଦଇବ କୃତ ମୁଁ ନୁହେଁ ଦୋଷୀ ମାତ୍ର

(ତୁ) ନିର୍ଦ୍ଦୋଷୀକି ଦଣ୍ଡନା । ୨ ।

ସଖି ! ବାରମ୍ବାର ଅନୁରୋଧ କରୁଛି ମୋତେ କ୍ଷମା ଦେ । ସେ ପାଗଳୀ କାହିଁଗଲା । ସଖା ! କାହିଁ ସେ ଚତୁରୀ ।

ଜୟନ୍ତ—ସଖା ଗୋଟିଏ କଥା ପ୍ରକାଶ କରିବାକୁ ମନସ୍ଥ କରିଛି । କିନ୍ତୁ କୌଣସି କଷ୍ଟ ତୁମ ମନକୁ ଆସିବ ବୋଲି—

ଅନିରୁଦ୍ଧ—ନା, ସଖା ତୁମ୍ଭେ ମୋର ପ୍ରାଣ । ତୁମ୍ଭ କଥାରେ ମୁଁ କି କେବେ ବିରକ୍ତ ହୁଏ, କହ ସଖା କଣ ?

ଜୟନ୍ତ—ଶମ୍ଭୁଭକ୍ତ ବାଣାସୁରର ଘୋର ଶତ୍ରୁ ବୋଲି ତ୍ରିଲୋକେ ବିଖ୍ୟାତ, ତାର କନ୍ୟା କି ରୂପେ—

ଅନିରୁଦ୍ଧ—କହନା ସଖା, କହନା, ଅନିରୁଦ୍ଧର ଏକ ମାତ୍ର ଜୀବନ ସଙ୍ଗିନୀ ଉଷା; ଉଷା ମୋର ପ୍ରାଣ, ଉଷା ମୋର ଜ୍ଞାନ, ଦିଅ ସଖା ମୋର ପ୍ରିୟତମାର ଶ୍ରୀକର ଲିଖିତ ପତ୍ର ଖଣ୍ଡିକ ଦିଅ । ମୁଁ ହୃଦୟରେ ରଖି ତାପିତ ହୃଦୟ ଶୀତଳ କରିବି ।

ଜୟନ୍ତ—ସଖା ! ଯଦି ସେ କାର୍ଯ୍ୟ ସମ୍ପୂର୍ଣ୍ଣ ହୁଏ ତେବେ ପରିଶେଷରେ ବିଶେଷ ଦୁର୍ଘଟଣା ଘଟିବ ।

ଅନିରୁଦ୍ଧ—ଯାହା ଘଟିବ ଘଟୁ, ଅନିରୁଦ୍ଧର ହୃଦୟ ରାଜ୍ୟରେ ଅଧିକାରିଣୀ ଏକମାତ୍ର ଉଷା ।

ଜୟନ୍ତ—ସଖା, ତେବେ ସେଠାକୁ କପରି ଭାବରେ ଯିବ ?

ଅନିରୁଦ୍ଧ—ଛଦ୍ମବେଶେ ଯିବା ।

ଜୟନ୍ତ—ତାଙ୍କ ହୋଇପାରେ ? ପ୍ରବଳ ଶତ୍ରୁର ପୁରେ ଏକାକୀ ଛଦ୍ମବେଶେ ଯିବା ଅନୁଚିତ । କିଛି ସୈନ୍ୟ ସଙ୍ଗରେ ନେଇ ଯାଆନ୍ତୁ ।

ଅନିରୁଦ୍ଧ—ଆବଶ୍ୟକ ନାହିଁ ଭାଇ ? ଚିତାମନ ରାମ କୃଷ୍ଣ ଶ୍ରୀଚରଣ ପ୍ରସାଦେ ଅନିରୁଦ୍ଧ ହୃଦୟରେ ମହାଶକ୍ତି ଜାଗରିତ ଅଛି । ଏକାଠ ହେଲ ରମଣୀ (ପାଗଳିପ୍ରତି) ସୁନ୍ଦରୀ ! ତୁମ୍ଭେ ବଡ଼ ସୁନ୍ଦରୀ, ଆଉ ମୋତେ ତୁମ୍ଭ ସଖୀ ସହିତ ମିଳାଇ ଦିଅ ।

ପାଗଳୀ—ଆଚ୍ଛା, ମୋର ପୁରସ୍କାର ?

ଅନିରୁଦ୍ଧ—ମିଳନ ପରେ ।

ପାଗଳୀ—ଏ କି କଥା, ମୁଁ ଯେ ଏତେ ପରିଶ୍ରମ କରି ଆସିଛି ମୁଁ ଆଗେ ପାଇବା ଦରକାର ।

ଅନିରୁଦ୍ଧ—ତୁମ୍ଭେ କ'ଣ ପୁରସ୍କାର ଚାହଁ ।

ପାଗଳୀ—ତୁମ୍ଭେ କ'ଣ ଦେଇ ପାରିବ ?

ଅନିରୁଦ୍ଧ ସୁନ୍ଦରୀ ! ମୁଁ ତୁମ୍ଭର ଉପକାରରେ ସନ୍ତୁଷ୍ଟ ହୋଇ ମୋର ପ୍ରାଣ ପର୍ଯ୍ୟନ୍ତ ତୁମ୍ଭଙ୍କୁ ଅର୍ପଣ କରିପାରେ ।

ପାଗଳୀ—ତୁମ୍ଭର ପ୍ରାଣରେ କ'ଣ ତୁମ୍ଭର ଅଧିକାର ଅଛି ? ପରି ଜଣକୁ ବନ୍ଦୀକରି ଦେଇଛ । ଛି ଛି ଅବିଶ୍ୱାସୀ ତୁମ୍ଭେ । ତୁମ୍ଭଙ୍କୁ ମୁଁ ସଙ୍ଗରେ ନେବି ନାହିଁ । ଯାଉଛି ସରଳା ଉଷାକୁ ମନାକରି ଦେବି । ସେ ଆଜି ତୁମ୍ଭ ପରି ନିଷ୍ଠୁର ଦସ୍ୟୁହାତକୁ ତାର ହୃଦୟ ରତ୍ନରେ ଆଶ୍ରୟ ଦେବ ନାହିଁ ।

ଅନିରୁଦ୍ଧ—କ୍ଷମାକର, ମୁଁ ଅଜ୍ଞାନ ।

ପାଗଳୀ—ସାବଧାନ, ଆଉ ଦିନେ ଏପରି କଥା କହିବ ନାହିଁ, ଆଉ ସେକଥାରେ ପ୍ରୟୋଜନ ନାହିଁ ।

ଅନିରୁଦ୍ଧ—ସଖା ! ଘରକୁ ଯାଅ ଏ ଗୁପ୍ତ କଥା କାହା ଆଗେ ପ୍ରକାଶ କରିବ ନାହିଁ ମୁଁ ଆସୁଛି । ଚାଲ ସୁନ୍ଦରୀ !

ଜୟନ୍ତ—ଭଲ ସଖା ! (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

ଉଷା—ସରଳା କାହିଁ, ଚନ୍ଦ୍ରରେଖା ଫେରିଲା ନାହିଁ । କ'ଣ ମୋତେ ଭଣ୍ଡାଇ ଦେଇ ଚାଲିଗଲା । କଣ କରିବି ସଖି !

ସରଳା ଆଜି ବୋଧହୁଏ ଫେରି ଆସିବ, ତୁମ୍ଭେ ଏତେ ବ୍ୟସ୍ତ ହୁଅନା ।

ଉଷା— ଗୀତ

କେତେ ନବଘନେ ଚାହିଁ ବସିଥିବି
କାହିଁ କି ମୋ ବନ୍ଧୁ ନଇଲେ ଗୋ ।
କେଉଁ ଦୋଷ ଦେଖି ଆବେଶ ମୋଠାରେ
ନିଷ୍ଠୁର ଚିତ୍ତକୁ ବହିଲେ ଗୋ ।
(ମୁଁ) କଣା ଦାସୀ ବୋଲି ଜଣାଇ ଦେଇଛି
ଦେଖିଲି ବେଳୁ ତାଙ୍କୁ ଚହିଲେ ଗୋ । ୧ ।
ଛନ ଛନ ସଦା ହୁଏ ଅପଦନ
ମନ୍ମଥ ବାଣେ ମୋତେ ଦହିଲେ ଗୋ ।
ରମଣୀ ପରାଣି ଚହି ଅକାରଣ
କରିଛି କି ଦେବ କହିଲେ ଗୋ । ୨ ।

ଉଷା—ସଖି ! କଣ କରିବି, ବିଧାତା ନାରୀ ଜନ୍ମ ଦେଇ ପୁଣି ଏତେ କଷ୍ଟ ଦେଇଛି ।

ସରଳା ରାଜମାନଙ୍କି ! ଶୁଣିଲଣି ଏଇ ସନ୍ନିକଟରେ ଚନ୍ଦ୍ରରେଖାର ତୁଣ୍ଡ ଶୁଭୁଛି ।

( ଚନ୍ଦ୍ରରେଖା ଗୀତ ଗାଇ ଗାଇ ପ୍ରବେଶ )

ନିଷ୍ଠୁର କପଟ ଲମ୍ପଟ ସେ ଶଠ
ଶାନ୍ତି ହେବ କେଉଁ ଗଲରେ ।
ବିଚ୍ଛେଦ ଅନଳେ ପକାଇକୁ ମୋର
ଜଳାଇ ପୋଡ଼ାଇ ଦେଲରେ । ପଦ ।
ଖୋଜ ଖୋଜ କେତେ ବନେ ଉପବନେ
ନିରାଶେ ଫେରିଲି ବିରସ ବଦନେ ।
ନ ମେଣ୍ଟିଲା ଆଶା ଘଟିଲା ଦୁର୍ଦ୍ଦଶା
ପଡ଼ିଲଣି ମଧ ବେଳାରେ । ୧ ।

ସଖି ! ମୁଁ ଆସିଲଣି ବୁଲୁଣାରେ ବୁଲି ବୁଲି ଗୋଡ଼ରୁ ପାଣି ମଲା ।

ଉଷା—ସଖି ! କଣ ହେଲା ?

ଶଶିରେଖା—ଆଉ ହବ କ'ଣ, ମୁଁ ସବୁ ଦେଇନାହିଁ ବୋଲି କହୁଛ ।

ଉଷା—ସଖି ! ପାଇଲି ନାହିଁ ମୋର ପ୍ରାଣ ବନ୍ଧୁଙ୍କୁ, ପାଇଲି ନାହିଁ ତେବେ; ଏ ପ୍ରାଣ ଥାଇ କି ପ୍ରୟୋଜନ । ସଖି ! ତାଙ୍କର ଲାଗି ଆଜ ନିଶ୍ଚେ ଆତ୍ମହତ୍ୟା କରିବି ।

ଶଶିରେଖା—ଜେମାମଣି ! ଧୈର୍ଯ୍ୟଧର, ଶଶିରେଖାର କାର୍ଯ୍ୟ ନିଷ୍ଫଳ ହୋଇନାହିଁ ।

ଉଷା—ତେବେ କାହାନ୍ତି ମୋ ବନ୍ଧୁ ?

ଶଶିରେଖା—ଏମିତି ଉଚ୍ଛନ୍ନ ହେଲେ କ'ଣ ହେବ, ଆଗେ ମୋ ପୁରସ୍କାର ଦିଅ ।

ଉଷା—ଶଶିରେଖା ! ତୋତେ ମୁଁ କି ପୁରସ୍କାର ଦେବି । ଏଇ ଚରଣ ଛୁଇଁ କହୁଛି ତୋ ନିକଟରେ ସଦାଦିନ ଋଣୀ ରହିଲି ।

ଶଶିରେଖା—ଆସ ତେବେ ମୋ ସଙ୍ଗରେ ଆସ ।

ଉଷା—ଚାଲ, ମୋ ନୟନ ପିତୁଳାକୁ ଦେଖା । (ପ୍ରସ୍ଥାନ)

—o—

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଦ୍ୱାରପାଳ ଦୁଇଜଣ )

୧ମ—ଆରେ ହେ ଗୋଟିଏ ମଜାର କଥା ଶୁଣିଲଣି ?

୨ୟ—କ'ଣ କ'ଣ କି କଥା !

୧ମ—ଆରେ ତୁ ଶୁଣିନାହୁଁ ।

୨ୟ—ମୋତେ ମୋ ମଲାବୁଢ଼ିମା ରାଣ, କୋଉ ଅସତ୍ୟ ମିଛ କହୁଛି ।

୧ମ—ଏ ମୋ ସାଙ୍ଗରେ ଗୁଳ୍ପି ଖେଳୁଛୁ ? ହୋଇଲେ ମଲା ବୁଢ଼ୀମାଠେଇଁ ତୋର ଏତେ ଶ୍ରଦ୍ଧା ।

୨ୟ—ଆଉ କଣ ଜୀଅନ୍ତା ମଣିଷ ରାଣ ପକାଇବି । ତୁଇ ତ ଜାଣି ପିଆଣିଆ । ହେ କହ କହ, ମୁଁ ସତରେ କହୁଛି କିଛି ଜାଣେ ନାହିଁ ।

୧ମ—ଆରେ ରାଜଜେମାକୁ ଭୂତ ଧରିଛି, ଶୁଣିଲୁ ?

୨ୟ—ଏ କଣ କହିଲୁ ।

୧ମ—ଚୁପ୍ ଚୁପ୍ ।

୨ୟ ଆରେ ସେ ଭୂତ କଥା ଶୁଣି ତ ପିଳେଇ ପାଣି ହୋଇ ଗଲାଣିରେ, ଆରେ ରାଜଜେମା ପାଖକୁ ସେ କେମିନ୍ତି କେଉଁ ବାଟେ ଗଲା ରେ ।

୧ମ—ଆରେ ଏଇବାଟେ ତ ଗଲା, କେଉଁବାଟେ ଯାଇଥାନ୍ତେ ।

୨ୟ—ଆରେ ମୁଁ ତ ବାଟରେ ଥିଲି ମୋତେ କାଳେ ଧରିଥାନ୍ତା ମୁଁ କ'ଣ କରିଥାନ୍ତି ।

୧ମ—ଚୁପ୍ କର, କାହିଁରେ ପାଇଁ କଣ କଥା ହେଲାଣି ।

୨ୟ—ଆଉ କ'ଣ କଥାରେ ?

୧ମ—ଆରେ ରାଣୀ ମହଲକୁ କିଏ କେଉଁବାଟେ ଯାଇ ଜେମା ସଙ୍ଗରେ ଗୋଟିଏ ଘଟଣା ଘଟେଇ ଦେଇଛି ।

୨ୟ—ସେ କି ଘଟଣା ?

୧ମ—ଆରେ ସେ ବଡ଼ ମୁସୁକିଲ ଘଟଣା । ତୁ ସେଥିରୁ କଣ ପାଇବୁ ।

୨ୟ—ହେ କଣ ଘଟଣା । କଣ କହ କହ ? ହେଇତ ଭୂତ, ଆରେ ବାବାରେ ମୋତେ ଧରରେ ଖାଇଲାରେ । (୧ମକୁ କରଜାକୁଛି ଧରିବା)

୧ମ—ଆରେ ରହ ।

୨ୟ—ଆରେ ରହିବ କଣରେ, ଝଟାଚ କଳା ମର୍ ମର୍ ହୋଇ ଆମର ଆଡ଼କୁ ମାଡ଼ି ଆସୁଛନ୍ତି; ଇଲେ ବୋଉଲେ ।

୧ମ—ଆରେ ରହ କେଉଁ ଚୋର କେଉଁ ତସ୍କର, ଆରେ ଦେଖ ।

୨ୟ—ଆଉ ଦେଖିବ କଣରେ, ମୋ ଆଖିରୁ ତ ଜକ୍ତଜୁଳିଆ ପୋକ ବାହାରି ଗଲାଣି ରେ, ମୋ ବଦନରେ ଟିକେ ହାତ ପକାରେ ।

୧ମ—ତୁ ନ ଗୋଟାଏ ଛେଳୁଆ ଲୋକଟା, ତୁ ଦରୁଆନ କାର୍ଯ୍ୟ କଣ କରିବୁ ।

୨ୟ—ଆରେ, ମୁଁ ବାପ ମା'ର ଏକଇର ଧନ, ବଣିକେଶନ । ମୋ ନାଟି ବୃନ୍ଦାବନ, ଆମେ ଦେଖିବାକୁ ସକଳ ସୁନ୍ଦର କେଣ ଗୁଳଣ, କାର୍ଯ୍ୟ ବେଳକୁ ହଣ୍ଡାବଳଦ ଠାରୁ ହୀନ ।

୧ମ—ଆରେ କିଏ ସେ ତାକୁ ପଚାରିବା, ତୁ ଟିକେ ମୋତେ ଛାଡ଼ିଦେ ।

୨ୟ — କଏ କହଇ ଏ ତ ବଡ଼ା ମାରକନିଆ ଭୂତରେ, କହିଲୁ ମୋ ବୋଉ ବାପା ।

୧ମ — ଆରେ ରହ (ନେପଥ୍ୟେ ଦୃଷ୍ଟି) କଏ ସେ ?

ଚିତ୍ରରେଖା — ଚିତ୍ରରେଖା ଆମେ ।

୧ମ — ଏ ସ୍ଥାନକୁ ଆସିବା ଅଭିପ୍ରାୟ କଣ ? ଶୀଘ୍ର ପରିଚୟ ଦିଅ ?

ଚିତ୍ରରେଖା — ମୁଁ ଚିତ୍ରରେଖା ମନ୍ତ୍ରୀକନ୍ୟା, ଏ ଜଣକ ମୋ ସହଚରୀ ।

୧ମ — ଅଚ୍ଛା, ଏତେ ରାତିରେ କି କାର୍ଯ୍ୟରେ କେଉଁଆଡ଼େ ଯାଉଥିଲ ?

ଚିତ୍ରରେଖା — ବେଶି କହିବାର ପ୍ରୟୋଜନ ନାହିଁ, ତୁ ଆମ୍ଭଙ୍କୁ ଛାଡ଼ିଦେ, ନେ ଏତକ ପୁରସ୍କାର ନେ ।

୧ମ — ରାଜାଙ୍କ ହୁକୁମ ମୁଁ ଅମାନ୍ୟ କରିବ ନାହିଁ । ତୁମ୍ଭଙ୍କୁ ଗିରଫ କରି ଗାରଦରେ ରଖିବ ।

୨ୟ — (ପ୍ରଥମକୁ ଆଖିମାରି) ଟଙ୍କାଯାକ ରଖ ବେ ।

ଚିତ୍ରରେଖା — ତୋର ଚରଣ ଧରୁଛି, ନେ ଏ ପୁରସ୍କାର ନେ ଆମ୍ଭଙ୍କୁ ଛାଡ଼ ଦେ ।

(ଚିତ୍ରରେଖା ଓ ଅନିରୁଦ୍ଧ ପ୍ରସ୍ଥାନ)

୧ମ — ଆଚ୍ଛା ଯାଅ, କିନ୍ତୁ ପଛରେ ଭଲ କୁହେ ।

୨ୟ — ନେ ମୋତେ ଦବୁ, ଦଉ ନାହିଁ ।

୧ମ — ତୋର କ'ଣ ? ମୁଁ ଉପାୟ କଲି ତୋତେ କଲମୁଣ୍ଡା ଦେବ ।

୨ୟ — ମୁଁ ମହାରାଜାଙ୍କୁ କହିଦେବ ।

୧ମ — ଯା କ'ଣ କହିବୁ କହ । ମୁଁ କିଛି ଦେବ ନାହିଁ ।

୨ୟ — ଦବୁଟ, ଦବୁ ନାହିଁ କାହିଁକି ?

୧ମ — କିଛି ଦେବ ନାହିଁ ।

୨ୟ — ଅଲବତ୍ ଦବୁ ।

୧ମ — ନାଁ,

୨ୟ — ନାଁଆନା, ନା ।

୧ମ — ସେମିତି ଡଦ୍‌ଧାର କରୁଛୁ ନଗେଇବ ଧରି ବଡ଼ା ।

୨ୟ — ନଗେଇବୁ ନା ନଗେଇବୁ, ମାଇଲୁ (ପିଠି ଦେଖାଇବା)

୧ମ — (ବାଧା ପ୍ରଦାନ) ଏଇ ଦେଖ ନଗେଇଲ ।

୨ୟ — କାହିଁକି ଗୋଟାଏ ସେମିତ ହାତ ହଲାଉଛୁ ବା ଦେ କଣ ଦେ ।

୧ମ — ଅରେ କହିଲ ଦେବ ନାହିଁ ପୁଣି କ'ଣ ମାଡ଼ ମୁକଉଛୁ ।

୨ୟ — (ଜୋରରେ) କଣ କହିଲୁ ମାରିବୁ, ମାଇଲୁ କେମିତି । (ମାରିବାକୁ ପିଠି ଦେଖାଇବା)

୧ମ — (ବାଧା ଦୁଇଟା ପ୍ରଦାନ) ଦେଖ୍ ମାଇଲି ।

୨ୟ — କେବେ ତ ଛୁଇଁପିବୁ ନାହିଁ ।

୧ମ — ତୁ ଗୋଟାଏ ମାଡ଼ଖିଆଟା ପୁଣି ମାଇଲି । (ମାଡ଼ ପ୍ରଦାନ)

୨ୟ — ଏ ତୋ ବାପ ଅଜା ଚଉଦ ପୁରୁଷ ମାରିଥିଲେ ?

୧ମ — ଅରେ ମୋ ବାପ ନା ଧଇଲୁ, ଦେଖ୍ ତତେ ଧରମ ଗୁଡ଼ଉଛି ।

୨ୟ — କଣ ତୁ ମୋ ଦେହରେ ହାତ ନଗେଇବୁ, ଛୁଇଁଲୁ ଭଲ ।

୧ମ — (ନାଉ୍ ନାଉ୍ ଦଶ ପନ୍ଦର ବାଧା ଦେବାରୁ ୨ୟ ପ୍ରଥମର ଗୋଡ଼କୁ ଧରି ଫୋପାଡ଼ ଦେବା ଓ ପଳାୟନ)

୨ୟ — ନାହିଁ, ଏ ମୁଡ଼ ନଷ୍ଟେ ମହାରାଜାଙ୍କୁ ଏ ଗୁପ୍ତ କଥା କହିଦେବ । ମୁଁ କାହିଁକି ଚିନ୍ତା ପଡ଼ିବ ଯାଉଛି, ସବୁକଥା ପ୍ରକାଶ କରିଦେବ । (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

(ଅନିରୁଦ୍ଧ ଓ ଉଷା ଏକତ୍ରେ ଆସୀନ)

ଅନିରୁଦ୍ଧ — ହୃଦୟ ତୋଷିଣି ! ଆଜ ହରଗୌରୀ ପ୍ରସାଦରୁ ମନର ବିଷାଦ ଓ ହୃଦୟର ଅନନ୍ତ ଦୁଃଖ ଦୂର ହୋଇ ଯାଉଛି, ସଖି ! ପୁନର୍ବାର ଯେ ଚନ୍ଦ୍ରବଦନ ନିରୀକ୍ଷଣ କରିବି ଏ ଆଶା ମନରେ ସ୍ଥାନ ପାଉନାହିଁ । କେଜାଣି କାହାର ଏ ଲୀଳା, କେ ଜାଣେ କାହାର ଏ ଅତି ଆଶ୍ଚର୍ଯ୍ୟ ଖେଳା, କଏ ଆମ୍ଭଙ୍କୁ ନଶାର୍ଦ୍ଧରେ ଅପୂର୍ବ ମିଳନ କରାଇଥିଲା, ପୁଣି କାହାଦ୍ୱାରା ଆଜ ଏ ଶୁଭମିଳନ ହେଲା ତା ମୁଁ କିଛି ଭବି ପାରୁନାହିଁ ! ଏ ସମସ୍ତ ମୋତେ ମାୟା ପରି ଜଣାଯାଉଛି ।

ଉଷା — ନାଥ ! କ୍ଷୀଣବୁଦ୍ଧି ଅବଳାର କି ଶକ୍ତି, କଣ ବୁଝିବ ! ତେବେ ବିନା ମହାମାୟାର ଅନୁଗ୍ରହ ନ ହୋଇଥିଲେ ଆମ୍ଭର ଏ ମିଳନ ଘଟି ନ ଥାନ୍ତା !

ଅନିରୁଦ୍ଧ — ମୋର ସେହି ବିଶ୍ୱାସ, ଏ କିଏ ନର୍ତ୍ତକୀ ମାନେ ଆସିଲେ ପରା ?

( ନର୍ତ୍ତକୀମାନେ ଗୀତ ଗାଇ ଗାଇ ପ୍ରବେଶ )

ଦେଖ ଦେଖ ସଖି ଦେଖ ଗୋ ଥରେ ନିରେଖି
ବିଧୁମୁଖୀ ଉଷା କୋଟି ନିଧି ଲଭିଛି ।
ଆସ ଆସ ସବେ ମିଳି ଦେଖିବା ଏ ମିଳନ
ନାଗରୀ ନାଗର ସାଜନ୍ତି କେଡ଼େ ସତନ ।
ଚିରନ୍ତନ ଏ ପ୍ରେମ ରହୁ ନୋହୁ ବିଛିନ୍ନ
ପ୍ରେମର ବନ୍ଧନ ସାରା ସଂସାରରେ ଲାଗିଛି ॥

ଚିତ୍ରରେଖା — ଯୁବରାଜ ! ମୋର ଗୋଟିଏ ପ୍ରାର୍ଥନା ଅଛି, ସେ ପ୍ରାର୍ଥନାଟି ଆପଣ ପୂରଣ କରିବେ ।

ଅନିରୁଦ୍ଧ — ଅଧୀନସ୍ଥ ବ୍ୟକ୍ତିଙ୍କୁ ବିନୟ କରି କହିବାର କିଛି ନାହିଁ । ଯାହା ତୁମ୍ଭର ଇଚ୍ଛା ପ୍ରକାଶ କର ।

ଚିତ୍ରରେଖା — ଆମ୍ଭର ଯେ ପୁରସ୍କାର ବାକିଅଛି ।

ଅନିରୁଦ୍ଧ — ଅଚ୍ଛା କଥା, ତୁମ୍ଭେ ବିବେଚନା କରି ମାଗିନିଅ ।

ଚିତ୍ରରେଖା — ଯୁବରାଜ ! ଏ ହତଭାଗିନୀ ସଖିମାନଙ୍କୁ ଆପଣଙ୍କ ମନରୁ ଭୁଲିବେ ନାହିଁ ।

ଅନିରୁଦ୍ଧ — ମୁଁ ତୁମ୍ଭ ନିକଟରେ ସଦା ଋଣୀ ।

( ନେପଥ୍ୟେ ବାଣାସୁର )

ଶୁଣିଲି ଶୁଣିଲି ଯା, ସତ୍ୟ ଯେବେ ହୋଇଥାଏ ତାହା, ବଧିବି ବଧିବି ନିଶ୍ଚେ ଦୁଷ୍ଟା ଦୁହିତାକୁ ।

( ସମସ୍ତେ ଚକିତ ) ଉଃ, ଚିତ୍ରରେଖା — ସର୍ବନାଶ, ସର୍ବନାଶ, ଦାନବରାଜା କେଉଁଠାରୁ ସନ୍ଧାନ ପାଇ ଏ ସ୍ଥାନକୁ ଆସିଲେ, କଣ ଉପାୟ !

ଉଷା — ସଖି ! ସଖି କଣ କରିବି, ପିତା ମୋର ବଡ଼ ନିର୍ଦ୍ଦୟ, ବଡ଼ ନିଷ୍ଠୁର । ମୋର ପ୍ରାଣ ଯିବ ଯାଏ ତେବେ କିଛି ଭାବନା ନାହିଁ, ତୁମ୍ଭେ ହୃଦୟେଶ୍ୱରଙ୍କୁ ରକ୍ଷାକର ।

ଅନିରୁଦ୍ଧ — ବିଧୁମୁଖି ! ଚିନ୍ତା କରନାହିଁ, ମୁଁ ଆପେ ଆପେ ସତର୍କ ହେବି ।

ବାଣା — ପ୍ରହରି ! ଦେଖ ଦେଖେ, କାହିଁ ସେହି କୁଳ-କଳଙ୍କିନୀ, କାହିଁ ସେହି ଦୁର୍ମତି ତସ୍କର ।

ପ୍ରହରୀ — ମହାରାଜ ! ଏଇ ଦେଖନ୍ତୁ ଚୋରପରି କପରି ମୁଣ୍ଡକୁ ତଳକୁ ଦେଇ ନେମ୍ପେଟେଇ ପଡ଼ିଛି ।

ବାଣା — ପ୍ରହରି ! ଦୁରାତ୍ମାରେ ଶୀଘ୍ର ଲୌହ ଶୃଙ୍ଖଳରେ ବନ୍ଧନକର ।

ଅନିରୁଦ୍ଧ — ଦାନବରାଜ ! ଯଦୁବଂଶୀୟ ବୀର ସାମାନ୍ୟ ପ୍ରହରୀ ହସ୍ତେ ବନ୍ଧନ ହେବା ମିଥ୍ୟା ।

ବାଣା — ଏ, ତୁମ୍ଭ ଯଦୁବଂଶୀୟ ? ଗୋପାଙ୍ଗନାଭୋଗୀ ରାମକୃଷ୍ଣଙ୍କ ବଂଶଜ ?

ଅନିରୁଦ୍ଧ—ଆର୍ଯ୍ୟ ! ରାମକୃଷ୍ଣଙ୍କରହିଁ ପୌତ୍ର ପ୍ରଦ୍ୟୁମ୍ନର ପୁତ୍ର ମୁହିଁ ଅନିରୁଦ୍ଧ ।

ବାଣା—ଆରେ ଚୋରଙ୍କ ସର୍ଦ୍ଦାରର ତୁ ନାତି, ତେବେ ତୋର ଏ ପ୍ରକୃତି ନ ହେବ ବା କାହିଁକି ? ଶୁଣୁଛୁ ପ୍ରହରି ! କୃଷ୍ଣ ଯେ ଲବଣୀ ଚୋର, ବସନ ଚୋର, ମନଚୋର । ଏ ଗୋଟିଏ ତା ବଂଶରେ ମହାଚୋର ! ଆରେରେ ପାଷାଣ୍ଡ ବାଳକ, ତୁ କି ସାହସେ ତ୍ରିଭୁବନ ବିଜୟୀ ବାଣାର ଗୃହରେ ପ୍ରବେଶ କଲୁ, ଜାଣୁ ଦାନବ ରାଜ ମନେକଲେ କ୍ଷୁଦ୍ର ଯଦୁକୁଳ ସମୂଳେ ଉତ୍ପାଟନ କରି ନିମିଷକ ମଧ୍ୟରେ ସାଗର ଗର୍ଭରେ ମାଡ଼ି ଦେଇପାରେ ।

ବାଣା— ( ଗୀତ )

ଆରେରେ ମେଣ୍ଢା ଖେଚଡ଼ା ପଣଟେ।
ଭାଙ୍ଗି ଦେବି ନିଶ୍ଚେ ଆଜିରେ ।
ତୁ କେଉଁ ସାହସେ ପଶି ମୋର ବାସେ
ବିଷ ଖାଇଛୁ ତୁ ଜାଣିରେ ॥

ପ୍ରହରି ! ତୁ ପାପିନୀ କନ୍ୟା ଓ ତାର ସହଚରୀମାନଙ୍କୁ ବନ୍ଧନ କରି ଶୀଘ୍ର କାରାଗାରେ ନେଇ ଯା, ମୁଁ ଏ ମୂର୍ଖର କୌତୁକ ଦେଖୁଛି ।

(ପ୍ରହରୀ ବାନ୍ଧିବାକୁ ଉଦ୍ୟମ)

ଅନିରୁଦ୍ଧ—କାର ସାଧ୍ୟ ମୋତେ ବନ୍ଧନ କରିବ, ଦେଖେଁ ।

ବାଣା—କି ନରାଧମ ! ତ୍ରିଭୁବନ ବିଜୟୀ ବାଣାର ସମ୍ମୁଖେ ଏତେ ଦୂର ଅହଙ୍କାର କଥା, ଦୁର୍ମତି !

ଆଜି ଦେଖିବି, ତୋର ପାପର ସମୁଚିତ ଦଣ୍ଡ ବିଧାନ କରିବି, କେ ତୋତେ ରକ୍ଷା କରିବ ?

ଅନିରୁଦ୍ଧ—ବୃଥା ବାକ୍‌ଯୁଦ୍ଧରେ ପ୍ରୟୋଜନ କଣ ? ଯେବେ ବୀର ତେଜ ହୃଦୟରେ ଅଛି, ଯେବେ ତ୍ରିଜଗତରେ ବିଜୟୀ ବୋଲି ମନେ ମନେ ଗର୍ବ କରୁଛୁ ତେବେ ଧର ଅସ୍ତ୍ର, ଫଳାଫଳେ ଦେଖାଯିବ ସବୁ ।

ବାଣ—ମେଷଶିଶୁ ଖଡ଼୍ଗ, ତୁ ଏତେ ଯୁଦ୍ଧ ଜାଣୁ, ଧର ଅସ୍ତ୍ର ।

ଅନିରୁଦ୍ଧ—ପ୍ରସ୍ତୁତ ମୁଁ ।

(ଉଭୟର ଯୁଦ୍ଧ, ବାଣ ହସ୍ତରୁ ତରବାରି ଖସି ପଡ଼ିବାରୁ ବାହୁଯୁଦ୍ଧେ ବାଣର ପତନ)

ଅନିରୁଦ୍ଧ—(ଊଷା ପ୍ରତି) ପ୍ରିୟତମେ ! ତୁ ପିତାର ଶୁଶ୍ରୂଷା କର । [ସମସ୍ତେ ଶୁଶ୍ରୂଷା କରିବା]

ବାଣ—ଉଃହୋ, କି ନିଦାରୁଣ ଯାତନା । ଶରୀର ଅବସନ୍ନ ହୋଇ ଯାଉଛି କଣ ହେଲା, ଉଃ !

ଊଷା—ପିତା ! ପିତା ! ଏପରି ହେଉଛ କାହିଁକି ?

(ଆଉଁସିବା)

ବାଣ—ଏଁ, କିଏ ପିତା ପିତା ବୋଲି ଡାକିଲା ? ମୋର ଆରାଧ୍ୟ ଦେବୀ ଗୌରୀ, ମା ! ମା ! ! ତୁ ମୋର ମା ହୋଇ ମୋତେ ପିତା ବୋଲି ଡାକିଲୁ କାହିଁକି ? ଅଧମ ସନ୍ତାନକୁ ପିତା ବୋଲି ସମ୍ବୋଧନ କରିବା କ'ଣ ତୋର ଉଚିତ ? ହଉ ହେଲା, ଯେବେ ପିତା ବୋଲି ଡାକିଲୁ ତେବେ ଆଉ ଥରେ ପିତା ପିତା ବୋଲି ଡାକ ?

ଊଷା—ପିତା ! ମୁଁ କୈଳାସବାସିନୀ ଦୁର୍ଗା ନୁହେଁ । ମୁଁ ଆପଣଙ୍କ ହତଭାଗିନୀ କନ୍ୟା ଊଷା । ମୁହିଁ ପିତା ପିତା ବୋଲି ଡାକୁଛି ।

ବାଣ—କିଏ ତୁ, ବାଣ କନ୍ୟା ଊଷା, ନା ବିଶ୍ୱାସ ନୁହେଁ, ତୁ ମୋର ଆରାଧ୍ୟ ଦେବୀ ଦୁର୍ଗା !

ଊଷା—ପିତା ! ମୁଁ ଊଷା, ଆପଣଙ୍କ ଦୁଃଖିନୀ କନ୍ୟା ଊଷା !

ବାଣ—ତୁ ଊଷା, ରେ ପାପିନି ! ତୋ ଲାଗି ମୋ ଗର୍ବ ଚୂର୍ଣ୍ଣ ହେଲୁ । କୁଳକଳଙ୍କିନୀ, ଦୋଷରୂପିଣୀ ମୂଢ଼ା, କାହିଁକି ମୋର ଅଙ୍ଗରେ ହସ୍ତ ଦେଲୁ । ରାକ୍ଷସୀ ଦୂର ହୁଅ । ପ୍ରହରୀ !

କାହିଁ ଗଲା ସେ ମୂର୍ଖ ଅନିରୁଦ୍ଧ, ଏହିବାର ତାର ସମୁଚିତ ଦଣ୍ଡ ବିଧାନ କରିବି ।

ଅନିରୁଦ୍ଧ—ବୀରବର ! ଏହି ଯେ ତୁମ୍ଭ ସମ୍ମୁଖରେ ବାଣ ବିଜେତା ଅନିରୁଦ୍ଧ ଦଣ୍ଡାୟମାନ ।

ବାଣ—କ'ଣ କହିଲୁ ବାଣବିଜେତା ? ହାଁ ହାଁ, ଉନ୍ମାଦର କଥା, କିଏରେ ଏପରି ବଳବାନ୍, କାହାର ଶକ୍ତି କେ ପାରେ ଜିଣି ମୋତେ ସମ୍ମୁଖ ସମରେ ।

ଅନିରୁଦ୍ଧ—ମୁହିଁ, ମୁହିଁ ଅନ୍ୟ ନାହିଁ ।

ବାଣ—ତୁହି, ତୁହି, ଆରେ ମୂର୍ଖ ! ଶଶକ ଜିଣିବ ରଣେ ମୃଗେନ୍ଦ୍ର କେଶରୀ ? ମୂଷିକ ଟଳାଇ ପାରେ ବିନ୍ଧ୍ୟ ପର୍ବତକୁ ? ଦୁଗ୍ଧପୋଷ୍ୟ ଶିଶୁ ତୁହି, ଅଲୁଅ ଗନ୍ଧ ତୋହର ମୁଖୁ ନାହିଁ ଦେଖୁ ।

ଅନିରୁଦ୍ଧ—ଶୁଣ ଦୈତ୍ୟବର ! ମୃତ୍ୟୁ ତବ ଆଜି ହସ୍ତେ ମୋର, ତୋତେ ହରାଇଲି ରଣେ, ତେବେ ଯୁଦ୍ଧ ହୋଇ ନାହିଁ ଶେଷ, ଏଥରକ ଆଉ ନାହିଁ ପରିତ୍ରାଣ ।

ବାଣ—କି କହିଲୁ ଶିଶୁ ! ସମରେ ତୁ ଜିଣିଅଛୁ ମୋତେ ? ଆଚ୍ଛା ଭଲ କଥା, ଏହିବାର ଜୟ ପରାଜୟ ହୋଇବ ନିଶ୍ଚୟ, ଧର ଅସ୍ତ୍ର ।

ଅନିରୁଦ୍ଧ—ପ୍ରସ୍ତୁତ (ଯୁଦ୍ଧରେ ଅନିରୁଦ୍ଧ ପତନ)

ବାଣ—ପାମର ! ଏଥର କେଉଁଠି ଯିବୁ ? ପ୍ରହରୀ ! ଶୀଘ୍ର ନାଗପାଶରେ ବନ୍ଧନ କର, ଦୁରାଚାର ! ସେ ପୂର୍ବ ବଳ ପୂର୍ବ ତେଜ ନାହିଁ, ଏଇଥର ମୂର୍ଖକୁ ଉପଯୁକ୍ତ ଶାସ୍ତି ପ୍ରଦାନ କରିବି । ନିଅ ଶୀଘ୍ର କାରାଗାରେ !

ପ୍ରହରୀ—ଯେମିତି ଭଲୁକାଗାର ସେମିତି ଚହଟ ।

(ବନ୍ଧନ କରିବା)

ଊଷା—ପ୍ରହରୀ ! ବାନ୍ଧନା ବାନ୍ଧନା, ସୁକୋମଳ ହସ୍ତପଦକୁ ବନ୍ଧନ କରନା !

ବାଣ—ରେ ପାପିନୀ କୁଳକଳଙ୍କିନୀ ! ବାନ୍ଧିବ ନାହିଁ, ପ୍ରହରୀ ବାନ୍ଧ ଶୀଘ୍ର ।

ପ୍ରହରୀ—ଯେ ଆଜ୍ଞା । (ଅନିରୁଦ୍ଧେ ବାନ୍ଧିବା)

ବାଣା—ପ୍ରହରୀ ! ଶୀଘ୍ର କାରାଗାରରେ ପାଷାଣ୍ଡୀକୁ ନେଇ ଶୃଙ୍ଖଳ ପିନ୍ଧାଅ ।

(ପ୍ରହରୀ ଅନିରୁଦ୍ଧଙ୍କୁ ନେଇ ପ୍ରସ୍ଥାନ)

ବାଣା—ହତଭାଗିନି ! ମୁଁ ଯେବେ ଆଗରୁ ଜାଣିଥାନ୍ତି ତୁ ଦାନବ କୁଳ କଳଙ୍କିନୀ ତେବେ ତୋତେ ଆଜ ପର୍ଯ୍ୟନ୍ତ ମୋ ଗୃହରେ ଆଶ୍ରୟ ଦେଇ ନ ଥାନ୍ତି ! ଓଃ କି ଲଜ୍ଜାର କଥା, ଦୁହିତା ନହୋଇ ଅନ୍ୟ କେହି ହୋଇଥିଲେ ସ୍ୱହସ୍ତରେ ତୋର ମୁଣ୍ଡ ଖଣ୍ଡ ଖଣ୍ଡ କରିଥାନ୍ତି । ପ୍ରହରୀ ! ଶୀଘ୍ର ଏ ପାଷାଣ୍ଡୀକି ଓ ଦ୍ୱାର ସହଚରୀଗଣଙ୍କୁ ବନ୍ଦୀକରି କାରାଗାରକୁ ନିଅ ।

ପ୍ରହରୀ—ଏ ଯେ ଆପଣଙ୍କର କନ୍ୟା ।

ବାଣା—ଚୁପ୍‌କର, ଯା ଆଜ୍ଞାଦେଲି ତା ଶୀଘ୍ର ପ୍ରତିପାଳନ କର ।

(ପ୍ରହରୀ ବାନ୍ଧିବା, ମନୋରମାର ପ୍ରବେଶ)

ମନୋରମା—ମହାରାଜ ! ମହାରାଜ ! ଏ କ'ଣ, ଏ କ'ଣ, କାହାର ବନ୍ଧନ । ଏ ଯେ ମୋର ପ୍ରାଣର ଦୁହିତା ଉଷା !

ବାଣା—କି ପ୍ରିୟେ ! କାହାକୁ କନ୍ୟା ବୋଲି ସମ୍ବୋଧନ କରୁଛ ? ସେ କନ୍ୟା ନୁହେଁ, କାଳ ଭୁଜଙ୍ଗିନୀ ।

ମନୋରମା—ମହାରାଜ ! ସବୁ ଶୁଣିଲିଣି, ସବୁ ଜାଣିଲିଣି ଏଥରବାର କନ୍ୟାକୁ କ୍ଷମା ଦିଅନ୍ତୁ ।

ବାଣା—ସେ ଗୁରୁତର ଅପରାଧ, କ୍ଷମାନାହିଁ ! ପ୍ରହରୀ ? ବିଳମ୍ବ କାହିଁକି ?

ମନୋରମା— ଗୀତ

ନାଥ ହେ କ୍ଷମା ଦିଅ ଏଥର ।
ଦୁହିତା ମୋହର ଅତି ସୁକୁମାର
ତା ପ୍ରତି ହୁଅ ଏତେ ନିଷ୍ଠୁର । ଘୋଷା ।
ଦୁଃଖିନୀର ଧନ ଅନ୍ଧୁଣୀ ନୟନ
ସେ ମୋ ଉଷାଟିଏ ହେ ପ୍ରାଣେଶ୍ୱର ।
ଦେଖି ତା କଷଣ ଧରିବି କି ପ୍ରାଣ
ଭସିବଟି ନୟନେ ଲୋକ ଜହର । ୧ ।

ନାଥ ! ଅଭାଗିନୀ ଉଷା ପ୍ରତି ଏ ନିଷ୍ଠୁର ଆଜ୍ଞା ଦିଅନା । ତାର ଦୁଃଖ ଦେଖି ମୋର ହୃଦୟ ବିଦୀର୍ଣ୍ଣ ହୋଇ ଯାଉଛି ।

ବାଣା—ସୁନ୍ଦରୀ ! ସେ ଦୁହିତା ନୁହେଁ, କାଳ ଭୁଜଙ୍ଗିନୀ । ତାକୁ ଚିରଦିନ ସେହି କାରାବାସ ।

ମନୋରମା— ଗୀତ

ହେ ପରାଣ ଧନ ଧରୁଛି ଚରଣ
ମୋ ବଚନଟି ଘେନନ୍ତୁ ଏଥରବାର ।
ଦଣ୍ଡିବାର ଶକ୍ତି ଥାଇ ଯାଉ ତାର
କ୍ଷମା ଦେବାଟି ଉଚିତ ବେଭାର । ୨ ।

ନାଥ ! ଏ ଅଧୀନାର ଅନୁରୋଧ ରକ୍ଷା କରନ୍ତୁ, ଏଥର ସେ ସତର୍କ ହେବ ।

ବାଣା—କିଛି ଶୁଣିବି ନାହିଁ, ଉଷା ମୋର ସର୍ବନାଶ କରିଛି ।

ପ୍ରହରୀ—ହଜୁର, ଚାଲିଲି ।

ମନୋରମା—ମହାରାଜ ! କନ୍ୟାପ୍ରତି ଯେ ଆଦେଶ ଦେଲେ ଏ ଅଭାଗିନୀ ପ୍ରତି ସେହି ଆଦେଶ ଦିଅନ୍ତୁ ।

ବାଣା—ଆପତ୍ତି ନାହିଁ, ତୁ ମଧ୍ୟ ସେହି ପାପିନୀର ମାତା, ତୋତେ ତାଠାରୁ କଠିନ ଦଣ୍ଡ ଦେବା ଉଚିତ । ପ୍ରହରୀ ! ଏ ପାଷାଣ୍ଡୀକୁ ବନ୍ଧନ କରି କାରାଗାରେ ନିଅ ।

ଉଷା—ମା ତୁମେ କାହିଁକି ମୋ ଲାଗି ଏତେ ଦୁଃଖ ସହ୍ୟ କରିବ ?

ମନୋରମା—ଉଷା ! ତୁହି ମୋର ପ୍ରାଣ, ପ୍ରାଣ ବିଚ୍ଛିନ୍ନ ହୋଇଗଲେ ମୁଁ କେଉଁଠାରେ ରହିବି ?

ଉଷା—ମା ଦୟାମୟି ! ଦୁର୍ଗତିନାଶିନୀ ଦୁର୍ଗେ ! ମୁଁ କାରାଗାରେ ଚାଲିଲି, ତୁ ଦେଖ ମା ! ମୋ ପ୍ରାଣ ପତିଙ୍କୁ ଆପଣ ରକ୍ଷା କରିବେ, ଏତିମାତ୍ର ଭିକ୍ଷା ।

ପ୍ରହରୀ—ମହାରାଜ ? ଦାନବ କୁଳଲକ୍ଷ୍ମୀଙ୍କ ହସ୍ତରେ ଲୌହ ଶିକୁଳି ଦେବା ଅନୁଚିତ ।

ବାଣା—କି ମୋର ମତରେ ବାଧା ।

ମନୋରମା—ମହାରାଜ ! ଆପଣ ଯେତେ କଷ୍ଟ ଦେବେ ତା ନିଶ୍ଚୟ ସହ୍ୟ କରିବି । ପତି ଇଚ୍ଛାକାଳରେ

ଯାତନା ଦେଲେ ପଢ଼ୀ ପରକାଳର ଯାତନାରୁ ମୁକ୍ତ ହୋଇଯିବ । ଆପଣ କାଦଣ୍ଡ ଆଦେଶ ଦେଲେ ତହିଁରେ ମୋର କିଛିମାତ୍ର ଆପତ୍ତି ନାହିଁ । ଏଇଥର ବିଦାୟ ନେଲି ।

ବାଣା — ପ୍ରହରୀ ! କାଲି ପ୍ରଭାତରୁ ମୂର୍ଖ ଅପରାଧୀଙ୍କୁ ଦକ୍ଷିଣ ଶ୍ମଶାନରେ ଯେ ଚଣ୍ଡୀଦେବୀ ଅଛନ୍ତି ସେଇଠାକୁ ନେଇଯିବୁ । ମୂର୍ଖଙ୍କୁ ସେଇଠାରେ ବଳିଦେଇ ଚଣ୍ଡୀଦେବୀଙ୍କ ତୃଷା ନିବାରଣ କରିବ ।

ପ୍ରହରୀ — ଯେ ଆଜ୍ଞା ।

(ଉଷା ଦୂର୍ଗୀ କହି ସମସ୍ତେ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

( ଗୋବିନ୍ଦ ଦାସ, ବଲ୍ଲଭ ଦାସ, ଅନାଦି ଦାସ ଓ ପରମୁ ଦାସ ଭଜନିଆ ଖଞ୍ଜଣି ଓ ଚଲମ ହସ୍ତେ )

ଗୋବିନ୍ଦ— ହଇହୋ ପରମୁ ଦାସ ! ସିଏ ତ ଆସି ଏତେ ହେଲା ଡମ୍ବରୁ ଦାସ କାହିଁକି ବିଷୟରୁ ଫେରି ନାହାନ୍ତି, ଏହାର କିଛି ମତଲବ ଜାଣ ?

ପରମୁ—ଆହେ, ଡମ୍ବରୁ ଦାସ ତ ଗୋଟିଏ ପେଟୁ ଧରିଲେଣି । କେଉଁଠି ମୁଠାଏ ଭୋଜନ ମିଳି ଯାଇଥିବ ସେଇଠି ରହି ଯାଇଥିବେ ।

ଅନାଦି—ପରମୁଦାସେ ଆମ୍ଭର ଏଇଠି ବସି ସବୁ କହି ପକାଉଛନ୍ତି, ଡମ୍ବରୁ ଦାସଙ୍କୁ ନବ କିଛି ବଡ଼ ବିପଦରେ ପକାଇ ଦେଇଛନ୍ତି ।

ଗୋବିନ୍ଦ —କ'ଣ, କଥା କ'ଣ ?

ପରମୁ—ଆମେ ଭଜନ କର, ଗଞ୍ଜେଇ କର, ମଣିଷ ବୁଲି ବୁଲି କରି ଆସିଲୁଣି, ଟିକିଏ ପ୍ରଭୁଙ୍କ ନାମ ନେବା କି ଗଞ୍ଜେଇ କରିବା । ତା ନାହିଁ ଖାଲି ଡମ୍ବରୁ ଦାସ କୁଆଡ଼େ ଗଲେ, କହିଲି ଭଲା ଆମ୍ଭର ସେଥିରୁ କଣ ମିଳିବ ? କାହାଠେଇଁ ଚଟେ ଖଣ୍ଡେ ଅଛି ହାତରେ ପକାଇବା ।

ବଲ୍ଲଭ—ତମ ପାଖରେ ନାହିଁ କି ?

ପରମୁ—ଆମ ପାଖରେ ଦୁକ୍ତା ଅଛି, ଚଲମ ଅଛି, ଗୁଡା ବି ତିଆରି ହୋଇଛି, କେବଳ ଗଞ୍ଜେଇ ନାହିଁ । ବିଷୟରୁ ଫେରିଲା ବେଳକୁ ଦୋକାନ ବନ୍ଦହୋଇ ଯାଇଥିଲା । ଦେଲୁ ଦେଲୁ ଚଟେ ଖଣ୍ଡେ ହାତରେ ପକାଇବା, ମଣିଷ ପାଣି ହୋଇଗଲା ।

ଗୋବିନ୍ଦ—ଗୋଟିଏ କଥା ପଢ଼ିଥିଲ କଣ ? ଖାଲି ଗଞ୍ଜେଇ, ଗଞ୍ଜେଇ, ଗୋଟିଏ ସେଗେଡ଼େବେଳୁ ହେଉଛି ।

ପରମୁ—ଏ ବଡ଼ ଭଲଲୋକ, "ଆହେ ଗଞ୍ଜେଇ,ମନକୁ ଦେବ ରଞ୍ଜେଇ, ଆଳୁ ବଗବର ରଖିଥିବ ଖଞ୍ଜେଇ ।" ମହାପୁରୁଷମାନେ କହିଛନ୍ତି "ଯିଏ ନ ଖାଏ ଗଞ୍ଜେଇ ଧୂଆଁ ତା ବଂଶ ଘୋଡ଼ାମୁହାଁ ।"

ଗୋବିନ୍ଦ—ତୁ ଗୋଟାଏ ଘୋଡ଼ାମୁହାଁ, କାହିଁକି ଏଠି ବକ୍ ବକ୍ ହଉଛୁ, ତୁ ଗଲୁ ।

ପରମୁ - ଆମେ ନ ଯିବୁ ।

ଅନାଦି — ଅଲବତ ଯିବୁ ।

ପରମୁ—ଦଶ ଗଞ୍ଜେଇ ଚଟେ ଦଶ ଆମେ ଖାଇଯିବୁ ।

ଗୋବିନ୍ଦ—ପରମୁଦାସ ହେ ଟିକିଏ କଣ ଗୋଟାଏ କଥା ପଡ଼ୁଛି ଶୁଣ, ଅନାଦି କହିବଟି ସେ ଡମ୍ବରୁ କଥା ।

ପରମୁ—ଡମ୍ବରୁଟି ଆଗା ପିଚ୍ଛା ସମାନ ମଝିଟି ସରୁ, ତାଙ୍କ ନାଆଁଟି ତେବ ତେବ ଡମ୍ବରୁ ।

ଗୋବିନ୍ଦ—ତୁ ଉଠିଯା ଏଠୁ ଯା ନିକାଲ ।

(ତଡ଼ି ଦେବାରୁ)

ପରମୁ—ଆରେ ରହିଥା, ଆମେ ଏଇଥର ଚୂପ୍‌ହୋଇ ବସିଛୁ ।

ଅନାଦି—ପ୍ରତାପି ବାଣାସୁରର ହୁକୁମ, ଯେ ହରିନାମ ମୁଁହରେ ଧରିବ ତାକୁ ଛଅମାସ କାରଦଣ୍ଡ । ବର୍ତ୍ତମାନ ଡମ୍ବରୁ ଦାସ ସେହି ଅପରାଧରେ ବନ୍ଦ ।

ପରମୁ—ହିଁ ଡମ୍ବରୁ ଦାସ ଯେ ଆଗା ପିଚ୍ଛା ବି ଆଡ଼େ ବାଜଥିବେ !

ଗୋବିନ୍ଦ—ଚୁପ୍‌କର, ହଇହୋ ଅନାଦି ଦାସେ । ଏ କଥା କଣ ସତ୍ୟ ?

ପରମୁ—ଅନାଦି ଦାସେ ! ଏ ଚଲମ ତୁରନ୍ତ କରି ବସିଲି ।

ବଲ୍ଲଭ—ପରମୁ ! ତୁ ଗୋଟିଏ ମାଙ୍କୁଅଟିଏ ।

ଦଗରୁ ଆସି ସ୍ୱର୍ଣ୍ଣକାଣ୍ଡ ଓ ଆସ୍ଥାନ ଦଖଲକରି ଗୋଟିଏ ଖଟୁଲିରେ ଝାଡ଼ୁପୋଛ ବଟୁକଙ୍କୁ ସେଠି ମାଡ଼ଦେବା )

ବିଦ୍ୟାଧର—କେଣେ ସିବୁ ମୂର୍ଖ ? ରଖ ତୋର ବାହାଦୁରି ପଣ, କରିଅଛୁ ଯେତେ ଯେତେ କାଣ୍ଡ, ପାଜି ଆଜି ଭୁଞ୍ଜାଇବି ତା'ର ପ୍ରତିଫଳ; ବତା କେଣେ ଅଛି ସେ ଦୁର୍ବୁଦ୍ଧି ପାଜି ।

ବଟୁକ—ମୋତେ କାହିଁ ବୃଥା ଦଣ୍ଡ ଦିଅ ବିଦ୍ୟାଧର, ନୁହେ ମୁଁ ତୋ ଅରି, ଅରି ତୋର ଯାଇଅଛି ରାଜ ଦରବାରେ ।

ବିଦ୍ୟା— ଗୀତ

( କେତେକାଣ୍ଡ କଲା ଭଣ୍ଡ ପାଜି—ବୃନ୍ଦେ )
ବେଡ଼ି ମାରି ଏ ସ୍ୱୈରଙ୍କୁ ଆଜି ରେ ।
ଭଣ୍ଡପଣ କରିଛନ୍ତି ପାଜି ରେ ॥
ଜଳଠା ଶୃଗାଳ-କୁଳ ସିଂହ ସଙ୍ଗେ କଲେ ଗୋଳ
ସବୁ ଗଲ ଆଜି ଦିଅ ଭାଜି ରେ ।୧।
କାଣ୍ଡ ଆସ୍ଥାନ ଛଡ଼ାଇ ଝାଡ଼ୁ ମୁଣ୍ଡେ ଦିଅ ନେଇ
ମୂର୍ଖ ସବୁ ମଜା ସିବେ ବୁଝିରେ ।୨।

ମୂର୍ଖ ! ତୁ ତେବେ ଏଠି ବସି କ'ଣ କରୁଛୁ ?

ବଟୁକ—ନାଇଁ, ବର୍ତ୍ତମାନ ଏକୁ ନେଇ ଦରବାରକୁ ଯାଇଥାନ୍ତି ।

ବିଦ୍ୟାଧର—ଠିକ୍‌କଥା, ମୁଁ ତ ସେଇକଥା କହୁଛି, ଉଠ ଏ ଝାଡ଼ୁ ଖଟୁଲିଟି ଉଠା, ଯଦି ତୋର ଜୀବନ ପ୍ରତି ତିଳେମାତ୍ର ଆଶା ଓ ଭରସା ଥାଏ ତ ଶୀଘ୍ର ସ୍ୱାକୁ ନେଇ ରାଜଦରବାରରେ ଉପସ୍ଥାପିତ କର ନଚେତ୍ ଦେଖିବୁ ।

( ଯଷ୍ଟି ପ୍ରହାରଦେବା ବଟୁକ ସବୁକୁ ନେବା )

—*—

## ଚତୁର୍ଥ ଦୃଶ୍ୟ

(ସନାତନ ରଜା, ପାରିଷଦବର୍ଗ, ଦୁର୍ବୁଦ୍ଧି, ସାଧୁ ବିଦ୍ୟାଧର, ବଟୁକ, କେଳା, କାଞ୍ଚନବାଳା, ପ୍ରେମଶୀଳା, ପୂଜାବାଲା)

ଦୁର୍ବୁଦ୍ଧି—ମହାରାଜ ! ବହୁ କଷ୍ଟେ ବହୁ ଯତ୍ନେ ଆଣିଲି ମୁଁ ସ୍ୱର୍ଣ୍ଣକାଣ୍ଡ ଓ ଆସ୍ଥାନ କାଞ୍ଚନ ସହିତ ।

ସନାତନ—ପାରିଷଦବର୍ଗ ! ଏତେଦିନେ ଏତେକାଳ ଗଲା ବହି, କେହି ଜଣେ ନ ପାରିଲା ଆଣି ସ୍ୱର୍ଣ୍ଣକାଣ୍ଡାସ୍ଥାନ, ତହିଁ ପ୍ରତିଜ୍ଞା ମୁଁ କଲି, ଯେ ଆଣିଦେବ ମୋତେ ସ୍ୱର୍ଣ୍ଣକାଣ୍ଡାସ୍ଥାନ ଅର୍ଦ୍ଧ ରାଜ୍ୟ ଅଭିଷିକ୍ତ କରିବି ତାହାଙ୍କୁ । ଆଜିରେ ସେନାପତି-ପୁତ୍ର ଉତ୍ତୀର୍ଣ୍ଣ ହୋଇଅଛି, ସେହି ପଣ ପୂରଣରେ ଏଣୁ ସବୁ ସମକ୍ଷରେ ପ୍ରତିଜ୍ଞା ମୋ ପୂରଣ କରୁଛି ।

(ଦୁର୍ବୁଦ୍ଧି ପ୍ରତି) ବତ୍ସ ! ତୁହି ଏକା ବୀରପଣେ ଉଡ଼ାଇଲୁ ଧ୍ୱଜା, ତୁହି ଏକା ଉପକାରୀ ବାନ୍ଧବ ମୋହର; ଦେବକାର୍ଯ୍ୟ ହୋଇଲୁ ତୁ ସାହା, ଆଜି ହସ୍ତେ ଅର୍ଦ୍ଧରାଜ୍ୟ ଦେବି ତୋହ କରେ, କାହିଁ ସେହି ସ୍ୱର୍ଣ୍ଣକାଣ୍ଡା ସ୍ଥାନ ।

ଦୁର୍ବୁଦ୍ଧି—ମହାରାଜ ! ଆସିଲି ମୁଁ ସ୍ୱଳ୍ପ ଶ୍ରୀମୁଖ ଦର୍ଶନ-ନିମିତ୍ତ, ଆଣୁଛନ୍ତି ପଛେ ତାହା ବଟୁକ ବଶିଷ୍ଠ ।

[ବିଦ୍ୟାଧର ସୁଭିତ ବଟୁକ ଓ କେଳାଙ୍କୁ ମାରି ମାରି ଝାଡ଼ୁ ମୁଣ୍ଡେଇ ସଭାକୁ ପଠାଇବା, ବଟୁକ ସଭାରେ ଥୋଇ ଦେଇ ମୌନଭାବେ ଦଣ୍ଡାୟମାନ)

ଦୁର୍ବୁଦ୍ଧି—ଏହି ଦେଖନ୍ତୁ ପ୍ରଭୁ ଏହି ସ୍ୱର୍ଣ୍ଣକାଣ୍ଡାସ୍ଥାନ, ଯାହା ଲାଗି ଲଭିଲି ମୁଁ ବହୁତର କଷ୍ଟ ଦେଶେଦେଶ ଭ୍ରମଣେ ।

[କହି ବସନ ଉନ୍ମୋଚନ କରି ଦେଖି ସ୍ତମ୍ଭୀଭୂତ ହେବା]

ସନାତନ—ଏ କ'ଣ, ଏହି କି ସ୍ୱର୍ଣ୍ଣକାଣ୍ଡା ସ୍ଥାନ, ଝାଡ଼ୁ ଗୋଟା ଆଣି ଦେଖାଉଛୁ ବାହାଦୁରି ପଣ । କେ ଅଛ ଏ ପାଷଣ୍ଡ ଦୁର୍ବୁଦ୍ଧିକୁ ନେଇ ଶୂଳରେ ବସାଅ । ଆସିଅଛି ମୋହ ସଙ୍ଗେ ଖେଳିବାକୁ ଟାହି ।

ଦୁର୍ବୁଦ୍ଧି—(ବଟୁକକୁ ମାରି) ଲଟେର, ଏ କି କାଣ୍ଡ ?

ବିଦ୍ୟାଧର—( ପ୍ରବେଶି ) ଯେଉଁପରି କାଣ୍ଡ କରିଥିଲୁ ମୋହ ପ୍ରତି ପୂର୍ବେ । ଏ ସେହି କାଣ୍ଡର ପ୍ରତିଶୋଧ ମାତ୍ର । ( ସମସ୍ତେ ଚମକି, କାଞ୍ଚନବାଳା ଓ ପ୍ରେମଶୀଳା ସ୍ୱର୍ଣ୍ଣକାଣ୍ଡା ସ୍ଥାନ ଦେଇ ସଭାରେ ପ୍ରବେଶ )

ପାରିଷଦବର୍ଗ—ସାଧୁ ସାଧୁ ବିଦ୍ୟାଧର, ତୁହି ଏକା ବୀରପଣେ ଉଡ଼ାଇଲୁ ଧ୍ୱଜା ଏ ରାଜ୍ୟ ମଧ୍ୟରେ,

ତୋହ ପରି ବୀରପଣେ ନାହିଁ କେହି ନ ଥିବେରେ
ଜଣେ, ତା ନ ହେଲେ କରେ ଏ ବାଳୁତ ବୟସେ
ସାଧିଥାନ୍ତା ଏଡ଼େ ଗୁରୁତର କାର୍ଯ୍ୟ ?

ବିଦ୍ୟାଧର—ମହାରାଜ ! ତବ ଅନୁଗ୍ରହେ ଅଣିଛି ଏହି ସ୍ୱର୍ଣ୍ଣକାଣ୍ଡାସ୍ଥାନ । ମୁକ୍ତଦିଅ ପିତାଙ୍କୁ ମୋହର ।

ସନାତନ—ଜୟ ବିଦ୍ୟାଧର ! ଧନ୍ୟ ବତ୍ସ ପୂରିଲା ମୋ ମନର ବାସନା, ଘୁଚେ ମୋର ନାହିଁ ପ୍ରୟୋଜନ । ଆଜ୍ଞା ତୋତେ ଯୌବରାଜ୍ୟେ ଅଭିଷିକ୍ତ କରି ଯିବି ବନ୍ୟାଶ୍ରମ, ଏ ପାଷଣ୍ଡ ଦୁର୍ବୁଦ୍ଧି ସିଂହ, ଦେଲା ମୋର ଅପମାନ; ଦିଅ ଦଣ୍ଡ ଯାହା ମନ ଇଚ୍ଛା ।

ରାଜା — ଗୀତ

( ଯେ ଜାତିରେ ଜାତ ଯଯାତି ମର୍କଟ—ଢୁଲେ )

ଜୟ ଜୟ ହେ ସୁନ୍ଦର
ଗୁଣ-ସାଗର ଦୁଃଖହାରୀ
ଧନ୍ୟ ସାଧୁ ବିଦ୍ୟାଧର
ବିଜୟ ପତାକାଧାରୀ । ଘୋଷା ।
ରହିଅଛି ଯେଉଁ ଭାରତ ଗାରିମା,
ଯୁଗେ ଯୁଗେ ନାହିଁ ନ ଥିବ ଉପମା ।
( ଧନ୍ୟ ) ବଂଶ-ତିଳକ କୁଳଚନ୍ଦ୍ରମା
ଅସାଧ୍ୟ ସାଧନାକାରୀ । ୧ ।
ହିମାଚଳ ସମ ଅଟଳ ଅଚଳ,
ଅଗ୍ନି ସମାନ ପାବକ ଉଜ୍ଜ୍ୱଳ
ଧନ୍ୟ ଧନ୍ୟ ପିତୃବତ୍ସଳ
ଗାଏ କୋଟି ନରନାରୀ । ୨ ।
ପିତୃଭକ୍ତି-ମନ୍ତ୍ରେ ଆଜି,
ଜାଗି ଉଠ ସରବେ ଅଳସତା ତେଜି,
ଲଭିଯାଉ ପାପ କଳୁଷରାଜି
ହସି ଉଠୁ ବସୁନ୍ଧରୀ । ୩ ।

ରାଜା—( ପ୍ରହରୀ ପ୍ରତି );
ଘେନିଆସ ମନ୍ତ୍ରୀଙ୍କୁ ମୋହର
ଆଣି ଯାଇ ମନ୍ତ୍ରୀଜାୟା ଏଥି ।

ବିଦ୍ୟାଧର—ମହାରାଜ ! କ୍ଷମା ଦିଅନ୍ତୁ ଏ ଅଭାଗା ସନ୍ତାନେ ଜଣକର ପକ୍ଷେ ଅସମ୍ଭବ ଦ୍ୱିଦଣ୍ଡ ଧାରଣ, ଏହି ଦୁଇ ଅବଳାଙ୍କ ସହାୟତା ବଳେ ପାଇଛି ମୁଁ ରତ୍ନାବତୀ ରାଜସିଂହାସନ । ଏଣୁ ଅକ୍ଷମ ମୁଁ ଏ ଭାର ଗ୍ରହଣେ ।

ସନାତନ—ତେବେ ମନ୍ତ୍ରୀ ମହାଶୟଙ୍କୁ ଆଜି ସିଂହାସନ ଦେଇ ମୁଁ ବନ୍ୟାଶ୍ରମ ଗ୍ରହଣ କରିବି । (ରାଜମୁକୁଟ ମନ୍ତ୍ରୀଙ୍କୁ ଦେବା ) ଆସ ଆଜି ଏ ଶୁଭଦିନରେ ନାରାୟଣଙ୍କ ପୂଜା କରି ଆନନ୍ଦରେ ମାତ ସର୍ବଜନେ; ପାଷାଣ୍ଡ ଦୁର୍ବୁଦ୍ଧିକୁ ଦିଅ ତା'ର ସମୁଚିତ ଶାସ୍ତି ।

( ତଥାକରଣ; ପାଲବାଲଙ୍କ ପାଲା ପୂଜା )



ଦାନବୀର

# ରାଜା ହରିଶ୍ଚନ୍ଦ୍ର

ବା

## ଧର୍ମ ବିଶ୍ୱାମିତ୍ର କଳି ଗୀତାଭିନୟ

ଦାନବୀର

# ରାଜା ହରିଶ୍ଚନ୍ଦ୍ର

ବା

## ଧର୍ମ ବିଶ୍ୱାମିତ୍ର କଳି ଗୀତାଭିନୟ

### ପ୍ରସ୍ତାବନା

ନଟ—ଆହା ! ଜଗତରେ କେତେ ଆଶ୍ଚର୍ଯ୍ୟକର ଘଟଣା ଘଟିଗଲାଣି, ପୁରାଣ ପାଠ କଲେ ଏକ ଏକ ମହାତ୍ମାଙ୍କର ଚରିତ ଭାବି ହୃଦୟ ଏକାବେଳକେ ଦୁଃଖ ଓ ସୁଖ-ସାଗରରେ ଭାସିଯାଏ । ଚିନ୍ତା, ବୁଦ୍ଧି, କର୍ତ୍ତବ୍ୟ ସମସ୍ତ ରୁଦ୍ଧ ହୋଇ ଜଡ଼ପରି ସ୍ତବ୍ଧ ହେବାକୁ ପଡ଼େ । ପରିଣେଷରେ ନିଜର ଜୀବନକୁ ଅସାର ମଣି ଆତ୍ମାକୁ ଧିକ୍କାର ସଂସାରରେ ଜନ୍ମହେବା ଅକାରଣ ବୋଲି କହିବାକୁ ପଡ଼େ ।

ନଟୀ—ନାଥ ! ଏ କି ବିଚିତ୍ର ଭାବ । ଆଜ ଏଡ଼େ ବଡ଼ ମହୋତ୍ସବରେ କୌଣସି ଦୃଶ୍ୟ କାବ୍ୟର ଅଭିନୟ ସନ୍ଦର୍ଶନ ନିମିତ୍ତ ସମାଗତ ଭଦ୍ରମଣ୍ଡଳୀ ଉପସ୍ଥିତ ।

ନଟ—ପ୍ରିୟେ ! ସଂସାରର ଅନିତ୍ୟତା ସମ୍ବନ୍ଧେ ଭାବୁ ଭାବୁ ଭାବନା-ସମୁଦ୍ରରେ ମଗ୍ନ ହୋଇଥିଲି, ତେବେ ବର୍ତ୍ତମାନ ଏହି ସଭା ସମକ୍ଷରେ କେଉଁ ଚରିତ ଆଲୋଚନା କଲେ ଭଲ ହେବ ?

ନଟୀ—ନାଥ ! ଆପଣ ଗତ ଥରରେ ଯେଉଁ ଦେବେନ୍ଦ୍ରଙ୍କ ଶାପପ୍ରାପ୍ତ ଅପ୍ସରମାନଙ୍କର ମୁକ୍ତିଦାତା ଅଯୋଧ୍ୟା-ପତି ସତ୍ୟସନ୍ଧ ଦାନବୀର ରାଜା ହରିଶ୍ଚନ୍ଦ୍ର ଗୀତ-ନାଟ୍ୟଟି ପାଠ କରି ଶୁଣାଉଥିଲେ ଆଜ ସେହି ଚରିତ ଅଭିନୟ କରି ସଭ୍ୟଗଣଙ୍କୁ ସନ୍ତୁଷ୍ଟ କରନ୍ତୁ ।

ନଟ—ହଉ, ଆଜକା ଉତ୍ସବକୁ ଲକ୍ଷ୍ୟ କରି ଗୋଟିଏ ସଙ୍ଗୀତ ଗାନ କରି ସେମାନଙ୍କର ନୀରସ ହୃଦୟକୁ ସରସ କର । ମୁଁ ଯାଇ ନାଟ୍ୟଶାଳାର କାର୍ଯ୍ୟ ଶେଷ କରେ ।

ନଟୀ— ଗୀତ

ବୃନ୍ଦାବନେ ସଜନୀ ଏ ସୁଖ ରଜନୀ
କି ଆନନ୍ଦେ ଆଜ ମାତି ଉଠୁଛି ଧରା
ମଦନ-ମୋହନ ଶୋଭା ମଣି ଭୂଷଣ
ଚନ୍ଦନ ଯାତେ ଆଜ ହୋଇ ବିଭୋର ।
ତ୍ରିଭଙ୍ଗୀ ଛନ୍ଦେ ଭଙ୍ଗୀ କୋଟି କନ୍ଦର୍ପ ଆଭା
ଅଷ୍ଟରତ୍ନ ଶୋଭା ରତ୍ନ ଗଞ୍ଜୁଛି ଛବି
ପ୍ରେମୀଜନ ମନଲୋଭା ପ୍ରେମଚନ୍ଦ୍ରମା ।
ମୁରଲୀ ଅଧର ଶ୍ରୀଚରଣ ତଳ
ଭଜନ୍ତି ବାଳକୃଷ୍ଣ ହୁଏ ଅଧୀର ।

---

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

ନାରଦ—(ବୀଣାହସ୍ତେ ପ୍ରବେଶ) ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ମତେ !

ଇନ୍ଦ୍ର—(ଉପବେଶନ ଓ ସମ୍ମୁଖରେ ଅପ୍ସରାମାନଙ୍କର କରଯୋଡ଼ ଆଜ୍ଞା ମାତ୍ର ବସିବା ।)

(ସ୍ୱଗତ) ଆହା ! କି ମଧୁର ବୀଣାର ସ୍ୱର, ତହିଁରେ ପୁଣି ହରି-ଗୁଣାବଳି କୀର୍ତ୍ତନ ଶୁଣା ଯାଉଛି । ବୋଧହୁଏ ମହର୍ଷି ନାରଦ ଆସୁଛନ୍ତି ପରା ! (ସଭାକୁ ଚାହିଁ ପ୍ରକାଶ୍ୟେ) ସମସ୍ତେ ସାବଧାନ ଥାଅ, ଯେପରି ମହର୍ଷିଙ୍କର କୌଣସି ଅବମାନନା ନ ଘଟେ ।

ନାରଦ—(ପ୍ରବେଶି ଆଶୀର୍ବାଦ ପୂର୍ବକ ଉପବେଶନ)

ଇନ୍ଦ୍ର—ମହାମୁନେ ! ଆଜ ସୁଧର୍ମା ଭାଗ୍ୟବତୀ; କିପରି ଏ ଅଧୀନ ମନେ ପଡ଼ିଲା !

ନାରଦ—ଦେବେନ୍ଦ୍ର ! ବର୍ତ୍ତମାନ ତୁମ୍ଭର ଦାନବ ଭୟ ଘଟି ନାହିଁ ତ ?

ଇନ୍ଦ୍ର—ନା ନା, ଆପଣଙ୍କ ଶୁଭାଶୀର୍ବାଦ ଓ ମୋ କନିଷ୍ଠ ଉପେନ୍ଦ୍ରଙ୍କ ବାହୁବଳ ଅମରାବତୀକୁ ନିଶ୍ଚିନ୍ତ ରଖିଛି ।

ନାରଦ—ତେବେ ସଭା ନୃତ୍ୟଗୀତାଦି ନ୍ୟୂନ କାହିଁକି ?

ଇନ୍ଦ୍ର—ମହର୍ଷେ ! ପାପିଷ୍ଠୀ-ଗଣଙ୍କର ଚରିତ୍ର ବଡ଼ କଳୁଷିତ ହୋଇଗଲାଣି । ଏବେ ଅପ୍ସରା ଦେବ-ସଭାର ଅନୁପଯୁକ୍ତା । ଏଣୁ ଏମାନେ ମର୍ତ୍ତ୍ୟରେ ପାପ-ହୃଦୟକୁ ଚରିତାର୍ଥ କରିବା ନିମିତ୍ତ ଅଭିଶପ୍ତା ।

ଅପ୍ସରାଗଣ—( କୃତାଞ୍ଜଳିପୁଟେ ) ସୁରବର ! କ୍ଷମ ଅଧୀନା ଅନାଥା ଅବଳାଙ୍କ ଦୋଷ, ଧରୁଅଛୁ ଶ୍ରୀଚରଣ ତଳେ ଆମ୍ଭେ ଚାରଣ ।

ଇନ୍ଦ୍ର—ନା ନା, ତୁମ୍ଭମାନଙ୍କୁ କ୍ଷମା ଦିଆଯିବ ନାହିଁ । ତେବେ ଏତିକି କହୁଛି ମହାତପା ବିଶ୍ୱାମିତ୍ରଙ୍କ ତପୋବନରେ ରବିକୁଳ-ଜାତ ଶରଣପଞ୍ଜର ସତ୍ୟବାନ୍ ହରିଶ୍ଚନ୍ଦ୍ରଙ୍କ ଦର୍ଶନ ବ୍ୟତୀତ ତୁମ୍ଭ-ମାନଙ୍କର ମୁକ୍ତିଲାଭ ନାହିଁ ।

ନାରଦ—ଦେବେନ୍ଦ୍ର ! ମୁଁ ମଧ୍ୟ ଏଇଥି ନିମିତ୍ତ ଏଠାକୁ ଆସିଥିଲି । ରାଜା ହରିଶ୍ଚନ୍ଦ୍ର ବଡ଼ ଧାର୍ମିକ । ବିଶ୍ୱାମିତ୍ର କପଟରେ ତାଙ୍କୁ ରାଜ୍ୟଚ୍ୟୁତ କରାଇ ତାଙ୍କର ଆତ୍ମ ବିକ୍ରୟ ପର୍ଯ୍ୟନ୍ତ କରାଇବ, ଯଦି ତଥାପି ସେ ଲାଞ୍ଛିତ ହୁଏ ତ ଆଉ ଆଶା ବଳାଇବା ନାହିଁ ।

ଇନ୍ଦ୍ର—ତେବେ ବର୍ତ୍ତମାନ କ'ଣ କରଣୀୟ ।

ନାରଦ—ବୈଶ୍ୱାନର ! ତୁମ୍ଭେ ଧର୍ମୀର ଧର୍ମ ଜାଜ୍ୱଲ୍ୟ-ମାନ କରିବା ନିମିତ୍ତ କାଶୀ ନଗରରେ ମାଧବ ଶର୍ମା ନାମ ଧାରଣ କର । ରାଜା ହରିଶ୍ଚନ୍ଦ୍ରଙ୍କର ସ୍ତ୍ରୀ ଓ ପୁତ୍ର ଆପଣଙ୍କଠାରେ ଆଶ୍ରୟ ଗ୍ରହଣ କରିବେ ।

ଇନ୍ଦ୍ର—ତେବେ ରାଜା ହରିଶ୍ଚନ୍ଦ୍ରଙ୍କ ଅବସ୍ଥା କ'ଣ ହେବ ?

ନାରଦ—ସ୍ୱୟଂ ଧର୍ମଦେବ ଯାଇ କାଶୀ ନଗରରେ ଶ୍ମଶାନରକ୍ଷକ ହାଡ଼ିରୂପରେ ଅବତୀର୍ଣ୍ଣ ହୁଅନ୍ତୁ ! ସେ ରାଜାଙ୍କ ଆଶ୍ରୟ ଦାତା ହେବେ ! ତହିଁ ବିଶ୍ୱାମିତ୍ର ପରାଜୟ ସ୍ୱୀକାର କରିବେ !

ଇନ୍ଦ୍ର—ତେବେ ଆଜ ଏତିକିରେ ସଭା ଭଙ୍ଗ ହେଉ ।

---

## ଦ୍ୱିତୀୟ ଦୃଶ୍ୟ

ବିଶ୍ୱାମିତ୍ର—ଦେବତାମାନଙ୍କର ଏତେ ଆସ୍ପର୍ଦ୍ଧା, ଏତେ ଅହଙ୍କାର, ଏତେ ଦର୍ପ କାହିଁକି ? ଚଣ୍ଡାଳ ପକ୍ଷ କଲି ତ କଲି, ତୁମ୍ଭମାନଙ୍କର କ'ଣ ଗଲା । ମୋର ଯେଉଁଠାରେ ଇଚ୍ଛିତ ସେଠାକୁ ତୁମ୍ଭେମାନେ ଗଲେ ଅପମାନ । ମୁଁ କିଏ ସେ ତୁମ୍ଭେମାନେ ଜାଣ ନାହିଁ । କ୍ଷତ୍ରିୟ ବଂଶରେ ଜନ୍ମଗ୍ରହଣ କରି ଆପଣା ତପୋବଳଦ୍ୱାରା ସ୍ୱୟଂ ବ୍ରାହ୍ମଣ ହେଲି । ମୋର ତପ-ପ୍ରଭାବଦ୍ୱାରା ତ୍ରିଶଙ୍କୁଙ୍କୁ ସଶରୀରରେ ବଳ ପୂର୍ବକ ସ୍ୱର୍ଗକୁ ପଠାଇଲି । ସେହି ତପ ପ୍ରଭାବରୁ ବଶିଷ୍ଠଙ୍କ ଶତପୁତ୍ର ଯମପୁରକୁ ଗଲେ—ଆଚ୍ଛା, ଥାଉ ସବୁ କଥା ବୁଝିବା । ବ୍ରହ୍ମା, ବିଷ୍ଣୁ, ଶିବଙ୍କ କଥା ତ ତପସ୍ୟା ବଳରେ କ'ଣ ନ ହୁଏ । ବ୍ରହ୍ମା ତ କେବଳ ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ

କରନ୍ତି, ଶିବ ଲୟ କରନ୍ତି । ମୁଁ ଏଥର ମହା- ତପସ୍ୟା କରି ବିଦ୍ୟା ସାଧନ କରିବ । ଏକାବେଳେ ସୃଷ୍ଟି, ସ୍ଥିତି, ଲୟ କରିବ, ଧର୍ମ କାହିଁ ଧର୍ମର ମର୍ଯ୍ୟାଦା ବା କାହିଁ, ଧାର୍ମିକର ଅଗ୍ରଗଣ୍ୟ ସେ ଚଣ୍ଡାଳ ମୋପରି ହୋତାହାର ସଙ୍ଗ କରଇଲା, ଧର୍ମର ପୁଣି ଏତେ ପ୍ରଭାବ ଯେ ତାହାର ସଙ୍ଗ ସ୍ପର୍ଶ ହେଲା ନାହିଁ, ଧର୍ମ ନାହିଁ, ଧର୍ମ ନାହିଁ, ଧର୍ମ ମିଥ୍ୟା ।

ଧର୍ମ—କିଏ କହିଲା ଧର୍ମ ନାହିଁ ।

ବିଶ୍ୱା—ମୁଁ କହୁଛି ମୋତେ ଚିହ୍ନି ନାହଁ ।

ଧର୍ମ—ବେଶ୍ ଚିହ୍ନେ ! ଚିହ୍ନେ ବୋଲି ତ ଆସିଲି । ଆପଣ ମୁହଁରେ ଆପଣା ଗୁଣ କୀର୍ତ୍ତନ କଲେ ମୋ ପ୍ରାଣରେ ବଡ଼ ଆଘାତ ଲାଗେ । ସେଥିଲାଗି ସାବ- ଧାନ କରିଦେବାକୁ ଆସିଲି । ଆଜଯାଏ ତୁମ୍ଭେ ଧର୍ମ ପ୍ରଭାବ ଜାଣି ପାରନାହିଁ, ଧର୍ମ ପ୍ରଭାବ ନଥିଲେ ତୁମ୍ଭେ କ୍ଷତ୍ରିୟ କୂଳରେ ଜନ୍ମହୋଇ କଣ ବ୍ରାହ୍ମଣ ହୋଇ ପାରିଥାନ୍ତ ନା ବଶିଷ୍ଠଙ୍କ ଶତ ପୁତ୍ରଙ୍କୁ ବିନାଶ କରି ପାରିଥାନ୍ତ ।

ବିଶ୍ୱା—ନା ଚଣ୍ଡାଳ ସଙ୍ଗ ପଣ୍ଡକରି ପାରିଥାନ୍ତ ନା ତ୍ରିଶଙ୍କୁଙ୍କୁ ଅଧା ସ୍ୱର୍ଗରେ ରଖାଇଥାନ୍ତ—କହ କହ ।

ଧର୍ମ—ଧର୍ମ ଥିଲା ବୋଲି ଚଣ୍ଡାଳ ସଙ୍ଗ କରି ପାରିଲ ନାହିଁ ! ତ୍ରିଶଙ୍କୁ ବି ସ୍ୱର୍ଗକୁ ଯାଇ ପାରିଲା ନାହିଁ ।

ବିଶ୍ୱା—ଭଲ କଥା ପୁରୁଷର ପ୍ରଧାନ ଧର୍ମ ଦାନ, ସ୍ତ୍ରୀ- ମାନଙ୍କର ପ୍ରଧାନ ଧର୍ମ ସତୀତ୍ୱ ଏ କଥା ତ ସ୍ୱୀକାର କର । ତୁମ୍ଭର ଏପରି ମହିମା ଯେ ଯେଉଁ ବଳିରାଜା ସର୍ବସ୍ୱ ଦାନ କଲା ସେ ଗଲା ପାତାଳକୁ । ରତିକ ମୁନି କେବେ ମୂଠାଏ ଚାଉଳ ଦାନ କରିଥିଲା ବୋଲି ସେ ପାଇ ଅକ୍ଷୟ ସ୍ୱର୍ଗବାସ ଲାଭକଲା !

ଧର୍ମ—କୌଶିକ ! କ୍ରୋଧ ସଂଯତ କର, କ୍ରୋଧ ତପସ୍ୱୀ- ମାନଙ୍କର ଭୂଷଣ ନୁହେଁ । ମୁଁ ଦେଖୁଛି, କ୍ରୋଧ ହେତୁ ତୁମ୍ଭେ ହିତାହିତ ଜ୍ଞାନଶୂନ୍ୟ, ଚିହ୍ନିଏ ବୁଝ ।

ବିଶ୍ୱା—ଥାଉ ସେ କଥା, ଆଉ ବୁଝିବା ଆବଶ୍ୟକ ନାହିଁ ।

ଧର୍ମ—ଆଚ୍ଛା ଅଳ୍ପରେ ବୁଝାଇ ଦେଉ, ମୋର ଅସ୍ତିତ୍ୱ ତୁମ୍ଭଦ୍ୱାରା ପ୍ରମାଣିତ ହେବ । ନିଶ୍ଚୟ ଜାଣ, ସୂର୍ଯ୍ୟ ଯେତେଦିନ ପୂର୍ବାକାଶରେ ଉଦିତ ହେଉଥିବେ ସୁମେରୁ ପର୍ବତରେ ଦେବତାମାନେ ଯେତେକାଳ ପର୍ଯ୍ୟନ୍ତ ବାସ କରୁଥିବେ ଜଗତପ୍ରାଣ ସମୀରଣ ଯେତେକାଳ ସାଏ ଧନ୍ଦ୍ୱାମରେ ସଞ୍ଚରିତ ହେଉଥିବ, ତେତେଦିନ ମୋର ଅସ୍ତିତ୍ୱ ଲୋପ ପାଇବ ନାହିଁ । ଜଗତରେ ମୋର ଅସ୍ତିତ୍ୱ ମୋର ପ୍ରଭାବ ତୁମ୍ଭେ ଅଳ୍ପରେ ମର୍ମେ ମର୍ମେ ବୁଝିପାରିବ ।

ବିଶ୍ୱା—ଆଉ ବୁଝିବା ଆବଶ୍ୟକ ନାହିଁ । ବିଦ୍ୟା- ସାଧନ ଏକମାତ୍ର ଉପାୟ ।

—✱—

## ତୃତୀୟ ଦୃଶ୍ୟ

( ହରିଶ୍ଚନ୍ଦ୍ର, ବିଦୂଷକ, ନର୍ତ୍ତକୀ । )

ରାଜା—ଆଜ ରାଣୀଙ୍କର ଦେଖୁଛି, ଦୁର୍ଲ୍ଲଭମାନ, ଏକେତ ରାଣୀ ମାନମୀ ପୁଣି କାଲି ରାତରେ ଖବର ପର୍ଯ୍ୟନ୍ତ ହିଅ ଯାଇନାହିଁ । ଆଜ ଆଉ ରକ୍ଷା ନାହିଁ, ଦେଖୁଛି କଥାର ସୂତ୍ରପାତ ଶୁଣିଲଣି ବୟସ୍ୟ ! ଚାଲ ଉଆସ ଆଡ଼କୁ ଯିବା, କାଲି ରାତିରେ ରାଣୀ ବାସକସଜ୍ଜା କରିଥିଲେ । ମୁଁ ଉଆସ ଆଡ଼କୁ ଯାଇ ପାରି ନ ଥିଲି, କଣ କପାଳରେ ଅଛି କେଜାଣି । ବୋଧହୁଏ ଭାରି ଅଭିମାନରେ ଥିବେ ।

ବିଦୂ—ଏକେତ ନାଁ, ତହିଁ ସଙ୍ଗରେ ପୁଣି ଫୁଲ- ଫୁଲିଆ ବାଆ, ମହାରାଜ ! ଆଉ ବିଳମ୍ବ କାହିଁକି ? ଚାଲନ୍ତୁ ଆପଣଙ୍କର ସଳାହାର ମୋର ମଧ୍ୟ ତତ୍ତ୍ୱ, ତେବେ ଆମର ପେଟଣା ଦାସୀ ପ୍ରେମ, ଆଉ ଆପଣଙ୍କ ତେଶା ସଜ୍ଜନ ପ୍ରେମ, ମନଟା ମଧ୍ୟ ସଜ୍ଜନ । ମୁଁ କାଲି ଯାଇଁ ଦେଖେଁ ଯେ ମୁହଁଟା ଯେପରି ଧାନକୁଣ୍ଡଆଁ ହାଣ୍ଡି । ଆପଣ ଯାଇ ଦେଖିବେ ମୁହଁଟା ଯେପରି କମଳକଳି, ମୋ ଉପରେ ହେଲା ଦଣ୍ଡକାଡ଼ ପ୍ରହାର, ଆପଣଙ୍କ ଉପରେ ହେବ ଫୁଲଛଡ଼ ପ୍ରହାର; କିନ୍ତୁ ଦଣ୍ଡ

ଦୁର୍ମ୍ମିଙ୍କର ସମାନ । ଯାହାହେଉ ମୁଁ ଏକପ୍ରକାର ଅଣ୍ଡାକଣ୍ଠ ଆଣିଛି, ଏ ଏକ ?

( ଦୂତ ପ୍ରବେଶ )

ରାଜା — କି ସମ୍ବାଦ ?

ଦୂତ ବନଚର ରାଜା ବାଣଭଦ୍ର ସେ ଆପଣଙ୍କ ଚରଣ ଦର୍ଶନ ପ୍ରାର୍ଥନା କରୁଛନ୍ତି ।

ରାଜା—ଆଚ୍ଛା, ତାଙ୍କ ଏଠାକୁ ଆସିବାକୁ କହ ।

ବିଦୂ – ମହାରାଜ ! ନାଁ ଟା ଶୁଣୁ ଶୁଣୁ ଛାତିଟା ଦାଉକିନା ହେଲା ।

ରାଜା — ନାମଟି ତ ବେଶ୍ ବାଣଭଦ୍ର ।

ବିଦୂ — ନା ମହାରାଜ ! ସେଟା ନାମରେ ଭଦ୍ର; କିନ୍ତୁ କାର୍ଯ୍ୟବେଳେ ମଙ୍ଗଳବାର ।

ରାଜା — ମଙ୍ଗଳବାର କିପରି ?

ବିଦୂ — ମଙ୍ଗଳବାର,ନାମଟି ଉତ୍ତମ; କିନ୍ତୁ ଏହି ବାରରେ ସବୁ ଅମଙ୍ଗଳଯାକ ଘଟେ । ଏ ମଙ୍ଗଳବାରରେ ମଲେ ଏକ ପାଦ ଦୋଷ । ମଙ୍ଗଳବାର ଯାତ୍ରା ନିଷେଧ, ଗୃହ ପ୍ରବେଶ ନିଷେଧ ।

ବାଣଭଦ୍ର—ମହାରାଜ ଅବଧାନ ।

ରାଜା — ଆପଣଙ୍କର ସମସ୍ତ ମଙ୍ଗଳ ତ ?

ବାଣଭଦ୍ର — ଆଉରେ ନାହିଁରେ ରାଜା; ଆରେ ଗୋଟାଏ ବୋଘ ଆସିଛି, ତାକୁ କେହି ନାଶ କରି ପାରୁ ନାହିଁ, ଗାଁକୁ ଗାଁ ନାଶ କରୁଛି । ତୁ ଗଲେ ତାକୁ ଜଲଦି ମାରିଦେ, ଆଜି ତୁ ଚାଲ, ମୁଁ ତୋତେ ସାଥିରେ ନେଇ ଯିବାକୁ ଆସିଛି । ଘର ବୋଘ ମହାରାଜ । ତା’ ଠାରୁ ଆଜ୍ ଯିଜ୍ ପାଟି ବାହାରୁଛି, ତୋର ଦଣଟା ବାପର ସିଦ୍ଧ ହେବ ।

ରାଜା—ବୟସ୍ୟ ! ହେଉଁଲ ଆଉ ଏକ ବ୍ୟାଘାତ ଉପସ୍ଥିତ । ମହାରାଣୀ ସାଧ୍ୱୀ ବ୍ରତ ଉଦ୍ଯାପନରେ କାଳଯାପନ କରିଛନ୍ତି, ଆଜ ସକାଳେ ତାଙ୍କର ମଦନ ପୂଜା । ଦେଖନ୍ତୁ, ମୁଁ ଉପସ୍ଥିତ ରହି ପାରିବ ନାହିଁ । ପ୍ରଜା ଉତ୍ପୀଡ଼ିତ ଅସ୍ୱାଚ, ମୁଁ କୌଣସି-ମତେ ରହି ପାରିବ ନାହିଁ ।

ବିଦୂ ଆପଣ ନିଜେ ନ ଗଲେ ହେଲା, ନୌକରମାନଙ୍କୁ ପଠାଇ ଦିଅନ୍ତୁ ।

ବାଣଭଦ୍ର—ଆରେ ସେ ବୋଘ ନାରେ ଏତେ ବଡ଼ା ଦାନ୍ତ ଆଉ କେହି ପାରିବେ ନାହିଁ । ତୁ ଚାଲରେ ରାଜା ଚାଲେ ।

ରାଜା—ଆଚ୍ଛା, ତୁମ୍ଭେ ଚାଲ ମୋର ରଥ ସଜାଡ଼ କରି-ବାକୁ କହ ।

ବାଣଭଦ୍ର — ଭଲ ତୁ ଆ ।

ରାଜା—ବୟସ୍ୟ ! ତୁମ୍ଭେ ମଧ୍ୟ ସଙ୍ଗରେ ଯିବାକୁ ପଡ଼ିବ ।

ବିଦୂ — ଆଟଲ ବାପ ଲୋ, ଏ ପୁଣି କଣ ? ମୁଁ ପୁଣି କାହିଁକି ଯିବି ? ବ୍ରାହ୍ମଣ ପିଲା, ଦିନରାତି ବିଦ୍ୟା ଅବିଦ୍ୟା ଚର୍ଚ୍ଚା କରୁଛି । ଭୋଜନ କରି ଲୋକ-ମାନଙ୍କର ଘରେ ଘି ଦୁଧ ଉଦ୍ଧାର କରୁଛି, ଆଉ ଅସ୍ତ୍ର ଶିକ୍ଷା ତ କେବେ କରି ନାହିଁ ।

ରାଜା — ଆଉ ନାହିଁ ହେ, ତୁମ୍ଭଙ୍କୁ ଅସ୍ତ୍ର ଧରିବାକୁ ପଡ଼ିବ ନାହିଁ ।

ବିଦୂ — ମହାରାଜ ! ଖାଇବା କଥା ?

ରାଜା — ଖାଦ୍ୟ ସାମଗ୍ରୀ ଆମ୍ଭ ସଙ୍ଗରେ ଯିବ, ଆଉ ତ ବନରେ ଯଥେଷ୍ଟ ଫଳ ମୂଳ ଅଛି ।

ବିଦୂ --ବଣରେ !

ରାଜା — ମୃଗୟା କଣ ପ୍ରମୋଦକାନନରେ ହେବ କି ? ନା ଅନ୍ତଃପୁର ମଧ୍ୟରେ ହେବ ।

—*—

## ଚତୁର୍ଥ ଦୃଶ୍ୟ

(ଶୈବ୍ୟା ଓ ସଖୀଗଣ)

ଶୈବ୍ୟା—(ଗୀତ) — କାହିଁକରେ ସଖି, ଏହି ଦେଲା ନାରୀ ଜନମ, ଆନ ସଙ୍ଗେ ଖଞ୍ଜି ରଙ୍ଗେ ଭୋଗାଉଛି କଷଣ ।

୧ମ ସଖି—ଚନ୍ଦ୍ର ନ ଥିଲେ ଲତା ଶୋଭା କି ଦିଶୁ-ଥାନ୍ତା ।

୨ୟ—ଶୁଣାଉ ଅଛୁ ସଖି ଏ କେଉଁ ନୂଆ କଥା

୨ୟ—ଘଟିଲା କବା କଥା ଫେଡ଼ କହ ମରମ ।

ଶୈବ୍ୟା—ସତ ! ଦୁନିଆରେ ନାରୀ ଜନ୍ମଠାରୁ ଆଉ ହୀନଜନ୍ମ ନାହିଁ । ବିଧାତା କାହିଁକି ଜନ୍ମ ଦେଇ-

ଥିଲି ଯେବେ ଜନ୍ମ ହେଲା ତେବେ ପୁରୁଷ ସଙ୍ଗରେ ସମ୍ପର୍କ ରହିଲା କାହିଁକି ?

୧ମ ସଖୀ — ସଖି ! ଦେଖିଲୁ ଏ ମାଧବୀ ଲତାଟି ତରୁ- ଲାଗି କିପରି ଏତେ ଶୋଭା ଦେଖାଯାଉଛି ! ତରୁ ନ ଥିଲେ ଲତା କାହାଠାରେ ଆଶ୍ରୟ ନଅନ୍ତା !

ଶୈବ୍ୟା — ସଖି ! ଯେବେ ପୁରୁଷ ସ୍ତ୍ରୀର ଆଶ୍ରୟଦାତା ତେବେ ଯୌପାଡ଼ ହଏ କାହିଁକି ? କାଲି ଯେଉଁ ମର୍ମାନ୍ତିକ ଯନ୍ତ୍ରଣା ଭୋଗ କରିଛୁ ତୁମ୍ଭେମାନେ ଜାଣ ତ —

୧ମ — ହିଁ ଜାଣିଛୁ, ସଖି ଆଉ ଗୋଟିଏ କଥା

ଗୀତ

୧ମ — ପୁରୁଷ ଛାଡ଼ି ଥିଲ ଜାଣରେ ପ୍ରିୟ ଆଳି

୨ୟ — ନୂଆ ନୂଆରେ ଭଲ ପୁରୁଷା ଯାନ୍ତି ଭୁଲି !

୩ୟ — ନ ହୁଅ ମନେ ଭଲ ବାଳୀ ଯୋଡ଼ା କରମ !

୧ମ — ସଖି ! ନୂଆ ନୂଆ ବେଳେ କଥା ଅଲଗା ପୁରୁଣା ହେଲେ ସେକଥା ଥାଏ କ !

(ସଖିମାନେ ପ୍ରସ୍ଥାନ)

(ରୋହିତ ପ୍ରବେଶ)

ରୋହିତ — ମା, ଆଚାର୍ଯ୍ୟଙ୍କଠାରୁ ଚମତ୍କାର କଥା ଶୁଣି ଆସିଲି

ଶୈବ୍ୟା — କି କଥା ବାବୁ !

ରୋହିତ — ପରଶୁରାମ ବୋଲି ଜଣେ ବ୍ରାହ୍ମଣ ସମସ୍ତ ପୃଥିବୀ ଜୟକରି କଶ୍ୟପ ଋଷିଙ୍କୁ ଦାନ କରିଥିଲେ ।

ଶୈବ୍ୟା — ବାପ ! ଦାନଠୁ ବଳି ଶ୍ରେଷ୍ଠଧର୍ମ ଏ ଜଗତରେ ଆଉ କିଛି ନାହିଁ ।

ରୋହିତ — ଆଚ୍ଛା ମା ! ସବୁ ପୃଥିବୀଟି ତ ଦାନ କଲେ, ରହିଲେ କେଉଁଠି ?

ଶୈବ୍ୟା — ଧନୁର ଅଗ୍ରଭାଗଦ୍ୱାରା ଦକ୍ଷିଣ ସମୁଦ୍ରକୁ ଘୁଞ୍ଚାଇ ଦେଇ ସେଇଠି କୁଟୀର ନିର୍ମାଣ କରି ରହିଥିଲେ ।

ରୋହିତ — ମା, ଯଦି ଆଜ୍ଞା ହେବ, ତେବେ ବାପା କାହିଁକି ଯେପରି ସବୁ ପୃଥିବୀ ଦାନ କରୁନାହାନ୍ତି, ମୁଁ ବାଣମାରି ସମୁଦ୍ରକୁ ଘୁଞ୍ଚାଇ ଦେବି । ଆର୍ଯ୍ୟ ପରଶୁରାମଙ୍କ କଥା ଶୁଣିଲାବେଳକୁ ମୋ ମନରେ କପରି ଛଂସା ହେଉଛି, ସେ ବ୍ରାହ୍ମଣ ହୋଇ ସର୍ବସ୍ୱ ଦାନ କଲେ, ଆମେ ପାରିବା ନାହିଁ । ଆମେ ତ କ୍ଷତ୍ରିୟ ।

ଶୈବ୍ୟା — ହିଁ ବାପ, ଦାନ କରିବୁ (ସ୍ୱଗତ) ଆହା ଏହି ବୟସରୁ ଏପରି ଧର୍ମର ପ୍ରବୃତ୍ତି, ଜଗଦୀଶ୍ୱର ପୂର୍ବ ଜନ୍ମର କେଉଁ ପୁଣ୍ୟବଳରୁ ମୋତେ ଏ ଅକଳଙ୍କ ଚନ୍ଦ୍ରମାଟି ଦେଇଛନ୍ତି । ପ୍ରଭୁ, ଆପଦ ବିପଦରେ ମୋର ପୁତ୍ରକୁ ରକ୍ଷା କରନ୍ତୁ, ଚାଲେ ବାପ ଭୋଜନ କରିବୁ ଚାଲେ ।

—*—

# ଦ୍ୱିତୀୟ ଅଭିନୟ

## ପ୍ରଥମ ଦୃଶ୍ୟ

କାମାନ୍ଧକ — ଶିବ ତପସ୍ୟାବେଳେ ନନ୍ଦି ଭୃଙ୍ଗୀ ଦୁଇ ଜଣ ପହରା ଦେଉଥିଲେ । ପ୍ରଭୁଙ୍କ ତପସ୍ୟାବେଳେ ମୁଁ ଏକାକେ ଦୁଇଜଣ ଚୁପ୍ ଚୁପ୍ ହେ ଗଛ ହୋଇଲୁ ତୁ କଆଁ, ହେ ହରିଣ ଆସ୍ତେ ଆସ୍ତେ ଯା । ବାବାଜି ଗୋଟିଏ ଅଦ୍ଭୁତ ବ୍ୟାପାର ନ କରି ଛାଡ଼ିବ ନାହିଁ, ବାବାଜିର ଇଚ୍ଛା ଏକାକେ ବ୍ରହ୍ମା, ବିଷ୍ଣୁ ଶିବ ହେବେ, ମନ୍ଦବଳରେ ଚେଷ୍ଟା ଚଣ୍ଡୀ ଓ ଚାମୁଣ୍ଡୀ ପାଖକୁ ଆସିଛନ୍ତି, ଆଜ୍ଞବଦନେ ହ'ଦନ ଯେବେ ଭଲରେ ଯାଏ ତେବେ ସିଦ୍ଧି, ଆଚ୍ଛା ମୁଁ ଯେ ତା'ର କାମ କରିଛି ମୋ କଥା କଣ କିଛି ବିଚାର କରିବେ ନାହିଁ । ସତେ କିଛି ନାହିଁ କିଛି ଗୋଟିଏ ଚାକର କରିଦେବେ -- କଣ ହେବ,ସୂର୍ଯ୍ୟ ନାହିଁଲେ ବାପ, ସାଗଧନ ବୁଲିବ, ସ୍ତ୍ରୀ ତ ହେବ- ନାହିଁ । ଆଚ୍ଛା ଇନ୍ଦ୍ର ହେବା, ତ୍ରିଲୁର ପରିମାଣରେ ପାରିଜାତ ଗଳାରେ ଲମ୍ବିବ ଐରାବତ ଚଢ଼ି ବୁଲି- ବାକୁ ହେବ, ନନ୍ଦନ କାନନରେ ସୁରଭି ସେବାଳ ଦଳ ଉପରେ ଲମ୍ବହୋଇ ଶୋଇ ପଡ଼ିବି । ପୁଣି ଅପ୍ସରାମାନଙ୍କର ଗୀତ ଶୁଣିବ କିନ୍ତୁ ଗୋଟିଏ ବ୍ୟାଘାତ ଅଛି, ସହସ୍ର ଲୋଚନଟି ବାଦ୍‌ଦେଇ ଇନ୍ଦ୍ର ହେବାକୁ ହେବ, ବ୍ରାହ୍ମଣ କପାଳ ତ କୁଆଡ଼େ ଯିବ ନାହିଁ ଏ ଭଏ ଅଛି — ଆସୁ

ସାରଥି—ପ୍ରଣାମ ।
କାମ—ଚୁପ୍ ଚୁପ୍ ଆଶୀର୍ବାଦ ସର୍ବନାଶଂ ।
ସାରଥି—ଚମତ୍କାର, ଆଶୀର୍ବାଦ, ଆଚ୍ଛା କହିପାରିବେ ଆମ୍ଭର ମହାରାଜ ଏଣିକି ଆସିଛନ୍ତି କି ?
କାମ—ତୁମ୍ଭ ମହାରାଜ କିଏ ?
ସାରଥି—ଆପଣ ଆମ୍ଭ ମହାରାଜାଙ୍କୁ ଚିହ୍ନନ୍ତି ନାହିଁ ?
କାମ—କଣ କରିବ ବାବା ସେ ମୋ ଦୁର୍ଭାଗ୍ୟ ।
ସାରଥି—ଦୁର୍ଭାଗ୍ୟ, ସେଥିରେ ଆଉ ସନ୍ଦେହ କଣ ?
କାମ—କଣ କହିଲୁ ମୁଁ ଦୁର୍ଭାଗ୍ୟ । ତୁ ବଣରେ ବୁଲି ବୁଲି ମରୁଛୁ, ତୁ ଭାଗ୍ୟବାନ୍ ।
ସାରଥି—ମହାଶୟ ! କ୍ରୋଧ ହେଉଛନ୍ତି କାହିଁକି ?
କାମ—ଏହିକ୍ଷଣି କଣ ରାଗ ଦେଖୁଛୁ, ମୁଁ ଇଚ୍ଛାକଲେ ତୋତେ ଭସ୍ମ କରିଦେବି ।
ସାରଥି—ତୁମ୍ଭେ ଆମ୍ଭ ରାଜାଙ୍କୁ ତେବେ ଦେଖି ନାହିଁ ।
କାମ—ନା, ଆଉ କ୍ଷମା ନାହିଁ, ଠିଆହୁଅ ତୋତେ ଭସ୍ମକରିଦେଉଛି, କଣ ଆଖି ପୋଡୁଛି, ମୁଣ୍ଡ ଘୂରୁଛି ।
ସାରଥି—ତେବେ ହରିଶ୍ଚନ୍ଦ୍ରଙ୍କୁ ଦେଖି ନାହାନ୍ତି ? ମୁଁ ଯାଉଛି ।
କାମ—ଆରେ କେତେ ଇନ୍ଦ୍ର, ଚନ୍ଦ୍ର, ଏଠି ଡିଆଁରି ହେଉଛନ୍ତି । ତୁ କହୁଛୁ ହରିଶ୍ଚନ୍ଦ୍ର, କେଉଁକଲି ।
ବିଶ୍ୱାମିତ୍ର—କାମାନ୍ଧକ ଅପରାଧୀ ମାନଙ୍କୁ ଘେନିଆ ।
କାମାନ୍ଧକ—ଯେ ଆଜ୍ଞା ।
ବିଶ୍ୱାମିତ୍ର—ଏହି ତ ନିର୍ଜନ ସ୍ଥାନ, ଏଠାରେ ତପସ୍ୟା ଆରମ୍ଭ କରି ଦେବଗଣ, ତୁମ୍ଭମାନଙ୍କର ଦର୍ପ ଚୂର୍ଣ୍ଣ କରିବ ।

ଅଗ୍ନିଜାଳ ( ବିଦ୍ୟା )

ଏଥର ଦେଖ ଆଦ୍ଭୁତ ଅଗ୍ନିମିଳେ ଧୂବେଷ୍ଟିତମ୍ ।
ବିଦ୍ୟା—ରତ୍ନାକର ରକ୍ଷାକର କେ ଅଛ କେଉଁଠି ।
ତପବନେ ପଡ଼ୁଛନ୍ତି ଅବଳା ତିନୋଟି ।
କେହି କି ପୁରୁଷ ନାହିଁ ବିଶାଳ ଧରାରେ ।
ଏ ତପନୁଁ ଅବଳାଙ୍କୁ ଉଦ୍ଧାର ସତ୍ୱରେ ।
କେଉଁଠାରେ ଅଛ ରକ୍ଷାକର ରକ୍ଷାକର ।
ହରିଶ୍ଚନ୍ଦ୍ର—ଭୟ ନାହିଁ ୨! ଆରେ ଭଣ୍ଡ ତପସ୍ୱୀ ଚୋର କଣ କାର୍ଯ୍ୟ ଏହି; ପବିତ୍ର ତାପସ ବେଶ ପରିଗ୍ରହ କରି ଦୂଷିତ ଜଘନ୍ୟ ପୈଶାଚିକ କାର୍ଯ୍ୟରେ ପ୍ରବୃତ୍ତ ଅଛୁ । ଇନ୍ଦ୍ର, ଚନ୍ଦ୍ର, ବାୟୁ, ବରୁଣ, ତୁ ଯେ ହୁଅ ଆଜ ମୋଠାରୁ ନିସ୍ତାର ନାହିଁ । ସୂର୍ଯ୍ୟବଂଶ ରାଜାଙ୍କ ରାଜ୍ୟ ମଧ୍ୟରେ ସ୍ତ୍ରୀ ଜାତି ପ୍ରତି ଅତ୍ୟାଚାର, ବର୍ବର ! ବ୍ରାହ୍ମଣବେଶଧାରୀ ବର୍ତ୍ତମାନ ତୋ ଅପରାଧର ସମୁଚିତ ଦଣ୍ଡ ବିଧାନ କରିବ ।
ବିଶ୍ୱାମିତ୍ର—କା'ର ଆସ୍ପର୍ଦ୍ଧା, ମୋ ପ୍ରତି କଟୂକ୍ତି, ମୋ ଯଜ୍ଞରେ ବ୍ୟାଘାତ ।
ବିଦ୍ୟା—ହାଃ ହାଃ ହାଃ ହେଲା ନାହିଁ । ମନୁଷ୍ୟ ଆସିଲା କ୍ରୋଧ ହେଲା ବିଘ୍ନ ହେଲା ସିଦ୍ଧି ହେଲା ନାହିଁ ହାଃ ହାଃ ହାଃ ।
ରାଜା—ଏ କଣ ସତ୍ୟ ତପସ୍ୱୀ, କିଏ ସେ ମୁଁ ତ ଚିହ୍ନିପାରୁ ନାହିଁ ।
ବିଶ୍ୱାମିତ୍ର—ସପ୍ତାଙ୍ଗଧାରୀ ଦଣ୍ଡ-ଧାରଣକାରୀ ବିଶ୍ୱାମିତ୍ରଙ୍କୁ ଚିହ୍ନିପାରୁ ନାହିଁ, ଅଚିରେ ଚିହ୍ନାଇ ଦେବି ।
ରାଜା—ସର୍ବନାଶ, ବିଶ୍ୱାମିତ୍ର ରାଜର୍ଷି, ବିଶ୍ୱାମିତ୍ର ! କାହାକୁ କଣ କହିଲି, ମହର୍ଷେ କ୍ଷମା କରନ୍ତୁ ।

( ଗୀତ )

( ଦେବ ) କ୍ଷମ ଅପରାଧ ମୋହର ।
ଅଜ୍ଞାନେ ମୁଁ ଦ୍ରୋହୀ ହେଲି ତୋର ।

ବିଶ୍ୱାମିତ୍ର— ଗୀତ

ଧାର୍ମିକ ରାଜନ, ବୋଲୁ ନରାଧମ
ଐଶ୍ୱର୍ଯ୍ୟ ଗର୍ବରେ ମତ୍ତ ତୋ ଉତ୍ତମ
ନ ଜାଣୁ ତୁ ବିଶ୍ୱାମିତ୍ର ଦର୍ପାଚାର ପାମର ।
ରାଜା—ତପୋଧନ ! ନାରୀ ଆର୍ତ୍ତନାଦ ଶୁଣି ମୁଁ ବ୍ୟଥିତ ହୋଇଥିଲି, କର୍ତ୍ତବ୍ୟ ତାଡ଼ନା ହେତୁ ପ୍ରକୃତି ସ୍ଥିର ରଖି ପାରିଲି ନାହିଁ । ସ୍ୱଧର୍ମ ପାଳନ କରିବା ଉଦ୍ଦେଶ୍ୟରେ ଶାସନ ବାକ୍ୟ ପ୍ରୟୋଗ କରିଅଛି, କ୍ଷମାକର ।
ବିଶ୍ୱା—ସ୍ୱଧର୍ମ ପାଳନ, ବ୍ରାହ୍ମଣପ୍ରତି, ତପସ୍ୱୀ ପ୍ରତି କଟୂକ୍ତି କଣ କ୍ଷତ୍ରିୟର ଧର୍ମ ? ସ୍ୱଧର୍ମ, କ୍ଷତ୍ରିୟଧର୍ମଃ ?

ରାଜା—ଦାତବ୍ୟଂ ରକ୍ଷିତବ୍ୟଞ୍ଚ ଯୋଦ୍ଧବ୍ୟଂ କ୍ଷତ୍ରିୟୈଃ ସଦା ।

ବଶିଷ୍ଠ—ଆଜ୍ଞା, କାହାକୁ ଦାନ ଦିଆଯାଏ, କାହାକୁ ରକ୍ଷା କରିବାକୁ ହୁଏ ଆଉ କାହା ସାଙ୍ଗରେ ଯୁଦ୍ଧ କରିବାକୁ ହୁଏ ।

ହରି—ଗୁଣବାନ ବ୍ରାହ୍ମଣଙ୍କୁ ଦାନ ଦିଆଯାଏ, ଭୟାତୁରଙ୍କୁ ରକ୍ଷା କରିବାକୁ ହୁଏ ଆଉ ଶତ୍ରୁ ସଙ୍ଗରେ ଯୁଦ୍ଧ କରିବାକୁ ହୁଏ ।

ବଶିଷ୍ଠ—ଉତ୍ତମ, ଉତ୍ତମ । ମୁଁ କଣ ତୁମ୍ଭ ମତ ଅନୁସାରେ ଦାନର ପାତ୍ର, ମୁଁ କଣ ତୁମ୍ଭ ନିକଟରେ ଗୁଣବାନ ବୋଲି ବିବେଚିତ ।

ରାଜା—କଣ କହୁଛନ୍ତି ତପୋଧନ; ମୁଁ ଆପଣଙ୍କ ପରି ଗୁଣବାନ, ଆପଣଙ୍କ ପରି ଦାନର ପାତ୍ର ଆଉ କେଉଁଠୁ ପାଇବି ? ମୁଁ ଏପରି କଣ ପୁଣ୍ୟ କରିଛି ଯେ ଆପଣ ମୋଠାରୁ ଦାନ ଗ୍ରହଣ କରିବେ ।

ବଶିଷ୍ଠ—ଆଚ୍ଛା, ମୋର ବିଦ୍ୟା ଓ ତପସ୍ୟା ଅନୁରୂପ କିଛି ଦାନ କର ?

ହରି— ଗୀତ

ସଜରାଜ୍ୟ ରତ୍ନ ଭଣ୍ଡାର ମୋର,
ଘୁଞ୍ଚିବ ଆଜି ଅଜ୍ଞାନ ତିମିର ।

ବଶିଷ୍ଠ— ଗୀତ

ବୃଥା ବାକ୍ୟ ପରିହର, ନାହିଁ ଅବସର ।

ବାକ୍ୟ ଛଟାରେ ଆଉ ପ୍ରୟୋଜନ କଣ ? ଦାନ କରିବ ତ ଶୀଘ୍ର କର ।

ହରି— ଗୀତ

ଦୟାକରି ନେଇ ଏ ରାଜ୍ୟ ସମ୍ପଦ,
ପୁତ୍ର ପତ୍ନୀ ବିନା ଅର୍ପିଲି ମୁଁ ସବୁ ।

ବଶିଷ୍ଠ— ଗୀତ

ଦକ୍ଷିଣା ବିହୁନେ ଦାନ ହେବଟି ନିଷ୍ଫଳ ।

ହରି—ମୋର ସର୍ବସ୍ୱ ଆପଣଙ୍କୁ ଦାନ ଦେଲି ।

ବଶିଷ୍ଠ—ସ୍ୱସ୍ତି ! ସ୍ୱସ୍ତି ! ତୁମ୍ଭେ ପ୍ରକୃତ ଦାତା, କିନ୍ତୁ ଦକ୍ଷିଣା ସହିତ ଦେବା ଆବଶ୍ୟକ । ନଚେତ୍ ଦାନ ନିଷ୍ଫଳ ହେବ ।

ରାଜା—ସହସ୍ର ସ୍ୱର୍ଣ୍ଣ ମୁଦ୍ରା ଦେଉଛି ।

ବଶିଷ୍ଠ—ଉତ୍ତମ କଥା । ଗୀତ

ଏହି ରାଜ୍ୟ ସମ୍ପଦ ହେଲା ମୋର ଆୟତ୍ତ ।
ନାହିଁ ଟି ତୋର ସାଧ୍ୟ ହରି ନେବୁ ଟିକିଏ ।

ହରି— ଗୀତ

ନ ହୁଅନ୍ତୁ ତପି କ୍ଷୁବ୍ଧ ହେ ଆଜ୍ଞା ତୁମର ।

ବଶିଷ୍ଠ—କିନ୍ତୁ ସାବଧାନ ଯେମିତି ବଚନଚ୍ୟୁତ ନ ହୁଅ । ସମସ୍ତ ପୃଥିବୀ ମୋର ତା' ତ ଜାଣ । ତୁମ୍ଭ ନିଜ ଦେହ ପୁତ୍ର ପତ୍ନୀ ଭିନ୍ନ ଆଉ ତୁମ୍ଭର କିଛି ନୁହେଁ; ରାଜଭଣ୍ଡାରରେ ଯେ ସବୁ ଧନରତ୍ନ ଆଦି ଅଛି ସେ ସବୁ ମୋର ପ୍ରଜାବର୍ଗଙ୍କର, ଯେ ସବୁ ସମ୍ପତ୍ତି ଅଛି ସେଥିରେ ତୁମ୍ଭର କିଛି ମାତ୍ର ଅଧିକାର ନାହିଁ ।

ରାଜା—ମୋତେ ଏକମାସ ଅବସର ଦିଅନ୍ତୁ ।

ବଶିଷ୍ଠ—କିନ୍ତୁ ମନେରଖ ମୋ ରାଜ୍ୟରେ ତୁମ୍ଭେ ବାସ କରି ପାରିବ ନାହିଁ, ମୁଁ ଆସୁଛି ?

ହରି—ଭଗବତି ପୃଥିବୀ, ବୈବସ୍ୱତ ମନୁଙ୍କଠାରୁ ଆରମ୍ଭ କରି ସକଳ ସୂର୍ଯ୍ୟବଂଶୀୟ ରାଜାମାନେ ତୋତେ ପାଳନ କରି ସୁଯଶ ଭୂଷିତ ହୋଇଅଛନ୍ତି, କିନ୍ତୁ କାହାରି ଭାଗ୍ୟରେ ଏପରି ସୌଭାଗ୍ୟ ଘଟି ନାହିଁ, ମୁଁ ନିଜେ ସମ୍ବରଣ କରି ନ ପାରି ତୋତେ ପରମ ଗୁଣବାନ ତପସ୍ୱୀ-କୁଳଗୌରବ ବଶିଷ୍ଠଙ୍କ ଚରଣରେ ଅର୍ପଣ କଲି । ବସୁମତି, ମୋ ଅପରାଧ କ୍ଷମାକର, ତୁମ୍ଭ ଶ୍ରୀଚରଣରେ କୋଟି କୋଟି ପ୍ରଣାମ ।

---

## ଦ୍ୱିତୀୟ ଦୃଶ୍ୟ

( ଶୈବ୍ୟା ସଖୀସହ )

ଶୈବ୍ୟା—ନାଥ ମୃଗୟା କରିବାକୁ ଯାଇଥିଲେ ଏତେ ବିଳମ୍ବ ହେଲା କାହିଁକି ? କଣ କିଛି ବାଧାବିଘ୍ନ ଘଟିଲା, ତାଙ୍କ ଜୀବନ ଜଗତରେ କାହାରିକୁ ଅବିଦିତ ନାହିଁ । ମୁଁ କଣ ଏକା ତାଙ୍କ ଗୁଣର ପକ୍ଷପାତି । ସକଳ ଲୋକେ ତାଙ୍କର ଗୁଣ ଆଉ ଉତ୍ତମକଥା କହି ଧନ୍ୟ ଧନ୍ୟ କରନ୍ତି । ତେବେ ବିଘ୍ନ ଆଶଙ୍କା କରୁଛି କାହିଁକି ? କଣ ହେବ

ଅସୁସ୍ଥ ନୋହିଲ । ତାହା ହେଲେ ତ ଫେରି ଆସିଥାନ୍ତେ, ତେବେ ମୁଁ କାହିଁକି ଏତେ କାତର ହେଉଛି ! ନା ନା, ଅମଙ୍ଗଳ କଥା ଚିନ୍ତା କରିବି ନାହିଁ, ଇଷ୍ଟଦେବ ତାଙ୍କୁ ସବୁଠି ରକ୍ଷାକରିବେ !

୧ମ ସଖୀ—ମହାରାଣୀ ! ଦୁଃଖ କରୁଛ କାହିଁକି ? ଏ କିଏ ଦେଖିଲଣି ।

ରାଣୀ—ସଖି ! ଏ କିଏ ? ନାଥଙ୍କ ମୁଖ ଏପରି ବିରସ ଦେଖାଯାଉଛି କାହିଁକି ?

ସଖୀ—ହିଁ, ସତେ ତ ! ରାଜମୁକୁଟ ନାହିଁ । ଦେହଟା କଳାକାଠ ପଡ଼ି ଯାଇଛି ! ଶୀଘ୍ର ବୁଝ ।

( ରାଜା ପ୍ରବେଶ )

ଶୈବ୍ୟା—ପ୍ରାଣେଶ୍ୱର ! ଆପଣଙ୍କର ମୁଖ-କମଳ ମ୍ଳାନ ଦେଖା ଯାଉଛି କାହିଁକି ? ମୁଁ ତ କିଛି ବୁଝି ପାରୁନାହିଁ, କହ କଥା କଣ ?

( ଗୀତ )

କହ ସାବଧାନ ଜଣା କାହିଁକି ମନ
ଶୁଣାଅ ନାହିଁ ଭରସା । କଣା ଦାସୀରେ
ରୋଷ କରିଛ କି ଅଭିବେଶ ଜାଣି ନ ପାରେ
ଦୁଃଖ ଦୂର କରନ୍ତ ।

ରାଜା— ଗୀତ

ସୀତାବତୀନା ମୋର ଅର୍ଜିଲ କର୍ମଫଳ
ବର୍ଜିଛି ସୁଖ ଭୋଗ ଗ୍ରାସିଛି ଦୁଃଖାନଳ
ଖଣ ଖଣ ହୃଦୟ କରେ ସଦା ଆକୁଳ
ରକ୍ଷା ନାହିଁରେ ଆଜ ଗତ ମନ ମୋରଟି ।୧।

କଣ ଏପରି ବିପଦ ଘଟିଲା ଶୀଘ୍ର କୁହନ୍ତୁ ନାଥ ।

ରାଜା—ସଖି ! ବିଶ୍ୱାମିତ୍ରଙ୍କ ନାମ ଅବଶ୍ୟ ଶୁଣିଥିବ ?

ରାଣୀ—ବିଶ୍ୱାମିତ୍ର ଯେଉଁ କ୍ଷତ୍ରିୟ ତପସ୍ୱୀ ?

ରାଜା—ବର୍ତ୍ତମାନ ସେ ତପସ୍ୟାବଳରେ ବ୍ରାହ୍ମଣ ରାଜର୍ଷି ବିଶ୍ୱାମିତ୍ର ।

ରାଣୀ—କଣ ହେଲା ? କଣ ହେଲା ? ଆପଣ ତାଙ୍କ କୋପାନଳରେ ପଡ଼ିଛନ୍ତି, ହାୟ !

(ଗୀତ)

ଆରେ ବିଧାତା ତୋର ଏକାକ ସୁବିଚାର
ଅନାଥଙ୍କ କପାଳରେ ଦେଲୁ କଳଙ୍କ ଭାର ।

ରାଜା— (ଗୀତ)

ନକର ତୁ ସନ୍ତାପ, ଲଭିନାହିଁ ମୁଁ ଶାପ
ଦର୍ପାନ୍ଧ ମୁନିଙ୍କରେ ଅର୍ପିଛି ମୋ ମୁକୁଟ ।
କଣ୍ଠ ହେଲଣି ମୋର ଦାନ ଦକ୍ଷିଣାତକ
ଆଶ୍ରମେ ଗଲା ସତ ନାହିଁ ଏଥୁ ବରତ । ୨ ।

ଶୈବ୍ୟା—ହାୟ ? ଧରଣୀ-ପାଳକ ବ୍ରାହ୍ମଣ-ରକ୍ଷକ ପୁଣ୍ୟମୟ ସୂର୍ଯ୍ୟବଂଶ କଣ ବ୍ରାହ୍ମଣ ଶାପ ପ୍ରଦାନର ଉପଯୁକ୍ତ କ୍ଷେତ୍ର ।

ରାଜା—ଦେବୀ ! ଶାପ ନୁହେ ମୁ ତାଙ୍କର ଅନୁଗ୍ରହ ଲାଭ କରିଛି ! ସେ କୃପାକରି ମୋଠାରୁ ପୃଥିବୀ ଦାନ ଗ୍ରହଣ କରିଛନ୍ତି, କିନ୍ତୁ ଦାନକୁ ଦକ୍ଷିଣା ବାକି ପଡ଼ିଛି ।

ଶୈବ୍ୟା—କେତେ ଦକ୍ଷିଣା ନାଥ !

ରାଜା—ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ।

ଶୈବ୍ୟା—ଆପଣଙ୍କର ଭଣ୍ଡାରରେ କଣ ନାହିଁ ?

ରାଜା—ମୋର ଭଣ୍ଡାରରେ କି ଅଧିକାର ଅଛି ? ସବୁ ଋଷିଙ୍କର ।

ରାଣୀ—ତେବେ ଋଷିଙ୍କର ଦକ୍ଷିଣା କିପରି ପରିଶୋଧ ହେବ ନାଥ !

ରାଜା—ଦେବି ! ତୁମକୁ ଓ ରୋହିତକୁ ତୁମର ପିତା ଗୃହରେ ଛାଡ଼ି କାଶୀ ଧାମରେ ମୋର ଆତ୍ମ ବିକ୍ରୟ କରି ଋଷିଙ୍କର ଦକ୍ଷିଣା ପରିଶୋଧ କରିବି ।

ଶୈବ୍ୟା—ପୃଥିବୀନାଥ, ଆପଣ ତ ବ୍ରାହ୍ମଣଙ୍କୁ ସନ୍ତୋଷ କରିବା ଲାଗି ପୃଥିବୀ ଦାନ କଲେ, ଆଉ କାହାକୁ ସନ୍ତୋଷ କରିବାକୁ ଧର୍ମପତ୍ନୀ ତ୍ୟାଗ କରିବେ ?

ରାଜା—ଅଭିମାନିନି ! ମୁଁ କଣ ତୁମକୁ ପରିତ୍ୟାଗ କରୁଛି ! ପ୍ରିୟେ କଷ୍ଟକ ସାଥିରେ କେଉଁଆଡ଼େ ଯିବ ?

ରାଣୀ— ଗୀତ

ପତି ନେଲେଟି ପତି ନେତ ମୁଁ ଭିକ୍ଷାପାତ୍ରୀ
ପତି ବିନା ମୋରଟି ନାହିଁ ଏ ଭବେ ଶାନ୍ତି ।

ରାଜା— (ଗୀତ)

କନକନେହି ପଥେ ଚାଲିବୁ ତୁ କେମନ୍ତେ
ଦୁର୍ଗମ ସଙ୍ଗେ ଯିବା ଶୋଭିବ ନାହିଁ ତୋତେ
ତରୁଣୀ ତରୁତଳେ ଆଶ୍ରା କରିବୁ କେତେ
ଭରସା ନାହିଁ ମୋର ଦୁର୍ଦ୍ଦଶା ଅଛି ଘଟି । ୩ ।

ରାଣୀ—ନାଥ ! ମୋର ପତି ଯେଉଁଠି ମୋର ରାଜ୍ୟ ସେଇଠି, ଆଜ ଆପଣ ଯେବେ ଇନ୍ଦ୍ର ହୋଇଥାନ୍ତେ, ମୁଁ ପାରିଜାତ ହାର ଗଳାରେ ପକାଇ ଆପଣଙ୍କ ବାମ ପାର୍ଶ୍ୱରେ ଶଚୀ ହୋଇ ବସିଥାନ୍ତି ! ବିଧାତା ନସ୍ୱମରୁ ଯେବେ ଆପଣଙ୍କୁ ଭିକ୍ଷା ମାଗିବାକୁ ହେଲା, ତେବେ ମୁଁ ମଧ ଆପଣଙ୍କ ସହଚରୀ ହୋଇ କରଙ୍କ ବହନ କରି ବୁଲିବି । ହିମାଳୟ-ନନ୍ଦିନୀ ଜଗତ-ଜନନୀ ପତି ସଙ୍ଗେ ଯୋଗୀ ସାଜି କାଞ୍ଚନ ଦେହକୁ ଭସ୍ମ ଭୂଷିତା କରିଥିଲେ, ମୁଁ ମଧ ସେହି ମହାଶକ୍ତି ଅଂଶେ ଜନ୍ମ । ମହାରାଜ ପୁରୁଷର ବଳ ତାର ହୃଦୟରେ ।

ରାଜା—କାହିଁଗଲ ବିଶ୍ୱାମିତ୍ର, ଆସି ଦେଖ ତୁମ୍ଭେ ଛାର କି ସାମାନ୍ୟ ଐଶ୍ୱର୍ଯ୍ୟ ନେଇଛ, ଆସି ଦେଖ, ଦେଖିଯାଅ ତୁମ୍ଭେ, ହରିଶ୍ଚନ୍ଦ୍ରକୁ କାଙ୍ଗାଳ କରିପାରି ନାହିଁ,ଥରେ ଆସି ଦେଖିଯାଅ ବିଶ୍ୱାମିତ୍ର, ହରିଶ୍ଚନ୍ଦ୍ର ବକ୍ଷରେ କି କୌସ୍ତୁଭ ଲକ୍ଷ୍ମୀରତ୍ନ ଶୋଭା ପାଉଅଛି, କି କମଳା ତାର ହୃଦୟ-ସାଗର ଆଲୋକିତ କରୁଅଛି, କି ତ୍ରିଲୋକ ଦୁର୍ଲଭ କି ଅସୀମ ପ୍ରେମରାଜ୍ୟ ସଙ୍ଗେ ନେଇ ତୁମ୍ଭଙ୍କୁ ଛାର ମୃତ୍ତିକା ପୃଥିବୀ ତ୍ୟାଗକରି ଯାଉଛି । ଯେତେ କିଛି ସୁଖ ଅଛି ଏହି ଧରାତଳେ, ସକଳ ସୁଖର ସୁଖ ପତ୍ନୀ । ଚାଲ ପ୍ରିୟେ ଶୀଘ୍ରତର ଗୃହତ୍ୟାଗ କରିବା । ଏ ବେଶ ଭୂଷାରେ ଆଉ କିଛି ପ୍ରୟୋଜନ ନାହିଁ ।

ରାଣୀ—ବୁଝିଛି ମହାରାଜ ! ଏ ରତ୍ନ ଅଳଙ୍କାର କି ମୋର ନୁହେ ।

ରାଜା—ପ୍ରିୟତମେ ! ତୁମ୍ଭେ ମୋର ସର୍ବସ୍ୱ ! ତୁମ୍ଭଙ୍କୁ ଭୂଷଣହୀନା କିପରି ଦେଖିବି ।

ରାଣୀ—ଏହି ଅମୂଲ୍ୟ ରତ୍ନହାର ଆଜଠାରୁ ମୁଁ ହଜା ନଶି ଗଳାରେ ପିନ୍ଧିଥିବି । ଆସ ନାଥ ପିନ୍ଧାଇଦିଅ ।

ରାଜା—ଦୁଃଖର ଏତେ ପୁରସ୍କାର; ଜଗଦୀଶ୍ୱର ! ସ୍ନେହ ପାରିଜାତ ଦେଖାଇବା ଲାଗି ସହାନୁଭୂତି ଅମୃତ ପାନ କରାଇବା ଲାଗି କଣ ତୁମ୍ଭେ ଦୁଃଖ ସୃଷ୍ଟି କରିଅଛ ।

ରାଣୀ ଚାଲ ରୋହିତକୁ ସଙ୍ଗରେ ନେଇଯିବା ।

---

## ଷଷ୍ଠ ଦୃଶ୍ୟ

( ସଖୀବୃନ୍ଦ ଗୀତ )

ଆସ ଆସ ସହି                    ବେଳ ଆଉ ନାହିଁ
ଦୁଃଖ-ନଶି ଘୋଟି ଆସିଲା,
ଅଯୋଧ୍ୟାର ଚନ୍ଦ୍ର                    ଦାତା ହରିଶ୍ଚନ୍ଦ୍ର
କାଳରାହୁ ଆସି ଗ୍ରାସିଲା ।
ନାହିଁ ଏ ଭବନେ ସୁଖ ଶାନ୍ତି ଆଉ
ହଟିଆ ବିଧାତା ସାଧିଲାଣି ଦାଉ
ଧରମ କରମ ସବୁ କ୍ରୂର କାଳ ଶୋଷିଲା ।

ବିଶ୍ୱାମିତ୍ର—ଏ କି କୋଳାହଳ, ବୋଧହୁଏ ଦାତା ହରିଶ୍ଚନ୍ଦ୍ର ବିଚ୍ଛେଦରେ ଅଯୋଧ୍ୟାବାସିମାନେ ରାଜ୍ୟ ଛାଡ଼ି ପଳାଉଛନ୍ତି । ତେବେ ମୁଁ କାହାକୁ ନେଇ ରାଜ୍ୟ ଚଳାଇବି, ଏ କିଏ ?

( ସେନାପତି ପ୍ରବେଶ )

ବିଶ୍ୱାମିତ୍ର—ତୁମ୍ଭେ କିଏ, ତୁମେ କଣ ମନେ କରି ଆସିଲ ?

ସେନାପତି—ମହାରାଜ ହରିଶ୍ଚନ୍ଦ୍ର ମୋର ଅନ୍ନଦାତା । ତାଙ୍କ ଅନୁସନ୍ଧାନରେ ଯିବିବୋଲି ମନ୍ତ୍ରୀଙ୍କଠାରୁ ଅନୁମତି ନେବାକୁ ଆସିଅଛି ।

ବିଶ୍ୱାମିତ୍ର—ମନ୍ତ୍ରୀ ମହାଶୟଙ୍କ ଅନୁମତି ? ତେବେ ମୁଁ କଣ କେହି ନୁହେଁ ? ତୁମ୍ଭେ ଜାଣ, ତୁମ୍ଭର ରାଜା ମୋତେ ସର୍ବସ୍ୱ ଦାନ କରିଛନ୍ତି । ଏ ରାଜତ୍ୱ ମୋର । ତୁମ୍ଭେମାନେ ମୋର ଅଧୀନ ପ୍ରଜା । ଆମ୍ଭ ଇଚ୍ଛାନୁସାରେ କାର୍ଯ୍ୟ କରିବା ତୁମ୍ଭମାନଙ୍କର ଅଧିକାର ନାହିଁ ।

ସେନା—ମହାରାଜ ହରିଶ୍ଚନ୍ଦ୍ର ଆପଣଙ୍କୁ ସର୍ବସ୍ୱ ଦାନ କରିଛନ୍ତି ସତ୍ୟ, ଏ ରାଜତ୍ୱ ଆପଣଙ୍କର ଏକଥା ସତ୍ୟ;କିନ୍ତୁ ପ୍ରଜାଙ୍କର ଇଚ୍ଛା ଉପରେ ତାଙ୍କର କିଛି ଅଧିକାର ନଥିଲା କି ପ୍ରଜା ଇଚ୍ଛାକୁ ସେ ଦାନ କରି ପାରନ୍ତି ନାହିଁ । ପ୍ରଜାଙ୍କ ଇଚ୍ଛା ନ ଥିଲେ ସେ କଣ ବଳପୂର୍ବକ ରାଜ୍ୟରେ ବାସ କରାଇ ପାରିବେ ।

ବିଶ୍ୱା—ତୁମ୍ଭେ କଣ କହିବାକୁ ଚାହୁଁଛ ? ମନେରଖ, ଏ ଅଙ୍ଗୁଳିରେ ଆଜ ଫୁଲମାଳ ଧରିଛି ବୋଲି ଧନୁ ଚାଳନା ପୂର୍ବସଂସ୍କାର ଭୁଲି ଯାଇନାହିଁ ?

ଜଳଧର—ଆପଣଙ୍କର ପୂର୍ବସଂସ୍କାର ଥାଇପାରେ, କିନ୍ତୁ ଜଟା ବଳ୍କଳ ଧାରଣକରି ରଣବନ୍ଧ କରିବା ଋଷିପୁର ଧର୍ମ ନୁହେଁ ।

ବିଶ୍ୱା ତୁମ୍ଭର କଥା ବିଦ୍ରୋହ-ଉତ୍ତେଜକ । ବିଦ୍ରୋହିର ଶାସ୍ତି ପ୍ରାଣଦଣ୍ଡ !

ଜଳଧର—କେ କହେ ବିଶ୍ୱାମିତ୍ର ହୃଦୟରେ ଦୟା ନାହିଁ । ଦୟାମୟ ଶୀଘ୍ର ସେକଥା କରନ୍ତୁ, ଶୀଘ୍ର ପ୍ରାଣଦଣ୍ଡ ଆଜ୍ଞା ଦିଅନ୍ତୁ । ସେତେବେଳେ ଏ ଦଗ୍ଧ ନୟନ ରାଜଚକ୍ରବର୍ତ୍ତୀ ହରିଶ୍ଚନ୍ଦ୍ରଙ୍କୁ ଆଉ ଭିକାରି ବେଶରେ ଦେଖିବ ନାହିଁ । ରାଜର୍ଷି ! ପ୍ରକୃତରେ ମୁଁ ବିଦ୍ରୋହୀ । ଯମାଳୟ ମୋର ଉପଯୁକ୍ତ ସ୍ଥାନ !

ବିଶ୍ୱା—ତୁମ୍ଭେ ପ୍ରାଣଭୟ କର ନାହିଁ, ଆଚ୍ଛା ତୁମ୍ଭେ ଯାଅ ।

---

# ତୃତୀୟ ଅଭିନୟ

## ପ୍ରଥମ ଦୃଶ୍ୟ

( ହରିଶ୍ଚନ୍ଦ୍ର, ଶୈବ୍ୟା ଓ ରୋହିତ )

ରୋହିତ—ମା,ମା, ମୁଁ ଆଉ ଚାଲିପାରିବି ନାହିଁ । ମୋର ଗୋଡ଼ କଣ ହୋଇ ଯାଉଛି ।

ଶୈବ୍ୟା—ବାପରେ, ଆଉ ଅଳ୍ପବାଟ ଚାଲ, ଆଗରେ ଗ୍ରାମ ପଡ଼ିବ । ସେଇଠାରେ ବିଶ୍ରାମ ନେବା ।

ରୋହିତ—ନା ମା, ମୁଁ ଆଉ ଦଣ୍ଡେ ଚାଲିପାରିବି ନାହିଁ ।

( କନ୍ଦନ ଗୀତ )

ମାତ ଆଉ ଚଳୁନାହିଁ ଶୁଖିଲାଣି କଣ୍ଠ ମା,
ଆଣିଦିଅ ମୋତେ ଅନ୍ନ ଭୁଞ୍ଜିବି କରି ଯତନ
ହେବ ଏ କ୍ଷୁଧା ମେଣ୍ଟଣ ପିଇ ଚାଲି ଯିଁବ ମା ।

ମୋତେ ଟିକିଏ ଅନ୍ନ ଦିଅ, ମୁଁ ଖାଇଲେ ବଞ୍ଚିବ ନଚେତ୍ ମୋର ପ୍ରାଣ ଗଲା ।

ଶୈବ୍ୟା—ହା ଦଇବରେ, ଯାହାଙ୍କୁ ଘରେ ଖାଇ ସରୁ ନଥିଲା, ସେ ଆଜ ସାମାନ୍ୟ ଭାତମୁଠାକ ପାଇଁ ଏତେ ଆତୁର, ନାଥ କଣ କରିବି ।

ରାଜା—ପ୍ରିୟେ ମୋର ଜ୍ୱର କଣ ।

ରୋହିତ— (ଗୀତ)

| | |
|---|---|
| ଚରଣ ଚାଲିଲା ପରି | ପ୍ରଗତ ହୁଏ ମୋହର |
| କ୍ଷୁଧାନଳ ଦିଏ ଘାରି | ସହିନୁହେ କଷ୍ଟ ମା ॥ |

ମା ଏଇଥର ପ୍ରାଣଗଲା ।

ଶୈବ୍ୟା—ନାଥ ! କଣ କରିବି ? କେଉଁଠାରୁ ଅନ୍ନ ପାଇବି । ଆପଣ କହିଲେ ଯାଆନ୍ତୁ କେଉଁଠାରୁ ଅନ୍ନଟିକିଏ ମାଗି ଆଣିବେ ।

ରାଜା—କେଉଁଠାକୁ ଯିବି, କଣ କହି ମାଗିବି ।

ଶୈବ୍ୟା—ନାଥ । ଲଜ୍ଜା କରୁଛନ୍ତି ?

ରାଜା—ପ୍ରିୟେ ! କି କଥା କହୁଛ, ରୋହିତ କ୍ଷୁଧାରେ ଆତୁର, ହେଉଛି, ମୋତେ ଲଜ୍ଜା ହେଉଛି ? ତେବେ ସନ୍ଧାନ କରେ ।

ରାଣୀ—ହା ଦଇବ ! ତୋର ଏହି ବିବେକ, ତୋହର ଏହି ବିଚାର । ଯାହାର ଅନ୍ନରେ ଅଯୋଧ୍ୟାବାସୀ ପ୍ରତିପାଳିତ, ସେ ଆଜ ପଥର ଭିକାରି !

(ଗୀତ) ବିଧି କି ନ କଲରେ ଏ ଦଣ୍ଡ ଦେଲୁ ।
ଦଣ୍ଡ-କୁଣ୍ଡଧାରୀ ଅନ୍ନ ଛଡ଼ ନେଲୁ ।

ଯାର ପାଦତଳେ କୋଟି କୋଟି ଦାସ ଦାସୀ, ଯାର ଭଣ୍ଡାର କୁବେରର ଭଣ୍ଡାର ପରି, ଯାର ଲକ୍ଷ ଲକ୍ଷ ଲୋକଙ୍କୁ ଦୈନିକ ପଡ଼ ଖଞ୍ଜା, ସେ ପୁଣି ଆଜ ଧନ ଅରକ୍ଷ ।

(ଗୀତ)

ଯେ ଦାନ ପଣରେ ଶ୍ରେଷ୍ଠ
ଯା ନାମ ଘୋଷେ ଜଗତ ।
ସେ ଆଜ ଧନ ଅରକ୍ଷ
କରନ୍ତି ବଡ଼େ ଭିକ୍ଷା ଝୋଲ ।

ଦଇବରେ ! ତୁ କ୍ଷଣକେ ମାନବଙ୍କୁ ହସାଇ ଦେଇ ପାରୁ, କ୍ଷଣକେ କନ୍ଦାଇ ପାରୁ, ତୋର ଲୀଳା କେ ବୁଝିବ । କାହିଁ ରାଜରାଜେଶ୍ୱର, କାହିଁ ପଥର ଭିକାରି । ଏଇ ଆସିଲେ ଚାଲ, ବାପ ! ଉଠ ।

ହରି—ପ୍ରିୟେ ! ମୁଠିଏ ଭାତ ଚୋରାଣି ମିଳିଲା, କୌଣସି ପାତ୍ର ନ ପାଇ ଏ ଖପରା ଖଣ୍ଡିକରେ ଆଣିଲି । ମନରେ କୌଣସି କଷ୍ଟ ଆଣିବ ନାହିଁ । ରୋହି-ତକୁ ଉଠାଅ ( ରୋହିତ ଉଠି )

ରୋହିତ—ମା ମୁଁ କଣ ଏକା ଖାଇବି ? ବାବାତ କାଲଠାରୁ କିଛି ଖାଇନାହାନ୍ତି, ତୁମେ ବି ଉପ-ବାସରେ ଅଛ । ଆସ ସମସ୍ତେ ବାଣ୍ଟିକରି ଖାଇବା ।

ରାଜା—ଆଚ୍ଛା ତୁ ଖାଇସାରୁ, ଆମ୍ଭେମାନେ ପଛରେ ଖାଇବୁ ।

ରୋହିତ—ନାହିଁ ନାହିଁ, ତୁମ୍ଭେ ଆଗ ନିଅ ।

(ତଥାକରଣ)

ଭିକ୍ଷୁକମାନେ—ହେ ବାବା, ହେ ମା, ଈଶ୍ବର ତୁମ୍ଭର ମଙ୍ଗଳ କରିବେ, ଆମ୍ଭମାନଙ୍କୁ ଗଣ୍ଡିଏ ଦେ, ହେ ମା, ହେ ବାବା !

ଗୀତ—

ଦେ ଦେ ଦେରେ ବାବା ଭିକାରୀକୁ ମୁଠାଏ ଦେ ।
ସରିଯିବ ନାହିଁଟି ତୋର
ହରି ତୋର ବଢ଼ନ୍ତି କରିବେ ।
ପରପେଟ ଶଢ଼ିଲେ ତୁନ୍ଦି ।
ତୋର ପେଟ ଜାଣିବ କେହି ।
ଦୟା ପଦ ଯା ଠାରେ ନାହିଁ
ଧିକ ଜନ୍ମ ତାର ଏ ଭବେ
ହେ ମା ମୁଠାଏ ଦେ ।

ହରି—ଆରେ ଭାଇ, ଆମ୍ଭେମାନେ ତୁମ୍ଭଠାରୁ କାଙ୍ଗାଳ । ବର୍ତ୍ତମାନ ମୁଠିଏ ଏ ଗ୍ରାମରୁ ମାଗି ଆଣି ତିନପ୍ରାଣୀ ଘେରି ବସିଛୁଁ ।

ଭିକ୍ଷୁ—ଆରେ ସେଇଥିରୁ ମୁଠାଏ ଦେ ।

ରୋହିତ- ବାବା ! ମୁଁ ଖାଇବି ନାହିଁ । ମୋର କ୍ଷୁଧା ତୃଷା ଏମାନଙ୍କୁ ଦେଖି ପଳାଇଗଲାଣି, ତୁମ୍ଭେ ଖାଇ-ବତ ଖାଅ, ମୋ ଭାଗ ଏ କାଙ୍ଗାଳମାନଙ୍କୁ ଦେବି ।

ହରି- ରୋହିତ, ତୁ ଅଭୁକ୍ତା ହେବାରୁ ଆମ୍ଭେମାନେ ବସିଥିଲୁ ସିନା ହେ ତୋର ଇଚ୍ଛା, ଯାଆ କାଙ୍ଗାଳ-ମାନଙ୍କୁ ଦେ । ( ଭିକାରୀଙ୍କୁ ଦେବା )

ଶୈବ୍ୟା—ଚାଲ ନାଥ କୌଣସି ଗ୍ରାମ ନିକଟକୁ ଯିବା ।

ରାଜା—ଚାଲ ତେବେ ।

---

## ଦ୍ୱିତୀୟ ଦୃଶ୍ୟ

( ବ୍ରାହ୍ମଣ ଦୁଇଜଣ )

୧ମ—ଭାଇନା, ଆମ୍ଭଠାରୁ କପାଳିଆ ଏ ଦୁନିଆରେ କେହି ନାହାନ୍ତି, କହନ୍ତି ବ୍ରାହ୍ମଣ କାଙ୍ଗାଳ, ଏଣୁ ଦାତା ହରିଶ୍ଚନ୍ଦ୍ର ଯୋଗୁ ଆମ୍ଭମାନଙ୍କ କାଙ୍ଗାଳ-ପଣିଆଟା ଘୁଞ୍ଚିଯାଇଛି । କଣ ଖାଇବ ? ପୁରି ଲଡ଼ୁ ଛଡ଼ା ତ ତଳ ହୁଡ଼ୁମ ପତରରେ ପଡ଼େନାହିଁ । ବସାଦହି ତୁଣ୍ଡରେ କଣ୍ଟାହୋଇ ବଢ଼ିଯାଏ । ଆଉ ପ୍ରତିଦିନ ଦାନ ନେଇ ନେଇ କୋଠାବାଡ଼ି କରିଗଲୁଣି । ଆଉ ଏପରି ରାଜା କେବେ ଏ ଦେଶ ଦେଖି ନ ଥିଲୁ ।

୨ୟ—ଗୋବର୍ଦ୍ଧନ ! କୋଠାବାଡ଼ି ତ ହେଲାଣି । ଆଉ ଦଉଡ଼ିରୁ କଣ ।

୧ମ—ଭାଇନା, ବୁଝିନାକି ପ୍ରକୃତଃ ନୈବମୂର୍ଖତେ । ତିଳିକି ପଡ଼ ସ୍ୱର୍ଗକୁ ଯାଏ, ଧାନ କୁଟାରୁ କି ରହିତ ହେବ, ସେଟା ଆମ୍ଭ ପିତୃ-ପିତାମହଙ୍କ ବେଉସା ।

୨ୟ—ଚାଲ ଦାନ ସମୟ ହୋଇଗଲାଣି, କଥା କହୁ କହୁ ଦିନ ଯିବ ।

(ଜୟ ଦାତା ହରିଶ୍ଚନ୍ଦ୍ରଙ୍କର ଜୟ)

( ଦୂତର ପ୍ରବେଶ )

କାହାର କଣ ହେଲାଣି ଏଗୁଡ଼ାଙ୍କର ଖାଲି ପେଟ-ଚିନ୍ତା ।

୧ମ—କିରେ ଦୂତ, ଆଜି କଣ ଦାନ ସରିଗଲାଣି କି ?

ଦୂତ—ହିଁ, ଦାନ ସରିଗଲାଣି, ବ୍ରାହ୍ମଣମାନେ ଭୋଜନରେ ବସିଛନ୍ତି ।

୧ମ—ଭାଇନା, ଯେଉଁଠି ଥିବ ଟିକା କହୁ କହୁ ଦିନ ଯିବ, ଏବେ ଯାଇଲ । ହେ ଦୂତ ! କଡ ବେଶୀ ନାହାନ୍ତି ଦୁଇଜଣ ବ୍ରାହ୍ମଣ ଉପବାସରେ ରହି-ଯାଇଛନ୍ତି ।

ଦୂତ—ନା ନା, ସେ କଥା ହେବନାହିଁ ।

ବ୍ରାହ୍ମଣ ମହାରାଜ ! ଦୁଇଜଣ ଗରିବ ବ୍ରାହ୍ମଣ ଉପବାସରେ ମଲେ, ଭୋଜନ ମୁଠିଏ ମିଳୁ ।

ଦୂତ—ମଲେରେ ଏଗୁଡ଼ାକ । ହେ ଗୋସାଇଁ ! ଆଜ ଈଶ୍ୱର ହୋଇଥିଲା ଯେଉଁମାନେ ଫାଟକପରେ ଆସିବେ ସେମାନେ ଫେରିଯିବେ; ଯଦି ବିଶେଷ ଜଞ୍ଜାଳ କରନ୍ତି ତେବେ ମୁଠାଏ ମିଳିବ, କିନ୍ତୁ ଗୋଟିଏ କାର୍ଯ୍ୟ କରିବାକୁ ହେବ ।

୧ମ—କି କାର୍ଯ୍ୟ କୁହ ଆମ୍ଭେ ପ୍ରସ୍ତୁତ ।

ଦୂତ—ତୁମ୍ଭେମାନେ କାନ ନାକ ଧରି କୋଡ଼ିଏ ଥର ଉଠ୍ ବସ ହୁଅ, ତା ପରେ ମିଳିବ ।

(ବ୍ରାହ୍ମଣ ତଥା କରଣ)

ଦୂତ—ଥାଉ ଥାଉ, କାହାର କଣ ହେଲାଣି ସ୍ୱାଙ୍କ ନଦ ଭାଙ୍ଗିନାହିଁ ।

( ଗୀତ )

ନନା, ଯାଉଲାଣି ତପ୍ୟା ଧରମରେ ଯୋଦ୍ଧା କରମ
ଏ ଅଯୋଧ୍ୟାଧାମ ହେଲା ଆଜ
ଶୂନ୍ୟ ହଇବର ଦୁର୍ଘଟଣ
ନନା ! ସବୁ ସରିଗଲାଣି ସବୁ ସରିଗଲାଣି
ଏ ଅଯୋଧ୍ୟାଶିରୀ ଚୁଲି ଗଲାଣି !

୧ମ—କଣ କଥା କଣ ?

ଦୂତ— (ଗୀତ)

ବିଶ୍ୱାମିତ୍ରେ ଦାନ ଦେଲେଣି ରାଜନ
ଏ ପୁଣ୍ୟ ଅଯୋଧ୍ୟା ଧାମ ।
ନନା ! ଏ ରାଜସିଂହାସନ ରାଜା ଆମ୍ଭର ବିଶ୍ୱାମିତ୍ରଙ୍କୁ ଦାନକରି ଏଠାରୁ କାଶୀ ଗଲେ ।

୧ମ—ହେଉପ ଜଣ କହୁଛୁ, ଯେତ କଥା, ଆଛା ଯାଉଁକି କାଶୀ ଗଲେ ।

ଦୂତ— (ଗୀତ)

ଦାନର ଦକ୍ଷିଣା ଦେବେ ଠିକଣା
ଅନ୍ନାଦିକ ତନିକରି ।
ନନା ! ରାଜା ଆମ୍ଭର ପ୍ରଥମ ଦାନକର ଦକ୍ଷିଣା ନ ପାଇବାରୁ କାଶୀ କ୍ଷେତ୍ରକୁ ଗଲେ । ସେଠାରେ ଆତ୍ମବିକ୍ରୟ କରି ଋଷିଙ୍କ ଦକ୍ଷିଣା ଦେବେ ।

ଦୂତ— (ଗୀତ)

ବାଳକୃଷ୍ଣ ବୋଲେ କି ହେବ ଶୁଣିଲେ
ଝୁରି ଝୁରି ଯିବ ହୃଦରେ
ନନା ! ସବୁ ସରି ଗଲାଣି, ଯାଅ, ଆଉ କାହିଁକି ବ୍ୟସ୍ତ ହେଉଛ ।

୧ମ ଭାଇନା ! ଆଜ ଯେଉଁ ବଦମଙ୍ଗଳ ମୁହଁ ଗୁହିଁ ଘରୁ ବାହାରିଥିଲେ କେଡ଼େ ବଡ଼ କଥାଟାଏ ଶୁଣିଲେ, ଚାଲ ଗୋଡ଼ାଇ ଗୋଡ଼ାଇ ଯିବା, ଟିକିଏ ଦେଖାକରି ଆସିବା ।

---

## ତୃତୀୟ ଦୃଶ୍ୟ

ରାଜା-ରାଣୀ-ରୋହିତ ।

ରାଜା—ପ୍ରିୟେ ! ତୁମ୍ଭଙ୍କୁ ବହୁତ କଷ୍ଟ ହେବଣି, ମୋତେ ଦିଅ ମୁଁ କିଛି ପଥ କୋଳକରି ନେଇ ଯାଏ, ଆ ! ବାପ ମୋ କୋଳକୁ ଆ' ( କାଖ କରି ) କାଶୀଦ୍ୱାଟ ଆଉ କେତେ ବାଟ ପଡ଼ିବ କେଜାଣି ଲୋକ ଦେଖା ହେଲେ ପଚାରନ୍ତେ, ଏମାନେ କିଏ ।

୨ୟ ବ୍ରାହ୍ମଣ—ଗୋବର୍ଦ୍ଧନ ଦେଖିଲୁଣି କିଏ ଦୁଇ ତିନିଜଣ ଯାଉଛନ୍ତି ।

୧ମ—ଭାଇନା ! ତମ ଆଖିରେ କଣ ପରଳ ମାଡ଼ିଗଲାଣି କି, ଏଗୁଡ଼ାକ କିଏ କାଙ୍ଗାଳ ଯାଉଛନ୍ତି, ଆଛା ଏହାଙ୍କଠାରୁ ସନ୍ଧାନ ବୁଝିବା । ହଇହେ ! ଏବାଟେ ଅନ୍ଧ ମହାରାଜ ଗଲେ କି ?

ହରି—ତୁମ୍ଭ ମହାରାଜ କିଏ, ଆମ୍ଭେତ ଚିହ୍ନିନାହୁଁ ।

୧ମ—ତୁ ଚିହ୍ନିନାହୁଁ, ଦାତା ହରିଶ୍ଚନ୍ଦ୍ରଙ୍କୁ ଚିହ୍ନିନାହୁଁ ।

ହରି—ସେ କେବେ ଦାତା ଥିଲେ ବର୍ତ୍ତମାନ ପଥର ଭିକାରି । ବ୍ରାହ୍ମଣମାନେ ! ଏ ହତଭାଗା ସେହି ହରିଶ୍ଚନ୍ଦ୍ର ।

( ପ୍ରଣାମ କରଣ )

୧ମ—ହା ବିଧାତାରେ ! ରାଜଚକ୍ରବର୍ତ୍ତୀଙ୍କର ଏହି ଦଶା, ମହାରାଜ ଅଜଣାରେ କଣ କହି ପକାଇଲୁ !

ହରି—କିଛି ଚିନ୍ତା ନାହିଁ, ତୁମ୍ଭେମାନେ କୁଆଡ଼େ ଆସିଲ ।

୧ମ—ମହାରାଜ ! ଆମ୍ଭେମାନେ ତୁମ୍ଭର ଅନ୍ନରେ ପ୍ରତିପାଳିତ, ଆଜି ରାଜଦରବାରକୁ ଦାନ ଆଶାରେ ପାଇଁ ଆପଣଙ୍କ ଅବସ୍ଥା ଶୁଣି ସାକ୍ଷାତ ନିମନ୍ତେ ଆସିଲୁ ।

ରାଜା—ଗୋସାଇଁ ! ହରିଶ୍ଚନ୍ଦ୍ରଙ୍କର ଆଉ ରାଜ୍ୟ ନାହିଁ, ହରିଶ୍ଚନ୍ଦ୍ର ଗଗନ ଭିକାରି !

ରୋହିତ—ପିତା ! ମୋର ଗଳାରେ ଏ ଯେଉଁ ରତ୍ନ ହାରଟି ଅଛି ତାକୁ ଏ ବ୍ରାହ୍ମଣମାନଙ୍କୁ ଦେଇ ଜୀବନ ଧନ୍ୟ କରିବି ।

ବିଶ୍ୱାମିତ୍ର—ଜୀବନ ଧନ୍ୟ କରିବେ ସତ୍ୟ, ଜୟ ବତ୍ସ ! ଏ ହାର ତୋର ପିତା ଦେଇଥିଲେ ନା କୁବେରର ଭଣ୍ଡାରରୁ ଜୟ କରି ଆଣିଥିଲୁ ।

(ଗୀତ)

କହ ରାଜପୁତ୍ର କାହାର ଏ ବିତ୍ତ
ଅର୍ପୁଛୁ ବ୍ରାହ୍ମଣ କରେ ।
ପୈତୃକ ସମ୍ପତ୍ତି, ପିତା ତୋର ଅର୍ପି,
ଦେଇଛନ୍ତି ମୋହ କରେ ।
ତୁ କି ନ ଜାଣୁ ଧନ,
(ଆଜ) ବ୍ରାହ୍ମଣ ହରଣେ ଦେଉଛ ମନ ॥

ମହାରାଜ ! ପୁତ୍ରକୁ ବେଶ୍ ଶିକ୍ଷା ଦେଉଛନ୍ତି, ବତ୍ସ ! କା'ର ଧନ ଏଠାରେ ଦାନ କରୁଅଛ ?

(ଗୀତ)

ଅଙ୍ଗ ଅଳଙ୍କାର        କାହାରେ କୁମର
କୁଣ୍ଠିତ ନ ହୁଅ ମନେ ।
ତୋ ନିଜ ଅର୍ଜନ        କରି ପାରୁ ଦାନ,
ଡକାଇ ଯୋଗ୍ୟ ବ୍ରାହ୍ମଣେ;
ନହିଁ ନାହିଁ ଚିନ୍ତା ।
ଦାନପଣେ ହୁଅ ସାମରଥ ।୨।

ବତ୍ସ ! ତୋହର ନିଜ କମେଇବାର ଯାହା ଦାନ କରିବୁ ତହିଁରେ ମୋର କିଛିମାନ ଦାବୀ ନାହିଁ, ଏ ପଦାର୍ଥ ମୋର ତେ ଶିଘ୍ର କାଢ଼ି ଦେ (ଓଟାଇ ନେବା) ବ୍ରାହ୍ମଣେ ଧିକ୍ ଧିକ୍ ଧିକ୍ !

ବିଶ୍ୱା—ତୁଚ୍ଛକର ବ୍ରାହ୍ମଣେ, ମୋତେ ଚିହ୍ନି ନାହିଁ ?

ବ୍ରାହ୍ମଣେ—ରାଜର୍ଷି ! ବେଶ ଚିହ୍ନୁ, କଅଁଳା ପିଲା ଠାରିଟାପି ଧନ ନେବା ଋଷିଙ୍କୁ କିଏ ନ ଚିହ୍ନିବ, ମହାରାଜ ! ତପସ୍ୟାକର ଅନୁମତି ହେଉ ଏ ଋଷିଙ୍କର ପାନା ପ୍ରାପ୍ୟ ଆମ୍ଭେମାନେ ଦେଇ ଆପଣଙ୍କୁ ଋଣମୁକ୍ତ କରିବୁ ।

ରାଜା—(ସ୍ୱଗତ) ବିଶ୍ୱନାଥ ! କିଏ କହିବ ତୋ ଜଗତରେ ଦୟା ନାହିଁ, ସହୃଦୟତା ନାହିଁ; ପରଦୁଃଖ କାତରତା ନାହିଁ, ଦାନପ୍ରାପ୍ତି ଇଚ୍ଛୁକ ବ୍ରାହ୍ମଣ ମୋଠୁ କିଛି ପାଇବା ଆଶାରେ ଆସିଥିଲେ, ସେମାନେ ପୁଣି ତାଙ୍କର ବହୁ ଦୁଃଖ କଷ୍ଟାର୍ଜିତ ଧନ ଦେଇ ମୋତେ ଏ ବିପଦରୁ ଉଦ୍ଧାର କରିବାକୁ ଉଦ୍ୟତ ।

ବିଶ୍ୱା—ମହାରାଜ ! କ'ଣ ଭାବୁଛନ୍ତି ? ଆପଣଙ୍କ ପୁଣ୍ୟ ବଳରୁ ଏ ଭିକାରି ବ୍ରାହ୍ମଣ ବି ଦାତା, ଏବେ ବ୍ରହ୍ମସ୍ୱ ହରଣ କରି ବ୍ରାହ୍ମଣ ଋଣ ପରିଶୋଧ କରନ୍ତୁ ।

ରାଜା—ବ୍ରାହ୍ମଣମାନେ; ତୁମ୍ଭଠାରୁ ଆଶୀର୍ବାଦ ଛଡ଼ା ଅନ୍ୟ କିଛି ଗ୍ରହଣ କରିବା କ୍ଷତ୍ରିୟର ନିୟମ ନୁହେଁ; ଋଷିବର ! ମୋତେ ଉପାୟ କହନ୍ତୁ କିପରି ଋଣମୁକ୍ତ ହେବି ।

ବିଶ୍ୱା—ଦରିଦ୍ର ସେବା ଭକ୍ତି କରି ପାରେ ନ ।

ହରି—ତେବେ ଆପଣଙ୍କ ସେବକରେ ରଖନ୍ତୁ ।

ବିଶ୍ୱା—ମୋର ଆବଶ୍ୟକ ନାହିଁ, ଅନ୍ୟଠାରେ ସନ୍ଧାନ କର, ସମୟ ଅନେକ ଦେଇଛି ! ମୁଁ ଆସେ !

ହରି—ଗୋସାଇଁ ! ଟିକିଏ କାଶୀ ନଗରକୁ ବାଟ ଦେଖାଇ ଦିଅନ୍ତୁ ।        ( ପ୍ରସ୍ଥାନ )

---

# ୪ର୍ଥ ଅଭିନୟ

## ପ୍ରଥମ ଦୃଶ୍ୟ

( ମାଧବବର୍ମା ଜଟାଧାରୀଙ୍କର ପ୍ରବେଶ )

ମାଧବ—        ଗୀତ

ଭଣଜାରେ ! କେଉଁ ଜନ ନିଜ ସଂସାରେ ।

ଏ ଯେ କଳିକାଳ   ହରିବ ବୁଦ୍ଧିବଳ
ମଜିବ ଖଳ କଥା ଯାହାରେ ।।

ଭଣଜା ! ଏ ଯେଉଁ ସମସ୍ତ ପଢ଼ୁଛୁ ତାହା ମାତ୍ର ବୃଥାଖଣ୍ଡକରେ ଯିବ ?

ଜଠା—ମାମୁଁ ଆଉ କ'ଣ ?

ମାଧବ— ଗୀତ

ଅବୀର୍ଯ୍ୟା ହେଲ ପୃଥ୍ୱୀ ମାନବ ଆୟୁ ତ୍ରୁଟି
ଖସିଲେ ପାପବୋଝେ ଯାହାରେ ।

ଭଣଜା ଆଜିକାଲି ଲୋକେ ପାପକଥାରେ ରତ ହେବାରୁ ବୃଷ୍ଟି ହାନି, ମନୁଷ୍ୟ ହାନି; ସବୁଥିରେ ହାନି ପଡ଼ିଗଲା ।

ଜଠା—ମାମୁଁ ଏତେ କଥା ତୁମ୍ଭେ ଜାଣ, ତେବେ ବୁଢ଼ାଦିନେ ଗୋଟିଏ ଛାନ୍ଦ ହୋଇଥିଲ କାହିଁକି ?

ମାଧବ— ଗୀତ

ମାଈପେ ହେଲେ ଷଣ୍ଢ ସ୍ୱାମୀରେ ହେଲେ ଦଣ୍ଡ
ଖଣ୍ଡେ ଏ କାଳେ ହେଲେ ଯାହାରେ ।।

ଆରେ ଭଣଜା ଏ ମାଈପଙ୍କୁ ବଳ ନାହିଁ । ତାଙ୍କ କଥା ନ ଜଗି ଚାଲିଲେ ଗୁଣ୍ଡୁଣି ପାହାର ଥୁଆ । ହଇରେ ଭଣଜା ! ତୋ ମାଇଁ ମୋତେ ରକ୍ଷା ଦେଲା ନାହିଁ, ସେ ଟିକିଏ କୋମଳାଙ୍ଗୀ । କାର୍ଯ୍ୟ ଧନ୍ଦା କରି ପାରେ ନାହିଁ, ସେଥିପାଇଁ ଗୋଟିଏ ଚାକରାଣୀ ଦରକାର, କ'ଣ କରିବା କହିଲୁ ? ସେ ତ ରହିଥୋଇ ଦେଲା ନାହିଁ ।

ଜଠା—ମାମୁଁ, ତେମେ ପାରୁ ନାହିଁ । ମାଈ ଯେବେ ମୋ ହାବୁଡ଼େ ପଡ଼ନ୍ତା ?

ମାଧବ—ପାଜିଟୋକା ! ହଇରେ ଟୋକା ! ମାଈ ତୋ ହାବୁଡ଼େ କ'ଣ ପଡ଼ନ୍ତା ? ବଗୁଲିଆ କାହାଁକା—

ଜଠା—ତେବେ ମୁଁ ଯାଉଛୁ ।

ମାଧବ—ଆରେ ଆ, ଆରେ ଆ, ମୋର ସେଥିରେ ଭାଇଲି, ହଇରେ ସେଇଁ ପକାଣେ ଆଇଲେ ସେ କଥା ଟିକିଏ ବୁଝ ।

ମାମୁଁ—ଦେଖିଲୁ ଏ କିଏ ଦୁଇଜଣ ଆସୁଛନ୍ତି ।

(ଶୈବ୍ୟା ଓ ରୋହିତର ଗୀତ)

ହେ କାଶୀବାସୀ   କା'ର ଦାସ ଦାସୀ
ଲୋଡ଼ା ଅଛି କି ଆସ ଆସ ହେ ।
ଚିରକାଳ ଆଶ୍ରି   ହୋଇବୁ ବଶମ୍ବାସୀ
ନିଆଶ୍ରିରେ ଦିଅ ବାସ ହେ ।

ହେ କାଶୀବାସୀ କା'ର ଦାସ ଦାସୀ ଲୋଡ଼ା ଅଛି କି ? କିଏ ନିଆଶ୍ରିମାନଙ୍କୁ ମୂଲ୍ୟ ଦେଇ ଖରିଦ କରିବ ।

ଜଠା—ମାମୁଁ ! ଗାଈ ବାଛୁରି ହେଲେ ?

ମାଧବ—ଚୁପ୍ କର ! ଆଲୋ ମା ? ତୋର ମୂଲ୍ୟ କେତେ, ତୁହି କହୁ ହେବୁ ?

ଶୈବ୍ୟା—ଗୋସାଇଁ ! ଏକା ମୋର ?

ଜଠା—ନା, ତୋ ଘର ହାଣ୍ଡି ମାଠିଆ, କୁଲାବାଉଁଶିଆ ପର୍ଯ୍ୟନ୍ତ ।

ରୋହିତ—ଗୋସାଇଁ ! ଥଟ୍ଟା କରିବା ଆବଶ୍ୟକ କ'ଣ ?

ଜଠା—ତୋତେ ଦେଖିକରି ? ମାରିବ ଏକ ଚାପୁଡ଼ା ଯେ,—

(ଚାପୁଡ଼ା ଘାତ ମାଧବ ପଡ଼ିଯାଇ)

ମାଧବ—ଆରେ ଜଠା ମାରି ପକାଇଲୁରେ, ଓହୋ;

ଜଠା—ମାମୁଁ ! ମୁଁ କ'ଣ ତମକୁ ମାରୁଥିଲି ।

ମାଧବ—ସେ ପିଲାଟେଇଁ ଯଦି ଏ ଚାପୁଡ଼ା ବାଜିଥାନ୍ତା ସେ କି ପ୍ରାଣ ପାଇଥାନ୍ତା । ଜଠା ! ତୋର ଭଲ ଲୋକ ମନ୍ଦ ଲୋକ ବିଚାର ନାହିଁ ।

ଜଠା—ଓହୋ ଭଦର ଲୋକ, ମାମୁଁ ? କହନ୍ତୁ ହେବ କିପରି ?

ମାଧବ—ହଉଲେ ମା, ମୂଲ୍ୟ କହିଲୁ ଶୁଣିବା ।

(ଶୈବ୍ୟା ଗୀତ)

ସହସ୍ରେକ ସ୍ୱର୍ଣ୍ଣ   ପ୍ରୟୋଜନ ମମ
ଏ ଜୀବନ କାଳ-ପାଶ ହେ ।
ହେବ କି କଲ୍ୟାଣ   କରିବେ ଗ୍ରହଣ
ଦେଇ ଧନ କରି ତୋଷ ହେ ।

ଗୋସାଇଁ ! ମୋର ସହସ୍ର ସ୍ୱର୍ଣ୍ଣମୁଦ୍ରା ଆବଶ୍ୟକ ।

ଜଠା—ମାମୁଁ, ମୂଲ୍ୟଟା ତ ଭାରି ଲମ୍ବା ଚଉଡ଼ା ହେଉଛି, ଘରକୁ ଗଲେ ସୁନା ଲଣ୍ଡ ହଗିବ କି ?

ମାଧବ—ଆଲୋ ମା, ଏତେ ମୂଲ୍ୟ ତ ମୁଁ ଦେଇ ପାରିବ ନାହିଁ । ଅନୁମତି ଦିଅନ୍ତୁ ।

ମାଧବ—ହଉ ହେଲା ।

ଜଟା – ମାମୁ, ବାଘଛାଲ ଖଣ୍ଡେ ପିଠିରେ ବାନ୍ଧିଥା ।

ବିଶ୍ୱାମିତ୍ର – ଏଇ ଯେ ମା ଲକ୍ଷ୍ମୀ ଏଇଠି ଅଛନ୍ତି, ତୁମର ସ୍ୱାମୀ କାହାନ୍ତି ? ମୋ ଦକ୍ଷିଣା ପ୍ରସ୍ତୁତ ହେଲାଣି ତ ?

ଶୈବ୍ୟା – ଦେବ ! ଆପଣଙ୍କ ଆଶୀର୍ବାଦରୁ ଅର୍ଦ୍ଧେକ ପାଇଅଛୁ ।

ବିଶ୍ୱା – ଅର୍ଦ୍ଧେକ, ପୁଣି ଆଉ ଅର୍ଦ୍ଧେକ ? ସୂର୍ଯ୍ୟ ଅସ୍ତମିତ ପ୍ରାୟ ଜାଣ ?

ଶୈବ୍ୟା – ପ୍ରଭୁ ! ମୋର ସାଧ୍ୟରେ ଏହାଠୁ ଅଧିକ ହେଲା ନାହିଁ । ( ବ୍ରାହ୍ମଣପ୍ରତି ) ପିତଃ ! ଆପଣ କୃପାକରି ସେହି ସୁବର୍ଣ୍ଣ ଦେବେ ଏହି ଋଷିବରଙ୍କୁ ପ୍ରଦାନ କରନ୍ତୁ ।

ମାଧବ – ( ତଥାକରଣ )

ଜଟା – ଆରେ ବାପରେ, ଏଇ ତୋର ମହାଜନ ? ଋଷି ବର କହିଲୁ କଣ ?

ବିଶ୍ୱା – ଚୁପରେ ମୂର୍ଖ !

ଜଟା – ନାହିଁ, ନାହିଁ ହେ ଗୋସାଇଁ ! ମୁଁ ତୁମର ଖାତକ ନୁହେଁ । ଗେରୁଆ ଲୁଗା ପିନ୍ଧି ରୁଦ୍ରାକ୍ଷ ମାଳା ପକାଇ ଏଠାରେ ବେଶ ଭୂଷା କରିଛୁ, ସୁଧ କାରବାର ଟା ବେଶ ଚଳୁଛି, ମାମୁଁ ଚାଲ ଯିବା ।

ବିଶ୍ୱା – ମା' ଲକ୍ଷ୍ମୀ ! କ'ଣ ଆତ୍ମବିକ୍ରୟ କରି ଏ ଅର୍ଥ ସଂଗ୍ରହ କଲ ? ତୁମେ ହିଁ ସତୀ, ମୋ ଆଶୀର୍ବାଦରୁ ଅମରତ୍ୱ ଲାଭକର ।

ଶୈବ୍ୟା – ଦେବ ! ମୋତେ ଆଉ ଏ ଆଶୀର୍ବାଦ କରନ୍ତୁ ନାହିଁ; ମୋତେ କଲ୍ୟାଣ କରନ୍ତୁ ମୁଁ ଶୀଘ୍ର ଏ ଦୁଃଖ ବୋଝ ବାବା ବିଶ୍ୱନାଥଙ୍କ ଶ୍ରୀଚରଣରେ ଖଲାସ କରେ ଆସି !

(ବ୍ରାହ୍ମଣ ପ୍ରତି)

—ଠାକୁରେ ! ମୁଁ ବର୍ତ୍ତମାନ ଯାହାର ଦାସୀ ସେ ମୋତେ ଉଚିତ ମୂଲ୍ୟରେ ଖରିଦ୍ କରିଥିଲେ, ମୋ ଶରୀର ଯେ କଣାଏ କଉଡ଼ିର ଯୋଗ୍ୟ ନୁହେଁ ତା ମୁଁ ଭଲକରି ଜାଣିପାରୁଛି; କିନ୍ତୁ ମୋର ପ୍ରଭୁ, ଜଣେ ବ୍ରାହ୍ମଣ ନିକଟରେ ସହସ୍ରେ ସ୍ୱର୍ଣ୍ଣମୁଦ୍ରା ଲାଗି ଋଣୀ, ତାଙ୍କ ସେହି ଋଣ ପରିଶୋଧ କରିବା ଲାଗି ଆତ୍ମ-ବିକ୍ରୟ କରୁଛି ।

ମାଧବ – ମୁଁ ଜଣେ ଗରିବ ବ୍ରାହ୍ମଣ । ମୁଁ ପଇସାଏ ସ୍ୱର୍ଣ୍ଣ ମୁଦ୍ରାଠୁ ବେଶି ଦେଇ ପାରିବ ନାହିଁ ? ଏଣିକି ତୋ ଇଚ୍ଛା ।

ଶୈବ୍ୟା – ସେଇଆ ହଉନ୍ତୁ, ମୁଁ ଯଥେଷ୍ଟ ଅନୁଗୃହୀତା ହେଲି ।

ରୋହିତ – ଗୋସାଇଁ ମୋ ପାଇଁ କେତେ ଦେବ ?

ମାଧବ – ତୋଠାରେ ତ ମୋର ପ୍ରୟୋଜନ ନାହିଁ ।

ରୋହିତ – ଗୋସାଇଁ ମୁଁ ସବୁ କାମ କରିବି, ତମଗୋଡ଼ ଘଷି ଦେବି, ମୁଁ ମା'ଙ୍କୁ ଛାଡ଼ି ରହି ପାରିବ ନାହିଁ ।

ଶୈବ୍ୟା—ପିତଃ ! ଯେବେ ଦୁଃଖିନୀ କନ୍ୟାର ଭାର ଗ୍ରହଣ କଲେ ତେବେ ତା'ର ଅବୋଧ ଶିଶୁକୁ ତା ପାଖରେ ରହିବାକୁ ଅନୁମତି ଦିଅନ୍ତୁ । ପୁଅଙ୍କୁ କୋଳରେ ଗଙ୍ଗା ଜଳରେ ଜୀବନ ତ୍ୟାଗ କରିବି, ଅମରତ୍ୱ ମୋ ପକ୍ଷରେ ଶୁଭ ଆଶୀର୍ବାଦ ନୁହେଁ ।

ବିଶ୍ୱା—ବତ୍ସେ ! ମୁଁ ତୁମର ଅମରତ୍ୱ ବର ପ୍ରଦାନ କରି ନାହିଁ, ସେପରି ଅମରତ୍ୱ ପୃଥିବୀର ଅନନ୍ତ ଯାତନାର ସମ୍ମାନ ମାତ୍ର, ଯେତେଦିନ ପର୍ଯ୍ୟନ୍ତ ଜଗତ୍‌ପ୍ରାଣ ସମୀରଣ ସଞ୍ଚାରିତ ହେଉଥିବ, ଯେତେଦିନ ପର୍ଯ୍ୟନ୍ତ ପୃଥିବୀରେ ଜୀବର ବାସ ଥିବ, ସେତେଦିନ ପର୍ଯ୍ୟନ୍ତ ତୁମର ପତିଭକ୍ତି ଆଦର୍ଶ ଦାମ୍ପତ୍ୟଦାୟିତ୍ୱ, ଦୁଃସ୍ଥାନ, ଆତ୍ମ ସର୍ଜନ ଜଗତରେ କୀର୍ତ୍ତିତ ହେଉଥିବ । ରମଣୀକୁଳ-ଶିରୋମଣି ଶୈବ୍ୟାଙ୍କର ନାମ ଜଗତରେ ଅମର ହୋଇଥିବ । ତୁମର ସ୍ୱାମୀ କାହାନ୍ତି ?

ଶୈବ୍ୟା—ଦେବ ! ସେ ଏଇଠି ନିକଟରେ କେଉଁଠି ଥିବେ, ମୁଁ ସ୍ନାନ କରିବାକୁ ଆସି ଗୋପନରେ ଆତ୍ମବିକ୍ରୟ କଲି, ତାଙ୍କ ଶ୍ରୀଚରଣରୁ ଅନୁମତି ନେଇ ପାରିଲି ନାହିଁ । ସେ ଏ କଥା ଶୁଣିଲେ ସେ କଣ ହେବେ ଏ କଥା ଭାବି ହୃଦୟ କମ୍ପିତ ହେଉଛି । ତାଙ୍କ ଧର୍ମ ତାଙ୍କୁ ରକ୍ଷା କରିବ, ମୁଁ ଚନ୍ଦ୍ର, ସୂର୍ଯ୍ୟ, ଭାଗୀରଥି ପୁଣ୍ୟଭୂମି ବାରାଣସୀ ଏମାନଙ୍କୁ ସାକ୍ଷୀ ଦେଇ ତାଙ୍କ ଶ୍ରୀ ଚରଣରୁ ବିଦାୟ ନେଲି । ଆପଣ ପ୍ରବୋଧ ଦେବେ ( ବ୍ରାହ୍ମଣ ପ୍ରତି ) ପିତା ଚାଲନ୍ତୁ ।

ବଶ୍ୱା ମହାରାଜ ! ମୁଁ ଭରତାଶ୍ରମରେ ଅନେକ ନାଟକାଭିନୟ ଦେଖିଛି । ଆପଣଙ୍କର ଏହି ଅପୂର୍ବ ଅଭିନୟ ସୁନ୍ଦର ହେଲେ ମଧ୍ୟ ମୋର ଦେଖିବାକୁ ଇଚ୍ଛା ନାହିଁ ।

ରାଜା—ଋଷିବର ! ଆପଣଙ୍କ ବାକ୍ୟରେ ବଜ୍ର ଅଛି ଦଗ୍ଧ କରୁ ନାହିଁ କାହିଁକି ?

ବଶ୍ୱା—ଦଗ୍ଧ ହେବାକୁ କଣ ଇଚ୍ଛା ଅଛି ? କାମନା ନ୍ତୃପ୍ତି ହେବ, ବଳମ୍ବ ନାହିଁ ସୂର୍ଯ୍ୟ ଅସ୍ତହେବା ପୂର୍ବରୁ ଋଣ ପରିଶୋଧ ନ କଲେ ତୁମ୍ଭର ସପ୍ତ-ପୁରୁଷ ଧର୍ମ କର୍ମ ସମସ୍ତ ଧ୍ୱଂସ ହେବ ।

ରାଜା—ତେଜସ୍ୱୀ ! ରକ୍ଷା କରନ୍ତୁ, କ୍ରୋଧ ସମ୍ବରଣ କରନ୍ତୁ, ମୁଁ ଆସ୍ତ୍ରଣ୍ଡାଳ ସେବା କରିବାକୁ ପ୍ରସ୍ତୁତ ।

ବଶ୍ୱା—ଏଥର ସୁବୁଦ୍ଧି ହେଲା; ଯାଅ ଆଗେ ଅନୁସନ୍ଧାନ କର । ( ପ୍ରସ୍ଥାନ )

ରାଜା—ଚାଲନ୍ତୁ ।

—*—

## ତୃତୀୟ ଦୃଶ୍ୟ

### ଚଣ୍ଡାଳଗୃହ

ସର୍ଦ୍ଦାର—ଝୀମନ ।

ଝୀମନ—କ ସର୍ଦ୍ଦାର ।

ସର୍ଦ୍ଦାର—ଘାଟ ଜଗିବା ଲାଗି ଗୋଟେ ନଉକର ଖୁଣ୍ଡି ଖୁଣ୍ଡି ଥକଲେଣି କାହିଁ ନାହିଁ ମିଳୁଚି ।

ଝୀମନ—ସରଦାରଜ, ଆଜକାଲ ନୌକର ମିଳିବା ବଡ଼ ମୁସ୍କିଲକା ବାତ; ହାମକୁ ଜାଦା ଲାଗୁଛି । ଚଲ କାଶୀ ହାଟକୁ ଯିବା ।

ସର୍ଦ୍ଦାର—ଚଲ ଝୀମନ ଚଲ ।

ଝୀମନ—ଏ ଦେଖ ସର୍ଦ୍ଦାର, କେ ଏକେଲକଟା ଆସୁଛି । ( ହରିଶ୍ଚନ୍ଦ୍ର ପ୍ରବେଶ )

ହରି—କେଉଁଠି କେ କାଶୀବାସୀ ଆସ, ଆସ ଦାସ କ୍ରୟକର, ଯାର ଦାସ ଲୋଡ଼ା ଅଛି, କାହାର ଜଳଘର ବହନ କରିବାକୁ ହେବ କଏ ତାକୁ ରଖିବାକୁ ସ୍ୱୀକାର ଦେବ ଆସ ଆସ କଣ ।

ଝୀମନ—କଏ କୁ ବକୀ ହେବୁରେ ?

ରାଜା—ବାପ ତୁମ୍ଭେମାନେ କଏ ।

ଝୀମନ—ତୁ ଚିହ୍ନୁ ନାହିଁ ? ଠିକାଦାରକୁ ଚିହ୍ନୁ ନାହିଁ, ହାମେ ଶ୍ମଶାନ ରକ୍ଷକ ଚଣ୍ଡାଳ ଅଛୁ, ନଉକର ଖୋଜୁଛୁ ତୁ କଣ ବକୀ ହେବୁ, ତୋର ଦାମ୍ କେତେ ତୋର ମୁରବି କେ ଅଛି ।

ହରି—ମୋତେ କ କାର୍ଯ୍ୟରେ ନିଯୁକ୍ତ କରାଇବେ ।

ଝୀମନ—ଆରେ ହନ୍ତମାମ ଧୂଷ୍ଟୁରି ଟଙ୍କାଇବୁ, ବନ୍ଦକୁ ଶ୍ମଶାନରେ ପହରା ଦବୁ । ସେ ସବୁ ମୁର୍ଦ୍ଦାର ପୋଡ଼ା ପୋଡ଼ା ହେବାକୁ ଆସିବେ ତାଙ୍କଠାରୁ ଘାଟ ମହାସୁଲ ନେଇ ପୋଡ଼ା ପୋଡ଼ା କରିବାକୁ ପାରିବୁ ତ ?

ହରି—(ସ୍ୱଗତ) ହା ବିଧାତା ! କାହିଁ ରାଜ-ରାଜେଶ୍ୱର କାହିଁ ଚଣ୍ଡାଳଘରେ ଶୂକର ଚାରଣ, ଦଇବ ! ତୋର ଏ ଛଳନା, ବିଶ୍ୱାମିତ୍ର ! ତୁମ୍ଭର—

(ବିଶ୍ୱାମିତ୍ର ପ୍ରବେଶ)

ବଶ୍ୱା—ମୋର କାହିଁକି, କ୍ଷଣେ ଅପେକ୍ଷା କର ବୁଝାଇ ଦେଉଛି ।

ଗୀତ

ଯେଉଁ ଧର୍ମ ନୃପ କରୁଥିଲୁ ଜପ
ସେହି ଧର୍ମ କର୍ମ ଏହି ଥରେ ଗୃହଁରେ ।
ମୋର କାହିଁକି ? ଯାର ତର ଆରାଧନା କରୁଥିଲ
ତୁମ୍ଭର ସେହି ଧର୍ମରାଜଙ୍କର ଧର୍ମ-ପ୍ରତାପ ।

ଗୀତ

ବିପଦ ବେଳରେ ଧର୍ମ କେଉଁଣେ ଗଲେ
କ ସାଧ ତାଙ୍କର ନାହିଁ ।
ସମ୍ପଦର ବେଳେ ପାଖେ ଥାନ୍ତି ଭଲେ
ବିପଦ ବେଳରେ ନାହିଁ ।
ଜାଣୁ ନୃପ ! "ସମ୍ପଦ ବେଳେ ସବେ ସଖା
ବିପଦେ ନ ମିଳନ୍ତି ଦେଖା ।"

ହରି—ଋଷିବର ! ଚଣ୍ଡାଳ ଘରେ ଦାସତ୍ୱ କରିବି ?

ବଶ୍ୱା— ଗୀତ

ଦେଇ ମୋ ଦକ୍ଷିଣା କରୁଥା ଭାବନା
ଏହିକ୍ଷଣି ସେ ଭାବ ନାହିଁ ।
ଲଭେ ବାଳକୃଷ୍ଣ ହେଲୁଣି ପଥେଷ୍ଟ
ଆମ୍ଭା ଏକ ପନ୍ଥ ଚାହିଁ ।

ସଜନ୍ ! ଆଜି ଏକମାତ୍ର ପୁତ୍ର ହୋଇଗଲା । ପଶ୍ଚିମ ଆକାଶକୁ ଚାହିଁ ସୂର୍ଯ୍ୟଦେବ ପ୍ରାୟ ଅସ୍ତମିତ । ସବୁତ କ'ଣ ?

ରାଜା—ଠିକ୍ କଥା କହିଲ ! ଆରେ ଚଣ୍ଡାଳ ଏହି ମସ୍ତକରେ ତୁମ ରଖି ତୋର ଖାସ ଦେଲି, ନେ, ମୋତେ ବନ୍ଧ ମୁକ୍ତ କର । ମାଲିକର ମୁଣ୍ଡମୁଣ୍ଡା ଏହି ଦ୍ୱିତୀୟଙ୍କୁ ଦିଅ ।

ସର୍ଦ୍ଦାର—ଆଜ୍ଞାଁ ।

ଶ୍ରୀମନ—ସର୍ଦ୍ଦାରଜି ! ଗାଳି କରନ୍ତୁ ମତ୍; ବଡ଼ା ଶ୍ରେଷ୍ଠ ଭଲ ଆଦମ୍ ଏମା ମାଲୁମ୍ ହୋତା; ଆଜ୍ଞା ତୋ ନାମଟା କ'ଣ ଥିବାର ଅଛି ।

ଦଣ୍ଡୀ—ମୋ ନା ଦଣ୍ଡୀ ।

ସର୍ଦ୍ଦାର—ହଁଆ ବାଃ ବାଃ ଖାସା ନା; ଲେ ଠାକୁର ବାବା ! ଏଣିକରୁ ଲେ; ଆଉ ଯଦି ଆଦମ ମିଳିବ ତାମକୁ କୁଟାଇବୁ, ବାବାଜି ବେଶ୍ ବେପାର ଲଗାଇଛୁ, ଖାସା କାମ କରୁଛୁ, ଚଲ ଦଳ, ଏ ବେଶ ଆଉ ଚଳିବ ନାହିଁ । ଆମ ବେଶ ପିନ୍ଧିରେ ଦଳ ।

(ବେଶ ପିନ୍ଧାଇ ପ୍ରସ୍ଥାନ)

ଚଣ୍ଡା—ଧନ୍ୟ ହରିଶ୍ଚନ୍ଦ୍ର ! ଧନ୍ୟ ଶୈବ୍ୟା, ଧନ୍ୟରେ ରୋହିତ !



## ୫ମ ଅଭିନୟ

### ୧ମ ଦୃଶ୍ୟ

(ଶୈବ୍ୟା ରୋହିତ ଶବ କୋଳ ପ୍ରବେଶ)

ବାଳକର ଦାରୁଣ ତନ୍ତ୍ର ଏମା ଥିଲା ତୋର ମନେ
ନ ନେଲ ଅନ୍ଧଳା ପ୍ରାଣ ଦଣ୍ଡାକରୁ ବ ବାରଣେ ।
ମା ତଳେ । କେଉଁ ଏ ଅଭାଗିନୀ କର୍ମରେ ଲେଖି ଥିଲୁ ।

ଗୀତ

ଚଣ୍ଡାଳଣୀ ଦାସତ୍ୱ ଖଣ୍ଡି ଶରେ ନ ପାଉଛି ଶାନ୍ତି
ଦୁଃଖିଣୀ ମାତା ଅଶାନ୍ତ ମୋ ଶିଶୁ ନ ଦେଖି ଏବେ ।

କଥନ କରିବ । ସଦାବେଳେ କାର୍ଯ୍ୟ କରୁ କରୁ ମନ୍ଥୁଛି । କଲୁ ଏବେ ବ୍ରାହ୍ମଣୀଠାରୁ ଯୋଦା ଗାଳି ମାଡ଼ କହୁଣିରୁ ରକ୍ଷା ପାଇଲି ନାହିଁ । ଏତେ ଯାଁଟି ଶୁଖୁଛି ଆସିଲି ପଛ, ଦଉଡ଼ିଟା ଅଧାବନା କରିଛି ଯାଉଛି ବଳଦଏ ।

କଦମ୍ବା—କଲେ, ଏଠି ନାହିଁରେ ତେଲ ପକାଇ ଦଉଡ଼ି ବଳୁଛି ଆଉ କିଛି କାମ ନାହିଁ କଲେ ?

ଶୈବ୍ୟା—ଆପଣ ପଛ କହୁଥିଲେ କୁଅ ଦଉଡ଼ିଟା ପୁରୁଣା ହୋଇ ଯାଉଛି ।

କଦମ୍ବା—ମୁଁ କଣ କହୁଥିଲି ଦଉଡ଼ିଟାକୁ ବେଳ ଅନ୍ତେ-ଯାକେ ବସି ବଳୁଥିବୁ । ଏମିତିଆ ଠାପେଇ ତ ମୋ ବୋପା ଦେଖି ନ ଥିଲା ।

ଶୈବ୍ୟା—ମା ଆପଣ ପଛ ହୁକୁମ ଦେଇଥିଲେ ?

କଦମ୍ବା—କଲେ ଘର ଉପରମୁହଁ ହୋଇଗଲୁଣି ।

(ଗୀତ) ବା ସୁଲ୍ ସୁଲ୍ ବହିଲା,
ଠାକୁଆ ଗାଲରେ ଟିକୁଲି ଲଗାଇ
ଟୋକାଙ୍କୁ ଅନାଇ ମୋହିଲା ।

କଲେ କାମ ପାଇଟି କରିବୁ ନାହିଁ ବାବୁଟିଏ ହୋଇ ବସିବୁ ।

ଶୈବ୍ୟା—ଏହା ମୋ କପାଳ ଶୁଣାଉଛି ।

କଦମ୍ବା— (ଗୀତ)

"ଆଲେ ଅନନ୍ତ ମଞ୍ଜିଆ ଗାଳ,
ଜାଣିଥିଲ୍ ଯେବେ ଫଟା କପାଳ
କିଆଁ ପାଟୁଥିଲ୍ ଥାଳ ।"

ପାହାର ଏତେ ସଉକ ଥିଲା, ସେ ପରଦରେ ମୁଣ୍ଡ ବନ୍ଧୁଥିଲା କାହିଁକି ?

ଶୈବ୍ୟା—ମା ଏତେ କଟୁ କଥା କହିବା ଆପଣଙ୍କ ଈଶ୍ୱରରେ କଣ ଭଲ ମନେ କରୁଛନ୍ତି ।

କଦମ୍ବା—କଲେ, "ଏଡ଼େ ସୁଆଦ, ପଖାଳଘଟରେ ବସିଚିଅଛ ତଳେଇ ଉଠିଲା, ଗୋଲଦ୍ ଜାତକ ସରମ ନାହିଁ; ମୋ ପାଟିରୁ ଆଉ କଣ ବାହାରୁ-ଥିଲା ।

ଶୈବ୍ୟା—ମା ଯେତେବେଳେ ଯୋଗଳ୍ କାର୍ଯ୍ୟ କରୁଛି ସେତେବେଳେ ଯୋଗଳ୍ ହୁଦେ କଣ ଯାଆଲାଣୀ ।

କଦମ୍ବା—"ବାଳିଆ ବାଛିଁଣ କଣି, ଖରୁଥିଲୁ ଟୋକ
ହେବ ଘରଣୀ ବୁଢ଼ା ବ୍ରାହ୍ମଣଙ୍କୁ ସେବ ।

ଶୈବ୍ୟା—( କ୍ରନ୍ଦନ )

କଦମ୍ବା— ଗୀତ

କାନ୍ଦିଲେ ସକେଇ କାନ୍ଦ ପୋଡ଼ାମୁହିଁ
ସୁଅ ତୋ ଯାଇଛି କାହିଁ;

ଶୈବ୍ୟା— ଗୀତ

କହୁଥିଲି ଭେକ ହୋଇଲି
ଅଦୃଷ୍ଟ ଦାଣ୍ଡକୁ ଦେଲି ପଠାଇ ।

କଦମ୍ବା— ଗୀତ

କଲେ ଖାଇବାରେ ଏତେ ଝକଳା ।

ଶୈବ୍ୟା— ଗୀତ

ପେଟ ଆଗୁରେ ହୋଇଛି ଢକଳା ।

କଦମ୍ବା— ଗୀତ

ହଇଲେ କୁଜ ପେଟିଏ ଠୁଙ୍କି,
କନ୍ଧ ଲାଙ୍ଗୁର ହଲାଇ ॥

ହଇଲେ ଖାଇପିଇ ମୋ ଘରରେ ବେମାନ ହେଉଛୁ !

ରୋହିତ—ମା, ମୁଁ ମରିଗଲି ମରିଗଲି ତମ ଗୋଡ଼ତଳେ ପଡ଼ୁଛି । ତମେ ମୋତେ ମା ପାଖରେ ମାରନାହିଁ, ମା କାନ୍ଦିବେ ।

ଜଠା—ତେବେ ମଜାହେବ ଜଣରେ ଟୋକା; ତୁ ବୋପା ଲେ ମାଆଲେ ଡକା ଡକାଉଥିବୁ, ମା ପଛରେ ଠିଆ ହୋଇଥିବ ତେବେ ପିଠା ମାଡ଼ ଖାଇଲେ ମଜାହେବ ।

କଦମ୍ବା—ଜଣ କରେ ଜଠା କଅଣ ମ ? ପିଲାଟାକୁ ମାରୁଛୁ କାହିଁକି ?

ଜଠା—ମାରିବ ନାହିଁ ? ଗୋଟା ଜ.ଙ୍ଗଡ଼ାକ ଛନ-ଛତର ହୋଇ ସ୍ୱା ବାର ତା ବାରରେ ପଶୁଛନ୍ତି, ମାରିବ ନାହିଁ ?

କଦମ୍ବା—ମା' ଆଦ୍ଭେଳ ପିବ, ଠିକ୍ମାଡ଼ ଖାଇବ ଏପରି ବୋଲଣା କାମ କରିବ କାହିଁକି ?

ଶୈବ୍ୟା—ମା, ଏଥର କ୍ଷମା କରନ୍ତୁ, ସେ ଆଉତୋଲୁ ସାବଧାନ ହୋଇ କାମ କରିବ, ଆହା ! ପୁଅର ମୋର କୋମଳ ଦେହଟି ବେଶାଘାତରେ କ୍ଷତ ବିକ୍ଷତ ହୋଇଯିବ ।

କଦମ୍ବା—କୁଆଡ଼େ ଯିବ ଲୋ ମା, ଭାଳ କଣ ଲେଉଛି ପଡ଼ିଲା, ନା ପୃଥିବୀରେ ଆଉ ଧର୍ମ ନାହିଁ । ଗାବ-ଥିଲେ କେତେ କଥା ଦେଖାଯାଏ, ଏଁରେ ଜଠା । ଏ କଣ କହୁଛି ଶୁଣିଲୁ, ଗଭର୍ବପିଲା ଦେହ ପୁଣି ଲହୁଣୀପରି କୋମଳ, ଗ୍ୱଳରାଣୀ ପରି ମାଆଙ୍କର ଝୋଲ ବୋହୁଯାଉଛି ଦେଖ, ତାର ଭଲଲୋକ ପିଲାପରି କଷ୍ଟହେବ । ଆଲୋ ମା, ଯାର ଏତେ ସୁଆଗ ସେ ପର ଘରକୁ ଗୁଲାମି କରି ଆସିବା ଉଚିତ ନୁହେଁ ! ହଇରେ ଖଣ୍ଡିଆ ଟୋକା କୁଆଡ଼େ ଯାଇଥିଲୁ କହ ? ( ମାରିବା )

ମାଧବ—ରହ, ରହ, ରହ, ଏ କଣ ପିଲାଟାକୁ କାହିଁକି ମାରୁଛ ?

କଦମ୍ବା—ତମକୁ କଏ କହିଲା ଏଠାକୁ ଆସିବାକୁ । ପୋଇଲା ସୁଆଗ ଦେଖାଇ ଦେଉଚ । ତମର ପାଟି ଫିଟାଇବାର ଦରକାର ନାହିଁ । ଭଲ ପଣ ଯେବେ ପାଖେଇ ଯା ।

ଶୈବ୍ୟା—ପିତା ମୋ ପୁଅକୁ ରକ୍ଷା କରନ୍ତୁ ।

କଦମ୍ବା—( ପ୍ରହାର କରି ) ତୋତେ କ୍ୟା କହୁଁ ତୋ ପିତାକୁ କ୍ୟା କହୁଁ । (ବ୍ରାହ୍ମଣୀ ଯୋଗାଡ଼ ଦେଇ) ଯା ଖଣ୍ଡିଆ ଖେଣ୍ଡା । ବୁଢ଼ା ପୋଇଲା ମାଇପକୁ ଦେନକରି ରହ, ମୁଁ ଯାଉଛି ।

ମାଧବ—(ଉଠି) ଆସନ୍ତୁ, ଲକ୍ଷ୍ମୀ ସାଆନ୍ତାଣୀ । ତମ ଗୋଡ଼ତଳେ ପଡ଼ୁଛି ଯେପରି ଆସନ୍ତୁ, ବ୍ରାହ୍ମଣୀ ପ୍ରହାର ଦେଇ ମୋ ତଉଦ ପ୍ରତ୍ୟକ୍ଷ ପିତୃ-ପିତା-ମହଙ୍କୁ ଉଦ୍ଧାର କରନ୍ତୁ, ମୁଁ ଯାଉଛି । [ପ୍ରସ୍ଥାନ]

କଦମ୍ବା—ଦେଖିଲୁ ଜଠା ମାଡ଼ ସବୁ ଜାଣେ । ହଇରେ ଖଣ୍ଡିଆ କୁଆଡ଼େ ଯାଇଥିଲୁ କହ ।

(ରୋହିତ ଗୀତ)

ମା ସତ କହୁଛି ମୁଁ ଯାଇ ନ ଥିଲି କେଉଁଠି
ଥିଲି ପଡ଼ିଲେ,
ତୁମ ତୁଣ୍ଡ କଥା ଶୁଣିଲାକ୍ଷଣି ମୁଁ ଭୟ ମଣି,
ଗଲି ଗୋଡ଼ତଳେ
ମା ସତ କହୁଛି, ମୁଁ କୁଆଡ଼େ ଯାଇ ନ ଥିଲି
ଏଇଠି ଥିଲି ।

ଚନ୍ଦ୍ରମା—ମୋତେ ଦେଖି ତୋଳିବି ପଳାଇଲୁ,
ମୋତେ କଣ ଆପଣା କରି ପଳାଇଲୁ କହ।
ଆଉ ଘରେ ଫିରୁ ନାହିଁ।

ରୋହିତ— ଗୀତ

ନାହିଁ ଫିରିବାର ମୁଁ ଘରେ ବନ୍ଧାଥିବି ଶ୍ରୀଚରଣେ,
ଯା କହିବ ଆଜ୍ଞା ତେବେ ପାଳିବି ମୁଁ ଅନୁକ୍ଷଣେ ସେ।
ମା ତୁମକୁଁ ମ କହ କୁଆଡ଼େ ଫିରିବ ନାହିଁ ମା
ତୁମେ କୁହ।

ଶୈବ୍ୟା—ବାପରେ ! ସନ୍ତାନର ନିରାପଦ ସ୍ଥାନ ମା
କୋଳ; କିନ୍ତୁ ସେତିକେ ତୋତେ ଦେବା ପାଇଁ
ମୋର ସ୍ୱାଧୀନତା ନାହିଁ । ଅନାଥ ନାଥ
ଜନକଙ୍କୁ ଡାକ, ମୁଁ ତୋତେ ପୋଷିବାକୁ ଏଠୁ
ପାଉଛି।

ଚନ୍ଦ୍ରମା—ଫିରୁ କୁଆଡ଼େ ମ ମୋତେ ଆଜ୍ଞା ନ କହି
ଚାଲିପାଉଛୁ ଜାଣିଛୁଟିକି ମୁଁ ପାଞ୍ଚାଲୀ ବୁ
ଗୋଇଲି।

ଶୈବ୍ୟା—ମା ମୁଁ ଜାଣେ, ଆଜ୍ଞାକରି ତୁମକୁ ଜାଣେ।
ଦାସୀ ଯେଉଁଦିନୁ ତୁମର ଦାସତ୍ୱ ସ୍ୱୀକାର କରିଛି
ଯେଉଁଦିନୁ ସ୍ୱାଧୀନତା ଦର୍ପ କରିଛି, ସେ ଦିନୁ ମୋ
ଇହ ସଂସାରର ସର୍ବସ୍ୱ ତୁମ ଶ୍ରୀଚରଣରେ ଅର୍ପଣ
କରିଛି, ମା ମୁଁ ଜାଣେ କେବଳ ଏ ଦେହ ତୁମର
ଦାସୀ ନୁହେଁ, ମୋ ମନ ପ୍ରାଣ ତୁମର ଦାସୀ;ଚିନ୍ତା
ଅନୁଭବ ତୁମ ଦାସୀ, ସ୍ନେହ ସୁଖ ଶାନ୍ତି ବାସନା
ତୁମର ଦାସୀ, ମୋର ନିଜର କିଛି ସୁଖ ଦୁଃଖ
ନାହିଁ। ସବୁ ମା ତୁମର, ମା ମୁଁ ଜାଣେ ଯେବେ
ଏ ଉଦ୍ଧ୍ୟପ୍ରାଣ ଦେବାକୁ ଦେଖିଲେ ପାଇଯାଏ,
ତେବେ ତୁମେ ଅନନ୍ତ ଦେବଙ୍କ ନିମିତ୍ତ
ଦେବ। ମା ମୁଁ ଜାଣେ ତେବେ ଯୁଗ ମୁକ୍ତ ତୁମର
ଇଚ୍ଛେ ଏ ଦେହ ମୁଁ ଦେବ ସଂସ ଆସେ
ତେବେ ତୁମ ସ୍ନେହକୁ ଏହି ହୃଦୟକୁ ଲୁଣ୍ଠି-
ବାକୁ ଦେବ।

ଚନ୍ଦ୍ରମା—ସବୁ ଜାଣୁ ତ ଦେଖ ଆଉ ଘରେ ମୋତେ
ନ କହି କୁଆଡ଼େ ଫିରୁ ନାହିଁ।

ରୋହିତ— ଗୀତ

ଧରୁଛି ମା ତୋ ଚରଣ କ୍ଷମା କର ଆଜ ଦିନ
ଏ ଜୀବନ ଆଜୀବନ ଥିବ ସଦା ଜାଗରଣେ ॥
ମା, ଆଉ ଘରେ କୁଆଡ଼େ ଫିରିବି ନାହିଁ। ଗଲେ
କୋଡ଼ିଏ ପାହାର ଖାଇବି।

ଜଟା—ମାଇଁ, ମାଇଁ ଅରଚ୍ଛୁକା ଦଶ ପାହାର ଦେ।

ଶୈବ୍ୟା—ଗୋସାଇଁ ତୁମର କଣ ଦୟା ନାହିଁ ତୁମର
କି ଏଥି ଉଦ୍ବେଗ।

ଜଟା—ମତେ ଜବାବ ଦେଉଛୁ ଦେଖ କଣ କରୁଛି।
(ରୋହିତକୁ ଧରି)

ଶୈବ୍ୟା—କଅଣ କରିବ ବ୍ରାହ୍ମଣ, କଣ ଦେ ଖାଇବ, ଏ
ପାଷାଣ ହୃଦୟ ଆଉ କେତେ ସହି ପାରିବ।
ତାହା ଦେଖାଇବ, ବ୍ରାହ୍ମଣ, ତୁମେ ଜାଣ ମୁଁ
କଣ ଦେଖିଛି ? ତୁମେ ଜାଣ ମୁଁ କଣ ସହିଛି ?
ଜାଣିକି ବ୍ରାହ୍ମଣ ସହସା, ପଲ୍ଲବିତ ଶାଖାପ୍ରଶାଖା
ପ୍ରସାରିତ ବଟ ବୃକ୍ଷ ବଜ୍ରପାତରେ ଦଗ୍ଧ ହେବାର
ଦେଖିଛି; ଅନନ୍ତ ଅତଳ ପୂର୍ଣ୍ଣ ମହାସାଗର
ଶୁଷ୍କ ହୋଇଛି ତାହା ଦେଖିଛି, ଜାଣ ବ୍ରାହ୍ମଣ
ତୁମେ କାହା ହାତ ଧରି ପ୍ରହାର କରୁଛ, ମୁଁ
ଠିଆ ହୋଇ ଦେଖୁଛି।

ଜଟା—ଏଟା କଣ କ୍ଷତ୍ରୀ ନା ପିଶାଚୀ; ଆଚ୍ଛା ଦାସୀ ତ
ମାମୁ ଆଣିଛି ? ନେ ନେ ତୋ ପୁଅକୁ ନେ।
(ପ୍ରସ୍ଥାନ)

ଚନ୍ଦ୍ରମା—ଆରେ ଜଟା ଚାଲ୍ କୁଆଡ଼େ ମ [ପ୍ରସ୍ଥାନ]

ରୋହିତ—ମା, ମା

ଶୈବ୍ୟା—ମୋ ଦୁଃଖିଧନ ଅନ୍ଧକନାଧି।
(କୋଳେ ନେଇ ପ୍ରସ୍ଥାନ)

—✱—

## ଦ୍ୱିତୀୟ ଦୃଶ୍ୟ

[ପେଚ୍ଚା ସଦ୍ଧତ ନାଗରିକର ପ୍ରବେଶ]

ନାଗରିକ—ମୁଁ ସ୍ୱଚ୍ଛନ୍ଦ, ଏ ଶାଳୀ ପାଖରେ ଅଉ
ରହି ହେବ ନାହିଁ।

ପତ୍ନୀ—ଚଲରେ ଖଣ୍ଡିଆ, ଜନସ ପଚ ନେଇ ତୋର
ମାଇପ ଗାଳକୁ ପାଉଛୁ।

ନାଗରିକ—ମୋ ଇଚ୍ଛା ଯୁଆଡ଼କୁ ହେବ ସିଆଡ଼େ ଯିବ ।

ପତ୍ନୀ— ଗୀତ

ହା ସାପଡିଆ ମଲୁ ନାହିଁ
ଯମ ଡାକୁଥିଲା ଗଲୁ ନାହିଁ
ଘରଦ୍ୱାର ମୋର କରୁ ହୁରୁ ଜୁରୁ
ଅଜବ ଖଣ୍ଡିଆ ଥିଲୁ କାହିଁ ।୧।

ଯମ ଏତେ ଲୋକଙ୍କୁ ନେଉଛି ଏ ଖଣ୍ଡିଆକୁ ନେବାକୁ କଣ ଡରୁଛି, ଡରରେ ଖଣ୍ଡିଆ କୁଆଡ଼କୁ ବାହାରୁଛୁ ?

ପୁ—ତୋ ପାଖରେ ମୋର ଚଳିବ ନାହିଁ, ତୋ ମୁହଁ ଦେଖିକରି ନାହିଁ । ଯାଉଛି କୋଉଠି ଗୋଟାଏ ଷଣ୍ଢ ରଖି ରହିବ । ଯାହା ଟଙ୍କା ପଇସା ତାକୁ ଦେବ ।

ସ୍ତ୍ରୀ— (ଗୀତ)

ଷଣ୍ଢପରେ କେଉଁ ଗୁଣରେ
ଯାଉଅଛୁ ଖଣ୍ଡ ଆଡୁରେ
ଦାଣ୍ଡ ଚୁଲି ଆଣିଲେ ହାଣ୍ଡିରେ ପକାଇ
ତ ତୁଣ୍ଡି ରଖିଛୁ ଦେବୁକୁ ନେଇ ।୧।
ଷଣ୍ଢପରେ ମାଗଣା ପଶିବୁ ?

(ବିଶ୍ୱାମିତ୍ର ପ୍ରବେଶ)

ବିଶ୍ୱା—ତୁ କଏରେ ବାବା ?

ନାଗରିକ—ଦେଖିଲ ଗୋସାଇଁ ଯେତା ଯେତେଁ ଆଣି ସ୍ତ୍ରୀକୁ ଦେଲି ସବୁ ତା ବୋପା ଘରକୁ ପଠାଇ ଦେଲା. ଯାଉଛି ଗୋଟାଏ ଷଣ୍ଢ ଭଳି ହୋଇ ମୋ ବାଟ ମୁଁ କରିବି ।

ବିଶ୍ୱା—ସେ ତୋର କ'ଣ ହୁଏ ?

ନାଗ— ସେ କଏ ବୁଝିପାରୁନାହିଁ, ତ ଆପଣଙ୍କର କଣ ନାହିଁକି ? ଦାନକୁ ତ ଏପର୍ଯ୍ୟନ୍ତ ପାଣି ମଉନାହିଁ ।

ବିଶ୍ୱା—କଣ କହୁଛୁ ମୁଁ ବୁଝି ପାରୁ ନାହିଁ ।

ନାଗ—ବୁଝିପାରୁନାହିଁ ; ଏତେ ଦାଗମୀ ଆଉ କାହାର ହୁଅନ୍ତା ଚତୁର୍ଥ ପକ୍ଷ, ଚତୁର୍ଥ ପକ୍ଷ ।

ବିଶ୍ୱା—ଚତୁର୍ଥ ପକ୍ଷ କଣ ? ଏ ବାଳକାଟି ତୋର ଝିଅ ।

ନାଗ—ଅନ୍ଦାଜ ମତ ଅନୁମାନ କରି ନାହାନ୍ତି, ବସ୍ତୁତ ଆଉ ଦାଗମିରେ କନ୍ୟା କିନ୍ତୁ ସମାଜରେ ଭାର୍ଯ୍ୟା ।

ବିଶ୍ୱା—ଭାର୍ଯ୍ୟା ? ତୋ ସହଧର୍ମିଣୀ, ଏତ ବାଳିକା ।

ନାଗ—ଆଜ୍ଞା ଇହାକୁ ସହଧର୍ମିଣୀ କହନ୍ତି, ଏହା ପୂର୍ବ ଦୁଇଟିଙ୍କୁ ବିଶ୍ୱାମିତ୍ରଙ୍କୁ ଦେଇଛି ।

ବିଶ୍ୱା—ବିଶ୍ୱାମିତ୍ରଙ୍କୁ କଣ ଦେଇଛୁରେ ।

ନାଗ—ଆଜ୍ଞେ ଯମକୁ ଦେଇଛି ଦୁହେଁ ତ ସହଗାମୀ, ସେଥିଲାଗି କହିଲି ବିଶ୍ୱାମିତ୍ରଙ୍କୁ ଦେଇଛି ।

ବିଶ୍ୱା—ବାଃ ବାଃ, ମୋ ଇଚ୍ଛାଭିଳାଷିତା ପୂର୍ଣ୍ଣ ହେଲା, ଦେଖୁଛି ଋଷି ସ୍ୱ ଥିଲି ଋଷି ହେଲି ଏବେ ଦେବ ଉପାଧି ଲାଭକଲି । କିନ୍ତୁ ଲୋକ ଚକ୍ଷୁରେ ଯମ ହୋଇ ସାରିଲିଣି ।

ନାଗ—ଯମଙ୍କଠି ମୋର ଆଉ କୁଆଡ଼କୁ ଯିବାର ଦରକାର ନାହିଁ । ଆପଣ ଦୟାକରି ଏ ଗଣ୍ଡିକା ପଦ ଦାନ ନେଇ ଦକ୍ଷିଣା ବାବଦକୁ ଏ ଚତୁର୍ଥ ପକ୍ଷଟିକୁ ନଅନ୍ତୁ ।

ସ୍ତ୍ରୀ—ବାଡ଼ପଶା ମୋତେ ଦକ୍ଷିଣାକୁ ଦେବୁ ଦାନ୍ତ ଝାଡ଼ି ଦେବିଟି ବୁଲେ ଖଣ୍ଡିଆ ।

ବିଶ୍ୱା—ସିଦ୍ଧିଦ୍ୟା ସାଧନ କରି ଯେଉଁ ଇଚ୍ଛାଭିଳାଷ କରିଥିଲି ତା ପୂର୍ଣ୍ଣ ହେଲା । ଏବେ ହରିଶ୍ଚନ୍ଦ୍ରଙ୍କୁ ନଗରକୁ ଆସିବାକୁ ପଡ଼ିଲା, ଦେଖାଯାଉ ।

(ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

(ରୋହିତ ଓ ମନ୍ତ୍ରୀ ପିଲାମାନେ)

(ଗୀତ)

ଦେଖ ଏ ଚମ୍ପା ବଧୂଳି ଫୁଟିଛି ଝଲକ ଝଲ
ପାଏ ମାନସ ଭୁଲି ।
ଅଶୋକ ମଲ୍ଲୀ ମନ୍ଦାର ଫୁଲ ସେବନ୍ତୀ ଟଗର
ଦଣେ କେତେ ମନୋହର ପବନେ ଯାଉଛନ୍ତି ଝୁଲି ।
କୁନ୍ଦ ମୁଚୁକୁନ୍ଦ ସାରୁ, କୃଷ୍ଣଅନା ନାଗେଶ୍ୱର,
କରି ଗୁଣୁ ଗୁଣୁ ସ୍ୱର ଭ୍ରମର କରଇ କେଳି ।।

ରୋହିତ—ଭାଇ ଦେଖିଲ କି ସୁନ୍ଦର ଫୁଲଗୁଡ଼ାଏ ଫୁଟିଛି ।

୧ମ—ହଁ, ଆଜ ଉଦ୍ୟାନଟି ବଡ଼ ସୁନ୍ଦର ଦେଖାଯାଉଛି ବହୁ ଫୁଲଗୁଡ଼ାଏ ଫୁଟିଛି ।

ରୋହିତ—ଭାଇ ଆମର ଯେଉଁ ବଗିଚା ଅଛି ସେଥିରେ ସେଠାରୁ ଭଲ ଭଲ ଫୁଲ ଫୁଟେ ।

୨ୟ—ତରରେ ତୁ ଗୋଟାଏ ଗୋଇଲା ମାଲିପ ପୋଇଲି ତୁଅ ତୋର ଗୋଟାଏ ବଗିଚା କୁଆଡୁ ଆସିଲା ମ ?

ରୋହିତ—ହିଁ ଭାଇ ମୁଁ ଗରିବ ସତ୍ୟ ମୁଁ ଗୋଇଲା ତୁଅ ମନଟା ଏମ ନହାଉଗଲା କଣସୁଦ୍ଧା କହି ଚାଲିଲି ।

୧ମ—ଆଛା ତୁ ବେଲପତ୍ର ତୋଳ ଆମ୍ଭେମାନେ ଅନ୍ୟ ଫୁଲ ତୋଳୁଛୁ ।

(ରୋହିତ ଫୁଲ ତୋଳୁ ତୋଳୁ ପଡ଼ିଯାଇ)

ଭାଇ ଭାଇ, ଏ କଣ ମୋତେ କଣଟାଏ କାମୁଡ଼ି ଦେଲା ।

ସମସ୍ତେ—ଆରେ ସାପଟାଏରେ (ପଳାୟନ)

ରୋହିତ—ଭାଇମାନେ କୁଆଡ଼େ ପଳାଇଗଲ, ଓହୋ କ'ଣ କରିବି ।

ଗୀତ

କାହିଁ ଛାଡ଼ିଗଲ ଭାଇ ଛାଡ଼ିଗଲ ଜୀବ,
ନ ଦେଖିଲେ କେହି ମୋର ସାହା ।
ଭାଇ କୁଆଡ଼େ ଗଲ, ଆସ ଥରେ ଏ ବିପଦ
ବେଳେ ଟିକିଏ ପଡ଼ୁନ୍ତ ନାହିଁ ?

ସଖାମାନେ—ରୋହିତ, କଣ ହେଲା କଣ ହେଲା ।

ରୋହିତ— ଗୀତ

ଉଦରେ ଭୁଜଙ୍ଗ ଦଂଶି ଜଳେ ପିଣ୍ଡ
ଅନ୍ଧକାର ଦିଶେ ଏ ସାରା ବ୍ରହ୍ମାଣ୍ଡ ।
ବନ୍ଧେ ଯାଅ ଭାଇ କହ ମୋହ ପାଇଁ
ଦେଖି ଥରେ ଆସି ଯାଅ ।
ଭାଇ ! କହ ମୋ ମା-ତେ-

ସଖାମାନେ—ଦେ ସ୍ୱାର ତ ପ୍ରାଣ ଛାଡ଼ିଗଲା । ଚାଲ କହିବା; ଭାଇ ତା ମାକୁ ଜଣାଇଦେବା ।

ଅନ୍ୟ—ନାଇଁ ନାଇଁ ଶୁଣୁ ଶୁଣୁ ଦେଉଛି, ଯୋଗାଡ଼ ହେଇଯିବା; ନା ଭାଇ ଚେକ ନେଇଯିବା, ତେଣିକି ଯାହା ହେବ । ( ତଥାକରଣ )

---

# ୭ମ ଅଭିନୟ

## ୧ମ ଦୃଶ୍ୟ—

( ଶ୍ମଶାନ )

ହରିଶ୍ଚନ୍ଦ୍ର—କି ଭୟଙ୍କର ରଜନୀ; ଆଜ କଣ ପ୍ରଳୟ ଅନ୍ଧକାରଦ୍ୱାରା ରଜନୀ ଆବୃତ; ପ୍ରଳୟ ହେଉ ସୃଷ୍ଟି ରସାତଳକୁ ଯାଉ ମୋର କଣ ଅଛି ? ଆକାଶ ତୁ ହରିଶ୍ଚନ୍ଦ୍ର ହୃଦୟ ଛବି ପ୍ରତିଫଳିତ କରୁଛୁ ! ମାତ୍ର ଏ ହୃଦୟରୁ ସମସ୍ତ ଆଲୋକ ନିର୍ବାପିତ ହୋଇଛି । ସ୍ନେହ ନାହିଁ, ମାୟା ନାହିଁ, ମମତା ନାହିଁ, ସହାନୁଭୂତି ନାହିଁ । ସକାଳଠାରୁ ସନ୍ଧ୍ୟାଯାଏ ପୁଣି ସନ୍ଧ୍ୟାଠାରୁ ସକାଳଯାଏ ଦେଖୁଛି, ଅନେକ ମୃତଦେହ ସତ୍କାର ପ୍ରଜ୍ୱଳିତ ପୂତିଗନ୍ଧ ପାଖେ ବାସ ଏବଂ ଅନେକ ଶବପରେ ଶବର ବିକୃତ ମୁଖ ଦର୍ଶନ, ବାଳକ ଯୁବକ ବୃଦ୍ଧମାନଙ୍କ ରୋଦନ ଶୁଣିବା ମୋର ନିତ୍ୟ ବ୍ରତ । ସଧବାର ଆର୍ତ୍ତନାଦଦ୍ୱାରା ମୋ ହୃଦୟ ଆଉ ଚମକିତ ହେଉନାହିଁ । ପୁତ୍ରହୀନା ଜନନୀ ବକ୍ଷରେ କରାଘାତ କଲେ ମୋ ପ୍ରାଣରେ ଆଉ ବ୍ୟଥା ଲାଗୁନାହିଁ । ବ୍ୟଥା, ବ୍ୟଥା କାହା ଲାଗି ? ଜୀବନ ସଖା ମୋ ଶୈବ୍ୟା କାହିଁ ? ଆହା, ଆହା, ସେ କଣ ଆଉ ଅଛି । ଆହା ! ମୋର ସୁକୁମାର ନୟନ ପିତୁଳା ରୋହିତାଶ୍ୱ ଭଲରେ ଅଛି । ଦେଖିବି ? ନା, ସେ ଭାଗ୍ୟ ନାହିଁ । ଏ ପୁଣି କଣ ? କେଉଁ ଅଭାଗିନୀର ସର୍ବନାଶ ।

( ଶୈବ୍ୟା ପୁତ୍ର ଦେହ ଗୀତ ଗାଇ ଗାଇ ପ୍ରବେଶ )

( ଗୀତ )

କେଉଁଠି ଗଲୁ ଛାଡ଼ି, ଅଭାଗୀର ଲାଗି
ଦୁଃଖିନୀର ଦୁଃଖ ରତନ,
ରେ ମନ ବିଧାତା ଏତେ ତୋ କପଟ
ଗୁପ୍ତ କଲୁ ଚନ୍ଦ୍ର ବଦନ ।

ମୋ ବାପ ଧନରେ ମୋତେ କୁଆଡ଼େ ଛାଡ଼ିଗଲୁ, ଟିକେ ତୋତେ କୁଆଡ଼େ ହରାଇଲି, ଏ ଦୁଃଖିନୀ କାଙ୍ଗାଳୁଣୀକୁ ଛାଡ଼ି କୁଆଡ଼େ ଚାଲିଗଲୁରେ । ହା ବିଧାତା !

ଅଖିଳ ଧନକୁ          ଅକଳେ ଦେଇ,
କପର୍ଦ୍ଦ ବହୁଳ ନା ମୁଖ ଶୁଖି ।
ପୁଚ୍ଛିଲେ ଗାବଣେ          କାହିଁ ରୋହିତାଶ୍ୱ,
ନ କହିବ ତାଙ୍କୁ ବଚନ ॥

ମୋ ବାପାଲେ, ତୋ ସୁନା ଦେହକୁ କପର ନିଆଁରେ ପକାଇବି ! ଏଇକ୍ଷଣେ ପରା ଖୁଦଯାଉ ଟିକିଏ ଖାଇ ଫୁଲ ତୋଳିବାକୁ ଗଲୁ, ଚନ୍ଦ୍ରବଦନ କଣ ନାହିଁ, ନା, ମୋର ଭ୍ରମ ହୋଇଛି, ମୋ ପୁଅ ଶୋଇଛି । ଉଠିବ ମୋ ଦେହ ଧଡ଼ି ଲୁଣ ହୋଇ ପଡ଼ିବ ।

ହରିଶ୍ଚନ୍ଦ୍ର— ପାଗଳିଣୀ; ଶୋଇଛି ସତ ଏ ବଡ଼ ମଜାର ଶୁଆ ! ଏ ନିଦ ଦିନେ ଆସେ । ସବୁଦିନେ ଏପରି ନିଦ ହୁଏନାହିଁ, ସମସ୍ତେ ଚେଇଁଥାନ୍ତି କିନ୍ତୁ କେଜାଣି କାହିଁକି ଜଣେ ଜଣେ ଏପରି ଶୁଆ ଶୋଇପଡ଼ନ୍ତି ।

ଶୈବ୍ୟା—ବିଶ୍ୱନାଥ ! ଦୁଧଖିଆ ପିଲା ମୋର ଭୂମ୍ନ ବେଲଗଲୁ, ମୁକରେ କି ଅପରାଧ କଲା ଯେ ପ୍ରଭୁ ସେଇଠି ତାକୁ —

ହରି— ସର୍ପଘାତ, ଯମରାଜ୍ୟରେ ପ୍ରବେଶ କରିବା ଲାଗି ଯମର ଅସଂଖ୍ୟ ଦ୍ୱାର ଅଛି । ନୋହିଲେ କଦନ୍ତ ବ୍ରହ୍ମ-ଶାପ ନ ହେଲେ ସର୍ପଘାତ ହୁଏ ନାହିଁ । ଏମନ୍ତ ସୁକୁମାର ଶିଶୁକୁ କାହିଁକି ସର୍ପଘାତ ହେଲା ? କର୍ମ ଫଳ; ନିଶ୍ଚୟ କର୍ମ ଫଳ ।

ଶୈବ୍ୟା — ଓହୋ ! ହେ, କେବେ କେତେବେଳେ ଦେଖାହେବ । ଯେବେ କେତେବେଳେ ଆସି ପୁଅକୁ ମାଗିବେ କଅଣ ତାଙ୍କ କୋଳରେ ଦେବି ।

ହରି— ଆହା, ଏ ଅଭାଗିନୀଟି କିଏ ସେ । ଏ କଣ ସ୍ୱାମୀ ପରିତ୍ୟକ୍ତା ! ଆହା, ମୋର ଗୋଟିଏ ରକ୍ଷିତ ଧନ ଜଣଙ୍କ ଜମାରେ ଅଛି, କାରଣେ ଏ ନାରୀର କାମିନୀ କନ୍ଦନ ଶୁଣି ମୋ ହୃଦୟ ଚଞ୍ଚଳ ହେଉଅଛି କାହିଁକି ?

ଶୈବ୍ୟା — ଓହୋ ! କି ଦୁଃଖ କି ଘୋର ଅନ୍ଧକାର ରଜନୀ । ହେ ବିଧାତା, ତୁ ଆଉ ମୋତେ କଣ ଦେଖାଇବୁ ? ଜଗତର ପଥ ତ ଚେର ଦେଖା-ଇଲୁ ! ଏହି ଆକାଶରେ ସୁଧାମୟ ଜ୍ୟୋତ୍ସ୍ନା ! ଭରଣି ନଦନ୍ତ ଦେଖନ୍ତୁ । ଆଜ ପୁଣି କପାଳ କଥନ ଦୁଃଖ ଦାନବର ଅନନ୍ଦପୂଜାର ଦେଖୁଛି ! ଆଉ କଣ ଦେଖାଇବୁ ଯେ ଆଜି ଠାକୁରଙ୍କର ସହସ୍ର ଦାସ ଦାସୀ ।

ରାଜା—ଏ କିଏ, ଏ କିଏ ସେ, ଜଗତରେ କଣ ଆଉ ହରିଶ୍ଚନ୍ଦ୍ର ଅଛନ୍ତି; ଶୈବ୍ୟା ଅଛି, ରୋହିତାଶ୍ୱ ଅଛି । ଅଦୃଷ୍ଟ ଏକ ନାବରେ କେବେ ରାଜା ରାଣୀଙ୍କୁ ବସାଇଛୁ ?

ଗୀତ

ହା ବିଧାତା ଏ କେଉଁ କଥା
ଦୁଃଖଆଣ୍ଠା ବସାଇଛୁ ଏକ ନଉକା
କାଳ ତୋ ପାଲ୍ ଉଡୁଚି ଅଛୁ କେ ଧଇଁ ଧରି
ହେଲେ ତୁ ବିନାଶ କରି ବୁଡ଼ାଉ ତା ଲହରୀ ॥

ଓହୋ, ମୋର ହୃଦୟଟା ଏପରି ଅସ୍ଥିର ହେଉଛି କାହିଁକି, ଥାଉ ହୃଦୟ ମୋର କର୍ତ୍ତବ୍ୟ ପାଳନ କର ଅଭାଗିନି ! ମୋ ପଇସା ଦିଅ, ତୁମ୍ଭେ ଯଅ ମୁଁ ମୋର କାର୍ଯ୍ୟ କରିବି ।

ଶୈବ୍ୟା   ଚଣ୍ଡାଳ ମୋର ଗୋଟିଏ ନିବେଦନ ଶୁଣା କର ।

ଗୀତ

ଅଭାଗିନୀ ନାରୀ ମୁଁ ପାପକର୍ମା,
ଡାକୁଛି ମୋ କୋଳ ଝୁଲ ଚନ୍ଦ୍ରମା ।
ମୁଁ କ୍ଷତ୍ରିୟ ବାମା କରନ୍ତୁ କରୁଣା
ନ ଛୁଅନ୍ତୁ ମୋର ନନ୍ଦନ ॥

ଚଣ୍ଡାଳ ଏ କ୍ଷତ୍ରିୟ ସନ୍ତାନକୁ ଚଣ୍ଡାଳକୁ ଛୁଇଁବାକୁ ଦେବ ନାହିଁ ।

ହରି—କ୍ଷତ୍ରିୟ ! ସ୍ୱାର ପିତା ଲଷ୍କର ନା—

ଶୈବ୍ୟା —          ଗୀତ

କହନା କହନା ତୁରେ ଚଣ୍ଡାଳ,
ସେତେକ ଅଛୁ ମୋ ମଥା ସିନ୍ଦୂର,
ବିଧାତା ହୃଦର ହେଲା ନାରଖାର
ସହିବାକୁ ଅଛୁ କଷଣ ॥

କେବଳ ମଥାରେ ସିନ୍ଦୁର ଟୋପାଏ ଅଛି ।

ରାଜା— ସେ ଜାଣିଛ, ଏଭଳି ସମୟରେ ସବସ୍ତ୍ର ଜାଣ କରି ଶ୍ମଶାନକୁ ଦଉଡ଼ ଆସୁ ନାହିଁ, ଉଭିଲ ପିତା ସେ ଆଜ୍ଞା ସ୍ୱାମୀ ତ ସେ ।

ଶୈବ୍ୟା—ଭଦ୍ର ! ମଦ୍ୟପ ହୋଇ ନିର୍ଦ୍ଦୟ ହେଉଛ କାହିଁକି, ପୁତ୍ରହରା କାଙ୍ଗାଳିଣୀକି ଏତେ ନିନ୍ଦା ଶୁଣାଉଛ କାହିଁକି ?

ରାଜା—ମହାଦେବି, ମୋର ଅପରାଧ କ୍ଷମାକର, ଗୋଟାଏ ପୁରୁଣା କଥା ମନେ ପଡ଼ିବାରୁ ମୋ' ମନ ଠିକ୍ ନ ଥିଲା ।

ଶୈବ୍ୟା—ଚଣ୍ଡାଳ ତୁମ୍ଭ ଜାତିର ଲୋକେ ପାଷଣ୍ଡ ଖାଡ଼ ଜାଣନ୍ତି ! ଦୟାକର ଦେଖିଲ କାଳେ ଶବକୁ କେଉଁଠି ଅଟକିଥିବ ! ମୁଁ ମୃତକୁ ଲୁଗା କାଢ଼ି ଦେଉଛି ।

ହରି—ଏ କ'ଣ ଏ କ'ଣ ? ନା ନା, ନକ୍ଷତ୍ର ଆଲୋକରେ ଦେଖି ଆଲୋକରେ ! ଭଗବାନ ମୋର ତ ସର୍ବସ୍ୱ ଯାଇଛି ମୋର ପର ଲୋକ ନିଅ ଯାହା ଭାବୁଛି ଯେବେ ତାହା ହୋଇଥାଏ ତେବେ ମସ୍ତକରେ ବଜ୍ରାଘାତ କର ।

ଶୈବ୍ୟା—ତୁମ୍ଭେ କିଏ ତୁମ୍ଭେ କାନ୍ଦୁଁ କି ଏପରି ହେଲ ।

ରାଜା—ତୁମ୍ଭେ କିଏ, ମୁଁ ତ ଦେଖିଲି ପରି ଜଣାପଡୁଛି, କହ ତୁମ୍ଭେ ପ୍ରକୃତରେ କିଏ । କହିଲ ଏଲା ତୁମ୍ଭ ନାମ ଶୈବ୍ୟା ନୁହେଁ ତ ? କହିଲ ଏହା ହରିଶ୍ଚନ୍ଦ୍ର ବୋଲି କାହାକୁ ଜାଣ, କି ନାହିଁ ? ତୁମ୍ଭର ରୋହିତ ବୋଲି ପୁତ୍ର ଥିଲା କି ନାହିଁ ।

ଶୈବ୍ୟା—ଥିଲା, ଥିଲା, ଆଉ ନାହିଁ । ତୁମ୍ଭେ କିଏ ସେହି ମହାରାଜ, ମୋର ହୃଦୟ ଈଶ୍ୱର ।

ରାଜା—ହଁ ମୁଁ ନା ତୁଅଁ ନା ! ସ୍ତ୍ରୀ ପୁତ୍ର ରାଜ୍ୟକୋଷ ତ୍ୟାଗକରି ତୁଅଁ ନା ବଶିଷ୍ଠ, ବିଶ୍ୱାମିତ୍ର, ଋଷିପ୍ର ତ୍ୟାଗଶିଷ୍ୟ ବ୍ରାହ୍ମଣ, ଅନ୍ତରେ ଦକ୍ଷିଣା ବାକି ଅଛି ଭଗବାନ ଜଗତରେ ଅନ୍ୱେଷଣ କର, ଡାକିବୁ ।

ଶୈବ୍ୟା—ନାଥ କଣ କହୁଛ, ଶୈବ୍ୟାର କ'ଣ ଶେଷ ବୈଧବ୍ୟ ଘଟାଇବ ! ମୁଁ ପୁତ୍ରକୁ ନେଇ ଆଉ କେଉଁ ପଡ଼ିଛି ! ତେଣିକି କଳ୍ପା ପାନ କର ।

ହରି—ତୁମ୍ଭେ ତୁମ୍ଭର ସ୍ୱାମୀଙ୍କର ଅନୁମତ ପାଇଛ ।

ଶୈବ୍ୟା—ତୁମ୍ଭେ ପାଇଛ ?

ହରି—ମରିବା ହେଲ ନାହିଁ, ଛାତି ଫାଟିଗଲା, କ'ଣ କରିବ କହ, ଶୈବ୍ୟା ପୁଣି ପ୍ରଭାତ ଆଲୋକ ଆସୁଛି ସଂସାରକୁ ଦେଖିବାକୁ ପଡ଼ିବ ।

ବିଶ୍ୱାମିତ୍ର—ଅବଶ୍ୟ ଦେଖିବ, ସଂସାର ଘୋର ଘଟନାବୃନ୍ଦ ଦେଖିଲ କୌମୁଦୀ ହାସ୍ୟରାଶି ଭୂଷିତ ପୂର୍ଣ୍ଣିମା ଦେଖିବ ନାହିଁ ? ପୁତ୍ର ମୁଖ ଚୁମ୍ବନ ନୁହେଁ ।

ରାଜା—ଋଷି ବନ୍ଧୁ ପର ସମସ୍ତ ନୁହେଁ ।

(ବ୍ରାହ୍ମଣ ବେଶେ ଧର୍ମଙ୍କ ପ୍ରବେଶ)

ଧଃବ୍ରା—(ସ୍ୱଗତଃ) ଯାଏଁ ରାଜା ହରିଶ୍ଚନ୍ଦ୍ର ତ ମୋ ଠାରେ ନିର୍ଭର ରଖି ଏତେ ସହି ହେଲ, ଶେଷରେ ପୁଣି ପୁତ୍ରହରା ହେବାଟା ମୋତେ ବଡ଼ ବାଧୁଛି । ବର୍ତ୍ତମାନ ଯାଇଁ ତାର ପୁତ୍ର ରୋହିତାଶ୍ୱକୁ ବଞ୍ଚାଇ ଆସିବ ! (ନିକଟକୁ ଯାଇଁ) କହେ ଭାଇ ! ତୁମ୍ଭେମାନେ ଏଠାରେ କ'ଣ କରୁଛ !

ହରି—ଆପଣ କିଏ, କି ନିମିତ୍ତ ଏ ଶ୍ମଶାନକୁ ଘୋର ଗମ୍ଭୀର ନିଶାରେ ଏଠାରେ ଉପଗତ ?

ଧଃବ୍ରା—ଆମ୍ଭେ ଜଣେ ଗରିବ ଭିକ୍ଷୁକ ବ୍ରାହ୍ମଣ । କିଛି ପାଇବା ଆଶାରେ ଆସିଥିଲୁଁ କିଛି ଦେଇ ପାରିବ କି ?

ହରି—ଆମ୍ଭଠାରେ କଣ ବା ଅଛି ଯେ ଆପଣଙ୍କୁ ଦେବୁ, ନିଜସ୍ୱ କିଛି ହିଁ ନାହିଁ ।

ଧଃବ୍ରା—ନିର୍ଘଣ କରନା, ଏ ଗରିବ ବ୍ରାହ୍ମଣ ଦିନେକର ଉପବାସ କିଛି ନ ଦେଲେ ନିଶ୍ଚୟ ପ୍ରାଣ ବାୟୁ ବାହାରିଯିବ ।

ହରି—ନିରୁପାୟ ବ୍ରାହ୍ମଣ ।

ଧଃବ୍ରା—ନିରୁପାୟ ? ମିଥ୍ୟା ଛଳନା ମାତ୍ର, ଥିଲେ କଣ ହେବ ଦେବାକୁ ଇଚ୍ଛା ନାହିଁ ।

ହରି—ଚଣ୍ଡାଳର ମାହାସୁଲ ସ୍ୱର୍ଣ୍ଣ କାହାଣ କଉଡ଼ି, କିନ୍ତୁ ସେ ତ ମୋର ନୁହେଁ ।

ଧଃବ୍ରା—ତୁମ୍ଭ ପାଖରେ ଥିବାଟିକି ତୁମ୍ଭର, ସଂସାରରେ ସ୍ଥିର ହୋଇ ଗୋଟାଏ କାହାର କିଛି ନ ଥାଏ । ଯେତେବେଳେ ଯାହା ପାଖରେ ଥାଏ ସେ ତାର । ଥାଉ ଥାଉ ନାହିଁ କରୁଛ ଏ କି ଅଦ୍ଭୁତ କଥା ?

ହରି—ପର ଧନରେ ଧର୍ମ କରିବା ଉଚିତ କି ?

ଧଃବ୍ରା—ନେବ, ଦିଆଇବ, ଦୁଇଥିରେ ପୁଣ୍ୟ ଶାସ୍ତ୍ର ସମ୍ମତ । ତୁମ୍ଭେ ତା ପରଧନ ବୋଲି ଅପବ୍ୟୟ କରୁନାହିଁ, ସଦ୍‌ବ୍ୟୟରେ ଲଗାଇଲେ ଉଭୟଧର୍ମ ।

ହରି—ଯଦି ଆପଣଙ୍କ ବିଚାରରେ ପାପ ନ ହେବ ତେବେ ଆବଶ୍ୟକ ମୋତେ ଦଅନ୍ତୁ ମୁଁ ଧନ ସ୍ୱାମୀଙ୍କି ଜଣାଇବି, ଯାହା ବିଚାର କରିବେ ।

ଧଃବ୍ରା—ଆଚ୍ଛା, ଏ ପିଲାଟି କିଏ ? ଏଠାରେ ଶୋଇଛି କାହିଁକି ?

ହରି—ପୁତ୍ର ରୂପେ ଜନ୍ମ ହୋଇଥିଲା, ବର୍ତ୍ତମାନ କେହି ନୁହେଁ, ଶୋଇ ନାହିଁ ଏ ସଂସାରର ଲୀଳା ତ୍ୟାଗ କରିଛି ।

ଧଃବ୍ରା—ତେବେ କପଡ଼ା ମଲା ?

ହରି—ସର୍ପାଘାତରେ ।

ଧଃବ୍ରା—ତେବେ ତୁମମାନଙ୍କର ମୃତକାଶୌଚ, ତୁମଠାରୁ କପଡ଼ ଦାନ ଗ୍ରହଣ କରିବା ।

ହରି—ସେ କଥା ଆପଣ ଜାଣନ୍ତି ?

ଧଃବ୍ରା—ଆମ୍ଭେ ଗୋଟିଏ ମନ୍ତ୍ର ଜାଣୁ ଚେଷ୍ଟା କରିବା ଜାଳେ ବଞ୍ଚିପାରେ ।

( ଝାଡ଼ିବାରୁ ରୋହିତ ଉତ୍‌ଥାନ ଧର୍ମର ଅନ୍ତର୍ଦ୍ଧାନ )

ମାଧବ—( ନେପଥ୍ୟେ ) ଏତେ ବେଳଯାଏ କୁଷ୍ମାଣ୍ଡ ଗଲା କଟୁ ଚ ଥିଲା ପୁଅ ସଙ୍ଗରେ ପ୍ରାଣ ହରାଇ ଦେବ ବୋଲି ସେଇଆ କଲାକି ? ମୋର ଟଙ୍କା ଗୁଡ଼ାକ ପାଣିରେ ପଡ଼ିଲା କି ! ଯାଏଁ ଶ୍ମଶାନ ଦେଖେ ।

( ଶ୍ମଶାନରେ ପ୍ରବେଶ )

ରୋହିତା ମଲେ ! ମୋ ରୋହିତା ମା !

ଶୈବ୍ୟା—ଆଃ ମହାପ୍ରଭୁ !

ମାଧବ—( ସ୍ୱଗତଃ ) ଆରେ ବାପ, ମହାନ ବ୍ରାହ୍ମଣ କଉଠୁ କି ବୁଝିବ ? ଯୋଉଁଠି ପଡ଼ିବ ସେଠୁ ପୁଳାଏ ମାଟି ନେଇକରି ଉଠିବ । ରୋହିତା ମା ପୁଅ ତ ତୋର କରା ଉଠା ବସା ହେଲାଣି । ( ବିଶ୍ୱାମିତ୍ର ପ୍ରତି ) କାହିଁ ନେବପାର ମହାରାଜ, ଆପଣ ଏଠାରେ କି ନିମିତ୍ତ ଉପସ୍ଥିତ ? ଆଉ ଏ ସ୍ତ୍ରୀ କିଏ ?

ଶୈବ୍ୟା—ଏ ମୋର ସ୍ୱାମୀ ଓ ତପୀବର ଧର୍ମି ।

( ଧାତ୍ର ପ୍ରବେଶ )

ବିଶ୍ୱା—ହରିଶ୍ଚନ୍ଦ୍ର, ମୁଁ ବର୍ତ୍ତମାନ ସମସ୍ତଙ୍କୁ ପୁରସ୍କାର କରିବାକୁ ଆସିଛି, ଯଦି ମୋର ଉପରେ କିଛି ସନ୍ଦେହ ଥାଏ, ତୁମ୍ଭେ ପୁତ୍ର ମସ୍ତକରେ ରାଜ ମୁକୁଟ ଦେଇ ସ୍ୱଶରୀରରେ ସ୍ୱର୍ଗକୁ ଯାଅ ।

ହରି—ଶୈବ୍ୟା—( ଅର୍ଘ୍ୟପାତ୍ର )

( ଧାତ୍ର ଧର୍ମରୂପ ଓ ମାଧବ ଅଗ୍ନିରୂପ ଧାରଣ )

ବିଶ୍ୱା—କି ଦେବ ! ଆଶୀର୍ବାଦ କରିବାକୁ ଆସିଲ, ଆପଣଙ୍କ ବ୍ୟବହାରରେ କି ଦୁର୍ଦ୍ଦଶା ଭୋଗ କଲେ ?

ଧର୍ମ—ପୁଣି ବର୍ତ୍ତମାନ କଣ ହେଲା, ସ୍ୱ-ଶରୀରରେ ସ୍ୱର୍ଗଲାଭ, ମୃତ ପୁତ୍ରର ଜୀବନ ଦାନ କାହା ପ୍ରଭାବରୁ ?

ବିଶ୍ୱା—ଜଗତ୍‌ପ୍ରସିଦ୍ଧ ଦାତା ହରିଶ୍ଚନ୍ଦ୍ର ଆଜ ଧର୍ମ ବଳରେ ମୋତେ ପରାଜିତ କରିଛି ।

ଜୟ ଦାନବୀର ରାଜା ହରିଶ୍ଚନ୍ଦ୍ରଙ୍କର ଜୟ !

( ଯତୋ ଧର୍ମସ୍ତତୋ ଜୟ )



# ସୁଶୀଳ ମାଳତୀ

## ଗୀତାଭିନୟ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ରାଜା—ମନ୍ତ୍ରିନ୍ ! ମୁଁ ଏ ବିଶାଳ ସାମ୍ରାଜ୍ୟର ଅଧିକାରୀ ହୋଇ ବହୁକାଳ ସୁଖରେ କାଳାତିପାତ କଲି, ମାତ୍ର ଆଉ ଏଣିକି ଏ ବୃଦ୍ଧାବସ୍ଥାରେ ବାନ୍ଧି ହେବାକୁ ଇଚ୍ଛା ନାହିଁ । ବର୍ତ୍ତମାନ ମୋର ଚତୁର୍ଥାବସ୍ଥା ! ଏ ସମୟରେ ସାଂସାରିକ ବନ୍ଧନ ପ୍ରବୃତ୍ତିରେ ଲିପ୍ତ ନ ହୋଇ ସନ୍ନ୍ୟାସଧର୍ମ ଗ୍ରହଣ କରି ସେହି ପରାତ୍ପର ପରମେଶ୍ୱରଙ୍କର ପାଦପଦ୍ମରେ ଧ୍ୟାନ ରଖିବି ।

ମନ୍ତ୍ରୀ—ମହାରାଜ ! ଯାହା କହିଲେ ତାହା ଯଥାର୍ଥ । ଏ ବୟସରେ ବନ୍ୟାଶ୍ରମ ଧର୍ମ ଗ୍ରହଣ କରିବା ଆପଣଙ୍କର ଉଚିତ । ମାତ୍ର ତତ୍ପୂର୍ବରୁ ରାଜ୍ୟଟି ଯେପରି ଅରାଜକ ହୋଇ ଯଜନରେ ବିଶୃଙ୍ଖଳା ନ ହେବ, ତାହାର କିଛି ପ୍ରତିକାର କରିବା ଆବଶ୍ୟକ ।

ରାଜା—ହଁ, ସେ ତ ଗୋଟିଏ ବେଶ ସମସ୍ୟା ।

ମନ୍ତ୍ରୀ—କିପରି ?

ରାଜା—ବର୍ତ୍ତମାନ ଦୁଇ ରାଣୀଙ୍କ ଦୁଇପୁତ୍ର ସେମାନେ, ସେମାନଙ୍କ ମଧ୍ୟରୁ କାହା ହସ୍ତେ ଏ ରାଜ୍ୟ ଭାର ନ୍ୟସ୍ତ କରିବି ?

ମନ୍ତ୍ରୀ—ରାଜନ୍ ! ଉଚିତ ବିଚାରରେ ଯେ ଯୋଗ୍ୟ ଓ ଯାହାର ହକ ଥାଏ ସେହି ଏକା ରାଜଗାଦି ଚଳାଇବ । ( ପଣ୍ଡିତ ପ୍ରତି ) ହଇହେ ପଣ୍ଡିତେ ! ତୁମର ଏଥିରେ କି ମତ ?

ପଣ୍ଡିତ—ମନ୍ତ୍ରୀବାବୁ ! ଆମର ମତ କ'ଣ ପଚାରୁଛନ୍ତି ? ସେ କେହି ଗାଦିରେ ବସୁ ନା କାହିଁକି, କିନ୍ତୁ ଅନେକ ଦାନ ଧ୍ୟାନ ହେବ, ଖାଇବା ଆୟୋଜନ ହେବ, ପୁରି, ଖିରି, ପିଠା, ଲଡୁ ଏ ସବୁ ତିଆରି ହେବ, ପଣ୍ଡିତ କଥା ତ ଜାଣନ୍ତି । ସ୍ୱା ପୁଣି ପଚାରିବାକୁ ଅଛି ନା ? କରନ୍ତୁ କରନ୍ତୁ ଶୀଘ୍ର ବନ୍ଦୋବସ୍ତ କରନ୍ତୁ । ଅନେକ ସରଞ୍ଜାମ କେଉଁ ଭଣ୍ଡାରରେ ରହିବ ସେଥିରେ ଭଣ୍ଡାରଘରିଆ ହେବୁ ଏକା ଆମ୍ଭେ ।

ମନ୍ତ୍ରୀ—କାହାର କେଉଁ କଥା ପଣ୍ଡିତଙ୍କର ଖାଇବା କଥା ହିଁ ମୂଳ ।

ପଣ୍ଡିତ—ମନ୍ତ୍ରୀବାବୁ ! ଆପଣ ତ ପବନ ଆହାରୀ ହୋଇଥିବେ ପରା ? କେତେ ଯେଉଁ ସେ ବୃଷଣ୍ଡକ ପାଇଁ ତ ଏତେ ନାଟ । ସେହି ବୃଷଣ୍ଡକ ନ ଥିଲେ ବା ଖାଇବା ଚିନ୍ତା ନ ଥିଲେ ସମସ୍ତେ ସେହିଁ ପୂର୍ଣ୍ଣ ଘରେ ବସି ରହିଥାନ୍ତେ ଏଠି ଏତେ ଆଡ଼ମ୍ବର ବା ଲଢେଇ କାହିଁକି ?

ରାଜା—ବୟସ୍ୟ ! ସବୁବେଳେ ଆପଣଙ୍କର ଏ ଥଟ୍ଟା ମଜା ଭଲ ଲାଗେ ନାହିଁ ।

ଗୀତ

( ସନ୍ଧି ଭୁପା—ତ୍ରିପୁଟ )

ହେ ମନ୍ତ୍ରି ! ହେଲି ଏ ବିଷମ ସଙ୍କ ।
ସତେ କି ନିର୍ବିଘ୍ନେ କାର୍ଯ୍ୟ ହେବ ମୋ ସିଦ୍ଧି ।
ମନ୍ତ୍ରିନ୍ ! କାର୍ଯ୍ୟଟି କିପରି ସୁବ୍ୟବସ୍ଥାରେ ନିର୍ବାହିତ ହେବ, ସେଥିପାଇଁ ମୋ ମନରେ ଭାବ ଚିନ୍ତା ।

ମନ୍ତ୍ରୀ—ମହାରାଜ ! ଏ ବୟସରେ ଏତେ ଚିନ୍ତିତ ହେବାର କାରଣ କଣ ?

ରାଜା— (ଗୀତ)

ଜ୍ୟେଷ୍ଠ ରାଣୀର ସୁତ ସୁଧୀର ବୟୋଜ୍ୟେଷ୍ଠ
ଅଧିକାର ତାର ଯିନା ଏ ରାଜଗାଦୀ । ୧ ।

ମନ୍ତ୍ରୀ ବଡ଼ରାଣୀ ପୁଅ ହେଉଛନ୍ତି ସୁଧୀର ଏବଂ ବୟସରେ ମଧ୍ୟ ବଡ଼ ତେବେ ଏ ସମ୍ପତ୍ତିର ସେ ହିଁ ଅଧିକାରୀ ମାତ୍ର ।

ମନ୍ତ୍ରୀ—ମାତ୍ର ପୁଣି କଣ ଜ୍ୟେଷ୍ଠର ତ ସମ୍ପୂର୍ଣ୍ଣ ଅଧିକାର [ ପଣ୍ଡିତ ପ୍ରତି ] ତଲ ହେ ପଣ୍ଡିତେ ! ତୁମର ଏଥିରେ କି ମତ ?

ପଣ୍ଡିତ—ସ୍ୱା ପୁଣି ପଚାରିବାକୁ ଅଛି ନା, ବଡ଼ ରାଣୀଙ୍କ ପୁଅ ପୁଣି ବୟସରେ ସେମିତି—ତାଙ୍କ କାମ-ଗୁଡ଼ିକ ମଧ୍ୟ ସେମିତି । ତେବେ ସେ ରାଜା ନ ହେବ କାହିଁକି ?

ରାଜା—ତାର କାରଣ

( ଗୀତ )

ଜନନୀ ରାଣୀ ପ୍ରେମେ ବନ୍ଧା ମୁଁ ନିଶିଦିନେ
ତା ସୁତ ସଙ୍ଗେ କେମନ୍ତେ ହେବ ବିବାଦ । ୨ ।

ମନ୍ତ୍ରୀନ୍—ମୁଁ ସଦା ସର୍ବଦା ଜ୍ୟେଷ୍ଠ ରାଣୀ ସ୍ନେହ ଓ ପ୍ରେମ ଋଣରେ ଆବଦ୍ଧ, ଯଦି ତାଙ୍କ ପୁତ୍ର ସୁଶୀଳର ପରିବର୍ତ୍ତେ ସୁଧୀର ରାଜା ହୁଏ ତାଙ୍କ ମନରେ ନିଶ୍ଚୟ କଷ୍ଟ ଆସିବ ।

ମନ୍ତ୍ରୀ—ତା ହୋଇପାରେ ମାତ୍ର ସେଇଟା ତ ଅପ୍ରାସଙ୍ଗିକ । ବିଚାର କର, ବିଚାରରେ ଯେଉଁଟି ଉଚିତ ନ୍ୟାୟସଙ୍ଗତ ତାହାହିଁ କରଣୀୟ ।

ପଣ୍ଡିତ—[ ନିଜେ ମୁଣ୍ଡ ହଲାଇ ] କଥାଟା ସତ୍ୟ ମାତ୍ର ମୋର ଏଇ ସାମାନ୍ୟ ମସ୍ତିଷ୍କ ବୁଝିବାକୁ ଜାଣି-ପାରୁଛି ସାନରାଣୀଙ୍କ ପୁଅ ରାଜା ହେଲେ ଭଲ ହୁଅନ୍ତା । କାହିଁକି ନା ଯେତେବେଳେ ରାଣୀମା ସୁଧୀର ରାଜା ହେବା କଥା ଶୁଣିବେ ସେ କି ଆଉ ପ୍ରାଣ ଧରି ଥିବେ ହୋଇପାରିବେ, ନିଶ୍ଚୟ ନା ନିଶ୍ଚୟ ଯେ କୌଣସି ମତରେ ଉଦ୍ବନ୍ଧନ ଦେଇ ମରିବେ, ଏଇଥିପାଇଁ କଥାରେ ଅଛି ଭୟ ।

"ବୁଦ୍ଧି ମନ୍ତ୍ରୀ କାର୍ଯ୍ୟ କଲେ
ପ୍ରମାଦ ନ ପଡ଼ଇ ଭଲେ ।"

ରାଜା— ଗୀତ

ଏଥିକୁ କି ବିଚାର କହ ହେ ମନ୍ତ୍ରୀବର
କେ ରାଜ୍ୟ ନେବ ମୋର ନ ଦିଶେ ବୁଦ୍ଧି ।

ମନ୍ତ୍ରୀନ୍ ! ଏପରି ଗୋଟିଏ ଉପାୟ ଉଦ୍ଭାବନ କର ଯାହାଦ୍ୱାରା କି କୌଣସି ବାଧାବିଘ୍ନ ନ ଘଟି ସୁବ୍ୟବସ୍ଥାରୂପେ କାର୍ଯ୍ୟଟି ନିର୍ବାହ ହୋଇଯିବ ।

ମନ୍ତ୍ରୀ—ମହାରାଜ ! ତେବେ ଦୂତ ପଠାଇ ଦୁଇ ପୁତ୍ରଙ୍କୁ ଡକାଇ ଆଣି ସେମାନଙ୍କ ମତ ନେଲେ ଭଲ ହୁଅନ୍ତା ।

ରାଜା—ହେଉ ତେବେ ଅତି ଶୀଘ୍ର କର ତାର ଆୟୋଜନ । କାହିଁ ଦୂତ ଡକାଅ ବହନ ।

ମନ୍ତ୍ରୀ—ଦୂତ ! ଦୂତ ! ଦୂତ ! (ଦୂତର ପ୍ରବେଶ)

ଦୂତ— ଗୀତ

(ରାଜଗାଧା ଛୁଡ଼ି-ବୁଢ଼ୀ)

ଗଲ ତ ଦିନ ଭାଇ କାହିଁକି
ବସିଛ ହୋଇ ବିମନ ।
ଉଡ଼ଆଣି ଉଡ଼ଆ ଖୋଷା
ଛୁଡ଼ି ବଳାଙ୍କୁଣିରେ ଆଣ ।
ହାଟକୁ ପଠାଇ ପାଞ୍ଚଟା ପଇସା
କିଣା ଯାଉଅଛି ତ ନୂଆ ଫେସନ ।
ନାକେ ଥିଲ ସୁନା ବସଣୀ
କାଢ଼ି କଲେ ଲବଙ୍ଗ ବେଳ ।
ହାତ ଖଡ଼ୁ ଖଡ଼ ବାଲ ଗଡ଼ାଇଲେ
ଶଙ୍ଖା ଛୁଡ଼ି ପାଣି କାଚରେ ମନ
ଆସିଗଲା ନବ୍ୟ ଫେସନ
ଦେଖି ବୁଝି ନ ହୁଏ ମନ ।
ବାଳକୃଷ୍ଣ ବୋଲେ ବୁଦ୍ଧି ଦେଖ ଭଲେ
କାଳେ ମରଦଟି ନ ହେବ ସାନ ।

(ଅଭିବାଦନ ପୂର୍ବକ) ପ୍ରଭାଏନ୍ତୁ ମହାରାଜ ! କି କାମନ୍ତେ ଅଧୀନରେ ଡକାଇଲେ ଏଥେ ?

ରାଜା—ଦୂତବର ! ଯାଅ ଶୀଘ୍ର ଡାକ ଆଣ ବେନି କୁମରେ ମୋହର ।

ଦୂତ—ଯଥାଜ୍ଞା ମହାରାଜ ।

(ଅଭିବାଦନ ପୂର୍ବକ ପ୍ରସ୍ଥାନ)

ସୁଧୀର ସୁଶୀଳର ପ୍ରବେଶ ଓ ଅଭିବାଦନ ।

ପିତଃ ! କି ନିମନ୍ତେ ଡକାଇଲେ ଅଧୀନେ ଏଠାରେ

ରାଜା—ବାପରେ ! ମୋର ଗୋଟିଏ ଅଭିଳାଷ ପୂର୍ଣ୍ଣ କରି ପାରିବ ତ ?

ସୁଧୀର—କିବା ଅଭିଳାଷ ତାତ ଦୟାକରି ପ୍ରକାଶ ଆମ୍ଭରେ ।

ରାଜା— ଗୀତ

(ଘନନାଦ-ରୂପକେ)

ପୁତ୍ରରେ ଧର୍ମରାଜ ଏ ରାଜ ବହୁତ
ବନ୍ୟାଶ୍ରମ ଯିବାକୁ ମୋ ବଳୁଛି ମତ ।

ବାପରେ ! ମୋର ବର୍ତ୍ତମାନ ବନ୍ୟାଶ୍ରମ ଧର୍ମ ଗ୍ରହଣ କରିବାର ଇଚ୍ଛା, ସେଥିଯୋଗୁଁ ତୁମ୍ଭମାନଙ୍କୁ ଡକାଇଲି । ନିଅ ଏ ରାଜ୍ୟ ଭାର ଗ୍ରହଣ କର !

ସୁଧୀର—ତାତ ଆମ୍ଭମାନଙ୍କର ସେ ଶକ୍ତି କଣ ହେଲଣି ?

ରାଜା— ଗୀତ

ହେଲା ଚତୁର୍ଥ ସମୟ ବନ ଲାଗୁଛି ଉଦୟ
ପରମେଶ୍ୱର ଆଶ୍ରୟ ଲୋଡ଼ା ମୋ ପୁତ୍ର ।୨।

ବାପରେ ! ବର୍ତ୍ତମାନ ମୋର ଚତୁର୍ଥ ସମୟ । ଏ ସମୟରେ ସମସ୍ତ ସ୍ତ୍ରୀ ପୁତ୍ରାଦି ତ୍ୟାଗ କରି ସନ୍ନ୍ୟାସୀ ଧର୍ମ ଗ୍ରହଣ କରିବା କର୍ତ୍ତବ୍ୟ । ଉଦୟ ମନରେ ପଡ଼ ସେ କି [illegible] ତର୍ଣ୍ଣିରେ ମୁକ୍ତିର ପଥ ଆନନ୍ଦୀ ନାହିଁ । ଏଥି ଏ ସମୟରେ ତାର ପ୍ରତୀକାର ନ କରିବ ତ ଆଉ ମୋକ୍ଷ ନାହିଁ !

ସୁଧୀର—ତାତ ! ଆପଣଙ୍କ ଇଚ୍ଛାରେ ବାଧା ଦେବା ଆମ୍ଭମାନଙ୍କର କର୍ତ୍ତବ୍ୟ ନୁହେଁ । ତେବେ ଯେଉଁ ଉପଦେଶ ଦେବେ ସେହି ଅନୁସାରେ କାର୍ଯ୍ୟ କରିବୁ ।

ରାଜା— ଗୀତ

ବସିବ ଆସନରେ ଧୂତତ, ରାଜ୍ୟ [illegible] ଜାଣ ନାହିଁ
ଅବସ୍ଥ ପଢ଼ି ମୋତେ ଭୂଷା ଘଟିଲେ । କ ।

ବତ୍ସରେ ! ଦୁଇଜଣଙ୍କ ମଧ୍ୟରୁ କିଏ ରାଜଗାଦୀରେ ବସିବ, ଆଉ କିଏ ଅନ୍ୟାନ୍ୟ କାର୍ଯ୍ୟରେ ତତ୍ତ୍ୱାବଧାନ ନେବ ?

ସୁଧୀର—ତାତ ! ସୁଶୀଳ ରାଜଗାଦିରେ ବସୁ । ମୁଁ ଅନ୍ୟାନ୍ୟ କାର୍ଯ୍ୟର ତତ୍ତ୍ୱ ନେବି ।

ସୁଶୀଳ—(ନତ ମସ୍ତକେ) ଭାଇ ! ଏ କି ଅନ୍ୟାୟ କଥାର । ଆପଣ ଜ୍ୟେଷ୍ଠ ଭ୍ରାତା ପିତୃତୁଲ୍ୟ ବିଦ୍ୟମାନ । ଆପଣ ସିଂହାସନରେ ନ ବସି ମୁଁ ବସିବି କପରି ?

ସୁଧୀର—ସୁଶୀଳ ! ବାନ ମାଆଙ୍କ ମନରେ କୌଣସି କଷ୍ଟ ଆସିବ, ସେଥିଯୋଗୁଁ କହୁଛି ତୁ ସିଂହାସନରେ ବସିବାଦ୍ୱାରା ମୋର ମନରେ କୌଣସି କଷ୍ଟ ଆସିବ ନାହିଁ ।

ସୁଶୀଳ— ଗୀତ

(ଖାଇ ମୁହିଁ—ରୂପକେ)

ଭ୍ରାତ ଏ କି ଅନୀତି ବଚନ
ଅନୁଗତ ଜନେ କ୍ଷମା ଦିଅ ଏହି ଗୁରୁ ଭାର । ଦୋଷ
ନା ଭାଇ ! ମୁଁ ଆପଣଙ୍କର ଶ୍ରୀଚରଣେ ଦାସାନୁ-
ଦାସ, ମୋତେ କାହିଁକି ଏ ବିପଦରେ ପକାଉଛନ୍ତି ।
ଆପଣ ଥାଉଁ ଥାଉଁ ସିଂହାସନରେ ବସିବି, ବଡ଼ ଅନ୍ୟାୟ କଥା ନା ଭାଇ ! ମୋତେ ବୋଧହୁଏ ପରପର ଭାବୁଛନ୍ତି ।

ସୁଧୀର—ସୁଶୀଳ ! ଏ କଥା କାହିଁକି କହୁଛୁ ।

ସୁଶୀଳ— ଗୀତ

ମୁଁ ବୈମାତ୍ରୀ ସୁତ ଯେଣୁ
ଘୃଣା ମୋତେ କର ତେଣୁ
ଦେଉଛ ତୁମ୍ଭ ଚରଣୁ
ପ୍ରାଣ (ମୋ) ହେଉଛି ଅସ୍ଥିର ।

ଭାଇ ! ମୁଁ ବୈମାତ୍ରୀପୁତ୍ର ବୋଲି ମୋତେ ଘୃଣା କରି ଭରତଙ୍କୁ କୌଣସି ବିପଦ ଆଣିବା ଭଳି ସିଂହାସନ ଦେଉ ନାହାନ୍ତି ।

ସୁଧୀର—ସୁଶୀଳ ! ବାସ୍ତବିକ କଥା, ସାନ ମାଆଙ୍କ ମନରେ କାଳେ କୌଣସି କଷ୍ଟ ଆସିବ ସେଥି ଯୋଗୁଁ ତୋତେ ସିଂହାସନରେ ବସାଇବାକୁ କହୁଥିଲି । ତୋର ମୋର କଣ ଭିନ୍ନ ଭିନ୍ନ ଅଛୁ ।

ସୁଶୀଳ—                ( ଗୀତ )
ମାତ ଯେବେ କହୁ ଶ୍ରେଷ୍ଠ  ତୁମ୍ଭରେ ଦେବେନି ଦୋଷ
ମୁଁ ତାହା କରିବ ତ୍ୟାଗ,
ଏହି ପ୍ରତିଜ୍ଞା ମୋହର । ୨ ।

ରାଜ ! ମା ଯଦି କୌଣସି ଦୁଃଖ ଲଗାନ୍ତି ତେବେ ମୁଁ ତାର ପ୍ରତିକାର କରିବି, ଆପଣ ସିଂହାସନରେ ବସନ୍ତୁ ।

ପିତଃ ! ଏ ସିଂହାସନରେ ଭାଇଙ୍କର ହକ ଦାବି, ତାଙ୍କୁ ସିଂହାସନ ଦିଅନ୍ତୁ ମୁଁ ତାଙ୍କ ଉପଦେଶାନୁସାରେ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ନିର୍ବାହ କରିବି ।

ରାଜା—ଧନ୍ୟ ବତ୍ସ ! ମନ୍ତ୍ରିନ୍, ବର୍ତ୍ତମାନ ରାଜ୍ୟରେ ଘୋଷଣା ଦିଅ ଯେ କାଲି ସୁଧୀର ଯୌବରାଜ୍ୟରେ ଅଭିଷିକ୍ତ ହେବ ! ସମସ୍ତେ ଯେ ଯାହାର ଦ୍ୱାରଦେଶରେ ପୂର୍ଣ୍ଣକୁମ୍ଭ ଓ ରମ୍ଭାତରୁମାନ ସ୍ଥାପନ କରି ଚନ୍ଦ୍ରାତପମାନ ଲଟକାଇ ଯଥାବିଧି ଅଭିଷେକ ଉତ୍ସବରେ ଉନ୍ମତ୍ତ ହେବେ, ଆଜ ଏଠାରେ ସଭା ଭଙ୍ଗ ହେଉ ।

—*—

## ଦ୍ୱିତୀୟ ଦୃଶ୍ୟ

ପଣ୍ଡିତ  ଏତ ବଡ଼ ମୁସ୍କିଲ କଥା ହେଲା, ରାଣୀ ମୋତେ ଭାରି ଭଲ ପାଆନ୍ତି ! ଅପୂର୍ବ ସପୂର୍ବ ଜିନଷଟାଏ ହେଲେ ମୋ ପାଇଁ ଆସେ ! ରାଜା ଯଦି ସୁଧୀରକୁ ସିଂହାସନ ଦେଇ ବନଗାମୀ ହୁଅନ୍ତି ତେବେ ନିଶ୍ଚୟ ରାଣୀମା'ଙ୍କ ମନରେ କଷ୍ଟ ହେବ ! କଣ କରିବ ? ତାଙ୍କ ପୁଅ ତ ରାଜା ହେଉନାହାନ୍ତି, ଏକ ଉପାୟ କରିବା ଦେଖାଯାଉ । ରାଣୀମାଆଙ୍କ ନିକଟକୁ ଯିବା ନିତାନ୍ତ ଦର୍କାର ।

ରାଣୀ ଓ ଦାସୀ

ରାଣୀ—ଦାସୀ ! ରାଜା ଏତା ମୋତେ ଭାରି ଭଲପାଆନ୍ତି ମୁଁ ଯେତେବେଳେ ଯାହା କହେ ସେ କୌଣସିମତେ ମୋର କଥା ଟାଳନ୍ତି ନାହିଁ ।

ଦାସୀ—ମଲ, ଏ କଣ ନୂଆ କଥାଟାଏ ନା କଣ ? କନଅମାଇତଙ୍କ ଠେଇଁ ସମସ୍ତଙ୍କର ସ୍ନେହ, ଧନଗୋ ମହାଦେଈ ! ରାଜା ଆମ୍ଭର ବୁଢ଼ାହେଲେ ସନ୍ନ୍ୟାସୀ ହୋଇ ଯାଉଛନ୍ତି ।

ରାଣୀ—କେଜାଣି ମୁଁ ତ ତୋ'ହାତଠାରୁ ଶୁଣୁଛି ! ଯଦି ସନ୍ନ୍ୟାସୀ ହୋଇଯିବେ ତେବେ ସିଂହାସନ କାହାକୁ ଦେଇଯିବେ ?

ଦାସୀ—ତୁମେ ଯେଉଁଠି ମୁଁ ତ ସେଇଠି, ଜାଣିଲ କେମିତି ? ଶୁଣାଶୁଣିରେ ବୁଝାଗଲା ସୁଧୀରବାବୁ ରାଜା ହେବେ ।

ରାଣୀ—ଦାସୀ ! କଣ ସତ କହୁଛୁ ?

ଗୀତ
( ଆଶା ମେଘାଇ—ତୃତୀୟ )

ଦାସୀ ନ କହ ସେ କଥା ଲୋ,
ହୃଦେ ଲାଗେ ମୋର ବ୍ୟଥା ।
ଜ୍ୟେଷ୍ଠପୁତ୍ରେ ରାଜ୍ୟ ଦେବ
ଲୋ ଆଜ ଅଛି କେବା ସାମରଥ୍ୟ ।

ଦାସୀ ! ଏମନ୍ତେ ନ୍ୟାୟପର ଓ ଶକ୍ତିମାନ୍ କେ ଅଛି ଏ ଭବେ ଯେ ମୋ ପୁତ୍ରକୁ ରାଜ୍ୟ ନ ଦେଇ ସୁଧୀରକୁ ରାଜ୍ୟ ଦେବ ।

ଦାସୀ—ମୁଁ ଏବେ ଜାଣିଲି କେମନ୍ତେ ମ ।

ରାଣୀ—                ( ଗୀତ )
ମନାଇ ମୁଁ କାନ୍ତେ ମାଗିଛି ବର,
ମୋର ପୁତ୍ରେ ଦେବେ ରାଜ୍ୟାଧିକାର,
ଆଜ କଥା ପର ହେଲା ମୋ କୁମର
ଅସ୍ଥିର କଲାଣି ମଥା ।୧।

ଦାସୀ ! ମୋର ବିବାହରେ ଯେତେବେଳେ ପ୍ରାଣନାଥଙ୍କ ସହ ପ୍ରେମାଳାପ ହେଲା ସେତେବେଳେ ରାଜାଙ୍କୁ ବହୁତ ଅନୁନୟ କରି କହିଥିଲି, ଯଦି ମୋର ଗର୍ଭରୁ ସନ୍ତାନ ଉତ୍ପନ୍ନ ହୁଏ ତେବେ ସେହି ଏକା ରାଜଗାଦି ଭୋଗ କରିବେ, ସେଥିରେ ସେ ସମ୍ମତି ପ୍ରଦାନ କରିଥିଲେ, ମାତ୍ର ଆଜ କାହିଁକି ଏ କଥା କହୁଛନ୍ତି ।

( ଗୀତ )
କହ ସଖି କି କରିବି ଏବେଣି,
କେବେହେଁ ରାଜା ହେବ ମୋ ଧୃତମଣି,
ଧାତା ମୋତେ ଆଣିଦେଲା ଏ
ଦୁଃଖେଣି ଦାରିଦ୍ର ପଡ଼ିଲା ଚେନ୍ତା ।

ସଖି ! ବର୍ତ୍ତମାନ ଉପାୟ କଣ ? ସୁଧୀର ଯେବେ ରାଜଗାଦିରେ ବସେ ତେବେ ମୁଁ ତ ସାତ ପୋଇଲଠାରୁ ବଳି ପଡ଼ିବି ।

ଦାସୀ ଏଇ ତ ପଣ୍ଡିତେ କାହିଁକି ଧପାଇଛନ୍ତି ।

ରାଣୀ—ପଣ୍ଡିତେ କୁଆଡ଼େ ଚାଲି ଆସିଲେ, ଆଜି ସଭାର ଖବର କଣ ?

ପଣ୍ଡିତ – ମା ! ତୁମ ମନରେ କାଳେ କଷ୍ଟ ହେବ ସେଥିଯୋଗୁ କହିବାକୁ ଭୟ ହେଉଛି ।

ରାଣୀ—ଭୟ କଣ ? କୁହନ୍ତୁ ।

ପଣ୍ଡିତ— ମହାରାଜା ଆଜି ସଭାରେ ପ୍ରକାଶ କଲେ ଯେ ଦୁଇପୁତ୍ର ମଧ୍ୟରୁ କେ ଯୁବରାଜ ପଦରେ ଅଭିଷିକ୍ତ ହେବ । ଆମ୍ଭେମାନେ କହିଲୁ ସୁଶୀଳ ଉପଯୁକ୍ତ ବିଶେଷତଃ ରାଣୀମା’ ପୁତ୍ର ମସ୍ତକରେ ରାଜମୁକୁଟ ଦେଖିବେ ଏଇଟା ଭଲ ହେବ ।

ରାଣୀ—ତହୁଁ ରାଜା କ’ଣ କହିଲେ ?

ପଣ୍ଡିତ—ରାଜା କହିଲେ ପାଟରାଣୀର ପୁତ୍ର ରାଜା ନ ହୋଇ ସାନରାଣୀର ପୁତ୍ର ରାଜା ହେବା ଉଚିତ ନୁହେଁ, ତହୁଁ ଆମ୍ଭେମାନେ ନିରୁତ୍ତର ହେଲୁ, ଅବଶ୍ୟ କାଲି ସୁଧୀର ଯୁବରାଜ ହେବା ଠିକ୍ ହୋଇଛି ।

ରାଣୀ—ରାଜା ! ତୋର ଏତେ ଛଳ, ତୋର ଅନ୍ତରରେ ଗରଳ, ମୁଖରେ ମଧୁ । ମୋତେ ଖାଲି ଉପର ମନରେ ଏତେ ସ୍ନେହ ଦେଖାଉ ଥାଉ ।

(ଗୀତ)

ଦ୍ୱିଜ ଶୁଣ ବଚନ

କେମନ୍ତେ ରକ୍ଷା ହୋଇବ ନୃପତି ପଣ । ଘୋଷା ।

ଦ୍ୱିଜବର ! କହନ୍ତୁ ବର୍ତ୍ତମାନ କି ଉପାୟ କଲେ
ରାଜାଙ୍କର ପ୍ରତିଜ୍ଞା ନଷ୍ଟ ହୋଇଯିବ ।
ଯେବେ ମୋ ପୁତ୍ରକୁ ରାଜ୍ୟ ନ ଦେଲେଟି ନୃପ ଆଜ,
ତେବେ ମୁଁ କି କରି କାର୍ଯ୍ୟ ରଖିବି ଶାଣ । ୧ ।
ରାଜା ଯେବେ ମୋ ପୁତ୍ରକୁ ସିଂହାସନ ନ ଦେଲେ
ତେବେ ମୁଁ ତାଙ୍କର କଣ ସେ ମୋର କଣ ?

(ଗୀତ)

ଦେଖାଅ ଛଳ କୌଶଳ    ଯେମନ୍ତେ ତୁମେ ତୁଷାଳ
ରାଜ୍ୟ ପାଇବ ସୁଶୀଳ ଥିବ ମୋ ମନ । ୨ ।

ଦ୍ୱିଜବର ! ଉପାୟ କହନ୍ତୁ, ରାଜା ଯେପରି ବଳେ ବଳେ ସୁଶୀଳକୁ ରାଜ୍ୟ ଦେବ ଏବଂ ସୁଧୀରକୁ ରାଜ୍ୟରୁ ତଡ଼ିଦେବ ।

ପଣ୍ଡିତ—ରାଣୀମା ! କିଛି ଚିନ୍ତା ନାହିଁ, ମୋର ଦକ୍ଷିଣାଟା କଣ ମିଳିବ କହନ୍ତୁ ।

ରାଣୀ ଦ୍ୱିଜବର ! ଯାହା ମାଗିବ କିଛି ଚିନ୍ତା କରନାହିଁ, ପ୍ରାଣ ପର୍ଯ୍ୟନ୍ତ ଅର୍ପଣ କରିପାରେ ।

ପଣ୍ଡିତ—ପିଠା ଯୋଡ଼େ ଆଉ ଟଙ୍କା ତୋଡ଼ାଏ । ରାଣୀମା ଆଜି ଯେତେବେଳେ ରାଜା ତୁମ ନିକଟ ଆସିବେ ତୁମେ ଦୁଃଖିତ ଭାବେ କହିବ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଛି ।

ରାଣୀ—କି ସ୍ୱପ୍ନ ଦେଖିଛି ବୋଲି କହିବ ?

ପଣ୍ଡିତ—ତୁମ୍ଭେ କହିବ, ଜଣେ ତୁମ୍ଭଙ୍କୁ ଅସ୍ତ୍ରଶସ୍ତ୍ର ନେଇ ମାରିବାକୁ ଗୋଡ଼ାଉଛି । ସ୍ୱପ୍ନ କଥା କେତେକ ଫଳବନ୍ତ ହୋଇଥାଏ । ଏଣୁ ଆପଣ ଆଜି ରାତିଟା ଜାଗ୍ରତ ରହନ୍ତୁ ।

ରାଣୀ—ତହୁଁ କଣ ହେବ ?

ପଣ୍ଡିତ—ମୁଁ ଯାଉଛି ସୁଧୀରକୁ କହିବ ଆଜି ରାତି ପ୍ରଥମ ପ୍ରହରରେ ତୁମ୍ଭର ପିତାଙ୍କୁ କେହି ଶତ୍ରୁ ଆସି ନିହତ କରିବେ ଏହା ଗଣନାଦ୍ୱାରା ଠିକ୍ ହୋଇଛି, ଯେବେ ତୁମ୍ଭେ ପିତାଙ୍କ ଶୟନକକ୍ଷର ଚତୁଃପାର୍ଶ୍ୱରେ ପହରା ଦିଅ, ଯଦି କୌଣସି ଶତ୍ରୁ ଉପସ୍ଥିତ ହୁଏ ତେବେ ଶତ୍ରୁହସ୍ତରୁ ପିତାଙ୍କୁ ରକ୍ଷା କରିବ ।

ରାଣୀ—ତହୁଁ କଣ ହେବ ?

ପଣ୍ଡିତ—ଯେତେବେଳେ ସୁଧୀର ଶୟନକକ୍ଷ ନିକଟରେ ପହଞ୍ଚିବ ସେତେବେଳେ ତୁମ୍ଭେ ବୃଥା ଛଳନା କରି ସର୍ବନାଶ ବୋଲି ଚିତ୍କାର କରି ଉଠିବ, ସୁଧୀର ସେହି ମୁହୂର୍ତ୍ତରେ ଗୃହମଧ୍ୟକୁ ପ୍ରବେଶ କଲାମାତ୍ରେ ତୁମ୍ଭେ ତାର ତଲୁଆର ଧରି ଏ କି ଅନ୍ୟାୟ କରୁଛୁ ବୋଲି କହିବ । ସେଥିରେ ସୁଧୀର ଦଶା ନିଶ୍ଚୟ ମନ୍ଦ ଘଟିବ ।

ରାଣୀ—ଦ୍ୱିଜବର ! ଠିକ୍ କଥା, ତୁମ୍ଭେ ଯାଅ ସୁଧୀରକୁ ଏ କଥା କହିବ, ସେ ପଶ୍ଚାତ୍ପଦ ନ ହେଉ ।

(ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ମାଙ୍ଗଳିକ କାର୍ଯ୍ୟରେ ପଣ୍ଡିତଗଣ, ସୁଧୀର )
(ବ୍ରାହ୍ମଣ ଗଣଙ୍କର ପୁସ୍ତକରୁ ମନ୍ତ୍ର ପଠନ ।)

ଶ୍ରୀମତ୍ପଙ୍କଜ ବିଷ୍ଟରୋ ହରିହରେ ବାୟୁ-ର୍ମହେନ୍ଦ୍ରାନଳଶ୍ଚନ୍ଦ୍ରୋ । ଭାସ୍କର ବିତ୍ତପାଳ ବରୁଣୋ ଧର୍ମାଧିପାଦ୍ୟୋଗ୍ରହାଃ । ପ୍ରଦ୍ୟୁମ୍ନୋ ନଳକୁବରେ ସୁରଗଜ ଶ୍ଚିନ୍ତାମଣିଃ କୌସ୍ତୁଭଃ ସ୍ୱାମୀ ଶକ୍ତିଧରଶ୍ଚ ଲାଙ୍ଗଳଧରଃ କୁର୍ବନ୍ତୁ ତେ ମଙ୍ଗଳଂ । ୧ ।

(ଅଥ କର୍ମାରମ୍ଭଃ) ଦକ୍ଷିଣତୋ ବ୍ରହ୍ମାସନଂ ଉତ୍ତରେ ପ୍ରଣିତା-ପ୍ରଣୟନ ପ୍ରଭୃତ୍ୟାଦି ଚତୁଷ୍କିଷ୍ଟ ପରିସ୍ତରଣଂ । [ ଇତ୍ୟାଦି ]

ପଣ୍ଡିତ—ହାରେ କପାଳ ! ରାଜା ତ ଅନ୍ୟର କାହାର ଦୋଷରେ ନ ଥାନ୍ତି ତାଙ୍କୁ ପୁଣି କାହିଁକି ଏ ଦଣ୍ଡ ।

ସୁଧୀର—କି କଥା ଗୋସାଇଁ ?

ଗୀତ

କହ ଦ୍ୱିଜ, କି ଲାଗି ହେଉଛ ଅଧୈର୍ଯ୍ୟ ।
କି ବିଷାଦ ଘୋଟିଅଛି ତୁମ୍ଭ ମୁଖାମ୍ବୁଜ ।

ଦ୍ୱିଜବର ! ତୁମ୍ଭର ମୁଖକମଳ ଏପରି ମ୍ଳାନ ଦେଖାଯାଉଛି କାହିଁକି, ମୁଁ ତ କିଛି ବୁଝିପାରୁ ନାହିଁ ।

ଗୀତ

ଉତ୍ପାତର ପରି ଦେହ    କମ୍ପୁଅଛି ଥରଥର
ହୁଏ ମୋ ମନେ ସନ୍ଦେହ କି ଘଟିଛି ଆଜ । ୧

ଦ୍ୱିଜବର ! ତୁମ୍ଭର ଦେହ ଏପରି ଥରୁଛି କାହିଁକି ? ବୋଧହୁଏ କୌଣସି ଭୟ ହୋଇଛି । କହନ୍ତୁ କି ଭୟ ? ଯଦି ମୋଦ୍ୱାରା ସାଧ୍ୟ ହୋଇପାରେ ଚେଷ୍ଟା କରିବି ।

ଗୀତ

ଦେଖା ତବ ହୋଇ ଅବ    ନାଶୁଅଛି ସୁଖନିଧି
କହ ସଂଶୟ ନ କରି କେନ ମୋ ଅଗ୍ରେ ।

ଦ୍ୱିଜବର ! ମୋର ମନ କେତେଆଡ଼କୁ ଘୂର୍ଣ୍ଣୁଛି । କି କଥା ପ୍ରକାଶ କରନ୍ତୁ, ମୁଁ ଅପର ଦୁଃଖ ଦେଖି ଧୈର୍ଯ୍ୟଧରି ରହିପାରେ ନାହିଁ, ଆଉ କି ସମସ୍ତ ଅଳସ ହୋଇ ଯାଉଛି ।

ପଣ୍ଡିତ—ଆମ୍ଭର ଜନ୍ମପତ୍ରୀକୁ ଏବେ ପଢ଼ିଲେ ଜଣା ପଡ଼ିଯାଉଛି, ସେ ଦଶାର ଛିଦ୍ର କହିବା କାହାକୁ ।

ସୁଧୀର - କହ କହ କହନ୍ତୁ କାହିଁକି ?

ପଣ୍ଡିତ-ଆଜ ଗଣନାଦ୍ୱାରା ଦେଖିଲି ତୁମ୍ଭ ପିତାଙ୍କୁ ଶତ୍ରୁ ଘାତ ହେବ । ହା କପାଳ, କେଡ଼େ ନ୍ୟାୟ-ବାନ୍ ରାଜା, କେତେ ଧାର୍ମିକ ରାଜା, ଉଃହୋ ! ଉଃହୋ ।

ସୁଧୀର—ଦ୍ୱିଜବର ! ବ୍ୟସ୍ତ ହେବାକୁ ସମୟ ନାହିଁ ତାର ପ୍ରତିକାରର ବାଟ କହନ୍ତୁ । ଯଦ୍ଦ୍ୱାରା ପିତା ଶତ୍ରୁ ହସ୍ତରୁ ମୁକ୍ତ ହେବେ ।

ପଣ୍ଡିତ—ଉପାୟ କଣ, ଆଉ କେହି ତାଙ୍କ ନିକଟ ଯିବେ ନାହିଁ । ଯିଏ ତ ଅପର ଲୋକ ଯିବ ସେ କଣ ଶତ୍ରୁ ନୁହେଁ, ମୁଁ ମଧ୍ୟ ରାଣୀମାଙ୍କୁ ଏ ବିଷୟ କହି ଆସିଛି । ସତରେ ଟିକିଏ ହୁସିଆର ରହିବେ, ଦେଖାଯିବ ଯାହା ହେବ ।

ସୁଧୀର—ମୋ ଦ୍ୱାରା କଣ କିଛି ହୋଇ ପାରିବ ନାହିଁ ?

ପଣ୍ଡିତ  ଏତ ଅତି ଆନନ୍ଦର କଥା, ତେବେ ଶୁଣ । ଯେତେଣେ ତୋର ବାପ ମା ଅଛନ୍ତି, ଘର ଭିତରେ ରହି ନ ପାର; ତେବେ ବାହାରରେ ତୁମ୍ଭେ ହୁସିଆରରେ ରହିବ; ଶତ୍ରୁ ଆସିଲେ ବା ବିପଦ ପଡ଼ିଲେ ହଠାତ୍ ପ୍ରତିକାର କରିବ; ତୁମ୍ଭେ ଯାଅ ସଙ୍ଗରେ ମଧ୍ୟ ସୁଶୀଳକୁ ନେଇଯାଅ ।

ସୁଧୀର—ସୁଶୀଳ ପିଲାଲୋକ, ସେ ଭୟ କରିବ ।

ପଣ୍ଡିତ  ତା ତା ସତ; ତେବେ ତାକୁ କହିବା ଦରକାର ନାହିଁ । ଆପୁଣି, ରାତ୍ର ପ୍ରଥମ ପ୍ରହରକୁ ବିଶେଷ ସତର୍କ ଥିବ ।

ସୁଧୀର—ଗୁରୁଦେବ ! ବର୍ତ୍ତମାନ ଆପଣଙ୍କର ମାଙ୍ଗଳିକ କାର୍ଯ୍ୟ ଶାନ୍ତ ଥାଉ, ମୁଁ ପିତାଙ୍କୁ ଶତ୍ରୁ କବଳରୁ ରକ୍ଷା କରିବି । ପରେ ମୋର ସେ ସୌଭାଗ୍ୟ ହେବ । ଓଃ ଭଗବନ୍ ! ଯଦି ଏ ବିପଦ ବେଳେ ମୁଁ ସହାୟ ନ ହୁଏ ତେବେ ମୋର ଜନ୍ମ ବ୍ୟର୍ଥ ହେବ ।

---

ରାଣୀ— ଗୀତ

ଆସିଲା ଏକ ପୁରୁଷ
ତୁମ୍ଭଙ୍କୁ ସମ୍ମୁଖେ କଲା ବିନାଶ
ହେ ପ୍ରାଣନାଥ,
ମୁହିଁ ମୂର୍ଚ୍ଛା ଥାଇ କିବା ସଣ । ୨ ।

ନାଥ ! ଜଣେ ଯୁବା ପୁରୁଷ ଅସ୍ତ୍ରଶସ୍ତ୍ର ଘେନି ଜବରଦସ୍ତ ଦ୍ୱାର ଭାଙ୍ଗିଦେଇ ଆପଣଙ୍କୁ ହାଣି ପକାଉଛି, ମୁଁ ସେ କଥା ଦେଖିଲାବେଳରୁ ଆଉ କେଉଁଥିରେ ମନ ଲାଗୁନାହିଁ ।

ରାଜା—ପ୍ରିୟେ ! ତୁମ୍ଭେ କଣ ପାଗଳପରି ହେଲ କି ? ସ୍ୱପ୍ନକଥା ବିଶ୍ୱାସଯୋଗ୍ୟ ହେଲେ ପଛ ଦୁର୍ଯୋଗ ଘଟିବାର ଥାଏ ତେବେ ଭୟ କଣ ?

"ମର୍ତ୍ତ୍ୟମଣ୍ଡଳେ ଦେହ ବହି,
ଦେବତା ହୋଇଲେ ମରଇ"

ତେବେ ମରିବାକୁ ଗୋଟାଏ ଭୟ କଣ ?

ରାଣୀ— ଗୀତ

ତୁମ୍ଭ ଦଶା ହେଲେ ଏମା,
ଆଉ କେ କମାନ ହୋଇବ ସାହା
ହେ ପ୍ରାଣନାଥ !
ବାଳାମଣି କି ପାଉଛି ବନା । ୩ ।

ନାଥ ! ଅନେକ ସମୟରେ ସ୍ୱପ୍ନ କଥା ଫଳବତୀ ହୋଇଥାଏ । ପଛ ଆପଣଙ୍କର ଏ ଦୁର୍ଦ୍ଦଶା ଘଟେ ମୋର ଆଉ କି ଗତି ଅଛି ?

ରାଜା—ପ୍ରିୟେ ! ତୁମ୍ଭେ ଏ କଥା ପ୍ରକାଶ କଲାବେଳଠାରୁ ମୋର ମନରେ ମଧ୍ୟ ଭୟ ଆସୁଛି । ପ୍ରକୃତ ଘଟିଥିବା ପର୍ଯ୍ୟନ୍ତ ଲେଖା ଅଛି—ତେବେ ଉପାୟ କଣ ?

ରାଣୀ—ନାଥ ! ଆଜି ସାରା ରାତି ଜାଗି ରହିବାକୁ ପଡ଼ିବ ।

ରାଜା—ତୁମ୍ଭ ମଧ୍ୟ ମୋ ସହିତ ଜାଗ୍ରତ ହେବାକୁ ପଡ଼ିବ ।

ରାଣୀ—ମୁଁ ପୁଣି ଶୋଇବାକୁ ଅଛି ନାଥ ! ଆପଣ ବିଶ୍ୱାସ କରିବେ ନାହିଁ, ଏ ସ୍ୱପ୍ନଟା ଦେଖିଲା ବେଳଠାରୁ କେବେ ରାତିଟା ପାହିବ ସବୁ ମୋତେ ନିଦ ନାହିଁ କି ଭୋକ ଶୋଷ ନାହିଁ ।

ରାଜା—ପ୍ରିୟେ ! ହରିନାମ ଭଜନରେ ଆପଦ ଦୂର ହୋଇଯାଏ, ତେବେ ଖାଲି ବସିବା ଅପେକ୍ଷା କୌଣସି ଈଶ୍ୱରତତ୍ତ୍ୱ ଚର୍ଚ୍ଚା କରିବା, ଯାଅ ମୋର ଗୀତା ଖଣ୍ଡି ଆଣିଲ ।

ରାଣୀ—ହଉ ନାଥ ! ଆସେ ( ବାହାରକୁ ଯାଇ ) ଏଇ ତ ମହାରାଜ ସର୍ବନାଶ ?

ସୁଧୀର—(ପ୍ରବେଶି ସ୍ୱଗତ) ପଣ୍ଡିତେ ଯାହା କହିଥିଲେ ଏହା ଠିକ୍ ସେ ସମୟ । ଏଠାରେ ବିଶେଷ ସତର୍କ ରହିବା ଦରକାର (କଣ୍ଠଚ୍ଛେଦ) ଆଃ କି ଆର୍ତ୍ତନାଦ (ପ୍ରକାଶ୍ୟ) ରହ ମୂର୍ଖ !

ରାଣୀ—ଏ କଣ, ଏ କଣ, ସୁଧୀର ! ଏ କି ଅନ୍ୟାୟ ! ତୁ ପୁତ୍ର ହୋଇ ପିତାଠାରେ ହିଂସା କରୁଛୁ, ତୋତେ କଣ ଧର୍ମ ଛୁଉଛି ! ନାଥ ! ଏ ଅସ୍ତ୍ରଟିକୁ ଛଡ଼ାଇ ନିଅନ୍ତୁ ।

ରାଜା—କିଏ ସୁଧୀର ! ତୁ କୁଳାଙ୍ଗାର ରାଜଦ୍ରୋହୀ ! କିଏ ଅଛ ଶୀଘ୍ର ବନ୍ଦୀ କର ! ପ୍ରିୟେ ! ତୁମ୍ଭେ ନ ଥିଲେ ପ୍ରାଣ ପାଇ ନ ଥାନ୍ତି । ଧନ୍ୟ ତୁମ୍ଭ ସାହସ, ଏ ସଂସାରରେ ତୁମ୍ଭେ ହିଁ ସାର୍ଥ ସ୍ତ୍ରୀ ! କହ ପ୍ରିୟେ ! ଉପକାରର କି ପୁରସ୍କାର ନେବାକୁ ଚାହଁ ?

ରାଣୀ—ନା ନାଥ ! ମୋର କି ଅପୂର୍ବ, ଆପଣଙ୍କୁ ସେହି ଧର୍ମ ସହାୟ ହେଲେ, ଏ ପୁତ୍ର ହୋଇ ଏଡ଼େ ଅହନ୍ତା ! ବସୁଧା ତୁ ଫାଟିଯାଅ ।

ରାଜା—କିଏ ପୁତ୍ର ନାରକୀ, ମୋର ଜୀବନର କଣ୍ଟା ।

ସୁଧୀର—ପିତା ! ନ ବୁଝି ନ ସୁଝି ଏତେ ବିରକ୍ତ ହେଲେ ନାହିଁର ।

ରାଜା—ପାଷଣ୍ଡ ବୁଝିବି ?

ଗୀତ

(ଆଠଙ୍କ ଦୁଃଖୀ—ତୃଷ୍ଣ)

ଆରେ ନରାଧମ ପାଷଣ୍ଡ ଅଜ୍ଞାନ
କିମ୍ପା କଲୁ ଏଡ଼େ କର୍ମ ।
କେଉଁ ମନ୍ଦବୁଦ୍ଧି ଦେଲା ଏ ଦୁର୍ବୁଦ୍ଧି
ହେଲା କି ତୋତେ ଧର୍ମ ।
କାହିଁ ଥିଲୁ ଅକୁଳା,
ଜନ୍ମଦାତା ମଲୁଣି ଜଳଜଳା ।୧।

ବୃନ୍ଦାବାର ମଲ୍ଲ ନାହିଁ, ତୋତେ କଣ ଜନ୍ମ କରିଥିଲି ମୋର ଶତ୍ରୁ ହେବୁ ବୋଲି ?

ଗୀତ

ହେନଯାଅ ଦୂତ ଏ ପାଷଣ୍ଡ ସୁତ
ମୁଣ୍ଡକୁ କରିବ ଚୂର୍ଣ୍ଣ,
ଦେଖିଲେ ଏହା ରକ୍ତ ହେବ ମୁଁ ନିଶ୍ଚିନ୍ତ
ଛୁଇଁବି ନାହିଁ ଯାଇ ଅନ୍ନ
ଜଳମେ ନାହିଁ ନାହିଁ ।
ମୂର୍ଖ ପାମର ଏହା ଶାସ୍ତ୍ରି ଦେବୁ ଆଜ ।୧।
ଦୂତ ! ଶୀଘ୍ର ଘାତକଙ୍କୁ ଆଜ୍ଞା ଦିଅ, ଏ ପାଷଣ୍ଡକୁ ନେଇଯାଅ ।

ଦୂତ—ଯେ ଆଜ୍ଞା ମହାରାଜ ! (ପ୍ରଣିପାତପୂର୍ବକ ପ୍ରସ୍ଥାନ)

ସୁଧୀର — ଗୀତ
( ଦେଖ ତନା କ ଫଳ — ବୁଝେ )
ହେ ତାତ ! ବୃଥା ଜନ୍ମ ଦିଅ ଏ ଦଣ୍ଡ ।
ଅନ୍ତରେ ନାହିଁ ମୋର ଭୟେ ଏ ଛାର । ଶୋଷା ।
ତାତ ! କାହିଁକି ବୃଥା ଏ ଦଣ୍ଡ ଦେଉଛନ୍ତି ।
ମୁଁ ଏଥିରେ ତିଳେମାତ୍ର ଦୋଷୀ ନୁହେଁ ।

ରାଜା—ମୂର୍ଖ ! ଯେବେ ଏତେ ସାହସ କରି ନ ଥାନ୍ତେ ତେବେ ମୁଁ ପ୍ରାଣ ପାଇ ନ ଥାନ୍ତି ।

ସୁଧୀର— ଗୀତ
ପଣ୍ଡିତ ମୋତେ ଛୋଇ ଏଥେଁ
କପଟ କରି ନଷ୍ଟେ କଲେ ଏ କାଣ୍ଡ ।୧।
ପିତା ! ପଣ୍ଡିତେ ମୋତେ କହିଲେ ତୋର ପିତାଙ୍କୁ ବର୍ଷର ପ୍ରଥମ ପ୍ରହରରେ ଶତ୍ରୁ ଘାତ ହେବ, ତୁ ଯାଇ ପଦସେବା କର । ମୁଁ ସେଥିପାଇଁ ଆସିଥିଲି ।

ରାଜା—ଅଚ୍ଛା, ମୋର କଣ୍ଠ ଦେଖା ପାଇଥିଲୁ ? ମୂର୍ଖ ପାଠ କାଢ଼ିକୁ । ମୁଁ କଣ୍ଠ ଶୁଣିବ ନାହିଁ । ଦୂତ ! ଘାତକ ଆଣିଲ; ଦୂର ହୋ ପାଷଣ୍ଡ ଶତ୍ରୁ କୁଳକଳଙ୍କ ।

ସୁଧୀର— ଗୀତ
ମୁଁ କଣ୍ଠ ତାତ ନ ବୁଝ ବାଣ୍ଡ
ମନ ବଧାତା ଆଜ କଲ ଏ ଛାର । ୨ ।

ପିତଃ ! ମେଲଣି ଦେଖୁଛି ଗ୍ରହଯୁକ୍ତ ଟିକିଏ ଅନୁମତି ଦିଅନ୍ତୁ, ମୋର ପ୍ରାଣର ସ୍ନେହ ସୁଶୀଳକୁ ଥରେ ଦେଖିବି ।

ରାଜା—ମୂର୍ଖ, ସୁଶୀଳ କଣ ମୋର ପ୍ରତିଜ୍ଞାରେ ବାଧା ଦେବ ? ତୁ ପିତୃଦ୍ରୋହୀ, ତୋ ମୁଖ ଦର୍ଶନରେ ତାର ପାପ ଘଟିବ । ଘାତୁକ ! ଏ ପାଷଣ୍ଡକୁ ମାରି ତାର ରକ୍ତ ଆଣିଦେଲେ ଭୋଜନ କରିବି ।

ସୁଧୀର—(ସ୍ୱଗତ) ସୁଶୀଳ ! ତୋର ଚନ୍ଦ୍ରମୁଖ ଟିକିଏ ଦେଲେ ଦେଖି ମୃତ୍ୟୁକଷ୍ଟ ପାସୋରିଥାନ୍ତି ।

ଘାତୁକ—ସ୍ୱଳ (ସ୍ୱଗତ) ଭଗବନ୍ ! ଏଇ ତ ମୋର ବ୍ୟବସାୟ ମାତ୍ର ନ୍ୟାୟ ଅନ୍ୟାୟ ସବୁ ଆପଣଙ୍କ ଠାରେ ।

(ଡାଗ୍ତି, ଡାଗ୍ତିଆଳ)

ସ୍ୱଳ ସ୍ୱଳ ବୁଲି ବୁଲି ପାଦ ଅକଟଲାରେ ।
ଜଳସ୍ଥ ଗଡ଼ର ରାଜା- କନ୍ୟା ଲାଗି ବର ଖୋଜା
ଯେ ହୋଇବ ବଶ (ରାଜ୍ୟ) ତାର ହେଲାରେ ।
କଣ କରିବ, ଅନେକ ଦେଶ ତ ବୁଲିଲିଣି, କାହା ମୁଣ୍ଡରେ ଡାଗ୍ତି ସୁନା କଳସ ଭାଙ୍ଗିଲା ନାହିଁ । ଆମ ଜେମା ଯୋଗ୍ୟ ବର କଣ କେଉଁଠାରେ ନାହାନ୍ତି । ଘର ତ ବାଉଁ ଲାଗିଲାଣି । ଏଇଠି ଟିକିଏ ବସିବା ଦେଖିବା ସେ ଆଡ଼୍ ଦ'ଜଣ କିଏ ଆସୁଛନ୍ତି ।

[ସୁଧୀର ମୁଣ୍ଡରେ ଡାଗ୍ତି ସୁନା କଳଶ ଭାଙ୍ଗିବା ଅଭିନୟ]

ଡାଗ୍ତିଆଳ—ଆସ ବାବୁ ! ଆମ ଦେଶରେ ରାଜା ହେବ ।

ଘାତୁକ—ରାଜା ହେବା ଯୋଗ୍ୟ କିଏ, ସେ ସେହିପରି ଗୁରୁତର ଦୋଷ କରିଥିବାରୁ ମୁଁ ଶୂଳକୁ ନେଉଛି ।

ଡାଗ୍ତିଆଳ—ଆରେ ସେକଥା କହନା, କଥାରେ ଅଛି ଧର୍ମର ଜୟ ପାପର କ୍ଷୟ, ଅନେକାନେକ ଦେଶ ବୁଲିଲିଣି, କାହିଁ ଡାଗ୍ତି କାହାର ମୁଣ୍ଡରେ କଳଶ ଭାଙ୍ଗିଲା ନାହିଁ । ଏ ପ୍ରକୃତ ନରପତି । ଶୂଳ ଦେବୁ କାହାକୁ ! ରଖ ତୋ ଶୂଳ ।

(ଘାତୁକଠାରୁ ସୁଧୀରକୁ ଛଡ଼ାଇ ନେଇ ଡାଗ୍ତି ପିଠିରେ ବସାଇ ଡାଗ୍ତିଆଳର ପ୍ରସ୍ଥାନ)

ଯାଜୁକ—ଧନ୍ୟ ରାଜପୁତ୍ର ! ତୁ ପ୍ରକୃତ ନର୍କୋଶୀ ବୋଲ ବର୍ତ୍ତମାନ ଧର୍ମ ତୋହର ସହାୟ ହେଲା । ତେବେ ମୁଁ ରଜା ନିକଟ ଏ କଥା କହିବ ନାହିଁ ଯାଉଛୁ ଗୋଟିଏ ପକ୍ଷୀ ମାର ରଜାଙ୍କୁ ରକ୍ତ ଦେଖାଇବ ।

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ସୁଶୀଳ—ଏ କଣ, ଆଶ୍ଚର୍ଯ୍ୟ କଥା, ମୋ ବାମ ଚକ୍ଷୁଟା ଏପରି ବାରମ୍ବାର ଫୁଟୁଛି କାହିଁକ ? ଏ ତ ବଡ଼ ଅମଙ୍ଗଳର କାରଣ । ନା, କାହିଁକ ମୁଁ ମନ୍ଦକଥାକୁ ମୋ ମନରେ ସ୍ଥାନ ଦେବି, ମୋ ଭାଇ ତ ଆଜ ଯୁବରାଜ ପଦରେ ଅଭିଷିକ୍ତ ହେବେ । ଯାଏଁ ଦେଖେ ଏ ଉତ୍ସବରେ ନଗରବାସୀଗଣ କିପରି ଉଲ୍ଲସିତ ।

(ଜନୈକ ବୃଦ୍ଧାର ପ୍ରବେଶ)

ଆରେ ବାପରେ ବାପ, ଏକାଳ ଟୋକାଙ୍କୁ ଆଉ ବିଶ୍ୱାସ ନାହିଁରେ ବିଶ୍ୱାସ ନାହିଁ ; ପୁଅ ଜନ୍ମ କରିଥାଇ ମଲେ ପିଣ୍ଡ ମୁଠାଏ ପକାଇବେ । ଆରେ ଯୋଉଗାଈଆ ଗାଈଆ ପିଣ୍ଡ ପକାଇ ଦେଉଛନ୍ତିରେ ପକାଇ ଦେଉ-ଛନ୍ତି, କଣ କହିବ । ରଜାପୁଅ ରଜାଙ୍କୁ ମାରିବାକୁ ଗଲା, ମୋ ପୁଅ ମୋତେ ନ ମାରିବ ଅବା କାହିଁକ ?

ସୁଶୀଳ—ଅହୋ ଜନ୍ମ ବୋଉ ! କଥା କଣ, ଏପରି ବ୍ୟସ୍ତ ହେଉଛ କାହିଁକ ?

ବୃଦ୍ଧା - ବାବୁ, ଆଜକାଲି କାଳର ଗତକୁ ଭାବ ମନ ବ୍ୟସ୍ତ ହେଉଛି ।

ସୁଶୀଳ—କଣ, କହୁନା ।

ବୃଦ୍ଧା – ଦେଖି ବୁଢ଼ିଆ ଓଡ଼ ପୁଅମାନେ ରେ ସମାଜିବାଡ଼ କାତର ହବ ହେଲ, ପୁଅ ଯାହା ବର୍ତ୍ତମାନ କରୁଛନ୍ତି କଣ କହିବ ।

ସୁଶୀଳ—ଆଜା ତୁମ ପୁଅ କଣ କରୁଛନ୍ତି ।

ବୃଦ୍ଧା—ବାପରେ ! ଶ୍ୱଶୁର ନାଁରେ ସମାଜିଯାକ ଲୋକ ଦେଇ ଦୁଇ ଗ୍ରହଟା ଧନ୍ତି ପୁଅଙ୍କ ସାଙ୍ଗରେ ମାତ ଆଖଡ଼ା ଜମାଉଛି । ମୋତେ ଟିକଏ ହେଲେ ପଚାରୁ ନାହିଁ । ଘରେ ସେଇଁ ବୋହୂ ସେ ତ ଖଣ୍ଡେ ବଣାକପାଳୀ । ବାପରେ ! କାଳେ ଦୋ ମଣିଷଯାକ ସଲ୍‌ସୂତ୍ର ହୋଇ ମୋତେ ହାଣି ଦେବେ । ସେ ଯୋଗୁଁ ଘରଛାଡ଼ ପଳାଉଛି ।

ସୁଶୀଳ—ଜଗୁବୋଉ ! ଏଥିପାଇଁ ଘରଛାଡ଼ ପଳାଉଛ, ମାତ୍ର ଦବାଟା କଣ ମୁଣ୍ଡିରେ ପଡ଼ିଛି ?

ବୃଦ୍ଧା—ବାପ ! ତମ ଭାଇ ଏବେ କଣ କଲେ, ତମ ମା ପିତା ବୁଢ଼ିଆ ପଡ଼ିଲେ ବୋଲ ବାପା ଉଚ୍ଛିନ୍ନଗଲେ ।

ସୁଶୀଳ—କଣ, କାହା ଭାଇ କଣ ହେଲା ?

ବୃଦ୍ଧା—ବାପା; ଶୁଣିନାହିଁ କାଲି ରାତ ଅଧରେ ସୁଧୀର ଯାଇ ତୁମ୍ଭ ବାପାଙ୍କୁ ହାଣିବାକୁ ଅନ୍ତଃପୁର ମଧ୍ୟରେ ପଶିଥିଲେ । ସେ ଯୋଗୁ ଦଣ୍ଡୁଆପି ତାଙ୍କୁ ଶୂଳ ଦେବାକୁ ନେଲଣି ।

ସୁଶୀଳ—କଣ କହୁଛ । ଏ କଣ ପ୍ରକୃତ କଥା (ସ୍ୱଗତ) କଣ କରିବ ମୋ ପାଦ ତ ଆଉ ଟିପେ ଚଳୁନାହିଁ, ବୁଝିଲି, ତାଙ୍କର ସିଂହାସନାରୋହଣ ବାର୍ତ୍ତାରେ ପାପିୟସୀ ରୁଷ୍ଟା ହୋଇ ମୋ ସ୍ନେହର ଦେବୋପମ ଭାଇଙ୍କୁ ବୃଥା ଛଳନାରେ ଦଣ୍ଡିତ କରାଉଛି; ହା ଦଇବ ରେ ! ଏହିକ ତୋର ବୁଦ୍ଧିମଣା ।

ଗୀତ

( ନ ଜାଣ—ବୁଢ଼େଇ )

ଆହା ରେ ମନ୍ଦ ଦଇବ କଲୁ ଏକ ଛନ୍ଦରେ ।
ନର୍କୋଶୀ ଭାଇରେ ମୋର ହେଲୁ ଏତେ ଦଣ୍ଡରେ ।
ଆରେ ମନ୍ଦ ଧାତା ।
କମ୍ପା କଲୁ ଭାଇରେ ଅବନ୍ତା ।

ହା ବିଧାତା ! ତୁ କଣ କଲୁ ? ଭାଇ ପିତାଙ୍କୁ ମାରିବାକୁ ଯାଇଥିଲେ ଏ କଥା ବିଶ୍ୱାସଯୋଗ୍ୟ ନୁହେଁ ।

(ଗୀତ)

କାଟିଲୁ ଜନମ ବୃକ୍ଷ କଲୁ ଏତେ କାଣ୍ଡରେ ।
ହାଣିଲୁ ଚଣ୍ଡାଳ ହସ୍ତେ ମୋ ଭାଇର ମୁଣ୍ଡରେ ।
ଲଭିଲୁ କ ପଣ,
ଜାଣୁ ଜାଣୁ ବଂଶ କଲୁ ଧ୍ୱଂସ । ୨ ।

ଆଉ ସନ୍ଦେହର କାରଣ ନାହିଁ, ବୃଥା କାହିଁକି ବିଧାତାର ଦୋଷ ବାଢ଼ୁଛୁ । ମୋର ଜନନୀର କୁପୁତ୍ର ଭାଇଙ୍କୁ ସନ୍ତାପରେ ବଳିବାର ସୃଷ୍ଟି ପାଶୋଦେ ବୃଥା ଘୀନରେ ପକାଇ ମୋର ହୃଦୟର ଭାଇଙ୍କୁ ମରାଇ ଦେଲୁ । ଦାରୁଣ ! ମୋର ପ୍ରାଣର ଭାଇଙ୍କୁ ମରାଇଛୁ ଆଉ କଣ ମୋ ଆଶା ପାଇବୁ ? ନା ଏହା କେବେ ନୁହେ ଶତଜନ୍ମ ଯାଏ ଆଶୁ କୁଡ଼ା ହୋଇ ବୁଲୁଥିବୁ ।

(ଗୀତ)

ପରକର ଭାଇ ମୋତେ ନ ନେଲୁ ସଙ୍ଗତରେ
ଦୟାଭିକ୍ଷ ଏ ଘନ ପାଦୁକା ତୋ ପଥରେ ।
ବାକେ ନାହିଁ ଆଶା
ଭାଇ, ତୋ ପାଦପଦ୍ମରେ ବଳ ଆଶା । ଘ ।

ଆଉ ବୃଥାକୁ ଫେରିବ ବା କାହିଁକି । କାହା ମୁଖ ଦେଖିବାକୁ ମିତ । ଜନନୀ ତୁ ଏଥର ଅନ୍ତିମରେ ଥା, ଆନନ୍ଦରେ ଏକାକୀ ହୋଇ ମେବାର ଗଢ଼ର ସାମ୍ରାଜ୍ଞୀ ହୋଇଥା । ପିତଃ ! ତୁମ୍ଭେ ବି ମଧ ଯେ କୁଟିଳଙ୍କର ମୋହନ ମାୟାଜାଲରେ ପଡ଼ି ବାତ୍ସଲ୍ୟପ୍ରେମ ଏକାବେଳେ ବିସ୍ମୃତ ହୋଇ ନିର୍ଦ୍ଦୋଷରେ ଦଣ୍ଡବିଧାନ କଲ । ଆଉ ଏ ଛାର ଜୀବନରେ କି ପ୍ରୟୋଜନ । ମୋ ଭାଇ ଯେଉଁଆଡ଼େ ଯାଇଛନ୍ତି ମୁଁ ମଧ ସେହି ପଥ ଅନ୍ୱେଷଣରେ [illegible] ) ଏ କଣ, ଏ କଣ ଘାତୁକ ! ତୁମ୍ଭେ ଏବେ ନ ଯାଇଛ ! ତୁମର କି ସନ୍ତାନ ନାହିଁ, ତୁମ୍ଭେ ଜାଣିଶୁଣି ଜନକ ଭାଇଠାରୁ ଭାଇ, ପିତା କୋଳରୁ ପୁତ୍ରର ବିଚ୍ଛେଦ ସାଧନ କଲ । ସତ କହ ଘାତୁକ ! ମୋର ଆଉ ମୋର ଜୀବନରେ ନାହିଁ !

ଘାତୁକ—(ସ୍ୱଗତ) ଏବେ ବି ଏ ତ ବାଳକ ଅବୋଧମତ, ପୁଣି ଭ୍ରାତୃବିଚ୍ଛେଦରେ ପାଗଳ, ଯାହାଙ୍କୁ କଣ ପ୍ରବୋଧ କହିବି ଯଦି ପ୍ରକୃତ କଥା କହିବି ତେବେ କି ଆଉ ପ୍ରାଣ ରହିବ ?

ସୁଶୀଳ—ଘାତୁକ ! ଏବେ ନିର୍ବୋଧ ହେଲୁ । ପିତା ସିନା ପିଶାଚେ କୁଟିଳଙ୍କର କଥାରେ ପଡ଼ି ମୋ ଭାଇଙ୍କୁ ତୋତେ ସମର୍ପି ଦେଲେ । ତୁ କି ସେହି ଅକଥ୍ୟର କାର୍ଯ୍ୟ କଲୁ । ଯେବେ ଅକଥ୍ୟର କାର୍ଯ୍ୟ କରିଛୁ ନରବ ନରାଙ୍କ ଦାନ ଧରୁଛୁ, ତୋର ସାଧନରେ ପଡ଼ୁଛୁ, ତୋର ମେହ ଉନ୍ନତ ରକ୍ତାକ୍ତ ଶାଣିତ ଖଡ୍ଗରେ ଏ ଭ୍ରାତୃହୀନ ପାଷାଣର ପ୍ରାଣ ନେ ?

ଘାତୁକ—( ସ୍ୱଗତ) ଏ ତ ବଡ଼ ମୁସ୍କିଲ କଥା ହେଲା !

ସୁଶୀଳ—ଘାତୁକ ! ଭୟ କରୁଛ, ତେବେ ଦିଅ ଅସ୍ତ୍ର ମୋତେ ଦିଅ, ମୁଁ ଅଜେ କାର୍ଯ୍ୟ ସିଦ୍ଧି କରିବି ।

ଘାତୁକ ( ହସ୍ତ ଧାରଣ ) ଏ କଣ ଯୁବରାଜ । ଆପଣ କଣ ବାତୁଳ ହେଲେ, ସେ ଯେପରି କଲେ ସେପରି ଭୋଗିଲେ ଆପଣ ଏପରି କାହିଁକି ହେଉଛନ୍ତି ?

ସୁଶୀଳ— ଗୀତ

ହାତ ଛାଡ଼ି ଦେ ରେ ହନ୍ତା,
ଦୟାବନ୍ତ ଦେଖିଯିବି ଭାଇ ।
ତାଙ୍କ ବିନେ ଶୂନ୍ୟ ଦଶେ ଜୀବନ,
କିବା ପ୍ରୟୋଜନ ମୁହିଁ ରହି ।

ଘାତୁକ ! ମୋତେ ଛାଡ଼ିଦେ ମୋର ଭାଇର ସାକ୍ଷାତ କରିବି । ତାଙ୍କ ବିନା ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ ଯେଉଁଠି ଅନାଉଛି ସେଠି ଅନ୍ଧାର ଦିଶୁଛି । ମୋତେ ଛାଡ଼ି ଦେ ।

ଘାତୁକ—ଯୁବରାଜ ! ତୁମ୍ଭେ ପ୍ରାଣ ହରାଇଲେ ସୁଦ୍ଧା ଭାଇ କଣ ଆଉ ଲେଉଟି ଆସିବେ ।

ସୁଶୀଳ— ( ଗୀତ )

ଭଲ କଲୁ ଭାଇ ଯାଇଛି ପଳାଇ
ବଳାଇ ମୁଁ ପଛେ ଯିବି ଧାଇଁ । ଘ ।

ଭାଇ ସିନା ସଙ୍ଗରେ ନେଲେ ନାହିଁ, ମୁଁ ବନେ ବନେ ତାଙ୍କ ଅନୁଗାମୀ ହେବି, ତୁ ଛାଡ଼ି ଦେ ।

ଘାତୁକ—( ସ୍ୱଗତ ) ଭଗବାନ ! ବର୍ତ୍ତମାନ ଯୁବରାଜ କଣ ଏ ତ ନିଶ୍ଚୟ ଭାଇ ବିଚ୍ଛେଦରେ ପ୍ରାଣ ହରାଇ ଦେବେ ? ଯାହା ମୋ ଭାଗ୍ୟରେ ଘଟିଲେ ଘଟୁ; ପ୍ରକୃତ କଥା ପ୍ରକାଶ କରିବି । ( ପ୍ରକାଶ୍ୟେ ) ଯୁବରାଜ ! ଏ ପାଷାଣ ଭାଇ କର୍ତ୍ତବ୍ୟରେ ତ୍ରୁଟି କରିଛି ।

ସୁଶୀଳ—କଣ ତ୍ରୁଟି ଘାତୁକ ।

ଯାଜୁକ—ଯୁବରାଜ ! ଭାଇଙ୍କୁ ଶୂଳକୁ ଆଣିବା ସମୟରେ ଗୋଟିଏ ହସ୍ତୀ ପୂର୍ଣ୍ଣକଳଶ ତାଙ୍କ ମୁଣ୍ଡରେ ଢାଳିଦେଲା, ତହୁଁ ହସ୍ତୀ ସଙ୍ଗରେ ଥିବା ଲୋକ ତୁମ୍ଭ ଭାଇଙ୍କୁ ହସ୍ତୀରେ ବସାଇ ନେଇ ଚାଲିଗଲେ ।

ସୁଶୀଳ— ଗୀତ

ଭଣ୍ଡାଉଛୁ ମୋତେ ଯିବ କି ପରତେ
ମରତେ କି ଭାଇ ଅଛି ରତ୍ନ । ୩ ।

ଯାଜୁକ ! ମୋତେ ବୃଥା ଭଣ୍ଡାଉଛୁ କାହିଁକି ? ଯଦି ତୁ ମୋର ଭାଇଙ୍କୁ ନ ମାରିଛୁ ତୋର ଏ ତରବାରୀ ଓ ବସ୍ତ୍ର ରକ୍ତରେ ଜର୍ଜରିତ ହୋଇଛି କାହିଁକି ?

ଯାଜୁକ—ଯୁବରାଜ ! କେବଳ ରାଜାଙ୍କ ପ୍ରତ୍ୟୟ ନିମନ୍ତେ ଗୋଟିଏ ପକ୍ଷୀ ମାରି ରୁଧିର ଆଣିଛି, ଏଥିରେ ଅଣୁମାତ୍ର କପଟ ନାହିଁ ।

ସୁଶୀଳ—ଭ୍ରାତା ତେବେ ମୋର ପ୍ରାଣରେ ଅଛନ୍ତି, ମୋର ଭାଇଙ୍କୁ ଧର୍ମ ସହାୟ ହୋଇଛି, ଏ କ'ଣ ସତ କଥା ?

ଯାଜୁକ—ଯୁବରାଜ ! ସେ ନିଶ୍ଚୟ ଜୀବନରେ ଅଛନ୍ତି, ଏଥିରେ କୌଣସିମତେ ସନ୍ଦେହ ନାହିଁ ।

ସୁଶୀଳ—ଯାଜୁକ ! ମୁଁ ଯାଉଛି ଭାଇଙ୍କ ସନ୍ଧାନରେ ଯିବି, ତୁ ପିତାଙ୍କୁ ଏ ବିଷୟ କହିବୁ ନାହିଁ । ପିତା ବିଷାଦୀ ଭବନରେ ପଡ଼ିଛନ୍ତି, କେତେ ଅବସ୍ଥା ଭୋଗ କରିବେ ମୁଁ ବିଦାୟ ନେଲି ।

---

## ଦ୍ୱିତୀୟ ଦୃଶ୍ୟ

### ବନଦେଶେ ଶବର ଓ ଶବରୀ

ଶବରୀ—ଓଗୋ ଶବର ! ଆଜ ତୋତେ ଗୋଟେ କଥା ପଚାରିବାର ଅଛି ଏକା ।

ଶବର—ହେ ଦେବୀ, ଶବରୀ କି କଥା ପଚାରିବୁ ଜଲଦ ପଚାରେ ବେଳ ଗଡ଼ ଯାଉଛି, ଶିକାର କରୁ ନାହିଁ ହେଲା ।

ଶବରୀ— ଗୀତ

( ଚରଣଚନ୍ଦ୍ର—ଭୃଙ୍ଗ )

ଜଡ଼ ଆରେ ଜୀବଧନ !
ସରିଲାଣି ଆମ୍ଭ ନବଯୌବନ,
କି ଶବର ରେ,
କୋଳେ ଧରି ନାହୁଁ ତ ସନ୍ତାନ । ୧ ।

ହାଁରେ ଶବରୀ ! ଆସି ତ ବୟସ ଗଲା ବୁଢ଼ା ବୁଢ଼ୀ ହେଲେ ଗୋଟେ ବୋଲି ପୁଅ ତ ଏ ଜନମେ ନାହିଁ ଦେଖିଲୁ ।

ଶବର—ଓଗୋ ଶବରୀ ! ବୁଢ଼ାଦିନେ ପୁଅ କାହୁଁ ଆସିବ, ଯଦି ପୁଅ ହୁଏ ତ ସେ କି ଦରକାରକୁ ଲାଗିବାର ଅଛି ।

ଶବରୀ—କାହିଁକି ?

ଶବର— ଗୀତ

ଆହାରେ ରମଣୀମଣି;
ବୃଦ୍ଧକାଳେ ପୁତ୍ର ପ୍ରସବେ ନ ଗଣି କି ଶବରୀଲୋ ।
ବୃଥା କାମନା କରୁଛୁ ଭଲେଣି ।

ବୁଝିଲୁ ନା ଶବରୀ ! ଆମେ ମଲେ ପୁଅ ବୁଢ଼ା, ବୁଢ଼ାକାଳେ ପୁଅ ହୋଇ କଷ୍ଟ କରିବ । ଆମକୁ ପୁଅ କା ହେବ କଏ ?

ଶବରୀ— ଗୀତ

ଧର୍ମକୁ ଆଶ୍ରୟ କର,
ଛୁଟିଯିବ ବନ୍ଧ୍ୟାଦୋଷ ଆମ୍ଭର,
କି ଶବରରେ ।
ଭୁଲେ କଳଙ୍କ ନ ଥିବ ମୋର । ୩ ।

ଓଗୋ ଶବର ! ଯଦି ପୁଅଟିଏ ହେବ ଆମ୍ଭେ ଏ ଅପୁତ୍ରିକ ଦୋଷରୁ ମୁକ୍ତ ହୋଇଯିବା ।

ଗୀତ

ଚାଲ ସାଥି ହୋଇଯିବା,
ବନେ ବନଦୁର୍ଗା ପାଦ ସେବିବା
କି ଶବରରେ,
ମନ ମନାଇଁ ପୁତ୍ର ମାଗିବା । ୪ ।

ଓଗୋ ଶବର ! ଆଜ ଶିକାର କରାଇ ଯିବୁ ନାହିଁ ହବ, ଚାଲ ବନଦେବୀଙ୍କ ପାଖକୁ ଯାଇ ଅମ୍ଭ

ଦୁଃଖ କଥା କହିଲ ନାହିଁ ।

ସୁଶୀଳ— (ସ୍ୱଗତ) ଏ ଜଙ୍ଗଲଟା ଆଉ କେତେ ବାଟ ଅଛି, କେଉଁଠି ତ ଘର ଗ୍ରାମ ଦେଖାଯାଉ ନାହିଁ; ଏଣେ ତ ସୂର୍ଯ୍ୟଦେବ ଅସ୍ତାଚଳ ଚୂଳି ମାଡ଼ୁଛନ୍ତି, ଆଶ୍ରୟାର୍ଥେ ଯାଉଥିବାରୁ ସବୁଆଡ଼େ ଅନ୍ଧକାରାଚ୍ଛନ୍ନ ହୋଇ ଆସିଲା । ପଶୁପକ୍ଷୀ, ତରୁଲତା, କୀଟପତଙ୍ଗାଦି ସମସ୍ତେ ନିଜ ନିଜ ବସାମାନଙ୍କରେ ଆଶ୍ରୟ ନେଲେଣି । ବର୍ତ୍ତମାନ ମୋର ଆଶ୍ରୟ କଏ ? ଏଥିରେ ହିଂସ୍ରଜନ୍ତୁମାନେ ମୋତେ ଖାଇଯିବେ । ବର୍ତ୍ତମାନ କି ଉପାୟ କରିବି, ଏ ବିପଦ ସମୟରେ କିଏବା ମୋତେ ଆଶ୍ରୟ ଦେବ! ଭଗବାନ୍ ! ତୁମ୍ଭେ ହିଁ ମୋର ଏକମାତ୍ର ଭରସା ।

ଗୀତ

(ଦୟାନିଧି—ବୃନ୍ଦେ)

ଦୟାକର ଘନବନ୍ଧୁ ଏ ଘନବନରେ ।
ବିପଦାର୍ଣ୍ଣବରେ ପଡ଼ି ମରେ ମୁଁ ବନରେ,
କର୍ଣ୍ଣେ ଶୁଣ ମୋର ଡାକ
କର୍ଣ୍ଣଧାର ହୋଇ ନାବେ ହେବ ହେ ରକ୍ଷକ । ୧
ପ୍ରଭୁ ହେ ଘନବାନ୍ଧବ, ଏ ବିପଦରୁ ଉଦ୍ଧାର
କରିବ କେବଳ ତୁମ୍ଭେ, ତୁମ୍ଭ ବିନା ଆଉ କେହି
ଉଦ୍ଧାର କରିପାରିବେ ନାହିଁ ।

ଗୀତ

ସଙ୍କଟ ପାଶରେ ପଡ଼ି ଡାକଇଲି କେତେ !
ରକ୍ଷ ହେଉ ନନ୍ଦନନ୍ଦନ ଡାକିଲି ହେତେ ।
ଦୀନ ମୋ ଦେହକୁ ଦୟା
ତରି ଆସ ମୋଠାରେ କି ହୋଇଅଛ ଖପା । ୨ ।
କୃପାନିଧି ! କୃପା କର ଥରେ; କେହି ନାହିଁ
ଭରସା ମୋହର ।

ଶବର—(ନେପଥ୍ୟରେ) ଓହୋ ଶବରୀ, ଶୁଣିଲୁ ତ
କିଏ ଗୁଟିଏ ଜଙ୍ଗଲ ଭିତରେ କେମିତି କାନ୍ଦୁଛି,
ଚାଲ୍ ତାକୁ ପଚାରିବା ।

ଶବରୀ—ହଁରେ ଶବର, ସେତ ଗୁଟିଏ ପିଲାକଣ୍ଠପରି
ଶୁଭାଯାଉଛି ।

ଶବର—(ପ୍ରବେଶି) ଗୀତ

କିଏ ବାପଧନ କହମା,
ଏ ଘୋର ବନସ୍ତେ କାନ୍ଦୁଛ ଏକା
ତୁମରରେ ।
କହିବୁ ନାହିଁ ତୋର ମନେ ଶଙ୍କା ।

ସୁଶୀଳ— ଗୀତ

କି କହିବରେ ଶବର,
ଭ୍ରାତା ଗଲେ ମୋର କରିଣ ପର,
କି ଶବରରେ
ଲେଖୁଅଛି, ପଥ ତାହାଙ୍କର ।

ଶବର ! ମୋର ଭାଇଙ୍କୁ କିଏ ନେଇଯାଇଛି, ମୁଁ ତାଙ୍କର ସନ୍ଧାନରେ ଆସି ଆଜି ଏଠାରେ ସନ୍ଧ୍ୟା ହୋଇଯିବାରୁ ନିଃସହାୟ ହୋଇ ଭଗବାନଙ୍କୁ ଚିନ୍ତା କରୁଛି ।

ଶବର— ଗୀତ

ଆସ ବାପଧନ ମୋର;
ନିଶ୍ଚିନ୍ତେ ରହିବୁ ମୋର ପଲ୍ଲୀର;
କି ତୁମରରେ । କାଲି ଯିବୁ ଯେଣେ ଇଚ୍ଛା ତୋର ।

---

## ତୃତୀୟ ଦୃଶ୍ୟ

(କର୍ଣ୍ଣାଟ ରାଜା ଦୂତର ପ୍ରବେଶ ଗୀତ)

ରଜ ସଜବାଜ ମହାଜନ
ବିବିଧିଧି ବର୍ଷା ସାଜ ହେଲାରେ ।
ଶରତ ବସନ୍ତ ହରଡ଼ ହେମନ୍ତ
ଗ୍ରୀଷ୍ମ ସନ୍ତାପନ୍ତ ତାର ହେଲରେ ।
ଝଡ଼ବର୍ଷା ଆରମ୍ଭ ଦେଖି
ଜଳଧର ଲଭିଲ ସଖୀ
ଶୂନ୍ୟ ମାର୍ଗେ ଦେଖି ଉଡ଼ିଗଲେ ଶିଖୀ
ଡାକ ତାକୁ ଦେଖି ମାରି ଦେଲାରେ ।୨।
ବେଙ୍ଗଙ୍କର ଉଚ୍ଛଳିଲ ନାଦ
ବଜାଇଲେ ବହିଧି ବାଦ୍ୟ
ଭଣେ ଗୋପାଳକୃଷ୍ଣ ରଚେ ଏହି ପଦ
ବସି ବାଞ୍ଛାନିଧି ବାବୁ ମେଳରେ । ୨ ।

(ସ୍ୱଗତ) କଣ କରିବି ବୁଲି ବୁଲି ତ ପାଦ ଥକି ଗଲାଣି ! କେତେ କେତେ ଜଙ୍ଗଲ ତ ବୁଲିଲଣି, କାହିଁ ସେମାନଙ୍କ ସନ୍ଧାନ କିଛି ପାଇଲି ନାହିଁ । ଏ କିଏ ଗୋଟିଏ ଆସୁଛି, ସେଠାରୁ ଟିକେ ସନ୍ଧାନ ବୁଝିଲେ ହେବ । (ପ୍ରକାଶ୍ୟେ) ହେ ଭାଇ, ହେ ଭାଇ, ଶୁଣ ଶୁଣ !

ଜଙ୍ଗଲି—କଣଟା କହୁଛୁରେ, ତୁ କେନେ ଡାକୁଛୁ କୋ !

ଦୂତ—ହେ ଭାଇ, ଆମର କର୍ଣ୍ଣାଟ ରାଜାଙ୍କ କନ୍ୟା ସଖି-ମାନଙ୍କ ସହ ବର ଅନୁସନ୍ଧାନରେ ଆସିଥିଲେ, ମୁଁ ଅନେକ ଜାଗା ଖୋଜି ଆସିଲିଣି, କାହିଁ, କେଉଁଠାରେ ଭେଟ ପାଉନାହିଁ । ତୁମ୍ଭେମାନେ କେହ୍ନ ଦେଖିଛ କି ?

ଜଙ୍ଗଲି—ହେଇଟିକେ ଏ ଜଙ୍ଗଲଟା ଯିବ, ଆଉ ଗୁଟେ ଜଙ୍ଗଲ ପୁଣି ଗୁଟେ ଜଙ୍ଗଲ ପଡ଼ିବ, ସେଇଠି ଟୋ ଧନକେମା ତମ୍ବୁ ପକାଇ ରହିଛି !

ଦୂତ—ଯାହା ହେଉ; ଏତେବେଳେ ମନଟାରେ ଯାହିଁ ଟିକିଏ ଶାନ୍ତି ଆସିଲା; ଯାଏଁ ତେବେ କେତେ ବାଟ ପଡ଼ିଛି !



## ଚତୁର୍ଥ ଦୃଶ୍ୟ

( ମାଳତୀ ଓ ଦାସୀଗଣ )

ଦାସୀ—ଜେମାଦେଈ ! ଦେଖିଲଣି; ଏ ଜଙ୍ଗଲଟା କେଡ଼େ ସୁନ୍ଦର ଦେଖାଯାଉଛି । ଏ ଜଙ୍ଗଲକୁ ଆମ୍ଭେମାନେ ନ ଆସିଥିଲେ ଏସବୁ କେଉଁଠୁ ଦେଖିବାକୁ ପାଇଥାନ୍ତେ । ଦେଖିଲ କେଡ଼େ ସୁନ୍ଦର ଫୁଲଗୁଡ଼ିଏ ଫୁଟିଛି, ଭ୍ରମରମାନେ କିପରି ଗୁଣୁ ଗୁଣୁ ହୋଇ ଫୁଲମାନଙ୍କରୁ ମଧୁ ଚୁମ୍ବି ନେଉଛନ୍ତି ।

ମାଳତୀ—ସଖି ! ସେ କଥା କହନା, ମୋତେ ସେ ସବୁ ବିଷ ପ୍ରାୟ ଜଣାଯାଉଛି ।

ଦାସୀ—ହଁ ତା ତ ସତ, ଯେଉଁ କଥା ଲାଗି ଘରଦ୍ୱାର ଛାଡ଼ି ଦେଶ ଦେଶ ବୁଲିଲେ ସେ କଥା ତ ସତ୍ ନାହିଁ କଣ କରିବା !

ମାଳତୀ— ଗୀତ

( ଆଜ ଯିବ—ଦୁରେ )

ପ୍ରାଣସଖି ରେ ବଡ଼ ଏହୁକ ଦାରୁଣ,<br>
ନର ଗୋଠା ସଙ୍ଗେ ଜନ୍ମା<br>
ଖଞ୍ଜିଲ ରମଣୀ ପୁଣ । ଦୋଷ ।

ସଖି ଗୋ ! ବିଧାତା ପୁରୁଷ ସତ୍ୟତ ଭାବିକ ନାରୀକୁ ଜଡ଼ିଲ ।

ଦାସୀ—ଜେମାଦେଈ ! ତା ଯେବେ ନ ହୋଇଥାନ୍ତା ସଂସାର ଚଳନ୍ତା କିପରି ।

ମାଳତୀ— ଗୀତ

ନର ପ୍ରେମେ ଆଶେ ନାରୀ, ସଦା ମରୁଥାନ୍ତି ଝୁରି,<br>
ସେ ନର ହୁଏ ପାପୋର<br>
ଭ୍ରମର ପ୍ରାପ୍ୟେ ତା ଗୁଣ ।

ସଖି ! ନାରୀମାନଙ୍କର ପୁରୁଷଠାରେ ଯେତେ ସ୍ନେହ ପୁରୁଷଙ୍କର ସେ ଭାବ ନ ଥାଏ ।

ଦାସୀ—ଜେମାଦେଈ ! ସେ କଥା ମନ ଭିତରୁ ହେବାରୁ କହୁଛ ପିନା । ଜଳ ଲଟଙ୍କ, ବୃକ୍ଷ ନ ଥିଲେ ଲତାଗୁଡ଼ା କାହାଠାରେ ଆଶ୍ରୟ ନିଅନ୍ତେ, ଦେଖିଲ ମାଧବୀ ଲତାଟି କିପରି ଶୋଭା ଦେଖାଯାଉଛି, କାହା ସେନ ଭଲ ?

ମାଳତୀ— ଗୀତ

ଯାହାଲାଗି ଟେକି ବାସ, ଆସିଥିଲ ବନଦେଶ<br>
ମେଣ୍ଟିଲା ନାହିଁ ସେ ଆଶ,<br>
ବିଫଳରେ ଚଳୁହଣ ।

ସଖି ! ଯେଉଁଥିଲାଗି ଏତେ ଶ୍ରମ ସ୍ୱୀକାର କରି ଏ ଗହନ କାନନ ମଧ୍ୟରେ ପଶିଲି, ସେ ଆଶା ତ ମେଣ୍ଟିଲା ନାହିଁ ।

ଦାସୀ—ମନ ଯାହାକୁ ତ ଦେଖିଲ ତାହାଁରେ ମନ ମାନିଲା ନାହିଁ ( ଦୃଷ୍ଟି ଦେଇ ) ଏ କିଏ ଜଣେ ଏଆଡ଼େ ଭାରି ବେଗରେ ଆସୁଛି ।

[ଦୂତ ପ୍ରବେଶି ପ୍ରଣିପାତ]

ମାଳତୀ—କିଏ ଦୂତ ! କି ନିମନ୍ତେ ଏତେ ତରବର ହୋଇ ଆସୁଛ ?

ଦୂତ—ଜେମାମଣି ! ଆପଣଙ୍କ ପିତାଙ୍କ ନିକଟରୁ ଖବର ନେଇ ଆସିଛି ।

ମାଳଞ୍ଚ—କି ଖବର ? ରାଜ୍ୟର ମଙ୍ଗଳ ତ ?

ଦୂତ—ହଁ ସବୁ ମଙ୍ଗଳ, ଜେମାମଣି ! ଆପଣ ତ ଅନେକ ଦିନ ହେଲା ବର ଅନୁସନ୍ଧାନରେ ଆସିଲେଣି, ତେଣେ ରାଜା ବଡ଼ ବ୍ୟଗ୍ର ହେଉଛନ୍ତି । ସେ ଆପଣଙ୍କର ବିବାହ କାର୍ଯ୍ୟ ଶେଷ କରି ସନ୍ନ୍ୟାସୀ ହୋଇଯିବେ ।

ମାଳଞ୍ଚ—ସଖି ! ଆଜି କଣ ବୋଲି ଏ କଲ୍ଲି ଜନମୁଖ ପିତାଙ୍କ ନିକଟ ଦେଖାଇବାକୁ ଯିବ ।

ଦାସୀ—ପିତା ସନ୍ନ୍ୟାସୀ ହେଉଥିବେ ସିନା, ସ୍ୱାମୀ ନା ଗୋଟାଏ କଥା ନା କ'ଣ ?

ମାଳଞ୍ଚ—ସଖି ! ଆଜି ଏହି ମୋର ଶେଷ ଉପାୟଟି କରିବି । ଯଦି ତଦ୍ଦ୍ୱାରା ନିରସ୍ତ ହୁଏ ତ କର୍ମ ଆଦରି ରହିବି ।

ଦାସୀ—କି କଥା ଜେମାମଣି ?

ମାଳଞ୍ଚ—ତୁମେ ଯାଅ, ମୋର ଚିତ୍ରପଟକୁ ଏ ତ୍ରିମୁହାଣି ସ୍ରୋତ ମଧ୍ୟରେ ଭସିବ, ଜାତି-ନିର୍ବିଶେଷରେ ଯେ ଏହା ପୂର୍ଣ୍ଣ କରିବ, ମୁଁ ତାକୁ ବରି ନେବି, ଏହି ମୋର ଅଟଳ ଓ ଶେଷପଣ ।

ଦାସୀ—ଏକି କଥା ଜେମାମଣି ! ଯଦି କେହି ଅଜବ ଜାନଟାଏ ଛୁଇଁ ପକାଇବେ ?

ମାଳଞ୍ଚ—ସେଥିରେ କୌଣସି ଦୋଷ ନାହିଁ ।

ଦାସୀ—ଏବେ ତେବେ ତ ଚଳିଲି, ଆଉ ଦିନେ ରହି ଯାଅ, ପ୍ରଜାମାନଙ୍କୁ କହ ଜେମାଙ୍କର ଚିତ୍ରପଟଟି ସ୍ରୋତ ନଦୀରେ ଭସି ସମସ୍ତେ ଗୁପ୍ତଚରଙ୍କର ପହରା ବସ । ଯେ ଯେ ପଟ ଧରିବ ତାଙ୍କୁ ଜେମାଙ୍କ ନିକଟକୁ ନେଇ ଆସିବ ।

(ଦୂତ ତଥାକରଣ)

(ମୃଗାଙ୍କର କଟେ ସୁଶୀଳ ପ୍ରବେଶ)

ସୁଶୀଳ—(ସ୍ୱଗତ) ଆଜିକୁ କେତେଦିନ ହେଲା ଶବର ଭାଇଙ୍କରେ ବନ୍ଧୁସୂତ୍ରରେ ଭାବ କଟାଇ ଯାଉଥିଲି; କିନ୍ତୁ ଆଜ ଯେ ନଷ୍ଟ ଖେଳ କଲଣି ତହିଁରେ ଆଉ ସେସ୍ଥାନକୁ ଯିବାକୁ ଆଦୌ ଇଚ୍ଛା ହେଉ ନାହିଁ । ଶବରର ପେଶା ମୃଗ ବଧ ଆଉ ଶିକାର କରିବା ଓ ତାକୁ ନେଇ ଏତ ବଳପୂର୍ବକ ଧନରେ ଗାଢ଼ବା ନିର୍ବାହ କରିବା । ମୁଁ ତ ଏମାନ କରି ପାରିବି ନାହିଁ ! ଆଜ ଏବେ ବାଧ କରି ଏ ଭାଇଟି ମୋ କନ୍ଧରେ ଲଦି ଦେଲେ, ମୁଁ ଏହାକୁ କେଉଁଠି ବିକ୍ରୟ କରିବି ! ଯଦି ଗ୍ରାହକ ନ ପାଏ ତେବେ ମୃଗକୁ ଫିଙ୍ଗି ଦେଇ ଭାଇଙ୍କ ସନ୍ଧାନରେ ପଳାଇବି । (ଯାଉଁ ଯାଉଁ ବାଟରେ) ଏ କ'ଣ ? କେଡ଼େ ସୁନ୍ଦର ଚିତ୍ରପଟଟିଏ କିଏ ପକାଇ ଦେଇ ଯାଇଛି ! ଦେଖେ, ଓହୋ, ଏତ କୌଣସି ଗୋଟିଏ ରାଜକନ୍ୟାର ପଟ ହେବ ପରା ! ଏହାର ରୂପଲାବଣ୍ୟ କୋଟିମନ୍ମଥ-ବାମାଙ୍କୁ ନିନ୍ଦା କରୁଛି ! ଆହା; କେଡ଼େ ରୂପବତୀ, ବିଧାତା ଏହାକୁ କେତେକାଳ ବସି ଗଢ଼ି ନ ଥିବ; କିଏ ପକାଇ ଦେଇଗଲା ଯାଉଛି ନେଇଯିବି ।

ପବସ—ରହ, ଏ ଚିତ୍ରପଟ କୁଆଡ଼େ ନେଇ ଯାଉଛୁ ?

ସୁଶୀଳ—ନା ଭାଇ ! ମୁଁ ଜାଣେ ନାହିଁ, କେବଳ ସୁନ୍ଦରପଣଟି ଦେଖି ଉଠାଇଥିଲି, ନିଅ ନିଅ ତୁମ ଚିତ୍ରପଟ ।

ଗୀତ

(କଡ଼ରେ ନାଗର—ଝୁଲ୍ଲେ)

ରହରେ ଶବର ରଖ ମୃଗଙ୍କର
ଅରେ ନିଶାଚର ଯିବୁ କାହିଁ,
ଜେମାଙ୍କର ପଟ ଛୁଇଁଲୁ ପାପିଷ୍ଠ
ନଷ୍ଟ ହେବା ବୁଦ୍ଧି କଲୁ କହ ।

ସୁଶୀଳ—ଭ୍ରମରେ ପଡ଼ିଥିଲି ମୁଁ ତ ସ୍ପର୍ଶ କରି ନାହିଁ । ମୋତେ କ'ଣ କରିବ କର !

ପବସ— ଗୀତ

ହୋଇଛି ଆଦେଶ ଯେ ଧରିବ ପଟ
ଜେମାଙ୍କ ନିକଟ ନେବକୁ ଭେଟ ।
ସେ ତୋତେ ଭକ୍ଷିବେ ରଖି ଅବା ମାନୁ
ଅନ୍ୟଠାକୁ ଯିବା ସାଧ ନାହିଁ । ୨ ।

ଆମ୍ଭ ଜେମାଙ୍କ ଆଦେଶ ହୋଇଛି ଯେ ଏ ପଟ ଛୁଇଁବ ତାକୁ ତାଙ୍କ ନିକଟକୁ ନେଇଯିବୁ, ତେଣିକି ଯାହା ହେଉ ।

ସୁଶୀଳ—ହେ ଭାଇ ! ମୃଗଟି ପଛେ ନିଅ ମୋତେ ଛାଡ଼ି ଦିଅ ।

ପ୍ରହରୀ— ଗୀତ

ପ୍ରାଣେ ଯେବେ ଆଶ ସ୍ଥଳରେ ନୃଶଂସ
କେମା ତୋର ଦୋଷ କ୍ଷମିବେ ଅବଶ୍ୟ ।
ଆମ୍ଭ ସଙ୍ଗେ ତର୍କ କଲେ ଟିରେ ମୂର୍ଖ
ସେଜନ ପିବୁଁ ବେଗେ ଧକ୍କା ଦେଇ । ଏ ।
ଶବର ! ଯଦି ଭଲ ଗତି ଅଛୁ ତ ଆମ୍ଭ ସଙ୍ଗରେ ଚାଲ ।

ସୁଶୀଳ—(ସ୍ୱଗତ) ଭଗବନ୍ ! ଶବର ମୋତେ ପୁତ୍ରଠାରୁ ବଳି ଅଧିକ ସ୍ନେହ କରିଥିଲା, ମୁଁ ମୂର୍ଖ ତା'ଠାରେ ଲାଗୁ ଉଡ଼ନା ବୁଦ୍ଧି କଲି, ଏବେ ତା'ର ପ୍ରତିଫଳ ଭୋଗ କରିବାକୁ ହେବ । (ପ୍ରକାଶ୍ୟ) ଦେଖ ଚାଲ, କୁଆଡ଼େ ଯାଉଛ ଦେଖାଯିବ ।

(ପ୍ରହରୀ ପଶ୍ଚାତ ହସ୍ତେ ସୁଶୀଳକୁ ହାଜର କରାଇବା)

ଦାସୀ—ଜେମାଦେଈ ! ଦେଖିଲଣି କପାଳ କଥା ମୁଁ କ'ଣ କରିବ ।

ମାଳତୀ—ସଖି କ'ଣ?

ଦାସୀ—ଜେମାଦେଈ ! ଗୋଟିଏ ଶବର ଭୂମି ପଶୁକୁ ଚୁଇଁଥିବାରୁ ପ୍ରହରୀମାନେ ତାକୁ ଧରି ଆଣିଛନ୍ତି । ବେଶ ବରଟିଏ ପାଇଛ, ଦେଖିଲଣି ନା କେବେ ବଡ଼ ମନ୍ଦ ମିତ୍ରଟାଏ କାହିଁରେ ଲଗାଇଛୁ ।

ମାଳତୀ - ତାକୁ ପ୍ରାଣକୁ ଡାକିଲ, ସତ କହୁଛ ?

ସୁଶୀଳ—ବାବୁ, ତୁମେ ତ ହାକିମହୁକୁମା ଲୋକ ଧମକାଇଁ ଚମକାଇ ଖୁବ୍ ପାର । ନବ୍ ଲିଖିଆ ଲୋକ ଲୋକଠାରୁ ଖୁବ୍ ନେଇପାର, ଏ ମୃଗକୁ ଦେଖି ତୁମମାନଙ୍କର ଲୋଭ ହେଲାଣି, ନବ ପଦ ନାଁ, ବୁଆ ନେବେ ଉଁଚକୁଁ ଟିକା କରୁଛ କାହିଁକି ?

ଦାସୀ—ତୁମେ ଜେମାଙ୍କ ପାଖକୁ ଚାଲ ସବୁ ବୁଝିବ ।

ସୁଶୀଳ—ଜେମା କିଏ, ତୁମର ରାଣୀ ।

ଦାସୀ—ଦୂରରେ ଦୂତ ! ଜେମାଟା ଆମର ଏଡ଼େ ଜ୍ଞାନଗ୍ରାହୀ, ଏଥିରୁ ଗୋଟିଏ ଛନ୍ଦ ହୋଇ ସେ ଉତ୍ତର କରିବେ । ତାକୁ ନେଇ ଚାଲ ।

ସୁଶୀଳ—ହେ ମୋତେ ନେଉଛ ସତ, ତୁମ ଜେମାକୁ ଭଲରି ମାନ୍ୟ ଦେଇ ମୋତେ ଶିଖାଇ ଦିଅ ।

ଦୂତ—ଆରେ ଗୋଲ୍ଲରଙ୍କେ ଲମ୍ବ ହୋଇ ପଡ଼ିଯିବୁ ।

ସୁଶୀଳ—ପ୍ରା ଛଡ଼ା ଆଉ କିଛି ଅଛି ?

ଦୂତ—ନା ଆଉ କିଛି ନାହିଁ, ଭ ଆମ୍ଭ ଜେମାକୁ କେବଳ ଦଣ୍ଡବତ ହୁଅନ୍ତୁ ନାହିଁ ।

ଦାସୀ—ଜେମାଦେଈ ! ଦେଖନ୍ତୁ ।

ମାଳତୀ—ହା'ରେ କପାଳ, ମୋ କର୍ମରେ କଣ ଏଇଆ ଥିଲା ।

ଗୀତ

[ଆଜ ଭେଟ-ଦୁଃଖେ]

ସଖି କ ବୁଦ୍ଧି କରିବ ଗୋ
ଦୁଃଦଶା କର୍ମଟି ମୋର ।
ପାତଥିଲି ଫାଶ କେଶରୀର ଶିଶୁ
ନ ପଡ଼ ଶୃଗାଳ ହେଲଟି ନଚର ।
ମୁଁ ପିନା ଫାଶ ବସାଇଥିଲି ସିଂହଶାବକ ଧରିବାକୁ; କିନ୍ତୁ ଏ ପୋଡ଼ା କର୍ମକୁ ଶୃଗାଳ ଆସି ପଡ଼ିଲା ।

ସୁଶୀଳ—[ସ୍ୱଗତ] କର୍ମଅବଳନ୍ତୁ ଆଉ ପୁଣି ଦଳିଆ ହେବାକୁ ପଡ଼ିଲା ।

ମାଳତୀ ସଖି ! ଆଉ ଭାବିଲେ କ'ଣ ହେବ, ମୁଁ ତ ନିଜେ ନିଜେ ଏହା ଭିଆଇଛି ।

(ଗୀତ)

ଆସ ଆସରେ ସାଧବର,
ମୋର ଏ ଐଶ୍ୱର୍ଯ୍ୟ ଭୋଗକର,

ସୁଶୀଳ— (ଗୀତ)

ନାହିଁ ଦରକାର ମୁଁ ଶବର ଘର
ବୁଲି ଏ ବନରେ କରଇ ଶିକାର ।

ମାଳତୀ—ହେ ଶବର ! ଆଜିଠାରୁ ମୋତେ ବରିହୋଇ ମୋର ଐଶ୍ୱର୍ଯ୍ୟ ଭୋଗକର ।

ସୁଶୀଳ—ସୁନ୍ଦରି ! ତୁମେ ରାଜକନ୍ୟା, ମୁଁ ସାମାନ୍ୟ ଶବରଟାଏ ମତେ ଏପରି କାହିଁକି କହୁଛ, ମୁଁ ଧନୁଶର ଧରି ଶିକାର କଲେ ପେଟ ପୋଷିବ, ମୋର ସମ୍ପତ୍ତିରେ କ ଲୋଡ଼ା ?

ମାଳତୀ— (ଗୀତ)

ମନାକଲେ ଯେବେ ନାଗର,
ନ ଛାଡ଼ିବ ତୋର ପଥର ।

ସୁଶୀଳ— (ଗୀତ)

ଭଜାଙ୍ଗପୁ ବର ବାନ୍ଧବା ତୋହର,
ଅନ୍ୟାପୁ ଭଗ୍ନର ନଷ୍ଟେ ଘମାବର ।

ମାଳଶ୍ରୀ—ମର୍ଷ ! ତୁମ୍ଭେମାନେ ଶବର ବୋଲି କହୁଛ ପିନା, କିନ୍ତୁ ମୋର ବାର୍ତ୍ତିକ ସନ୍ଦେହ ହେଉଛି ।

ଦାସୀ—ହଁ ଏଥିପାଇଁ ତ ଏତେ ତଳକରେ କହୁଛି ଦେଖଣାହିଁ ! ଯୁବକ ! ତୁମ୍ଭେ କଣ ପ୍ରକୃତ ଶବର ? ଯେବେ ଶବର ନୋହ ତେବେ ମୋର କେତୋଟି ପ୍ରଶ୍ନର ଉତ୍ତର କହ ।

ସୁଶୀଳ—(ସ୍ୱଗତ) ଏଠାରେ ପରୀକ୍ଷା ଦେବାକୁ ପଡ଼ିଲା ଧର୍ମ କ'ଣ ହେଉଛି ଦେଖାଯାଉ ।

ମାଳଶ୍ରୀ— ଗୀତ

[ଅପୂର୍ବଲତା—ବୃତ୍ତେ]

ଭଦ୍ର ଶବର କି ନାମ ତୋର
ଜନମ୍ଭୁ ଅଟୁ କି ଜା'ର ।
ନୋହୁ କପଟ କହ ତୁ ସ୍ପଷ୍ଟ
ସଂଶୟ ମୋ ଚିତ୍ତୁ ହର; ନାଗର !
ଶବର ! ତୋ ପିତାର ନାମ କ'ଣ,
ତୋ ନାମ କ'ଣ ?

ସୁଶୀଳ—(ସ୍ୱଗତ) ଏ ଭଣ ପିଣ୍ଡ ପକାଇବ କି ?
(ପ୍ରକାଶ୍ୟେ) ଆଜ୍ଞା ଆଜ୍ଞ କରି ପଚାର ପାଅ ।

ମାଳଶ୍ରୀ— (ଗୀତ)

କେ ତୋତେ ଜାତ କଲା
ଏ ମର୍ତ୍ତ୍ୟ ନାମ କେ ଦେଲା ତୋହର ।
କି ନାମ ଧରି ଧନ୍ୟ ହୋଇ
ମାନ୍ଦ୍ରିକୁ ମୃଗ ଶୂକର ମାରନେ । ୨ ।

ସୁଶୀଳ—(ସ୍ୱଗତ) ମାରେ ବାବା, ଆଉ ଉପାୟ ନାହିଁ; ଏ ଯୋଗଟାରେ ସତ୍ୟ କହିଲି ନଷ୍ଟେ ଭାଗ୍ୟବେ; ତେବେ ଜାଣ ମର୍ଯ୍ୟାଦା ଲୋପ କରିବ ନାହିଁ । [ପ୍ରକାଶ୍ୟ]
ସୁନ୍ଦର ! ତୋହର ଏ ପ୍ରଶ୍ନର ଉତ୍ତର ଦେବାକୁ ମୋର ଶକ୍ତି ନାହିଁ, ମୁଁ ଏବର ବୃତ୍ତି କରୁଛି ସତ୍ୟ ମୁଁ ଶବର ନୁହେଁ ।

ମାଳଶ୍ରୀ—ତେବେ !

ସୁଶୀଳ— ଗୀତ

ତାଳ—କର୍ଣ୍ଣାଲ [ ଗାବଗଲେ ଯାଉ—ବୃତ୍ତେ ]

ପ୍ରେମମଣି ହେଳ କହିବାକୁ ଲଜ,
ପରମ କଥାଟି ଶୁଣେ କହି ।
ଗିରସିଂହ-ରାଜ ଜନକ ଚରୁନ,
ମୋ ନାମ ସୁଶୀଳ ମିଥ୍ୟା ନୋହି ।

ସୁନ୍ଦରୀ ! କହିବାକୁ ଲଜ୍ଜା ବୋଧ ହେଉଛି, ମୁଁ ଗିରସିଂହ-ରାଜାଙ୍କ କନିଷ୍ଠ ପୁତ୍ର, ମୋ ନାମ ସୁଶୀଳ ।

ମାଳଶ୍ରୀ—ଆଚ୍ଛା, ଏ ସ୍ଥାନକୁ ଆସିଲ କପରି ?

ସୁଶୀଳ— ଗୀତ

ମାତା କୃଆଇଲେ, ଜ୍ୟେଷ୍ଠ ସହୋଦରେ,
ଅର୍ପିଲେ ସାକୁଳେ ପ୍ରେଷ କରି ।
ସେ ସାକୁଳ ପଥେ ନଅନ୍ତେ ମୋ ଭ୍ରାତେ
ହସ୍ତୀ ନେଲା ସ୍ୱର୍ଣ୍ଣ-କୁମ୍ଭ ଦେଇ ।

ସୁନ୍ଦରୀ ! ମୋର ଜ୍ୟେଷ୍ଠ ଭାଇଙ୍କୁ ମା କପଟରେ ମାରିବାକୁ ପଠାଇଲେ; କିନ୍ତୁ ଦଇବବଳରୁ ସାକୁଳ ପଥରେ ନେବା ସମୟରେ ଅନ୍ୟ ଏକ ଦେଶର ହସ୍ତୀ ସୁନାକଳସ ଭାଇଙ୍କ ମୁଣ୍ଡରେ ଦେଲା, ତହୁଁ ହସ୍ତୀ ପଛରେ ଥିବା ଲୋକେ ତାଙ୍କୁ ସାକୁଳଠାରୁ ଛଡ଼ାଇ ନେଇଗଲେ ।

ମାଳଶ୍ରୀ ତହୁଁ କ'ଣ ହେଲା ?

ସୁଶୀଳ— ଗୀତ

ବନ୍ଧାଠାରୁ ଶୁଣି ଭାଇଙ୍କ କାହାଣୀ,
ସେ ପଥେ ଆସୁଥିଲି ମୁହିଁ,
ପଥେ ହେଲା ସନ୍ଧ୍ୟା ଲାଗିଲାଟି ବାଧା,
ଶୁଣିବାରେ ଶବର ଗଲେ ନେଇ ।

ଭାଇ ମୋର ପ୍ରାଣର ସଖା, ତାଙ୍କ ଅନୁସନ୍ଧାନରେ ଆସୁ ଆସୁ ବାଟରେ ସନ୍ଧ୍ୟା ହେଲା, ଈଶ୍ୱରଙ୍କ କୃପାରୁ ମୋତେ ଗୋଟିଏ ଶବର ରକ୍ଷା କଲା ।

ଗୀତ

ଯେ ଶବର ମୋତେ, ରଖିଅଛି ଯତ୍ନେ,
ସନ୍ତାନ ପ୍ରାୟେକ ସ୍ନେହ କରି ।
ଆରେ ଗୋ ଗଜଗାମୀ ଦଅ ମୋତେ କ୍ଷମା;
ତୋର ପଦ ତୁଲ୍ୟ ମୁଁ କୁହଇ । ୩ ।

ସୁନ୍ଦର ! ମୋତେ କ୍ଷମା ଦିଅ, ଖବର ତେଣେ ବୁଝିଥିବ ।

ମାଳତୀ—ସଖି ! ସବୁ ଶୁଣିଲୁଟି ?

ଦାସୀ—ସ୍ୱାମୀଙ୍କଠାରେ ପୁଣି ଏମିତି ଲଜ୍ଜା ଅଛି, ଅଜଣାରେ ଯାହା ଦୋଷ କରିଛୁ କ୍ଷମା ଦିଅ ।

ମାଳତୀ— ଗୀତ

( ଏ କାହା ମୂରତି—ବୃତ୍ତେ )

କାହିଁକି ଛଳନ ହେ ମୋର ଜୀବନ ଜୀବନ
କେତେ ଅନୁସରି ଆଣ୍ଠେ ମୁଁ ଶେଷେ
ତୋତେ ବର ବରି କାମନା ମୋ ପୂର୍ଣ୍ଣ । ୧ ।

ନାଥ ! ମୁଁ ହରଙ୍କ କୃପାରୁ ଆପଣଙ୍କୁ ପାଇଛି; ମୋତେ ଭଣ୍ଡାଇଲ କାହିଁକି ?

ଗୀତ

ଭୁଲାଇଲେ ସତେ ଯିବକି ପରତେ
ମନ ଅନାସ୍ଥରେ ବନତ ମୋ ଯେନ । ୨ ।

ବୁଝିଲୁ ନାଥ ! ଆଉ କ'ଣ ମୁଁ ସତେ ଛାଡ଼ିବ ।

ସୁଶୀଳ— ଗୀତ

ବାନ୍ଧବ ! ଯାଉ କର ଛାଡ଼ିଲୁ ପ୍ରେମଡୋର,
ନାହିଁ ସାଧ ଆଉ ତୋ ପାଇଲୁ ଜଗରେ । ଘୋଷା ।

ସଖି ! ତୋର କଣ୍ଠରୁ ଯିବାକୁ ମୋର ଆଉ ସାଧ ନାହିଁ । ତେବେ ମୋ ଲାଗି ବହୁ କଷ୍ଟ ଭୋଗିବାକୁ ହେବ । ମୁଁ ନିଷ୍ଠୁର ଭାଇଙ୍କ ସନ୍ଧାନରେ ବୁଲିବ ।

ମାଳତୀ—ଦାସୀ କ'ଣ ସେ କାର୍ଯ୍ୟ କରିବାକୁ ଅସମର୍ଥ ହେବ ।

ସୁଶୀଳ— ଗୀତ

ଜୀବକାନ୍ତି କମା ବନେ ବନେ,
ତେଜିବୁ ସୁଖସିଦ୍ଧ କର ଜନ୍ମ-ଅଧର ।

ସଖି ! ତେବେ ମୋହଲାଗି କାଙ୍ଗାଳୁଣୀ ହୋଇ ବୁଲିବୁ ।

ମାଳତୀ—ସେଥିରେ କ୍ଷତି କଣ, ତାଠାରୁ ସୌଭାଗ୍ୟ କଣ ଅଧିକ ।

ସୁଶୀଳ— ଗୀତ

କେତେ କ୍ଳେଶ ସହିବୁରେ ସୁନ୍ଦରି ।
ଭ୍ରାତା ମୋ ଅନୁସରି ଯିବ ବନେ ବନେ । ୨ ।

କୁଆଡ଼େ ନେଉଛ ସ୍ୱାମୀ, ଏ କଥା ମନେ ରଖ, ବିବାହର ପର ଦିବସରେ ମୁଁ ନିଷ୍ଠୁର ଭାଇଙ୍କୁ ଖୋଜିବାକୁ ଯିବ ।

ମାଳତୀ—ହଉ ସ୍ୱାମୀ !

---

## ପଞ୍ଚମ ଦୃଶ୍ୟ

ରାଜା—ମନ୍ତ୍ରି ! ଆଜ ବଡ଼ ଭାଗ୍ୟର ବିଷୟ, ଜେମା ଆମ୍ଭର ଜନନୀଙ୍କୁ ରାଜ୍ୟ ଉପଯୁକ୍ତ ବର ଅନ୍ୱେଷଣରେ ପାଇଥିଲୁ । ବର୍ତ୍ତମାନ ସ୍ୱୟଂ ମନୋମତ ବର ଦେଇ ଫେରି ଆସିଛି । ତେବେ ଶୀଘ୍ର ବିବାହର ଆୟୋଜନ କର ।

ମନ୍ତ୍ରୀ—ହେଉ ମହାରାଜ ! ବ୍ରାହ୍ମଣ, ଜ୍ୟୋତିଷ, ବାଦକ ଏମାନଙ୍କୁ ଦୂତ ଖବର ଦେଉ ।

ରାଜା—ଦୂତ ! ଆମ୍ଭର କୁଳ-ପୁରୋହିତ ଓ ଜ୍ୟୋତିଷଙ୍କୁ ଡାକ ।

[ ବ୍ରାହ୍ମଣ ଦୁଇଜଣ ପ୍ରବେଶ ]

୧ମ ବ୍ରାହ୍ମଣ—ହଇ ହେ ଜଗନ୍ନାଥ ! ଆଜ ରାଜ ଜେମାଙ୍କର ବିବାହର, ତୁମ୍ଭେ ଯିବ ନାହିଁ କିହୋ ?

୨ୟ ବ୍ରାହ୍ମଣ—ଆହେ ଲୋକନାଥ ! ଆମେ ଯାଇ ନ ଯିବୁ କେଉଁ ଅନହୋନ ସରଞ୍ଜାମ କାଲିଠାରୁ ତିଆରି କରିଛି ତାକୁ ଖାଇବ କିଏ ?

୧ମ ବ୍ରାହ୍ମଣ—ନହେ ! ତମେ ଗୋଟିଏ ବଡ଼ଖିଆଟିଏ !

୨ୟ ବ୍ରାହ୍ମଣ—ଆହେ ଖାଇ ମରିବ ନା ନ ଖାଇ ମରିବ ହେ ? ଆମ୍ଭର ପେଟଟିଏ ଦିଗମଣ୍ଡଳ ଅଛି ।

( ବେଦୀ ଉପରକୁ ବରକନ୍ୟା ମଣ୍ଡଳ ହୋଇ ଆସିବା ସମୟେ ବାଜଣିଆମାନେ ବାଦ୍ୟ ଆଗରେ ଶଙ୍ଖ ଘଣ୍ଟ ବଜାଇ ବଜାଇ ଆସିବା ଓ ଜ୍ୟୋତିଷଙ୍କ ବାକ୍ୟ ପାଠ )

ଜ୍ୟୋତିଷ—ମଙ୍ଗଳଂ ଭଗବାନ୍ ବିଷ୍ଣୁଃ ମଙ୍ଗଳଂ ମଧୁସୂଦନଃ
ମଙ୍ଗଳଂ ପୁଣ୍ଡରୀକାକ୍ଷଃ ମଙ୍ଗଳଂ ଗରୁଡ଼ଧ୍ୱଜଃ । ୧ ।
ମାଧବୋ-ମାଧବୋ ବାଚଂ ମାଧବୋ-ମାଧବୋ ହୃଦି
ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବଂ ॥
ଗଙ୍ଗାସିନ୍ଧୁ ସରସ୍ୱତୀ ଚ ଯମୁନା ଗୋଦାବରୀ ନର୍ମଦା ।

ଭାଗେଶ୍ୱ ସରସ୍ ମହେନ୍ଦ୍ରତନୟା ଚର୍ମଣ୍ୱତୀ ରେଣୁକା
ପୁଣ୍ୟା ପୁଣ୍ୟଜଳା ସମୁଦ୍ର ସହିତା କୁର୍ବନ୍ତୁ ତେ ମଙ୍ଗଳଂ ॥

ବ୍ରାହ୍ମଣ – ( ଘଟସ୍ଥାପନ ବିଧି ଆଚରଣ) ଓଁ ସର୍ବମଙ୍ଗଳ ମାଙ୍ଗଲ୍ୟଂ ବରେଣ୍ୟଂ ବରଦଂ ଶୁଭଂ । ନାରାୟଣଂ ନମସ୍କୃତ୍ୟ ସର୍ବକର୍ମାଣି କାରୟେତ୍ ।

୨ୟ ବ୍ରାହ୍ମଣ—ଓଁ ଅଭିପ୍ରେତାର୍ଥସିଦ୍ଧ୍ୟର୍ଥଂ ପୂଜିତୋ ଯଃ ସୁରାସୁରୈଃ । ସର୍ବବିଘ୍ନବିନାଶାୟ ଗଣାନାଂ ପତୟେ ନମଃ ।

୧ମ ବ୍ରାହ୍ମଣ – ( ଘଟପୂଜା ) ଓଁ ଆକୃଷ୍ଣେନରଜସା ବର୍ତ୍ତମାନେ । ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ । ହିରଣ୍ମୟେନ ସବିତାରଥେନ ଦେବୋ ଯାତି ଭୁବନାନି ପଶ୍ୟନ୍ । ଆରେ, ଗାମୁଛାଖଣ୍ଡକ ତ ଗ୍ରନ୍ଥି କରି ଆଣିଲୁ, ଲୋକ ! ଧୂଆଳ ପଡ଼ କାହିଁରେ ନେବୁ ?

୨ୟ ବ୍ରାହ୍ମଣ—ଆରେ ପୁରୁଆ ପାଟ ଟା ଆଣିନାହିଁ ?

ପୁରୁଆ ନା ଆଜ୍ଞେ ମୁଁ ଆଣିନାହିଁ ।

୨ୟ ବ୍ରାହ୍ମଣ—ଆରେ ଆଣିନାହିଁ ; ଅନାଇଛୁ କଣ ବା ଦଉଡ଼ ଯା, ଆରେ ଧୋବାଘର କାମ କଣ ମାଗ ଲାଗିବ ।

ପୁରୁଆ – ଆଜ୍ଞେ ତୁମ୍ଭେ କର୍ମ କରୁଥାଅ ମୁଁ ନେଇ ଆସୁଛି ।

୨ୟ ବ୍ରାହ୍ମଣ—ଓଁ ଅତସୀକୁସୁମଶ୍ୟାମଂ ଉଦ୍ଭାସଂ ପୀତବାସସଂ । କଦମ୍ବମାଳିନଂ କୃଷ୍ଣଂ ଧ୍ୟାୟନ୍ତ ନାସ୍ତି ଦୁର୍ଗତି ।

୧ମ ବ୍ରାହ୍ମଣ – ଆରେ କଣ୍ଟିଆ, ଗୁବ କାହିଁ ?

କଣ୍ଟିଆ ନା ମୁଁ ତ ଆଣି ନାହିଁ ।

୧ମ ବ୍ରାହ୍ମଣ—କଣ ଗୁବ ଆଣିନାହିଁ ? ଆରେ ବ୍ରାହ୍ମଣ ପିଲା ହୋଇଛୁ କାହିଁକି, ଖାଲି ଚୂଡ଼ା-ଦହି ଚକଟିବାକୁ ଆସିଛୁ ନା କଣ ? ଆମେ ପିଲା ଅବସ୍ଥାରେ ଦକ୍ଷିଣା କଥା ଶୁଣି ଶୀଘ୍ର ଧାଇଁ ଆସିଲୁ, ତମେ କେଉଁଠାରୁ ଖାଲି ଆସିଲ କାହିଁକି ? ଆରେ ଯାଉ ନା କଣ ?

କଣ୍ଟିଆ—ଏଇ ଯାଇ ଏକାଳରେ ନେଇ ଆସୁଛି ।

ଦୂତ ଆରେ ଏ ଘର୍ଘରଟା । ତେମେ କଣ ସାଙ୍ଗରେ ଅମିତ ବୁଢ଼ା ପଢ଼ ଦେଉଛ ।

୧ମ ବ୍ରାହ୍ମଣ—ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ, କଦମ୍ବମାଳିନଂ କୃଷ୍ଣଂ ଧ୍ୟାୟନ୍ତ ନାସ୍ତି ଦୁର୍ଗତି ॥

ପୁରୁଆ—କଣ୍ଟା ସବୁ ତ ଫାଟିଯିବ, ଘୃତପାକ ନଷ୍ଟହେବ ।

୨ୟ ବ୍ରାହ୍ମଣ—ଯଥା ସ୍ୱର୍ଣସ୍ୟ ମନ୍ଦୋଦର୍ଯ୍ୟା ।

କଣ୍ଟିଆ – ତୋ ବାପ ଗଣ୍ଡି କୁ ଯିବନାହିଁ ସର ।

୨ୟ ବ୍ରାହ୍ମଣ – ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ ।

ପୁରୁଆ ତୁ ମୋ ବାପ ନାଁ ଧରିଲୁ ; ଭାଙ୍ଗିଦେବି ତୋ ମଥା । ( ଉଭୟ ପ୍ରହାର )

ଦୂତ—ଆହେ ଏ କ'ଣ ?

୨ୟ ବ୍ରାହ୍ମଣ ଆଜ୍ଞେ, ସେ ଆମ ଜାତିର ଗୋଟାଏ ଗୁଣ । ବିଭାଘର ତ ସରିଲା, ଏବେ ପୁଅବୋହୂଙ୍କୁ ନେଇଯା ।

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

ସୁଶୀଳ ପ୍ରେୟସୀ ! ତୁମ୍ଭେ ଥାଅ ମୁଁ ଆସୁଛି ।

ମାଳତୀ କେଉଁଠାକୁ ନାଥ !

ସୁଶୀଳ—ମୁଁ ଯେବେ ଆପଣଙ୍କୁ ତୁମଙ୍କୁ କହିଛି ସେବକଙ୍କୁ ସାକ୍ଷାତ ନ କରିବା ପର୍ଯ୍ୟନ୍ତ ମୋର ମନଟି ସ୍ଥିର ନାହିଁ ।

ମାଳତୀ—ନାଥ ! ଭାବନା କାହିଁକି; ମୁଁ ବର୍ତ୍ତମାନ ବୁଝିଗଲି ତୁମ ଭାଇଙ୍କର ସନ୍ଧାନ ନେଇଆସିବି ।

ସୁଶୀଳ—ସେ କଥା ନୁହେଁ; ତୁମର ପିତା ତୁମକୁ ବାଳକାଳ ତେଜି ସନ୍ନ୍ୟାସୀ ହୋଇଗଲେଣି । ତୁମେ ଥାଅ, ମୁଁ ଅଳ୍ପଦିନେ ଫେରିଆସିବି ।

ମାଳତୀ – ଗୀତ

( ଜଳସ୍ୱରେ ଛନ୍ଦ – ତୃତୀୟ )

ହେ ଗଣେଶ୍ୱର, ଏ କେଉଁ ରୀତ ତୁମ୍ଭର ।
ଦାସୀ କନାଶେ ମାନସ ଦହାଇଛ ନାଗର । ଘୋଷା ।
ଯେବେ ଯିବ ପ୍ରାଣନାଥ ଅନୁସରିବି ମୁଁ ପଥ
ନ କର ମୋତେ ଅନାଥ ଧରୁଛି ମୁଁ ପୟର ।୧।

ନାଥ ! ଆପଣ ଯେବେ ଯିବେ ଅଙ୍ଗୀକାରକୁ ସଙ୍ଗତେ ନେଇ ଯାଆନ୍ତୁ ।

ସୁଶୀଳ— ଗୀତ
( ଆଶା ମେଣ୍ଟାଇ ତୃଷ୍ଣେ )
ଏ କି ଅଘଟଣା କଥାରେ ବାହୁଡ଼ାସି କମ୍ବୁଧରା ।
ତେଜି ସୁଖଶିଖା କାନନେ କହର
କ୍ଳେଶ ଲଭିବୁ ସୁନ୍ଦରୀ । ଘୋଷା ।
ପ୍ରେୟସି ! କି ଅନ୍ୟାୟ କଥା, ଏ ରାଜ-ଐଶ୍ୱର୍ଯ୍ୟ ଭୁଞ୍ଜ କରି ମୋ ସଙ୍ଗରେ ବନବାସିନୀ ହେବୁ ।
ମାଳତୀ — ମୋର ପ୍ରାଣନାଥ ଯେଉଁଠି ମୋର ଐଶ୍ୱର୍ଯ୍ୟ ମଧ୍ୟ ସେଇଠି ।

ସୁଶୀଳ— ଗୀତ
ଦେଖାଇନ୍ କଥା କହ କାନ୍ତ କି
ବନସ୍ଥଳୀ ହେବା ଶୋଭା ପାଏକି ?
ପାଦେ ଲଗି କଣ୍ଟା ହେବ ହଟହଟା
କଷାନ୍ତଗମନା ଗୋରୀ । ୧ ।
ସୁନ୍ଦରି ! ଜଙ୍ଗଲରେ କଷ୍ଟ କଷ୍ଟ ସହିବାକୁ ପଡ଼ିବ, ମୋ ମନା ମାନ, ସେ କଥାରେ ଆଉ ମନ ବଳାନା ।

ମାଳତୀ— ଗୀତ
ଦେଖାଇନ୍ ଏ ନୁହେଁ ତ, ବୁଝିନୁ ଶାସ୍ତ୍ରୀୟମତେ
ରାମ ହେଲେ ବନବାସିତ
ସୀତା ଥିଲେ ସଙ୍ଗର ।
ନାଥ ! ମୋ କଥାଟା ଆଇନ୍ ସଙ୍ଗତ ହେଲା ନାହିଁ । ରାମଚନ୍ଦ୍ର କପରି ସୀତାଙ୍କୁ ସଙ୍ଗରେ ନେଇ ବନବାସ କରି ଯାଇଥିଲେ ?

ସୁଶୀଳ— ଗୀତ
ରାମଚନ୍ଦ୍ର ସ୍ୱୟଂ ପରମବ୍ରହ୍ମ,
ପରଲୋକ କମା କର ତୁଳନା ।
ଛାଡ଼ ପୂର୍ବକଥା ହୃଦେ ଲାଗେ ବ୍ୟଥା
ଶାନ୍ତ ହୁଅ ସୁକୁମାରୀ । ୧ ।
ପ୍ରିୟେ ! ରାମଚନ୍ଦ୍ର ସ୍ୱୟଂ ବିଷ୍ଣୁ ଅବତାର, ତାଙ୍କ ସହିତ ମୋତେ ତୁଳନା କରିବା ଉଚିତ ନୁହେଁ । ଆମ୍ଭ କ୍ଷତ୍ରିୟ କୁଳରେ କଣ ଏପରି କାର୍ଯ୍ୟ କରିଛୁ ?

ମାଳତୀ— ( ଗୀତ )
ନଳ ହରିଶ୍ଚନ୍ଦ୍ର ନୃପ
କ୍ଷତ୍ରିୟ କୁଳେ ସମ୍ଭୂତ,
ବନବାସେ ଅତି କ୍ଳେଶେ
ଥିଲେ ସଙ୍ଗର । ୩ ।
ନାଥ ! ନଳରାଜା, ହରିଶ୍ଚନ୍ଦ୍ର ଏମାନେ ତ ଆମ୍ଭର କୁଳ ସମ୍ଭୂତ । ତାଙ୍କ ସଙ୍ଗରେ କପରି ତାଙ୍କ ପତ୍ନୀ ଯାଇଥିଲେ ?

ସୁଶୀଳ— (ଗୀତ)
ନଳ ପଶାଖେଳ ପଣ କରିଥିଲେ,
ପୁଷ୍କରକୁ ରାଜ୍ୟ ହରାଇ ଦେଲେ ।
ରାଜା ହରିଶ୍ଚନ୍ଦ୍ର ଦାନ ଦେଇ ସବୁ
ହୋଇଥିଲେ ତ ପଥର ଭିକାରୀ । ୩ ।
ପ୍ରିୟେ ! ନଳରାଜା ପଶା ଖେଳେ ରାଜ୍ୟ ସମ୍ପଦ ସବୁ ହାରି ଦେଇଥିଲେ ଓ ହରିଶ୍ଚନ୍ଦ୍ର ମଧ୍ୟ ବିଶ୍ୱାମିତ୍ରଙ୍କୁ ସମ୍ପତ୍ତି ଦାନ ଦେଇଥିଲେ । ତାଙ୍କର ତ ରାଜ୍ୟ ନ ଥିଲା, ସେ ପତ୍ନୀଙ୍କ ସଙ୍ଗରେ ନ ନେଇ ଯାନ୍ତେ କୁଆଡ଼େ । ତୁମ୍ଭର ତ ସମ୍ପଦ ଅଛି ଚିନ୍ତା କ'ଣ ?

ମାଳତୀ— (ଗୀତ)
ପିତୃ ଅର୍ଜିତ ସମ୍ପତ୍ତି କହିବେକି ଗଲ ତୁଟି
ବାଳାମଣିର କନିଷ୍ଠ ପ୍ରାର୍ଥନା ହେନା କର ।
ନାଥ ! ସମ୍ପଦ କାହିଁ, ବର୍ତ୍ତମାନ ପିତୃସମ୍ପତ୍ତିରେ ମୋର ଅଧିକାର କଣ ? ଯେତେବେଳଠାରୁ ଆପଣଙ୍କ ହାତରେ କରମାଳ୍ୟ ଦେଇଛି ସେତେବେଳେ ମୁଁ ଆପଣଙ୍କର, କହିଲ ଭଲ, ଆଉ କି ସମ୍ପଦ ଅଛି ଦେଖାଇ କହିବ ?

ସୁଶୀଳ— (ଗୀତ)
କି କହିବ ହେ ଭଗବାନ,
ନାରୀ କେମନ୍ତ କେତେ ତୁଲଭ ବନ ।
ବାଳାମଣି ଗୁଣ ହରିଲେ ଜାଣ
କର ଯା ରାଜା ତୁମ୍ଭର ।
ଭଗବନ୍ ! କି ବୁଦ୍ଧି କରିବି, ଅର୍ଜିଲି କର୍ମ ନିଶ୍ଚୟ ଭୋଗ କରିବି, ପ୍ରିୟେ ଚାଲ ।

ମାଳଶ୍ରୀ—ପିତା ମୋର ତୁମ୍ଭ ଆମ୍ଭର ପରିଣୟ ପରେ ସନ୍ନ୍ୟାସୀ ହୋଇ ଯାଇଛନ୍ତି, ଈଶ୍ୱରଙ୍କ କୃପାରୁ ଯେପରି ଶୀଘ୍ର ଫେରି ଆସିବା ।

———

## ଦ୍ୱିତୀୟ ଦୃଶ୍ୟ

( ଦୁଇଜଣ ନାବିକଙ୍କ ପ୍ରବେଶ )

ଗୀତ

(ପାଟଲି ଆମ୍ର କୋଇଲି ବୃତ୍ତେ)

ଉଠାଇ ଆସୁଛି କଳା ବଉଦ ଲୋ
ପୂର୍ବରୁ ଉଠିବ ପାଣି ।
ଆମ ମନ ଗୋଟି ଭାଙ୍ଗି ଗଲାଣି
ସୁଜନା ଧରିଥା ଆଡ଼ୁଲି ପେଲୁଥା
କୂଳେ ଲାଗିପାଉ ପୁଣି । ୧ ।

୧ମ ନାବିକ—ଦଇରେ ଆଜ ତ ନଈଟା ଭାରି ବଢ଼ିଛି, କେଉଁ ଗୋଟିଏ ଆସାମୀ ପାରି ହେବାକୁ ତ ଆସୁ ନାହାନ୍ତି ? କଣ କରିବା ?

୨ୟ ନାବିକ -ମାଧିଆ ! ଦେଖିଲୁ ଖୁବ୍ ଦୂରରେ ଦୁଇଜଣ କିଏ ଆସୁଛନ୍ତି; ସେପାରି ଯିବେ କି କଣ ? ଟିକେ ବସ ।

ସୁଶୀଳ—ପ୍ରିୟେ ! ଦେଖିଲ, ଏ ନଈ ତ ପ୍ରବଳ ଭାବରେ ବଢ଼ିଛି । ପ୍ରାୟ କେଉଁ ସମୁଦ୍ର ଲହରୀ ପରି କୂଳରେ ପିଟି ହେଉଛି । ଏ ଭୀଷଣ ଦୃଶ୍ୟ ଦେଖି ମୋ ମନରେ ବଡ଼ ଭୟ ଆସୁଛି । ତୁମ୍ଭେ ତ ସ୍ତ୍ରୀ ଲୋକ, ତୁମ୍ଭର ମନ କଣ ହେଉଛି କେଜାଣି ।

ମାଳଶ୍ରୀ—ନାଥ ! ଯାହା ଆମ୍ଭ ଭାଗ୍ୟରେ ଥିବ ।

ସୁଶୀଳ—ହେ ମାଝି ! ଟିକିଏ ଡଙ୍ଗା ଆଣ, ଆମ୍ଭେ-ମାନେ ଆରପାରିକୁ ଯିବୁ ।

ଗୀତ

ଘାଟ କୂଳେ ଟୋକା ଟୋକି ଦୁଇଟାରେ
ଜଗିଲେଣି ବଡ଼ ଉଛନ୍ନ ।
ବଢ଼ିଲା ନଈକୁ ପାରି କରିବାକୁ,
ଭୋଟାକୁ ଦୁଇଟଙ୍କା ନେଇ
ନାବେ ବସାଇବା ପୁଣ ।

ଦେଖିଲୁ ମାଧିଆ ! କେଡ଼େ ସୁନ୍ଦରୀ ମାଇ-କିନିଆଟିଏ ।

୨ୟ ଧୀବର—ମାଧିଆ, ବେଶ୍ ମାଇକିନିଆଟିଏ ।

୧ମ ଧୀବର—ମାଧିଆ ! ଶଳାକୁ ଧରି ପେଲି ଦେବା, କିଏ ଅଛି ଯେ କଣ କରି ପକାଇବ । ହେ ଭାଇ ! ଏ ମାଇକିନିଆ କେଉଁଠୁ ଆଣିଲୁ ?

ସୁଶୀଳ—ମୋ ସ୍ତ୍ରୀ, ଆଣିବି କେଉଁଠ ?

ଧୀବର— ଗୀତ

(ଶୁଣି ପାଣିଆ ବୃତ୍ତେ)

କହରେ ବଦେଶୀ କାହିଁକା ସ୍ୱେର
କାହା ମନୋହାରୀ ନେଇ ସଙ୍ଗର ।
ଅଧାର୍ମିକ ଜନ ଅଟୁରେ ତୁହି
ଧର୍ମ ନୌକା ତୋର ଯୋଗ୍ୟ ନୁହଇରେ ।
ତୋ ଯୋଗୁ ବୁଡ଼ିବ ବେଳାରେ
ପ୍ରାଣେ ଯେବେ ଆଶା ଅଛିରେ ନୃଶଂସ
ମୋ ନାବୁଁ ତଳକ ଓହ୍ଲାରେ । ୧ ।

ହଇରେ ହେ, ତୁ ଏ ମାଇକିନିଆ କେଉଁଠୁ ସ୍ୱେରରେ ଆଣିଚୁ ? ବଡ଼ ପାପୀଲୋକ । ତୋ ଯୋଗୁଁ କଣ ଆମ ଡଙ୍ଗାଟା ବୁଡ଼ିବ ? ଓହ୍ଲା, ଓହ୍ଲା ।

ସୁଶୀଳ— ଗୀତ

ହେ କୈବର୍ତ୍ତ ମୋର କର୍ତ୍ତବ୍ୟ ନାହିଁ
ହଟହଟା କମା କର ରେ ଭାଇ ।
ଏ କନ୍ୟା କର୍ଣ୍ଣାଟ-ରାଜ ଦୁହିତା
ମୁଁ ତାଙ୍କ ଜାମାତା ମିଥ୍ୟା ନୁହେଁଟି ରେ ।
ବୀରସେନ ପିତା ନାମରେ
ସୂର୍ଯ୍ୟବଂଶେ ଜନ୍ମ ସୁଶୀଳ ମୋ ନାମ
ଦଣ୍ଡ କମା ଅକାରଣରେ ।

ହେ ମାଝି ! ମୁଁ ସ୍ୱେର ନୁହେଁ । ମୁଁ ବୀରସେନ ରାଜାଙ୍କ ପୁତ୍ର, ଏ କର୍ଣ୍ଣାଟ-ରାଜାଙ୍କର କନ୍ୟା, ସ୍ୱାଙ୍କର ମୋର ପରିଣୟ ହୋଇଛି, ମୁଁ ସ୍ୱେର ନୁହେଁ ।

ଧୀବର— (ଗୀତ)

ଭଣ୍ଡାଭଣ୍ଡି କଥା ଛାଡ଼ରେ ଭାଇ
ମେଣ୍ଢାଭଳି ଗଣ୍ଡୀ ମୋଡ଼କୁ ନେଇ,

ମଣ୍ଡାଉ ରଙ୍ଗକୁ ହଣ୍ଡାରେ ଥୋଇ
ଧଣ୍ଡାମାଳ ଦେଇଁ ମୁଣ୍ଡକୁ ନେଇରେ
ଚଣ୍ଡାଳ ବୁଦ୍ଧି ଆମ୍ଭରରେ ।
ଖଣ୍ଡାଇତ ଟୋକା ଥିଲେ ମନେ ଶଙ୍କା
ନାବରୁ ଓଲ୍ହା ଆମ୍ଭରରେ ।

ସୁଶୀଳ—କି ବୁଦ୍ଧି କରିବି ଭଗବନ୍ ! ଏ ବିପଦରେ ମୋତେ କାହିଁକି ପକାଇଲ । ପ୍ରିୟେ ! ତୁମ୍ଭ ଲାଗି ପ୍ରାଣ ଗଲା । ହେ ଚଉରି ! ମୋର ଦୁଃଖ ଟିକିଏ ଶୁଣ ।

(ଗୀତ)
(ପ୍ରାଣସଙ୍ଗି ମୁଁ—ବୃତ୍ତେ)
ହେ ଚଉରି !
(ମୁଁ) ଏତେ ଛନ୍ଦ ଜାଣେ ନାହିଁ ।
ବୃଥା ଅପବାଦେ କ୍ରୋଧ କର କାହିଁ ପାଇଁରେ । ଦୋଷ
ନାଁ ଏ ସବ ସମ୍ପତ୍ତି ଫେରାଇ ଦିଅ ମାଳତୀ
ତା ବିନା ଏ ପ୍ରାଣ ଛୁଟି ଯାଏ ଭାଇରେ । ୧

ଧୀବର—ମାଧିଆ, କାତଡିଏ ବଣା ଲଗା, ଆଉ ଓସୁଧ ନାହିଁ ।

ସୁଶୀଳ— (ଗୀତ)
ସୁହୃଦ ଭାବ କମା ଗୁଣ୍ଡ ହେଉଛ ଖଦା
ଶୋକାକୁଳେ ମୋ ନାସିକା ସର ଗଳୁଣିରେ । ୨ ।
ଚଉରି ! ତୁମ୍ଭମାନଙ୍କର ନୃଶଂସ ଭାବ ଦେଖି ପ୍ରିୟା ମୋର କଳା ପଡ଼ିଗଲାଣି ।

(ଗୀତ)
ପଦ ଧରୁଛି ତବ ବେନାକର ମୋ ସ୍ତବ
ନସ୍ତ୍ରବୁଧ ହେଲ କି ସବେ ବାଇମଣି ଧାଇଁରେ ।
ହେ ମାଝି ! ତୁମ୍ଭ ପଦତଳେ ପଡ଼ୁଛି ଏପରି ହଟହଟା କର ନାହିଁ ।
(କୈବର୍ତ୍ତ ସୁଶୀଳକୁ ପେଲିଦେବା ସମୟେ)

ମାଳତୀ— ଗୀତ
[ହେ ନବଯୁବକ ଏ କେଉଁ-ବୃତ୍ତେ]
କେଉଁଣେ ଯାଅ ନାଥ କରିଣ ଅନାଥ
ଅସ୍ଥିର ହେଲ କି ମୋହପାଇଁ,
ଦେଖି କେଉଁ ଦୋଷ କରୁଛ ବିରସ
ନୃଶଂସ ନାବିକେ ଯିବେ ନେଇ
ପ୍ରାଣ ଯିବଟି ଛାଡ଼ି ।
କାହୁଁ ମାଡ଼ି ଆସିଲା ବିପଦଧାଡ଼ି ।୧।

ନାଥ ! ମୁଁ ଚଣ୍ଡାଳୁଣୀ କାହିଁକି ତୁମ୍ଭ କଥା ନ ମାନି ସଙ୍ଗରେ ଆସିଲି । ମୋ ଯୋଗେ କିନା ଆପଣଙ୍କ ପ୍ରାଣ ଯିବ ।
ହେ ନାବିକ, ମୋତେ ଛାଡ଼ିଦିଅ ।

ଗୀତ
ନ ମାନି ମୁଁ ମନା ବନେ ଆସି କିନା
ଗଳାମାଳାକୁ ଦେଲି ହରାଇ ।
ରେ ମୂର୍ଖ ନାବିକ ଲୁବ୍ଧ ଅବିବେକ
ଧର୍ମାଧର୍ମ କି ବିଚାର ନାହିଁ ।
ପ୍ରାଣେ ନ ମାର କାନ୍ତ ।
ତାଙ୍କ ବିନା ଶୂନ୍ୟ ଦିଶେ ଏ ଜଗତ ।୨।

ହେ ନାବିକେ ! ତୁମ୍ଭ ପାଦତଳେ ପଡ଼ୁଛି ମୋ ସ୍ୱାମୀକୁ ମାରନା । ନାଥ ! କଣ କରିବି ?

ମାଝି—ନଈରେ ମାଧିଆ, ତା ଦାନଟାକୁ ଛଡ଼ାଇ ଦେଇପାରୁନୁ ।

ସୁଶୀଳ— ଗୀତ
ଯୋଗୀ-ଯୋଗଭଞ୍ଜନା ମୋ ଯୋଗେ
ଅଯୋଗୀ ହେଲୁରେ
ମାନିନା ମୋ କଥା ନ ମାନି
ଏ ଦଣ୍ଡ ଭୋଗିଲୁରେ ।
ପ୍ରିୟେ ! ମୁଁ ବାରମ୍ବାର ମନା କରୁଥିଲି, ତୁମ୍ଭେ ବଳାଇ ଆସିବା ପ୍ରତିଫଳ ଏହି ।

ଗୀତ
ମୁହିଁ ମୂଢ଼ ହୀନକର୍ମା କ୍ଷେତ କି କରିବ ବାମା
ସୁଭାଗୀ ତୁ ଜକଜେମା ( ମୋତେ )
ବିପାଇଁ ଭଜିଲୁ ରେ ।
ପ୍ରିୟେ ! ଏ ଅଭଗାକୁ ପତିଭାବରେ ବରଣ କରିବାର ପ୍ରତିଫଳ ଏହି । ଗୀତ
ତାତ ମାତ ମୋ ଭଗାରି ଭ୍ରାତା ଗଲେ ଘର କରି
ବାଳାମଣି ଭବ କରି ଅଭାବେ ପଡ଼ିଲୁ ରେ । ୨ ।
ପ୍ରିୟେ ! ଏହି ମୋର ଶେଷ ଦେଖା (କ୍ଷିପିଦିବା)

ନାଗର—ଯିବା ଯାହାରେ ମ; ଅନାଉଛୁ କଣ ।

( ଦୂରକୁ ପେଲିଦେବା )

ସାଧୁଆ—ମୁଁ ନ ଥିଲେ କଣ ପାରିଥାନ୍ତୁ ।

ମାଧୁଆ—ଉଚ୍ଚ୍‌ବେ, ମୁଁ ନ ଥିଲେ କଣ କରି ପକେଇଥାନ୍ତୁ ।

ସାଧୁଆ—ଭଲରେ କହିଲୁ୍ ଏ ମାଇକିନାଅଟି ନବ କିଏ ?

ମାଧୁଆ—ଆରେ ପଚାରୁଛୁ କଣ, ସେତ ଆସିଛୁ ମୋ ସକାଶେ ଆସିଛୁ ।

ସାଧୁଆ—ଚୁପ୍‌ ମୋ ପୋଗୁ ତ ଆସିଛୁ ।

( ଉଭୟଙ୍କ ମଧ୍ୟରେ କଳଗୋଳ )

ମାଧୁଆ—ହଉ, ଏଥିରେ କାହାରି କଣ୍ଟ ନାହିଁ । ଯୁଲ, ଆମ ଦେଶ ରାଜାଙ୍କୁ ଦେଇ କଣ୍ଟ ଧନ ଆଣି ବାଣ୍ଟିକରି ନବା । କଳି କରିବା ଦରକାର କଣ ?

( ମାଲ୍ୟାଣୀ ଗୀତ )

ଆସ କେ ନେବ ଫୁଲହାର ଗୋ,
ନବ ନାଗରବର ।
କୁନ୍ଦ ମନ୍ଥୁଆ ମଲ୍ଲୀ ଚମ୍ପକ କୁରୁବେକ,
ଜାଇ ବକୁଳ ନାଗେଶ୍ୱର
ମୋ ଫୁଲ ନାଇ ଖୋଜା ହେଲେ କାମିସାରଙ୍କା,
ବୁଡ଼ାଙ୍କୁ କରନେବ ମାର ଗୋ । ୨ ।

ମନ ମୋର, ଚାଁଟାଯାକ ବୁଲିଲି କେହି ହାରେ ଫୁଲ ନେଲେ ନାହିଁ । ହିଁ ମ, ସବୁଦିନେ ହଉଛୁ ଦିନେ ଏବେ ନ ନେଲେ ନାହିଁ । ଆରେ ନିଆଁଲଗା ମନ ଭୁ ମୋଡ଼ଯା । କାଲି ଗୋଟାଏ ଚମ୍ପାଚେଲ୍ଲ ଲଚିଗଲଥିଲ ଆଜ ତା ମୂଳେ ପାଣି ଦେଇ ନାହିଁ । ଯାଉଛୁ ନଈରୁ ମଠିଆଏ ପାଣି ଆଣି ଦେଇଆସିବି ।

( ସୁଶୀଳ ଭରିଆସି ମାଲ୍ୟାଣୀ ଲୁଚରେ ଲାଗିବା )

(ମାଲ୍ୟାଣୀ ଦେଖି) ଉଁ ବାପାଲେ ମନ୍ତ୍ରଦାରଟାଏ ଆସି ମୋ ବାଟରେ ଲାଗିଲା । ଏ ତ କଣ ଛଟପଟ ହେଉଛି, କେଉଁ ସୁନ୍ଦରିଆ ଟୋକାଟାଏ । ଯାଉଛୁ ସାକ୍ଷାତ କରିବ, ଯାହାହେଉ ଦେବଦେବୀ ଏତେଦିନକେ ମୋହନ ସ୍ନାମରଟା କାନରେ ପକାଇଲେ । ମୋର ପୁଅ ନ ଥିଲେ, ଏତିକି ଧରମପୁଅ କରି ରଖିବ ।

( ମାଲ୍ୟାଣୀ ସୁଶୀଳକୁ ସଚେତ କରାଇ ନିଜ ଗୃହକୁ ଘେନଯିବା )

---

## ତୃତୀୟ ଦୃଶ୍ୟ

ମାଳଶ୍ରୀ—ହା ବିଧାତା ! ମୋ କର୍ମରେ କଣ ଏଇ ଅବସ୍ଥା ଭୋଗିବାକୁ ଲେଖିଲୁ; ପାଷାଣ୍ଡ କୈବର୍ତ୍ତ-ମାନେ ତ ମୋ ସ୍ୱାମୀଙ୍କୁ ଫିଙ୍ଗିଦେଇ ମୋତେ ଆଣି ଏ ରାଜାଙ୍କ ନିକଟରେ ଦେଲେ; ମୁଁ କରିବ କଣ ? ରାଜା ମୋତେ ବିବାହ କରିବାକୁ ମନସ୍ଥ କରିଛି ! ହା ନିର୍ଲଜ ଜୀବନ ! ତୁ ନ ଯାଇ ରହିଛୁ କାହିଁକି ?

ଗୀତ

( ମଥ ଗୁଣ୍ଡ ଦେ ରେ—ବୁଦ୍ଧେ )

କିବା କାହିଁପାଇଁ ମୋ କର୍ମେ ଥିଲୁ ଲିଖି,
(ଏହା) ଆରେ ମନ୍ଦ ବିଧି ।
କେଉଁ ଯଶ ଅର୍ଜିବୁ ମୋତେ ଦୁଃଖ ଦେଇ । ଦୋଷ ।
କ ମାନ ମୁଁ ମନା ସ୍ୱାମୀଙ୍କର
ବଳେ ଆସି ହେଲି ନାରଖାର,
ଚରଣପତିଙ୍କୁ ପ୍ରାଣରୁ ସାରିଲି
ଏ ପୋଡ଼ା ଜୀବନ ଯାଉନାହିଁ । ୧ ।

ମୁଁ କାହିଁକି ତାଙ୍କ କଥା ମାନିଲି ନାହିଁ, ସେ କେତେ ସୁଖରେ ଥାନ୍ତେ; ମୁଁ ତାଙ୍କୁ ନଈରେ ବୁଡ଼ାଇ ମାରିବ ବୋଲି କ'ଣ ବିବାହ ହୋଇଥିଲି ।

ଗୀତ

ଦିନେ ଭରି ନାହିଁ ଭାଗ୍ୟ ସଙ୍ଗ
ଦେଇବ ଯେ ଦିଲୁ ଏ ବିରଙ୍ଗ,
କି ଉପାୟ କରି କି ବୁଦ୍ଧି କରିବି,
ଏ ନୃପ ରହିଛି ମୋତେ ଘେରି ।

କଣ କରିବ ଏ ରାଜା ତ ମୋ ନିକଟକୁ ଆସି ଅନେକ ପ୍ରଲୋଭନ ଦେଖାଇ ମୋତେ ବିବାହ କରିବାକୁ ଜଞ୍ଜାଳ କରୁଛି । କେବଳ ଭଗବାନଙ୍କ କୃପାରୁ ମୁଁ ସ୍ୱୀକୃତ ନ ହେବା ଯୋଗୁଁ ସେ ଧର୍ମକୁ ଭୟ କରି ଫେରି ଯାଉଛି । ଏଇ ତ କିଏ ଆସୁଛନ୍ତି ପରା ?

ସୁଧୀର—ଦୂତ ! କୈବର୍ତ୍ତମାନେ ଯେଉଁ ସ୍ତ୍ରୀଟିକୁ ମୋ ନିକଟରେ ଦେଇ ଯାଇଥିଲେ ମୁଁ ତାକୁ ଦେଖିଲି ଦିନଠାରୁ କୌଣସିଥିରେ ଆଉ ମନ ଲାଗୁନାହିଁ ! ସୁଖ ହେଲେ ତା ନିକଟକୁ ଯିବା । ସୁନ୍ଦରି ! ମୁଁ ତୁମର ପରିଚୟ ନିମିତ୍ତ ଅନେକଥର ଆସିଲିଣି; କିନ୍ତୁ ତୁମଠାରୁ ପଦେମାତ୍ର କଥା ନ ଶୁଣି ନିରାଶ-ଭାବରେ ଫେରିଯାଉଛି, କିଏ ତୁମେ କଏ ?

ଗୀତ

( କହରେ ନାଗରୀ—ବୃନ୍ଦେ )

କିଏ ରସବତୀ କାହାର ଯୁବତୀ
ମୃଗନୟନୀ ମଳକୁନ୍ତଳା ।
ଘନସ୍ତନ ବିମ୍ବାଧରୀ ଯୋଗୀ ମନୋହାରୀ
ଆହାରେ ଚନ୍ଦ୍ର ମହିଳା

ସୁନ୍ଦରି ! ତୁମେ କାହାର ସ୍ତ୍ରୀ ବା କାହାର କନ୍ୟା କପଟ ନ କରି ପ୍ରକାଶ କର ।

ଗୀତ

ରେ ରସରଙ୍ଗିଣୀ ତୁ କୁନ୍ଦହାସିନୀ,
ଇନ୍ଦୁପ୍ରାୟ ମୁଖ ଶୋଭା ତୋର ଭଣି ।
ଧନ୍ୟରେ ରମଣି ନେଲୁ ମନ କିଣି
କାମୁକର ମନ ତୁଲି । ୧ ।

ହେ ସୁନ୍ଦରି ! ମୋର ସମସ୍ତ ପତ୍ନୀଙ୍କ ଉପରେ ତୁମକୁ ପାଟରାଣୀ କରିବି, ପଦେ ଅଧେ ଉତ୍ତର ଦିଅ ।

ଗୀତ

ଆସରେ ବରାଙ୍ଗୀ ହେବୁ ପ୍ରାଣସଙ୍ଗୀ,
ଏ ସମ୍ପଦ ଭୋଗୀ ହୁଅରେ ସୁଆଗୀ ।
ଘୃଣି ମତେ ତୋ ରେ କନ୍ଦର୍ପ ହତା
ନ କର ତୁ ଅବହେଳା । ୨ ।

ସୁନ୍ଦରୀ ! କାହିଁକି କହୁ ନାହିଁ ।

ଗୀତ

ବୋଲାଇ ମୋ କୋଳେ ଚାନ୍ଦ ଚୁମ୍ବ ଦେବେ ।
ନଦ୍ୟାଇ ଲଙ୍ଘିବା ତୁମେ ଛଳି ଗୁଣେ ।
ଥାଅରେ ପାମରୀ ଭୁଲାଇଲୁ ମୋର
ଯେମନ୍ତେ ମନ୍ଦାକ ବାଳା । ୩ ।

ଦୂତ ଏଥିରୁ ନ ଉତ୍ତର ଶୁଣିଲ ନାହିଁ । ସ୍ତ୍ରୀଠାରୁ ଉତ୍ତର ନ ପାଇ ତାହାର ଅଙ୍ଗ ସ୍ପର୍ଶ କରିବା ଛବି ପ୍ରର

ନିଶ୍ଚୟ ନୁହେ ! ନଚେତ୍ ବଳାତ ପାଳନାହିଁ ! ଦେଖାଯାଉ କେତେଦିନ ଏଣେ ହେଉଛି, ଆଜ ଜଗିବା ପାଳି କାହାର ?

ଦୂତ—ମହାରାଜ ! ଆଜ ମାଲ୍ୟାଣୀ ଓ ସୁନ୍ଦରୀର ପାଳି ।

ରଜା—ମୁଁ ଉଆସକୁ ଯାଉଛି, ଶୀଘ୍ର କନ୍ୟାଙ୍କୁ ଡକାଇ ଦେ ।

ଦୂତ—ଯେ ଆଜ୍ଞା ମହାରାଜ !

—✱—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

ଦୂତ—ହେ ମାଲ୍ୟାଣୀ ମାଉସି !

ମାଲ୍ୟାଣୀ—କଣ କରେ ବାପ ! ତୁ ଆଜ କୁଆଡ଼େ ?

ଦୂତ—ତୋର ଆଜ ନୂଆମହଲ ଜଗିବା ପାଳି, ଡାକ ଆସିଲି ।

ମାଲ୍ୟାଣୀ—ଏଁ, ମୋର କଏ ଅଛି ମ, ମୁଁ ମାଇପିଟାଏ କଣ ପାଳରେ ପହରା ଦେବାକୁ ଯିବି ।

ଦୂତ—ଆଗେ ତୁ ସବୁ ଗୋଟିଏ ଧର୍ମପୁଅ କରିଛୁ, ସେ ଯିବ ନାହିଁ ।

ମାଲ୍ୟାଣୀ—ରଜାଙ୍କର ତାଠାରେ ତ ଆଖି ପଡ଼ିଲାଣି, ବାଡ଼ରେ କଦଳୀ କାନ୍ଦିଏ ପଡ଼ିଲି ସେଥିରେ ଆଖି, ଡଗ୍ରରେ ଶାଗକେରିଏ ହେଲେ, ଲଙ୍କା-ମରିଚ ଟଗଟିଏ ହେଲେ ସେଥିରେ ଆଖି, କେଉଁଦିନ ପୁଅଟିଏ ଆଣିଲି ସେ ସେଥିରେ ମଧ୍ୟ ଆଖି, ହଉ ତାକୁ ପଚାରେ, ହଉରେ ସୁଶୀଳ ।

ଦୂତ—ପଚାରିବୁ କଣ, ପାଳ କରିବାକୁ ତ ହେବ, ତୁ ପଛରେ ପଠା ମୁଁ ଆସୁଛି ।

ସୁଶୀଳ—ମାଉସି ! କଣ ?

ମାଲ୍ୟାଣୀ—ସୁଶୀଳ ! ରଜାଘର ଗୋଟିଏ ମାଇକିନିଆ ନୂଆ ଆଣିଛନ୍ତି ସେ ଘରରେ ସେ ଗୋଟିଏ ଭଲେ ପଣି କଣ ଚାଲି ପଡ଼ିଛି । ତାକୁ ସବୁ ଗାଁବାଲାଯାକ ଜଗିବାକୁ ପାଳକରି ଯାଉଛନ୍ତି, ଆଜ ଆମ ପାଳି ପଡ଼ିଛି, ତୁ ଯିବୁ ।

ସୁଶୀଳ—ମାଉସି, ଆଉ କଏ ଯିବ ?

ମାଲ୍ୟାଣୀ—ରାମା ଗୁଡ଼ିଆ ଲୁ ଦୁର୍ଦ୍ଦିନ ଯିବ ?
ସୁଶୀଳ—ନଈ ଯିବ, ମଲୟ ! ତେବେ ଯିବା ଚାଲ ।
ମାଲ୍ୟାଣୀ—ବାପରେ ଶୋଇବ ନାହିଁ; ନେ ଲୁଣ୍ଡା ଲଣ୍ଡିଏ ନେ, ଦୁଇଜଣଯାକ ପାଟିକି ପକାଇଥିବ ଏଥ ଆଉ ଦେବ ନାହିଁ, ନଈ ଯା ।

( ଉଭୟେ ପ୍ରସ୍ଥାନ )

## ଦ୍ୱିତୀୟ ଦୃଶ୍ୟ

( ପଦ୍ମ ସ୍ଥାନରେ କେତେବେଳ ବସିବାପରେ ନନ୍ଦାର ଆଗମନ )

ସୁଶୀଳ— ମଲୟ ! ଏବ ତ ରାତି ଜୋର ଆସିଲା ।
ନନ୍ଦା ମଲୟ ! ଗୋଟାଏ କଥା କହ ଆଉ ନିଦ ଆସିବ ନାହିଁ ।
ସୁଶୀଳ— ମଲୟ ! ମୋତେ କଣ୍ଠ ଆସିବ ନାହିଁ, ମୋ ଅବସ୍ଥା କଣ୍ଠ କହିଲେ ପାଷାଣ ଅଣିବ ନାହିଁ, ସେଥିରେ ମୋର ଅବସର କାହିଁ ସେ କଥା ଶୁଣାଇବି ।
ନନ୍ଦା କହ; କହ, କଣ ? ତୋ କଥା ଦୁଃଖ ନା ସୁଖ ?
ସୁଶୀଳ— ଗୀତ

ମୁଁ କି ଦୁଃଖ କହିବରେ ସତ ମଣିବୁ କି ମଲୟ
କହିଲା ବେଳକୁ ଫାଟିଯାଏ ବୁକୁ
ନେନ୍ ଝୁଏ ଅଶ୍ରୁପାତ ! ପଦ ।

ମଲୟ ! ମୁଁ ଯାହାକି ଦୁଃଖ ଭୋଗ କରିଛି ସେ କଥା କହିଲାବେଳକୁ ଏ ହୃଦୟ ବଡ଼ ଅସ୍ଥିର ହେଉଛି ।

ଗୀତ

ଦୁଇରାଣୀ ଥିଲେ ହୋଇଥିଲେ ତାତ
ଦୁଇ ପୁତ୍ର ଆମ୍ଭେ ହୋଇଲୁ ସମ୍ଭୁତ ।
ମୁଁ ଅଟେ କନିଷ୍ଠ ଜ୍ୟେଷ୍ଠ ରାଣୀ ସୁତ,
ମୋ ମାତା ସ୍ୱଭାବ ଦୁଷ୍ଟ । ୧ ।

ମଲୟ ! ମୋ ପିତାଙ୍କ ଦୁଇରାଣୀଙ୍କ ଉଦରୁ ଆମ୍ଭେ ଦୁଇପୁତ୍ର ଜନ୍ମ ହୋଇଥିଲୁ । ମୁଁ କନିଷ୍ଠ ରାଣୀଙ୍କ ପୁତ୍ର, ମୋର ମାଆ ବଡ଼ ଦୁଷ୍ଟ ।

ଗୀତ

ମୋ ଭାଇରେ ପିତା ଜ୍ୟେଷ୍ଠ ସହୋଦରେ,
ରାଜ୍ୟ ଦେବାପାଇଁ ହୋଇଲେ ଯାଦରେ ।
ତେଣୁ ମାତା ରୋଷେ ଭ୍ରାତ-ନାଶ, ଆଶେ
ରଚିଲେ କୂଟକପଟ ॥

ପିତା ଆମ୍ଭ ଦୁଇ ଭାଇଙ୍କୁ ଡକାଇ ଆମ୍ଭମାନଙ୍କର ମତାମତ ନେଇ ବଡ଼ଭାଇଙ୍କୁ ସିଂହାସନ ଦେବାକୁ ସ୍ଥିର କଲେ, ତେଣୁ ମୋର ମା କପଟରେ ଭାଇଙ୍କ ମୃତ୍ୟୁବାଟ ଖୋଜିଲେ । ଗୀତ

ଭ୍ରାତାଙ୍କୁ ନିଧନ କରିବାର ପାଇଁ,
ନେଇଥିଲା ହନ୍ତା ଶମଶାନ ଭୂଇଁ ।
ଧର୍ମ ସାହା ହୋଇ ଉଦ୍ଧରିଲା ଭାଇ
ତହିଁ ଶୁଣ ଯା ବୃତ୍ତାନ୍ତ । ୩ ।

ମଲୟ ! ମାତା ମୋର ଗୋଟିଏ ଚକ୍ରାନ୍ତ କରି ଭାଇଙ୍କୁ ଘାତୁକ ହସ୍ତରେ ଶ୍ମଶାନକୁ ମାରିବା ନିମିତ୍ତ ପଠାଇଦେଲେ । କିନ୍ତୁ ଦଇବ ବଳରୁ ଭାଇ ତହିଁରୁ ଉଦ୍ଧରିଲେ; ଶୁଣ—

ଗୀତ

ହସ୍ତୀ କରେ ଧରି ସୁବର୍ଣ୍ଣ-କଳଶ
ବୁଲୁଥିଲା ଲୋଡ଼ି ଯୋଗ୍ୟ ରାଜଶିଷ୍ୟ ।
ଦେଖିଲା ମୋ ଭ୍ରାତ ଅଛି ଯୋଗ୍ୟପାତ୍ର
ମସ୍ତକରେ ନେଲା ଲଦିତ ॥

ଏକ ଦେଶର ରାଜାଙ୍କର ହସ୍ତୀ ଭାଇଙ୍କର ମସ୍ତକରେ ସୁବର୍ଣ୍ଣ-କଳଶ ଦେଇ ହନ୍ତାଠାରୁ ଛଡ଼ାଇ ନେଇଗଲା ।

ଗୀତ

ଏସନ ବାରତା ହନ୍ତାମୁଖୁ ଶୁଣି
ଭ୍ରାତାଙ୍କ ପଛରେ ହେଲି ଅନୁଗାମୀ ।
ପଥେ ହେଲି ନଷ୍ଟ ଲୋଡ଼ିଲି ମୁଁ ଆଶ୍ରା
ଭେଟିଲି ଶବର ଏକ ॥

ଭ୍ରାତାଙ୍କୁ ଖୋଜିବା ଲାଗି ଅନେକ ପଥ ଆସି ପଥ ହୋଇଯିବାରୁ ଶବର-ଶବରୀଙ୍କ କଲ୍ୟାଣରୁ ତାଙ୍କର ପଲ୍ଲୀରେ କିଛିଦିନ ସୁଖରେ ରହିଲି ।

ଗୀତ

ସେ ଶବର ମୋତେ ପୁତ୍ରପ୍ରାୟେ ରଖି,
ବନେ ପଠାଇଲା ମୃଗ ମାଂସ ଲକ୍ଷି ।
ମୋତେ ଏକ ନାରୀ କରୁ ନେଲା ହରି
ବନେ ବନେ ଭଲି କାନ୍ତ । ୪ ।

ମଇତ୍ର ! ତନେ ସେ ଶବର ଗୋଟିଏ ମୃଗ ଶିକାର ଦେଇ ମୋତେ ରନ୍ଧନ କରିବାକୁ ପଠାଇଲା, ମୁଁ ଆସିବା ପଥରେ ଗୋଟିଏ ରାଜକନ୍ୟାର ଚକ୍ଷୁପାନ୍ତରେ ପଡ଼ି ତାଙ୍କୁ ବନ୍ଧ ହେଲି ।

ଗୀତ

ସେ କନ୍ୟା କର୍ଣ୍ଣାଟ ରାଜାଙ୍କ ଦୁହିତା,
ମାଳତୀ ତା ନାମ ସଚରିତା ଅଟେ ।
ମୁଁ ଭ୍ରାତା ଭକ୍ଷଣେ ଆସନ୍ତେ ବନେ
ସେ ଆସିଲା ମୋ ସଙ୍ଗତେ ।

ମଇତ୍ର ! ସେ ସ୍ତ୍ରୀର ନାମ ମାଳତୀ । ତାର ପିତାର ନାମ କର୍ଣ୍ଣାଟ-କେଶରୀ, ମୁଁ ଭାଇଙ୍କ ସନ୍ଧାନରେ ଆସନ୍ତେ ସେ ମୋ ସଙ୍ଗରେ ଆସିଲା ।

ଗୀତ

ପଥେ ନଦୀ ଏକ ପାରହେଲୁ ବେଳେ,
କୈବର୍ତ୍ତେ ହରିଲେ ମୋ ନାୟିକା ବଳେ ।
ମୋତେ ଦେଖି ବନ୍ଧୁ ଜଳେ ଦେଲେ ପେଲି
ଧର୍ମ ହେଲା ସାହାପକ୍ଷ ।

ମଇତ୍ର ! ଆଗରୁ ସେ କଥା କହିଲି କେବଳ ମୋର ପ୍ରାଣ ଛାଡ଼ି ଯାଉଛି ।

ମାଳତୀ—( ସ୍ୱଗତ ) ବିଧାତା ! ମୋ ପରି କିଏ ଅଭାଗିନୀ ଅଛି ! ମୁଁ ଜଣ ଶୁଣିଲି ମୋର କାନ୍ତ ଜଣ ସତେ ଜୀବନରେ ଅଛନ୍ତି ! ତାଙ୍କର କଥା କିଏ କହୁଛି, କିଏ କର୍ଣ୍ଣରେ ଏ ବାଣୀ ଶୁଣାଇ ମୋର ହୃଦୟକୁ ଅଥୟ କରିଦେଲାଣି ! ( ପ୍ରକାଶେ ) କିଏ ତୁମ୍ଭେ ଆଉଥରେ ସେ କଥା କହ ?

ଗୀତ

(ପର କଲେଣି—ଢ଼ଙ୍ଗେ)

କହ ତୁ କେଉଁ ଦେବତା ଆସି ନିକଟେ
ମୋ ସ୍ୱାମୀ ବାରତା ଦେଇ ମୋର ନିକଟେ । ଘୋଷା
କହ, ତୁମ୍ଭେ କେଉଁ ଦେବତା ଆସି ମୋ ସ୍ୱାମୀର ବାରତା ଦେଉଛ ?

(ଗୀତ)

କହୁଛନ୍ତି ସତେ ପ୍ରାଣେ, ଦେଖା ଦେବେ ଏ ଅଧୀନେ
ବଞ୍ଚୁଛନ୍ତି ଅନୁକ୍ଷଣେ ନାହିଁ ପରତେ । ୧ ।

ସେ ଜଣ ସତେ ପ୍ରାଣରେ ଅଛନ୍ତି, କାହିଁ ମୋର ତ ବିଶ୍ୱାସ ହେଉ ନାହିଁ । ତେବେ ବର୍ତ୍ତମାନ ତାଙ୍କ କଥା କିଏ କହୁଥିଲା ! (ପ୍ରକାଶେ) କିଏ ଅଛ ମୋତେ ଦେଖାଦିଅ ।

(ଗୀତ)

ଫେରୁଛି ଗବାକ୍ଷ ପୂରା ଦେଖା ଦେ ତୋ ଚନ୍ଦ୍ରମୁଖ ହାଁ
ଜଣିଛ ଚରଣ ଛଡ଼ା ଦେଇ କୈବର୍ତ୍ତେ ॥

ନାଥ ! ତୁମ୍ଭେ ଜଣ ସତେ ଅଭାଗିନୀର ଦୁର୍ଦ୍ଦଶା ମୋଚନ କରିବାକୁ ଆସିଛ ? ତେବେ ମୁଁ ଝରକାଟି ଫିଟାଇ ଦେଉଛି ମୋତେ ଥରେ ଦେଖାଦିଅ ।

(ଗୀତ)

ସୁଖେ ନିଶି ପୁହାଇବ, ସତେ ଦୁର୍ଦ୍ଦଶା ମେଣ୍ଟିବ
ବାଳାମଣି ସତ ସୁଖବ ଥିବ ସୁଖରେ ॥

(କିଏ ଅଛ ଦେଖା ଦିଅ)

ସୁଶୀଳ—ମଇତ୍ର ! ଏ ଘରେ କିଏ ସ୍ତ୍ରୀ ଲୋକଟି ଡାକୁଛି (ସ୍ୱଗତ) ଓହୋ ! ଏ ତ ତାର କଣ୍ଠ ପରି ଶୁଣା ଯାଉଛି । ସେ ପରା କ୍ରନ୍ଦନରେ ଦୁଃଖିନୀ ଥିଲାପରି ଜଣାଯାଉଛି । ତେବେ ଦେଖିବ କିଏ । (ପ୍ରକାଶେ) ମଇତ୍ର ! ତୁମ୍ଭେ ଶୁଣ, କାହିଁକି କିଏ ଡାକୁଛି ।

ରାମ – ନା ମଇତ୍ର, ତୁମ୍ଭେ ଯାଅ ।

ମାଳତୀ— ଗୀତ

(ହେ ନବଯୁବକ - ଢ଼ଙ୍ଗେ)

ନିକଟରେ ଥାଇ ନ ଆସ କିମ୍ପାଇଁ
ଦୂରେ ଥିଲା ପରି ହୁଏ ମନେ ।
ପ୍ରାଣେ ଥାଇ ଦେଖା ନ ଦେଲେ ନାଥ୍ ହିଁ ମା
କେତେ ସହିବ ଏ ନବଘନେ ।
ଆହେ ପ୍ରାଣବନ୍ଧୁ !
ଦୁଃଖିନୀ ହୃଦକୁମୁଦ-ଚନ୍ଦ୍ର । ୧ ।
ଭଲ ଭଲ ନିତ ଜାଣେ ଦୁଃଖେ ଅତି
ଦିବା ରାତ ଜଳ ଝରେ ଚିତ୍ତ,
ତବ ସୁଧାପୂର୍ଣ୍ଣ ଶ୍ରୀମୁଖ ଲାବଣ୍ୟ
ନ ଦେଖିଣ ହୁଏ ମହାଶ୍ରାନ୍ତ ।
ଆହେ ପ୍ରାଣବନ୍ଧୁ !
ଦିନ ନ ସରୁଛି କାନ୍ଦୁ କାନ୍ଦ । ୨ ।

ଆସ ଆସ ମୋର ହେ ପ୍ରାଣ-ଈଶ୍ୱର
ଆସ ଅଭାଗିନୀ କଣ୍ଠମଣି ।
ଖୋଜି ନ ଖୋଜିଲେ ପାଇ ହରାଇଲେ
ସହିପାରିବ ତବ ସୁହାଗିନୀ ।
ଆହେ ପ୍ରାଣବନ୍ଧୁ !
ଦେଖାଅ ତବ ଶ୍ରୀମୁଖଇନ୍ଦୁ ! ୩ ।
ମୁଁ ହତଭାଗିନୀ ଜନମ ଦୁଃଖିନୀ
ତବ ପ୍ରେମେ ଅଟେ ଖ୍ୟାତକୀର୍ତ୍ତିନୀ ।
ଦିଅ ଦିଅ ଦେଖା ଆହେ ପ୍ରାଣସଖା
ଭାବ ନ ଥିଲା ଏବା ରଜନୀ !
ଆହେ ପ୍ରାଣବନ୍ଧୁ !
ବାଳାର ହୃଦ କୁମୁଦବନ୍ଧୁ ! ୪ ।

ସୁଶୀଳ—ତୁ କି ସେହି ମୋର ନଯ୍ନପ୍ରତିମା ମାଳତୀ ! ହା ବିଧାତା !

ମାଳତୀ—ନାଥ, ନାଥ, ପୁଣି ଆଉ ଆପଣଙ୍କର ଶ୍ରୀପଦ ରାଜୀବରେ ଏ ଅଧୀନା ସ୍ଥାନ ପାଇବ ? ଆଶା ନ ଥିଲା, ଅଧୀନାକୁ ଭୁଲି ନାହାନ୍ତି ତ ?

ସୁଶୀଳ— ଗୀତ
(ସାରସାକ୍ଷୀ ବୃତ୍ତେ)
ପ୍ରାଣେ ଅଛୁ ପ୍ରାଣ-ବାଞ୍ଛାକରି
ମହିମାର୍ଣ୍ଣ ଶୋଭା ଭୂଷଣେ । ପଦ ।
ପଞ୍ଜିଳରେ ତୋ ଗୁଣ ଗୁଣି ନିତ
ମୋ ଚିତ୍ତ ଭରିତ ଧ୍ୟାନଟିରେ ସଖୀ । ୧

ପ୍ରିୟେ ! ତୋର କଥା ଭାବି ଏ ଶରୀର କ୍ଷୀଣ ହୋଇଗଲାଣି । ତୋତେ ଦେଖିଲି ଏହି ବଡ଼ ଭାଗ୍ୟର କଥା ।

ଗୀତ

ପ୍ରାଣ ଗଲେ ଯିବ ନ ଯିବ ତୋ ଭାବ ।
ଭବର ଅଭାବ କିଞ୍ଚିତ ନୋହେ ତତ । ୨

ପ୍ରିୟେ ! ଏ ପ୍ରାଣ ଅବା ଗଲେ ଯିବ; କିନ୍ତୁ ତୁମର ଭାବରାଶି କେବେହେଁ ମନରୁ ଯିବ ନାହିଁ । ତୁମେ ଏତେବେଳେ ଅଦୈର୍ଯ୍ୟ ହେଉଛ କାହିଁକି ?

ଦୂତ—ଏ କି ଶୋକମାନ ଶୁଭୁଛି, ସେ ସ୍ତ୍ରୀଟା କାହିଁକି କାନ୍ଦୁଛି, କାରଣ କଣ ? ଯାଏଁ ଶୀଘ୍ରେ ଏ ବିଷୟରେ ରାଜାଙ୍କୁ ଜଣାଏ ।

(ପ୍ରସ୍ଥାନ)

ସୁଶୀଳ—ମଇତ୍ର ! ସକାଳ ତ ହେଲା, ଆଉ ବିଳମ୍ବ କାହିଁକି ଚାଲ ।

ରମା—ହଁ ଚାଲ ।

(ଉଭୟେ ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

ରାଜା—କହ ଦୂତ, କିବା କାର୍ଯ୍ୟେ ଆସିଲୁ ତୁ ଏ ପ୍ରାତଃ ସମୟେ ?

ଦୂତ—ମହାରାଜ ! କହିବାକୁ ଲାଗେ ଶଙ୍କା, ନୂତନ ମଣ୍ଡଳେ କାଲି ରାତ୍ରେ ପାଳଥିଲା ମାଲ୍ୟାଣୀ ପୁତ୍ର ଓ ରମା ଗୃହଆର । ପାଳ ସାରି ଗଲେ ସେଠୁ ସେ ଯାହାର ବାସେ, ମାତ୍ର କି ନିମନ୍ତେ ଶୁଭେ ତହିଁ ଘନ ଘନ କ୍ରନ୍ଦନର ରୋଳ ।

ରାଜା- ଡକାଇ ଆଣ ସେ ଶବର ପାଷାଣ୍ଡେ, ବୁଝା ଯିବ ସବୁକଥା ତାହାଙ୍କର ତହିଁ ।
(ଦୂତ, ରମା ଓ ସୁଶୀଳଙ୍କୁ ଘେନି ପ୍ରବେଶ)

ରାଜା—କହ ଦୁଷ୍ଟେ, କି କଟୂବାକ୍ୟ ପ୍ରୟୋଗ କଲ ତୁମ୍ଭେମାନେ କାଲି ଏ ସ୍ଥାନରେ ।

ରମା—ନା ମହାରାଜ ! ମୁଁ କିଛି ଜାଣେ ନା, ମଇତ୍ର ଯାହା କିଛି କହିଲେ କହିଥିବେ ।

ରାଜା- (ସୁଶୀଳ ପ୍ରତି) କହ ବର୍ବର, ସେ ସ୍ତ୍ରୀକୁ କଣ କହିଲୁ ଯେ ସେ କାନ୍ଦୁଛି ।

ସୁଶୀଳ—ମହାରାଜ ! ମୁଁ କିଛି କହି ନାହିଁ, କାଲି ପହରେ ହେବା ସମୟରେ ମଦ ଆଚମନ କରିବାରୁ ରମା ମୋତେ ଗୋଟିଏ କାହାଣୀ କହିବାକୁ ଅନୁରୋଧ କଲା, ମାତ୍ର ମୁଁ କେବଳ ମୋର ଦୁଃଖ ହାଲତକ ତା ପାଖରେ କହୁଥିଲି । ଏତେବେଳେ ସମୟରେ ସେ ମୋତେ ଡାକିଲା, ସେଥିରେ ମୋର ଦୋଷ କଣ ?

ରାଜା— ଗୀତ

(ରୁଷନା ରୁଷନା—ଝୁଲେ)

ରାଣ୍ଡି ପୁଅ ଖଣ୍ଡେ କେଡ଼େ ଦମ୍ଭେ କହୁ କଥାରେ
ଏକ ନୃପଙ୍କୁ ଛିଣ୍ଡାଇବ ତୋର ମଥାରେ । ଘୋଷା
ମାଳଦରେ ଖାଇ ହୁଣ୍ଡା ଟେକ ପାଇଛୁ ତୋ ଷଣ୍ଡା
ଆଜ ମୁଁ କରି ଅଣ୍ଡା ନ ଗାଲିବୁ ପଲ୍ଲରେ । ୧

ମୂର୍ଖ ! ମାଳ ଘରେ ଘାସ ଚଢ଼ାଇ ଦମ୍ଭକଥା ବେଶୀ ହୋଇଯାଇଛି ।

(ଗୀତ)

ଦଣ୍ଡ ଆସି ତାକ ସ୍ୱଣ୍ଡେ ବେଗେ ଶୂଳ ଦଅ ଭଣ୍ଡେ
ଏ ମେଣ୍ଟଙ୍କ ଟୋକା ଖଣ୍ଡେ ହୃଦେ ଦେଲା ବ୍ୟଥାରେ ।

ଦୂତ ! ବେଗେ ଘାତୁକଙ୍କୁ ଡାକ ଏ ପାଷାଣ୍ଡକୁ ଶୂଳ ଦଅ ।

ସୁଶୀଳ—ହେ ନୃପ ! କେଉଁ ନୁହେଁ ଦୋଷୀ ମୁଁ ଏଥିରେ ।

ଗୀତ

(ପ୍ରାଣରୁ ଅନ୍ତର—ଝୁଲେ)

ହେ ନରେଶ ! ବୃଥା ରାଗ କର କାହିଁ ପାଇଁ ।
ଅଣୁମାତ୍ର ଦୋଷ ଏଥି କରିନାହିଁ ମୁହିଁ । ଘୋଷା ।

ମହାରାଜ ! ଦୋଷ ନ ବୁଝି ମୋ ଉପରେ ବୃଥା ରାଗୁଛନ୍ତି କାହିଁକି ?

ସୁଧୀର ମୂର୍ଖ ! ତୁ ବଡ଼ ମନ୍ଦପ୍ରକୃତିର ଲୋକ, ତୋତେ ଆଉ ନିସ୍ତାର ନାହିଁ ।

ସୁଶୀଳ - ଗୀତ

ମରଣ ଶୂଳକୁ ଡର,
ନାହିଁଟି ଜନେ ମୋହର
ମୃତ୍ୟୁ ମୁଖୁଁ ଅନେକାର ଉଦ୍ଧରିଛି, ନସ୍ତେ ମୁହିଁ ।୧।

ମହାରାଜ ! ମୁଁ ମରିବାକୁ ଭୟ କରୁନାହିଁ, କାରଣ ଅନେକର ମୃତ୍ୟୁମୁଖରୁ ଉଦ୍ଧରିଛି, ଏ ଅଲୋଡ଼ା ଜୀବନ ଗଲେ ମଙ୍ଗଳ ।

ଗୀତ

ରାଜକୁଳେ ମୋର ଜନ୍ମ
କର୍ମ ଦେଉଛି କହଣ
ପ୍ରାଣେ ନାହିଁ ପ୍ରୟୋଜନ ଦାହିଛି ପ୍ରାଣର ବଳ ।

ମହାରାଜ ! ମୋର ରାଜକୁଳରେ ଜନ୍ମ; କିନ୍ତୁ ମୋର କର୍ମଟି ଖରାପ । କଣ କହିବି, ଭାଇ ଲାଗି ମୋର ଏ ଦୁର୍ଦ୍ଦଶା ।

ସୁଧୀର—ତୁ ରାଜପୁତ୍ର ! ତେବେ ତୋ ଭାଇର କଣ ହେଲା ?

ସୁଶୀଳ— ଗୀତ

ମାତା ମୋର ଲୁଟ କରି,
ଭ୍ରାତେ ଦେଉଥିଲେ ଶୂଳ
ଧର୍ମ ବଳରୁ ଉଦ୍ଧରି
ରାଜା ହେଲେ କାଞ୍ଚି ପାଇଁ । ୩ ।

ମୋର ମାତା ଜ୍ୟେଷ୍ଠ ଭ୍ରାତାଙ୍କ ଶିଶୁ ନ ଦେଖି ଗୋଟିଏ ଷଡ଼ଯନ୍ତ୍ର କରି ଘାତୁକ ହସ୍ତରେ ଶୂଳ ଦେବାକୁ ପଠାଇଲା । କିନ୍ତୁ ଦଇବ ବଳରୁ ତାଙ୍କୁ ହସ୍ତୀ ସୁନା-କଳସ ଦେଇ ରାଜପଦରେ ବରଣ କରିନେଲା ।

ସୁଧୀର—ତୁ ଏ ଖବର କାହାଠାରୁ ପାଇଲୁ ?

ସୁଶୀଳ— ଗୀତ

ଭାଇ ଲାଗି ମୋର ପ୍ରାଣ
କରୁଥିଲା ବିସର୍ଜନ
ଘାତୁକ ଦୟା ବହନ
ସବୁ ମୋତେ ଦେଲା କହି । ୪ ।

ମହାରାଜ ! ଭାଇଙ୍କର ଏ ଦୁର୍ଦ୍ଦଶା ଶୁଣି ଘାତୁକଠାରୁ କରବାଳ ନେଇ ସ୍ୱହସ୍ତେ ପ୍ରାଣ ହରଉଥିବାରୁ ଘାତୁକ ମୋତେ ସମସ୍ତ କହିଦେଲା ।

ସୁଧୀର—ହଁ ତେବେ ତହୁଁ କଣ ହେଲା ?

ସୁଶୀଳ— ଗୀତ

ସେ ଭ୍ରାତେ ସନ୍ଧାନ କରି
ବନେ ହେଲି ବନବାସୀ
ପଥେ ହୋଇଲି ଉଦାସୀ
ଶବର ରଖିଲା ନେଇ । ୫ ।

ମହାରାଜ ! ସେ ଭାଇଙ୍କ ସନ୍ଧାନରେ ବୁଲୁଛି, ପଥରେ ରାତ ହୋଇଗଲା । କୌଣସି ଆଶାଭରସା ନ ପାଇ ଭଗବାନଙ୍କୁ ଚିନ୍ତା କରୁଛି; ଏପରି ସମୟରେ ଶବରଗଣଙ୍କ ଦୁଇଜଣ ମୋର ଭେଟ ହେଲେ ।

ସେମାନେ ମୋତେ ନେଇ ପୁତ୍ରପରି ଲାଳନ ପାଳନ କଲେ ।

ସୁଧୀର (ସ୍ୱଗତ) ଆହା, ମୁଁ ତ ମୋର ଗୋଟିଏ ପ୍ରାଣର ଭଉଣୀକୁ ହରାଇ ଦେଇ ଆସିଛି । ଏମାନଙ୍କର ଭଉଣୀକୁ ଯେ ଦଶା ଘଟିଛି ମୋର ମଧ୍ୟ ସେହି ଦଶା ଘଟିଛି । ବିଧାତା କଅଣ ଗୋଟିଏ ଉପାୟରେ ସମସ୍ତଙ୍କୁ ବସାଇଛୁ ? [ପ୍ରକାଶ୍ୟେ] ତହୁଁ କଣ ହେଲା ?

ସୁଶୀଳ— ଗୀତ

ଦିନେ ଶବର ମୋ ଜନେ
ହେଲା ମୃଗ ଧରିବାରେ
ଆସନ୍ତେ ମୁହିଁ ପଥରେ
ଏ କନ୍ୟା ନେଲା ବହାଇ ।

ଦିନେ ଶବର ମୋତେ ଶିକାର ଦେଇ ଧରିବାକୁ ପଠାଇଥିଲା । ମୁଁ ଶିକାର ନେଇ ଆସିବା ସମୟରେ ପଥରୁ ଏ କନ୍ୟା ମୋତେ ଧରି ନେଇଗଲା ।

ଗୀତ

ପରିଣେୟ ତାର ମୋର,
ହେଲା ତା ପିତା ଗୃହର
ମୁଁ ଆସନ୍ତେ ଦେଶାନ୍ତର
ସେ ମୋ ସଙ୍ଗେ ହେଲା ଭାଇ ।

ମହାରାଜ ! ତାହା ପିତା ନିକଟରେ ତାର ମୋର ପରିଣୟ ହେଲା, ତହୁଁ ମୁଁ ବିଦେଶ ଆସିଲି, ସେ ମଧ୍ୟ ମୋ ସଙ୍ଗରେ ଥିଲା ।

ସୁଧୀର—ସେ ଏଠାକୁ ଆସିଲେ କିପରି ?

ସୁଶୀଳ— ଗୀତ

ପଥେ ନଦୀ ପାର ବେଳେ
କୈବର୍ତ୍ତେ କପଟ ହେଲେ
ମୋ ନାରୀ ବଳେ ହରିଲେ
ମୋତେ ଜଳ ଫିଙ୍ଗି ଦେଇ ॥

ବାଟରେ ନଦୀ ପାର ହେଲାବେଳେ କୈବର୍ତ୍ତ-ମାନେ ତା ରୂପରେ ମୁଗ୍ଧ ହୋଇ ମୋତେ ଜଳକୁ ଫିଙ୍ଗି ଦେଇ ମୋର ସ୍ତ୍ରୀକୁ ନେଇଗଲେ, ମୋର ଭାଗ୍ୟ-ବଳରୁ ଭାସିଆସି ଆପଣଙ୍କ ମାଳିଣୀ ପାଖରେ ଲାଗି-ଥିଲି । ସେ ମୋତେ ଦେଖି ସଚେତ କରାଇ ପୁତ୍ରବତ୍ ଲାଳନ-ପାଳନ କରୁଛନ୍ତି । ମହାରାଜ ! ଏତେ ଏତେ କଷ୍ଟରୁ ମୁଁ ଉଦ୍ଧରିଛି, ମରିବାକୁ ତିଳେମାତ୍ର ଭୟ ନାହିଁ ।

ସୁଧୀର—( ସ୍ୱଗତ ) କି ଆଶ୍ଚର୍ଯ୍ୟ ! ଏହାର କଥାରେ ମୋର ଆପାଦ ମସ୍ତକ କମ୍ପି ଉଠିଲା କାହିଁକି ? ( ପ୍ରକାଶ୍ୟେ ) ଦୂତ ! ଫେଇଦିଅ ବନ୍ଧନ ଏହାର, ବସିବାକୁ ଦିଅ ଆସନ ମୋ ପାଶେ (ସୁଶୀଳପ୍ରତି) କହ ବତ୍ସ ! ତୋର ପିତାଙ୍କ ନାମ କଣ, ତୋର ନାମ କଣ ଏ କନ୍ୟାର ନାମ ଓ ତୋର ଭଉଣୀର ନାମ ପ୍ରକାଶ କର ।

ସୁଶୀଳ— ଗୀତ

ବୀରସେନ ମୋର ତାତ ମାଳତୀ ତାର ନାମ ତ
ସୁଶୀଳ ମୁଁ ବୁଝ ନୃପ ସୁଧୀର ଅଟେ ମୋ ଭାଇ ॥

ମହାରାଜ ! ମୋ ପିତାଙ୍କ ନାମ ବୀରସେନ୍ ଏ କନ୍ୟାର ନାମ ମାଳତୀ । ଏ ହତଭାଗାର ନାମ ସୁଶୀଳ । ସୁଧୀର ମୋର ବଡ଼ଭାଇ ଅଟନ୍ତି ।

ସୁଧୀର—( ସୁଶୀଳକୁ କୋଳାଗ୍ରତ କରି ) ସୁଶୀଳ; ମୋର ପ୍ରାଣର ଭାଇ ସୁଶୀଳ । ମୁଁ ନ ଜାଣି ତୋଠାରେ ଏତେ ଦ୍ୱେଷ କରିଥିଲି । ଭାଇ ତୋର ଏ ସେହି ଜ୍ୟେଷ୍ଠ ଭ୍ରାତାର ଦୋଷ କ୍ଷମା ଦେ ।

ଗୀତ

ଭ୍ରମରେ ମୋ ଲାଗି କେତେ ସହିଲୁ କଷଣ ।
ଧନ୍ୟ ତୋର ଭ୍ରାତୃଭକ୍ତି, ଧନ୍ୟ ତୋ ଜୀବନରେ । ୧ ।
ସୌଭାଗ୍ୟ ଚନ୍ଦ୍ର ମୋ ଉଦିଅଛି ଏତେଦିନେ ।
ଆଲିଙ୍ଗନ କରେ ବତ୍ସ ବାଳକୃଷ୍ଣ ଭଣେ । ୨ ।

ବତ୍ସ ! ଚାଲ, ଦୂତ ! ବଧୂଙ୍କୁ ମୋ ଯେନପାଅ ଅନ୍ତଃପୁର ମଧ୍ୟେ ।

ସୁଶୀଳ ଭାଇ ! ତୁମ୍ଭଙ୍କ ଏ ଦଶା କିଏ ଦେଲା, କିପରି କଣ ହେଲା ମୋତେ କହନ୍ତୁ ।

ସୁଧୀର—ସୁଶୀଳରେ ! ପଣ୍ଡିତେ ମୋତେ କହିଲେ, ଆଜ ରାତି ପ୍ରଥମ ପ୍ରହରରେ ପିତାଙ୍କୁ ଶତ୍ରୁଘାତ ହେବ, ତୁମ୍ଭେ ଏ ସମୟରେ ତତ୍ପର ହୁଅ । ଏ କଥା ଶୁଣି ଅବିଳମ୍ବେ ଖଣ୍ଡେ ପିତାଙ୍କ ଶୟନ ମନ୍ଦିରର ଚତୁଃପାର୍ଶ୍ୱ ରକ୍ଷାକରି ବୁଲୁଛି ।

ହଠାତ୍ ଜନନୀ ସର୍ବନାଶ ବୋଲି ଚିତ୍କାର କରି ଉଠିଲେ । ତହୁଁ ମୁଁ ଶତ୍ରୁ ଆଶଙ୍କାରେ ଉନ୍ମୁକ୍ତ କରବାଳହସ୍ତେ କକ୍ଷମଧ୍ୟକୁ ପ୍ରବେଶ କରନ୍ତେ ଜନନୀ ମୋତେ ଦୋଷୀରେ ସାବ୍ୟସ୍ତ କରାଇ ଶୂଳ ନିମିତ୍ତ ଘାତୁକ ହସ୍ତେ ପିତାଙ୍କ ପରାମର୍ଶରେ ପଠାଇଲେ ।

ସୁଶୀଳ—ହାଇ ! ଆଉ ବୃଦ୍ଧକୁ ଯିବା କଣ ? ପିତାଙ୍କର ଏଥିରେ ଅଣୁମାତ୍ର ଦୋଷ ନାହିଁ । ପଣ୍ଡିତ ଓ ଜନନୀଙ୍କଦ୍ୱାରା ଏ ଘଟନା ହୋଇଛି । ତେବେ ଗୁପ୍ତଭାବରେ ରାଜ୍ୟକୁ ଯାଇ ପିତାଙ୍କ ସନ୍ଦେଶ ବୁଝିବା ଦରକାର ।

ସୁଧୀର—ହଁ, ଦୂତ ଯେଉଁ କୈବର୍ତ୍ତମାନେ ଏ ସ୍ତ୍ରୀକୁ ମୋତେ ଭେଟି ଦେଇଥିଲେ ସେମାନଙ୍କୁ ଡାକ । ସେମାନେ ସେମାନଙ୍କର ପୁରସ୍କାର ନେଇଯିବେ ।

କୈବର୍ତ୍ତ—ମହାରାଜ ! ଯୁହାର, ଯୁହାର ! ଆମ୍ଭର ବକସିସ୍ ମିଳିଯାଉ ।

ସୁଧୀର—ଦୁଷ୍ଟେ ରହିଛ ଏ କଏ, ଲୋଭପରେ ଆଣିଥିଲ ଏ କନ୍ୟାକୁ କାହିଁ; ଉକ୍ତକର୍ମ ସମୁଚିତ ପ୍ରତିଫଳ ଭୋଗିବ ଏକ୍ଷଣି ।

ଗୀତ

ଆରେ ରେ ମୂଢ଼ କୈବର୍ତ୍ତେ
ଭଲ ହେଲେ କାଣ୍ଡରେ,
ନିର୍ଦ୍ଦୋଷୀ ଭାବରେ ମୋର
ଦେଲ ଏଡ଼େ ଦଣ୍ଡରେ । ଦୋଷୀ ।
ବିଶ୍ୱାସଘାତକ କାର୍ଯ୍ୟ କରିଅଛରେ ନିର୍ଲଜ୍ଜ ।
ଶ୍ମଶାନଭୂମିରେ ଆଜ ହେବ ଖଣ୍ଡ ଖଣ୍ଡରେ ।୧।

ମୂର୍ଖ ! ତୁମ୍ଭେ ବିଶ୍ୱାସଘାତକ ହୋଇଛ, ତୁମକୁ ଶୂଳରେ ବସାଇବ ।

କୈବର୍ତ୍ତେ—ମହାରାଜ ! ଆଉ ଏପରି କାର୍ଯ୍ୟ କେବେ କରିବୁ ନାହିଁ । ଆପଣ ମା ବାପ, ରକ୍ଷା କରନ୍ତୁ ।

ସୁଧୀର— ଗୀତ

ତ ତ ମାସ କାରବାସ ହେବ ଯାଅରେ ନୃଶଂସ,
ଅର୍ଜିଅଛ ମହାଦୋଷ ତୁମ୍ଭେ ତ ପାଷାଣ୍ଡରେ ।୨।

ପାଷାଣ୍ଡେ ! ତୁମ୍ଭେମାନେ ତ ତ ମାସ ଲେଖାଏଁ କାରାଦଣ୍ଡ ଭୋଗ କରିବ ।

---

## ଚତୁର୍ଥ ଦୃଶ୍ୟ

ରାଣୀ—(ସ୍ୱଗତ) ସୁଧୀର ତ ମୋତେ ମାତାଠାରୁ ଅଧିକ ଭକ୍ତି ଓ ସ୍ନେହ କରୁଥିଲା । ମୁଁ ପାପାଣ୍ଡୀ ତାଠାରେ ବୃଥା ହିଂସା କରି କପଟରେ ମରାଇଦେଲି ସତ, କିନ୍ତୁ ମୋର ଇଚ୍ଛା ତ ପୂରଣ ହେଲା ନାହିଁ । ମୋର ପୁତ୍ର ସିଂହାସନରେ ବସିବା ଦୂରେଥାଉ, ଆଖି ବୁଜି ଦେଇ ଯାଇଛି । ମୁଁ ଯିନା ପିଶାଚୀ, କିନ୍ତୁ ସୁଶୀଳ ମୋର ପୁତ୍ର ହେଲେ କଣ ହେବ ସେ ପ୍ରକୃତରେ ସତ୍ ଓ ସରଳ ପ୍ରକୃତିର ବାଳକ । ତାର ଭାଇ ସୁଧୀରଠାରେ ଖୁବ ଭକ୍ତି । ସେ ଭାଇର ବଧଛେଦ ସମ୍ବାଦ ଶୁଣି ରାଜ୍ୟ ତ୍ୟାଗ କରି କୁଆଡ଼େ ପଳାଇଗଲା । ମୁଁ ଏବେ କଣ କରିବି ? ରାଜା ତ ପୁତ୍ର ବିଚ୍ଛେଦରେ ପାଗଳ । ରାଜ୍ୟରେ ବି ଚତୁର୍ଥାବସ୍ଥା । ତେବେ ମୋର ଭବିଷ୍ୟତ୍ ଯନ୍ତ୍ରଣା କିପରି କଟାଇବି ?

ଗୀତ

(ମ ଦଶା ହେଲା ବୁଝେ)

ନ ବୁଝି ମୁଁ କଲିରେ ନ ବୁଝି ମୁଁ କଲି ।
ସାବତ ପୁଅ ମରାଇ କି ଯଶ ଲଭିଲିରେ । ପଦ ।
ମୋର ପୁତ୍ରପାଇଁ ରାଜ୍ୟ ନେବାକୁ ହେଲି ଅଧୈର୍ଯ୍ୟ
ପୂର୍ଣ୍ଣ ନ ହେଲା ମୋ କାର୍ଯ୍ୟ
(ଶେଷେ) ମୋ ପୁତ୍ର ହାରିଲିରେ ।
ଧିକ ମୋ ଅବଳା ଜନ୍ମ ନ ଜାଣିଲି ଧର୍ମାଧର୍ମ
ଶେଷେ ହେଲା କର୍ମ ଦାମ ମରମେ ମରିଲିରେ । ୧ ।

ମୁଁ ପାଷାଣ୍ଡୀ ନାରୀ ହୋଇ ଏଡ଼େ ମନ୍ଦ କର୍ମ କଲି । ରାଜା ! ତୁମ୍ଭ ମୋର ବୁଦ୍ଧିରେ ପଡ଼ି କିପରି ଶତ୍ରୁବୁଦ୍ଧି ଆଚରଣ କଲ୍ । ତୁ ରମଣୀର କଥାରେ ବିଶ୍ୱାସ କରି ତୋର ସ୍ନେହର ପୁତ୍ରକୁ ମରାଇ ଦେଲୁ । ତୁ ପୁରୁଷ ହୋଇ ଏଡ଼େ ନିର୍ବୋଧ ହେଲୁ ।

ରଜା—ରାକ୍ଷସି ! ଏତ୍ତବାର ବୁଦ୍ଧି ହୋଇଛୁ । ତେବେ ସୁଧୀର ପ୍ରକୃତରେ ନିରପରାଧୀ ? କହ ପାଷାଣ୍ଡି ! ମୋର ପୁତ୍ରକୁ କାହିଁକି ମରାଇଲୁ ?

ରାଣୀ—ମୁଁ ମରାଇ ଦେଲି ନା ତୁମ୍ଭେ ମରାଇ ଦେଲ ? ତୁମ୍ଭେ ପିତା ହୋଇ ନାରୀର ଚକ୍ରାନ୍ତରେ ପଡ଼ି ଧର୍ମକର୍ମାଦି ବିବର୍ଜିତ ହୋଇ ନ ବୁଝି ନ ଶୁଝି ନିର୍ଦ୍ଦୋଷରେ ଦଣ୍ଡବିଧାନ କରିଛ ।

ରଜା— ଗୀତ

( ଏ କୁଳ-କଳଙ୍କା—ବୁଲେଇ )

ଆରେ ଲୋ ରାକ୍ଷସି । ମୋର ବଂଶ କଲୁ ଧ୍ୱଂସ ଲୋ ।
ଆଜ ମୁଁ ସ୍ୱହସ୍ତେ ତୋତେ କରିବି ବିନାଶ ଲୋ ।
ରାଜରାଣୀ ହୋଇ ମୂଢ଼ୀ (ହେଲୁ) ଏଡ଼େ ଅଲକ୍ଷଣୀ ଲୋ ।
କେମନ୍ତେ ଆଶ୍ରା ଦେଉଛୁ, ତୋତେ ଏ ଧରଣୀ ଲୋ ॥
କହ ପାଷାଣ୍ଡୀ ! କିଏ ପ୍ରକୃତ ଦୋଷୀ ?

ରାଣୀ—ମୁଁ ଏକା ନୁହେଁ; ତୁମ୍ଭେ ଓ ପଣ୍ଡିତ ।

ରଜା—କିପରି ?

ରାଣୀ—ପଣ୍ଡିତ ଶିକ୍ଷାରେ ମୁଁ ପଡ଼ିଲି ଓ ମୋ ଶିକ୍ଷାରେ ତୁମ୍ଭେ ପଡ଼ିଲ ।

ରଜା—ଦୂତ ! ଆଜ୍ଞା ଦିଅ ଘାତୁକେ ଆସି ଶୀଘ୍ରଶୀଘ୍ର ଦେଖା ଦେବେ ।

ଦୂତ—ଯେ ଆଜ୍ଞା ମହାରଜ ! [ଦୂତର ପ୍ରସ୍ଥାନ]

---

## ପଞ୍ଚମ ଦୃଶ୍ୟ

( ଗାଁଣି )

ପୁରୁଷ—ବେଳ ମାଆଲେ ! ଆମ ଗାଁ ଖବର କୁ ଶୁଣ ।

ସ୍ତ୍ରୀ—କହନ କିଲ୍ କିସ ହୋଇଛୁ, କଣପ ଲାଗିଛୁ ଧୂମ ॥

ପୁରୁଷ—ରାଣୀ କପଟେ ପୁଅ ମାରୁଛି, ରଜା ଆଜ ସେ କଥାକୁ ଧରିଛି ।

ସ୍ତ୍ରୀ—ଗଲ୍ଲକଥା ତ ସେତିକୁ ରହିଲା ଆଜ କିଆଁ ରଜା ଝୁଣ ॥

ପୁରୁଷ—ଆରେ ସ୍ତ୍ରୀର ଯେବେ ଧରି ପଡ଼ିବ, ତାକୁ ଶାସ୍ତି କେ ନ ଦେଇ ଛାଡ଼ିବ ।

ସ୍ତ୍ରୀ—ଦେଲେହିଁ ଶାସ୍ତି କି ନ ଦେବହିଁ କସୁଆସା ଝୁମୁ ଝୁମୁ । ୧ ।

ପୁରୁଷ—ତୁ ରାଣୀଙ୍କ ତରଫ ଧରୁଛୁ ଶାଳୀ ( ମୋ ) ସଙ୍ଗେ ଜୁଆଳ ସୁଆଳ କରୁଛୁ ।

ସ୍ତ୍ରୀ—ମୁହିଁ ତୁଲୁଛୁ ଥଟ୍ଟା କରୁଛୁ କସାଇବ ଦୁମ୍‌ଦୁମ୍ ।୨।

---

## ଷଷ୍ଠ ଦୃଶ୍ୟ

ରଜା—ପଣ୍ଡିତ ! ତୁହି ମୋର ବଂଶ ଧ୍ୱଂସ କଲୁ ।

ପଣ୍ଡିତ—ଆଜ୍ଞା ନା, ମୁଁ ନୁହେଁ ।

ରଜା—ତୁ ରାଣୀକୁ କୁମନ୍ତ୍ରଣା ଦେଇ ମୋର ପୁତ୍ରକୁ ମରାଇ ଦେଲୁ ଘାତୁକ ! ପଣ୍ଡିତଙ୍କୁ ଆଗେ ଶୂଳ ଦେବୁ, ତହିଁପରେ ରାଣୀଙ୍କୁ ଓ ଶେଷରେ ମୋତେ ଶୂଳ ଦେବୁ ।

ଘାତୁକ—କ୍ଷମା କର ମହାରଜ ! ଅକାଳନକଳେ କି ନମିତ୍ତ କଠୋର ଆଦେଶ । ସତ୍ୟ ସତ୍ୟ ଏତୁ ଗିର ନ ମାର ମୁଁ ସୁଧୀର କୁମରେ, ଦେଖାଇଛୁ ଆଣି ମୃଗ୍ପି ପକ୍ଷୀର ରୁଧିର ।

ରଜା—କାହିଁ ତେବେ ସୁଶୀଳ ମୋହର ?

ଘାତୁକ—ଯାଇଛନ୍ତି କାହିଁ ଭ୍ରାତା ଅନ୍ୱେଷଣେ ।

ରଜା—ଘାତୁକ ! ତୁ କଣ ମୋତେ ଏଡ଼େ ପାଗଳ ବୋଲି ଜ୍ଞାନ କଲୁ ? କଥାରେ ଭୁଲାଇବାକୁ ବସିଛୁ । ଛାଡ଼ ସେ ସବୁ । ଶୀଘ୍ର ସ୍ୱକାର୍ଯ୍ୟ ଦୃଢ଼ରେ ପ୍ରବୃତ୍ତ । (ଘାତୁକ ପଣ୍ଡିତଙ୍କୁ ଧରିବାରୁ ପଣ୍ଡିତ ଥରହରେ ଚିତ୍କାର । ସୁଧୀର ଓ ସୁଶୀଳର ପ୍ରବେଶ)

ସୁଧୀର—କ୍ଷାନ୍ତ ହୁଅ ଘାତୁକ ! ବ୍ରାହ୍ମଣରେ କିମ୍ପା ଦେଉ ଏଡ଼େ ଦଣ୍ଡ, କାହାର ଆଦେଶେ ନରହତ୍ୟା କରୁଛ ପାଷଣ୍ଡ ?

ଘାତୁକ—ମୋର ପ୍ରଭୁର ଆଦେଶେ ।

ସୁଧୀର—କାହାନ୍ତି—ସେ ଛନ୍ତି କେଉଁଠାରେ ?

ଘାତୁକ—ଉପସ୍ଥିତ ତୁମ୍ଭ ସମ୍ମୁଖେ ମୋହର ?

ସୁଧୀର—(ପେଛିପଡ଼ି) କିଏ ଏହୁ ତୋର ପ୍ରଭୁ; ମହାରଜ ! ଆମ୍ଭ ବାକ୍ୟ କ୍ଷମାଦିଅ ବ୍ରାହ୍ମଣଙ୍କୁ ଆଜ । ପ୍ରାଣଦଣ୍ଡ ବିନା ଅନ୍ୟ ଶାସ୍ତି ଦେଇପାର ତୁମ୍ଭେ ।

ରଜା—ଅନ୍ୟ ଶାସ୍ତି, ପାଷଣ୍ଡେ କିଏ ତୁମ୍ଭେ ? ମୋର ରାଜ୍ୟ ପଶି ମୋ ଆଦେଶେ ବାଧା ! ଘାତୁକ ! କର ସ୍ୱକାର୍ଯ୍ୟ ସାଧନ ।

ସୁଧୀର—ସାବଧାନ ଘାତୁକ ! ସାବଧାନ ! ଅଧର୍ମୀ ତୋ ରଜା, ବୃଦ୍ଧବୟସେ କରୁଅଛୁ ବ୍ରହ୍ମହତ୍ୟା ପାପ । ଆଉ କିଛୁ ଶାସ୍ତି କି ନ ମିଳଲା ତାଙ୍କୁ ।

ରଜା—ଘାତୁକ ! ଦିଅ ତୋର ତରବାରି, ନିଜେ ନିଜେ କରିବି ସେ କାର୍ଯ୍ୟ ସମାଧାନ । କିଏ ଦେବ ବାଧା ଦେଖିବି ଏକ୍ଷଣି ।

(ଘାତୁକ ତରବାରି ଦେବା ସମୟରେ ସୁଧୀର ତରବାରି ଛଡ଼ାଇ ନେବା)

ସୁଧୀର—ନା, ବ୍ରାହ୍ମଣକୁ ଶୂଳି ଦେଇ ନ ପାର ।

ରଜା— ଗୀତ

(ନୂଟେ ଏ ମାନସ-ବୃତ୍ତେ)

ମେଞ୍ଚଡ଼ ଟୋକା ଦିଖଣ୍ଡ
କର କେଡ଼େ କାଣ୍ଡରେ
ମୋର ପ୍ରତିଜ୍ଞାରେ ବାଧା
ଦେଉଛ ପାଷାଣ୍ଡରେ ।୧।
ମୋର ବଂଶ ଏ ବ୍ରାହ୍ମଣ
କରଅଛି ବିନାଶନ
ସେ ଲଗି ଆଜ ମୁଁ ଜାଣ
କାଟୁଛି ତା ମୁଣ୍ଡରେ । ୨ ।
ବ୍ରାହ୍ମଣ ପକ୍ଷେ ମୋ ରଣୀ
ପକାଇବ ଏବେ ହାଣି
ଏ ପାଷାଣ୍ଡୀ ଅଲକ୍ଷଣୀ
ଅର୍ଜିଛି ସେ ଦଣ୍ଡରେ । ୩ ।
ସବୁ ଶେଷେ ମୋର ପ୍ରାଣ
କରିବ ମୁଁ ବିସର୍ଜନ
ଛାଡ଼ ଦିଅ ମୋ କୃପାଣ
ଦୁର୍ବୃତ୍ତର ଖଣ୍ଡରେ । ୪ ।

ଛାଡ଼ ତରବାରି ମୂର୍ଖ । ଏ ପାଷାଣ୍ଡ ପାଷାଣ୍ଡୀଙ୍କ ଯୋଗୁଁ କାରସେନ ବଂଶପୁଷ୍ପ ଆଜ ଶ୍ମଶାନରେ ପରିଣତ ହୋଇଅଛି ?

ସୁଧୀର - ତେବେ କି ନିମିତ୍ତ ଆପଣ ନିଜ ପ୍ରାଣ ନାଶ କରିବେ ?

ରଜା—ଏହି ପଣ୍ଡିତ ପ୍ରବଞ୍ଚନାରେ ଏ ପାଷଣ୍ଡୀ ତାହାର ମୋହିନୀ ମାୟାଜାଲରେ ମୋତେ ଭୁଲାଇ ମୋଦ୍ୱାରା ଜ୍ୟେଷ୍ଠପୁତ୍ର ସୁଧୀରର ବିନାଶ ସାଧନ କରାଇଛି । ପୁଣି କନିଷ୍ଠ ସୁଶୀଳ ବାଳକ ହେଲେ କଣ ହେବ ସେ ବି ମଧ୍ୟ ମୋର ଅବିଶ୍ୱାସର ସହ୍ୟ କରି ନ ପାରି ଭ୍ରାତାନ୍ୱେଷଣେ ଯାଇଛି । ଆଉ କି ନିମିତ୍ତ ଏ ପୋଡ଼ାପ୍ରାଣ ରଖିବି ? ମୋର ଜ୍ୟେଷ୍ଠ ସୁଧୀର ଯାଇଛି, କନିଷ୍ଠ ସୁଶୀଳ ଯାଇଛି, ଆଜ ମୁଁ ବି ମଧ୍ୟ ଯିବି । ମୋତେ ବାଧା ଦିଅନା ! (ସୁଧୀର ଓ ସୁଶୀଳ ପଦତଳେ ପଡ଼ି) ପିତଃ, କ୍ଷମାକର ଅଧମ ସନ୍ତାନେ ତବ, କୃପାଶିଷ ଦେଇ ନ ମରି ବଞ୍ଚନ୍ତୁ ଭାବନେ ।

(ଗୀତ)

( ଭାଇ ମୁଁ ହିଁ ମଦନାହିଁ ପ୍ରାଣେ – ବୃତ୍ତେ)

କ୍ଷମାକର ଘେନ ଅପରାଧ
ଅନ୍ତମୁଖେ ଭାଇ ବେନ କାଟିଛୁ ଏବା ରଜନୀ
ନ କର ବୃଥା ଭାଳେଣି ହର ହରିବେ ପ୍ରମାଦ ।୧।
କର୍ମର ଲେଖା ଆମର କେ ଖଣ୍ଡିବ ସାଧ୍ୟ କାର
ପୂର୍ବ ଦୁଃଖ ପରେ ହର ବାଳକୃଷ୍ଣ ଯୋଡ଼େ ପଦ ।

ପିତଃ ! ଆମର କିଛି ଅନିଷ୍ଟ ଘଟି ନାହିଁ, ଯାହା ଦୁଃଖ ସହ୍ୟ କରିବାକୁ ଥିଲା ତାହା ଶେଷ ହୋଇ ଯାଇଛି । ମୁଁ ବର୍ତ୍ତମାନ ବିଜୟଗଡ଼ର ଅଧୀଶ୍ୱର । ଆପଣ ସୁଶୀଳକୁ ସିଂହାସନ ଦେଇ ଆପଣଙ୍କ ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ । (ମାତାପ୍ରତି) ଜନନୀ ! ଗତସ୍ୟ ଶୋଚନା ନାସ୍ତି । ପୂର୍ବ କଥା ଆଉ ମନରେ ଧରନ୍ତୁ ନାହିଁ, ତାହା ଦୈବଲୀଳା ମାତ୍ର ।

( ପଣ୍ଡିତ ପ୍ରତି ) ପଣ୍ଡିତେ ! ସେଥିରେ କୌଣସି ଚିନ୍ତା ନାହିଁ । ତାହା ଆମ୍ଭମାନଙ୍କର ଅଦୃଷ୍ଟର ଲେଖା ।

ରଜା—ସୁଧୀର ! ସୁଶୀଳ ! ଏହା ମୋ ଭାଗ୍ୟରେ ଘଟିବ ବୋଲି ମୁଁ ବିଶ୍ୱାସ କରି ନ ଥିଲି । ସୁଖ, ସୁଖ ବସ !



# ବସନ୍ତ-ମଲ୍ଲୀକା

## ଗୀତାଭିନୟ

### ପ୍ରଥମ ଅଭିନୟ

#### ପ୍ରଥମ ଦୃଶ୍ୟ

(ଦୁର୍ଜ୍ଜୟ ସିଂହ, ଗଫୁର ଖାଁ, କରିମ ଖାଁ, ଦୂତ
(ପ୍ରଜାବର୍ଗ ଓ ବାଦ୍ୟବାଦକ)

ଦୁର୍ଜ୍ଜୟ—ଗଫୁର ଖାଁ, ପ୍ରତାପ ସିଂହ ତାର ପ୍ରତିପତ୍ତିକୁ ଯେଉଁ ରାଜଗଡ଼ ପରିତ୍ୟାଗ କରିଅଛି, ଯଦି ଅନ୍ୟ କୌଣସି ପ୍ରକାର ସାହାଯ୍ୟ ନେଇ ପୁନଶ୍ଚ ମୋ ସହିତ ଯୁଦ୍ଧୋଦ୍ୟୋଗ କରେ ତେବେ ମୋର ଗତି କଣ ?

ଗଫୁର—ହଜୁର ଖୋଦାବନ୍ଦ ! ଆପ୍ ଏସା ହୋନେକା ଫିକର କ୍ୟା ଆପ୍‌କା ସମଝେ ତୋ ଯୋ ପ୍ରତାପ ସିଂହ ଫିରକେ ଆକର ଆପକାସାଥ୍ ଲଢ଼ାଇ କରେଗା ହାତ ସେ ବାଦଶାହ ଜୁଟ୍‌ସ୍ୟା ଉସ ଲସ୍କରର ଜନ୍‌ଦଗୀ ବରବାଦ କରଦିଆ । ହୋଗା ମାଲୁମ ଲେକିନ ଲଢ଼ାଇ କର ନେଇ କରେଗା ଆପ୍‌କେ ଫୀକର ରହ୍ନେ । ବୋଲତାହେ କୀ ଆପକ ଉତନେ ସେ ବଚ୍ଚା ତୈୟାର ହୁଏ । ଗଫୁର ଖାଁକୁ ଏସା ନବାବ କରତେ ନ ସମଝନା । ବହୁ ଆପକା ହୁକୁମସେ ପ୍ରତାପ ସିଂହ ଜୈସା ଲଡ଼କା ଆଓର ଜନାନକା ଶିର କାଟକେ ଆପକା କଦମମେ ଚଢ଼ା ଦେତେ ଶକତେ ହୁଏ ।

ଦୁର୍ଜ୍ଜୟ—ଗଫୁର ଖାଁ ! ତୁମ୍ଭେ ମୋର ଦକ୍ଷିଣ ହସ୍ତ ଓ କରିମ ଖାଁ ବାମହସ୍ତ । ତୁମ୍ଭମାନଙ୍କ ପ୍ରସାଦରୁ ଆଜ ପ୍ରତାପସିଂହକୁ ତଡ଼ ଜୟଗଡ଼ ରାଜ-ସିଂହାସନାଧିକାର କରିଛି । ତୁମ୍ଭମାନଙ୍କର ଉପକାର ପ୍ରତିକାର ମୁଁ କରି କରିପାରିବ ନାହିଁ । ଆଜ ଗଫୁର ଖାଁ ତୁମ୍ଭ ହସ୍ତରେ ଏ ତରବାରି ଅର୍ପଣ କରି ଆଜ ସେନାପତି ପଦରେ ନିଯୁକ୍ତ କଲି, ଆଉ କରିମ ଖାଁକୁ ମଧ୍ୟ ତୁମ୍ଭର ସହକାରୀ ସେନାପତିରୂପେ ନିଯୋଜିତ କଲି ।

(ତରବାରି ପ୍ରଦାନ, ଗଫୁର ଖାଁ ଓ କରିମ ଖାଁ ନତ ମସ୍ତକରେ ତରବାରି ଗ୍ରହଣ କରି ।)

ସକଳେ—ଜୟ ମହାରାଜ ଶ୍ରୀ ଦୁର୍ଜ୍ଜୟ ସିଂହ ର ଜୟ !

ଦୁର୍ଜ୍ଜୟ—ଆଜ୍ଞା ସେନାପତେ ! ମୁଁ ସିଂହାସନ ଅଧିକାର କରିବା ଦ୍ୱାରା ପ୍ରଜାମାନଙ୍କର ମତାମତ କଣ ?

କରିମ—ହଜ୍‌ର ବେଶୋସେ ବାତ କ୍ୟା ଆପକେ ଜିସକୁ ରାଜା ବୋଲତେ ସ୍ୱୀକାର କରନେକେ ହମ ଲୋକ ଯୋ ଉସକୁ ନାହିଁ ଇନ୍‌ସାଫ କରତେ ଉନକା ଫମାଇ ଦେତନା ।

ଗଫୁର—ଯାହାଁପନା । ଯବତୋକ ଆପକା ଲଶ୍କରକୁ ବେଗାର କରେ ତୋ ଉନକୁ ସାଥ ବନାଲେଙ୍ଗେ ।

କରିମ—ହାଁ ହଜରତ ! ଯୋ ତୋଇ ବେଇମାନ ଆଓର ବଦମାସ ନିକାଲେଗା ହମ ଲୋକକୁ ଥୋଡ଼ା ବହୁତ ଦେଖରସେ ଥଣ୍ଡା ବନା ଦେଗା ।

(ଦୂତର ପ୍ରବେଶ ଓ ଅଭିବାଦନ)

ଦୁର୍ଜ୍ଜୟ—କହ ଦୂତ ! ଯାଇଥିଲୁ ନଗ୍ର ପର୍ଯ୍ୟଟନେ, ଏ ସନ୍ଦେଶ ପାଇଅଛୁ ପ୍ରଜାଙ୍କର ଚିତ୍ତ ?

ଦୂତ—ମହାବାହୁ ! ତୁଭ ମନ୍ତ୍ରୀ ବଜ୍ରଧରଙ୍କ ଉତ୍ତେଜନାରେ ପ୍ରଜାମାନେ ସର୍ବ ଗୁପ୍ତ ପ୍ରତାପଙ୍କୁ ଭେଟାଇ ଯାଉଛନ୍ତି ।

ଦୁର୍ଜୟ—ମନ୍ତ୍ରୀଙ୍କ ଉତ୍ତେଜନା । ସେନାପତେ, ତେବେ ମୁଁ କଣ ପ୍ରକାଶ୍ୟ ରାଜ୍ୟ ଅଧିକାର କଲି ।

ଗଫୁର—ଆପ ସବୁର କ ଜିଏ । ହାମ୍ ଉସ୍‌କା ବନ୍ଦୋବସ୍ତ କର ଦେତେ । ଆଇଏ କରିମ ଖାଁ, ମେହେରବାନ ଚଲିଏ ।

(ପ୍ରସ୍ଥାନ)

ଦୁର୍ଜୟ—(ସ୍ୱଗତ) ପୁଣି ଏକ ବ୍ୟାଘାତ ଉପସ୍ଥିତ, ଦେଖାଯାଉ ଯେଉଁ ଦୁର୍ଜୟ ସିଂହ ପ୍ରତାପ ସିଂହଙ୍କୁ ଏକ ମୁହୂର୍ତ୍ତ ମଧ୍ୟରେ ସିଂହାସନରୁ ଚ୍ୟୁତ କରାଇ ଦେଇଛୁ, ଯେଉଁ ଦୁର୍ଜୟ ସିଂହର ଗଫୁର, କରିମ, ଦୁଇ ବିଶ୍ୱସ୍ତ ସେନାପତି ବିଦ୍ୟମାନ, ତାର କବଳରୁ ସେ ଶୁଷ୍କଚର୍ମ, ଜରାଜୀର୍ଣ୍ଣ ବୃଦ୍ଧମନ୍ତ୍ରୀ କଣକ ବଳାଇଯିବ, ଅସମ୍ଭବ ।

(ନେପଥ୍ୟକୁ ଚାହିଁ) ହେଇ ଗଫୁର ଖାଁ ପେଁଛିଲ ପରା ।

(ମନ୍ତ୍ରୀ ଉଦୟ ପ୍ରଜାଗଣଙ୍କୁ ବନ୍ଧନ କରି ଗଫୁର କରିମ ଖାଁ ପ୍ରବେଶ)

ଦୁର୍ଜୟ—କି ମନ୍ତ୍ରୀ ମହାଶୟ ! ପ୍ରଜାମାନଙ୍କୁ ରାଜ୍ୟର ବିପକ୍ଷରେ କୁମନ୍ତ୍ରଣା ଦେଇ ଉତ୍ତେଜିତ କରିବା ରାଜଦ୍ରୋହୀର ଚିହ୍ନ, ତେବେ ତୁମ୍ଭ ଭଳି ବୟୋବୃଦ୍ଧ ଓ ଜ୍ଞାନବୃଦ୍ଧ ପକ୍ଷରେ ଏପରି ରାଜଦ୍ରୋହାଚରଣର ଉଦ୍ଦେଶ୍ୟ ?

ଉଦ୍ୟାବନ୍ତ—ଦୁର୍ଜୟସିଂହ ! ତୁମ୍ଭେ ଯେଉଁ କଥା ସ୍ୱତଃ ଉଚ୍ଚାରଣ କଲ ସେଥିରେ ବିଭାବନ କରିଛ କି ? ମୁଁ ନା ତୁ ?

ଦୁର୍ଜୟ—ମୁଁ ରାଜଦ୍ରୋହୀ କିପରି ?

ଉଦ୍ୟାବନ୍ତ—ଯେଉଁ ଧାର୍ମିକପ୍ରବର ରାଜଚକ୍ରବର୍ତ୍ତୀଙ୍କ ଅନ୍ନରେ ତୁମ୍ଭର ସପ୍ତ ପୁରୁଷ ଓ ପିତୃପିତାମହ ପ୍ରତିପାଳିତ, ଯେଉଁ ନ୍ୟାୟପରାୟଣ ପ୍ରଜାବତ୍ସଳ ରାଜାଙ୍କ ଅମଳରେ ନିତ୍ୟ ଲକ୍ଷ ଲକ୍ଷ ଅତିଥି ଅଭ୍ୟାଗତଙ୍କୁ ଅନ୍ନବସ୍ତ୍ର ଦାନ ହେଉଥିଲା, ଯେଉଁ ହରିଶ୍ଚନ୍ଦ୍ରଙ୍କ ରାଜ୍ୟରେ ବିନା ଜୁଲମରେ ପ୍ରଜାମାନେ ସ୍ୱୀୟ ରାଜସ୍ୱ ଯଥାସମୟରେ ଦେବାକୁ କୁଣ୍ଠାବୋଧ କରୁ ନ ଥିଲେ, ତୁ ସେହି ପୁଣ୍ୟାତ୍ମା ପ୍ରତାପ ସିଂହଙ୍କୁ ରାଜ୍ୟଚ୍ୟୁତ କରାଇ ଅରକ୍ଷ କରି ରାଜଗଡ଼ରୁ ବିତାଡ଼ିତ କରିଦେଇଛୁ । ଅନୁମାନ କର, ପ୍ରକୃତ କିଏ ରାଜଦ୍ରୋହୀ, କିଏ ନୃଶଂସ, କିଏ ନିମକହାରାମ ।

ଦୁର୍ଜୟ—ମନ୍ତ୍ରୀ ! ଆଉ ସେଦିନର କଥା । ବା, ସେ ଅଧିକାର ନାହିଁ ବର୍ତ୍ତମାନ ତୁମ୍ଭେ ଯେ ବନ୍ଦୀ । ପୁଣି ମୁଁ ରାଜେନ୍ଦ୍ରାସନରେ ତୁମ୍ଭେ କେଉଁ କବଳରେ ଓ କି ସାହସରେ ଏପରି ତାଚ୍ଛଲ୍ୟ ବାକ୍ୟ ପ୍ରୟୋଗ କରୁଛ ?

ଉଦ୍ୟାବନ୍ତ—ଆଉ କାହା ବଳରେ, ତ୍ରୁଟି ନାହିଁ ସେନାପତେ । ଯାହା ବଳରେ, ଯାହା ଅନ୍ନରେ ସାମାନ୍ୟ ଶୃଗାଳ କେଶରୀ ଶିଶୁର ସିଂହାସନରେ ଉପବିଷ୍ଟ; ଯାହା ଉଚ୍ଛିଷ୍ଟ ହାଗ ପ୍ରତିପାଳିତ କୁକୁର ବର୍ତ୍ତମାନ ପ୍ରଭୁତାରେ ବେମାନ ପ୍ରକୃତ ଦୁର୍ଜୟ ସିଂହ । ସେହି ଅନ୍ନ ବଳରେ ଆଜ ମନ୍ତ୍ରୀ ଉଦ୍ୟାବନ୍ତର ଏ ସାହସ ।

ଦୁର୍ଜୟ—ସାବଧାନ ଉଦ୍ୟାବନ୍ତ ସାବଧାନ ! ମୋତେ କଣ କରି ମନେକରିଛ, ଇଚ୍ଛା କଲେ ଇଙ୍ଗିତେ ତୁମ୍ଭପରି ସହସ୍ର, ସହସ୍ର ଲୋକଙ୍କ ମସ୍ତକରେ ପଦାଘାତ କରିପାରେ ।

ଉଦ୍ୟାବନ୍ତ—ଦୁର୍ଜୟ ସିଂହ । ତା କରିପାରୁ, ତହିଁରେ ମୋର ତିଳେମାତ୍ର ଆପତ୍ତି ନାହିଁ ।

ଦୁର୍ଜୟ—ତୁମ୍ଭର ଏ ସାହସ, ତୁମ୍ଭର ଏ ଦାମ୍ଭିକପଣିଆ ଅଚିରେ ଚୂର୍ଣ୍ଣ କରିଦେବ । ଗଫୁର ଖାଁ, ଏ ମୂର୍ଖର ପ୍ରବଞ୍ଚନାରେ ରାଜ୍ୟ ଶାସନରେ ବିଶୃଙ୍ଖଳା ଘଟି ପାରିବ ! ନିଅ ଏ ପାଷାଣ୍ଡକୁ କାରାଗାରରେ ରଖ । ଆଉ ସନ୍ଧାନ କର ପ୍ରତାପ ସିଂହ ତାର ସ୍ତ୍ରୀ ପୁତ୍ରଙ୍କୁ ଘେନି କେଉଁଆଡ଼େ ଯାଇଛି ଚର ପଠାଇ ସେମାନଙ୍କୁ; ଗିରଫ କର ।

ଗଫୁର—ଜି; ଖୋଦାବନ୍ଦ ! (କରିମ ଖାଁ ପ୍ରତି) କରିମ ଖାଁ ! ଏ ପ୍ରଜାଲୋକୋକା ମିଜାଜ ଠିକ୍ କରଲେ । ହାମ୍ ଇସ୍‌କୁ ଲେକର ଯାତା ହୁଁ ।

(ମନ୍ତ୍ରୀଙ୍କୁ ଘେନି ପ୍ରସ୍ଥାନ)

(ପ୍ରଜାଗଣଙ୍କୁ ବେଢ଼ିଯାଇ)

କରିମ୍—କେଉଁଠିରେ ବଦମାସ ! କ୍ୟା ଶୋରଗୋଲ ହୋ !
(ପ୍ରହାର)

ପ୍ରଜାଗଣ—ହଜୁର ମା ବାପ ।

ଦୁର୍ଜ୍ଜୟ—କରିମ ଖାଁ ! ଇନ୍ ଲୋକକୁ ଗ୍ରେପ୍ତ କରୋ ।
ଫିରଙ୍ଗି ଯବ ଏସି କାମ କରଙ୍ଗେ ତବ ଦେଖ-
ଲେଗା, ତୁମଲୋକ ଯାକେ ପ୍ରତାପ ସିଂହକା
ଖବର ଲେ ।

କରିମ—ହଜୁର ଜାହାପନା ।

---

## ଦ୍ୱିତୀୟ ଦୃଶ୍ୟ

(ପ୍ରତାପସିଂହ, ଅନ୍ନପୂର୍ଣ୍ଣା ଓ ବସନ୍ତ)

ଅନ୍ନପୂର୍ଣ୍ଣା—ବାପରେ ! ଆମ୍ଭମାନଙ୍କ ପରି ହତଭାଗ୍ୟ
କୋଳରେ ତୋତେ ବିଧାତା କାହିଁକି ଜନ୍ମ
ଦେଇଥିଲା ! ଦୁଇଦିନ ଉପବାସ, ଶରୀରରେ ପୁଣି
ପଥଶ୍ରାନ୍ତ ବାଧା ବାପ ! ତୋର ଏ କୋମଳ
ପଦ ବ୍ୟଥା କରୁଥିବଣି !

ବସନ୍ତ—ମା ! ମୋର ତ ପିତ୍ତ ବସ୍ତୁ ମୋତେ କିଛି
ବାଧା ଲାଗୁ ନାହିଁ । କିନ୍ତୁ ତୁମ୍ଭର ଓ ପିତାଙ୍କର
ବିଷଣ୍ଣ ବଦନ ଦେଖି ମୋ ପ୍ରାଣ ଅଧୈର୍ଯ୍ୟ
ହୋଇଯାଉଛି । ମା ! ମୋତେ ଅନୁମତି ଦିଅ ମୁଁ
ଏହି ଜଙ୍ଗଲରୁ କିଛି ଖାଦ୍ୟ ଦ୍ରବ୍ୟ ସଂଗ୍ରହ କରି
ଆଣିବି ।

ପ୍ରତାପ ବାପରେ ! ତୋତେ ଦେଖି ଆମ୍ଭର ସମସ୍ତ
କ୍ଷୁଧା ବାଧା ହରଣ ହୋଇଯାଉଛି, ତୋତେ
ଏକାକୀ କେଉଁଠାକୁ ଛାଡ଼ିଦେଇ ନିଶ୍ଚିନ୍ତ ହୋଇ
ବସିବୁ, ତୁ ହେଲେ ମାଆଙ୍କ ନିକଟରେ ଥା ମୁଁ
ଅନୁସନ୍ଧାନ କରେ । କେଉଁଠି ଯଦି କିଛି
ମିଳିବ ।

ବସନ୍ତ—ନା ପିତା ! ଆପଣଙ୍କର ଖୋଜି ବୁଲିବାର
ଶକ୍ତି ନାହିଁ । ରାତିଜାଗି ବସି ବସି ଆସୁଛନ୍ତି,
ବାରଥର ଝୁଣି ପଡ଼ୁଛନ୍ତି, ଆପଣ ଯାଇ ପାରିବେ
ନାହିଁ । ମୁଁ ଏହି ସନ୍ନିକଟରେ ଦେଖେ
କେଉଁଠି ଯଦି କିଛି ଗ୍ରାମ ଥିବ, ଯାଇ କିଛି
ମାଗି ଯାଚି ଆଣିବି । ମୋତେ ଅନୁମତି ଦିଅ ।

ଅନ୍ନପୂର୍ଣ୍ଣା— ଗୀତ
(ଧୀରେ ବେନ ଏ ଉଦ୍ୟାନରେ—ତୃପତ୍ତି)
ଆହାରେ ଦରିଦ୍ର ଧନ
କେମନ୍ତେ ତୋତେ ମୁଁ ପେଷିବି ବନ
ରଙ୍କ ନନ୍ଦନରେ
ମନ ହୁଏ ମୋର ଛନ ଛନ । ୧ ।
ଗଲେ ତୁ ଉଦ୍ୟା-ଭବନ
ଦକ ଦକ ସଦା ହୁଏ ମୋ ମନ
ରଙ୍କ ନନ୍ଦନରେ ।
ପିଣ୍ଡେ ନ ଥାଏ ମୋର ଜୀବନ । ୨ ।
ଫଟା କପାଳକୁ ଜାଣ,
ବଣ ଦେବତା ହେଲେଣି ପାଷାଣ
ରଙ୍କ ନନ୍ଦନରେ ।
ସାହା ନାହିଁ ବନରୁ ଜନେ ଆନ । ୩ ।
ଗୋଡ଼ଯାଉ ଆମ୍ଭ ପେଟ
ତୋର ଆଗେ ଛୁଟି ଯାଉ ଏ ଘଟ
ରଙ୍କ ନନ୍ଦନରେ !
ଆଜ ପବଟ କରନ୍ତୁ ନେଟ ।

ବାପରେ ! ଧନରେ ! କ୍ଷୁଧାରେ ପଡ଼ିଛୁ ପ୍ରାଣ
ବାହାର ଯିବ କିନ୍ତୁ ତୋତେ ଏ ଘୋର ଜଙ୍ଗଲକୁ
ପଠାଇ କପରି ପ୍ରାଣ ଧରି ରହିବ !

ବସନ୍ତ— ଗୀତ
(ଭୂଇଁରେ କାହିଁକି ମୋର ଗତି—ତୃପତ୍ତି)
ଆଉ କାହିଁକି ନାହିଁ କର ମୋତେ ମା ଆ
ଯାହାଥିବ କର୍ମେ ଭୋଗିବ ଦିନେ
(ତାକୁ ) ଖଣ୍ଡିବା ସାଧ୍ୟ ଅଛି କାହା । ୧ ।
ବିପଦେ କାତର ହେବା ଅସୁନ୍ଦର
ପ୍ରାଣ ପଣେ ଆମ୍ଭେ ଜୋଡ଼ିବା ଗହା । ୨ ।
ନ କର ଭାବେଣି ଆସିବି ଏଣିକି
(ମୋର) ଜନନୀ ନିଶ୍ଚେ ହୋଇବେ ସାହା । ୩ ।

ମା ! ବାବାଙ୍କୁ, ଆପଣ ଏହି ପଲ୍ଲବର ତଳ ବୃକ୍ଷ
ମୂଳରେ ଟିକିଏ ବସିବେ, ମୁଁ ଏହି ଅଳ୍ପ ସମୟ
ମଧ୍ୟରେ ଫେରି ଆସିବି ।

ଅନ୍ନପୂର୍ଣ୍ଣା  ଯାଅ ବାପ ! ଖାଦ୍ୟ ଦ୍ରବ୍ୟ ପାଅ ବା ନ ପାଅ ଏହି ପଥିକ ମଧ୍ୟରେ ଫେରି ଆସିବୁ । ଚାଲ ନାଥ ! ଏହି ବୃକ୍ଷ ମୂଳରେ ଟିକଏ ବିଶ୍ରାମ ନେବା ।

( ପ୍ରସ୍ଥାନ )

—*—

## ତୃତୀୟ ଦୃଶ୍ୟ

( କମଳା ଓ ମାୟା ତପସ୍ୱୀ )

କମଳା  (ସ୍ୱଗତ) ଦୁର୍ଜ୍ଜୟ ସିଂହ । ତୁ କି ସାହସରେ ଏପରି ଲେଖିଛୁ ତୋର ମତି କିଣ ଏତେ ବିଭ୍ରମ ହୋଇଯାଇଛି । ତୁ ଶୈଶବକାଳରୁ ପିତୃ, ମାତୃହୀନ ହୋଇ କାହିଁ ଅରକ୍ଷ ହୋଇ ବୁଲୁଥାନ୍ତୁ, କାହିଁ ଭିକ୍ଷା ଅନ୍ନରେ ଜୀବନଯାପନ କରୁଥାନ୍ତୁ କିନ୍ତୁ ମୋର ସ୍ୱାମୀଙ୍କ ଯୋଗେ ଜନ ସମାଜରେ ତୁ ମନୁଷ୍ୟ ପଦବାଚ୍ୟ ହେଲୁ । ମୋ ସ୍ୱାମୀଙ୍କ ସାହାଯ୍ୟରେ ପ୍ରତାପ ସିଂହଙ୍କ ଦରବାରରେ ସେନାପତି କାର୍ଯ୍ୟରେ ନିଯୁକ୍ତ ହେଲୁ । ବର୍ତ୍ତମାନ ତୋତେ କି ବିପକ୍ଷ ବୁଦ୍ଧି ଘଟିଲା, ତୁ ତୋର ଅନ୍ନଦାତା ରାଜା ପ୍ରତାପସିଂହଙ୍କ ସଙ୍ଗେ ଦ୍ୱନ୍ଦ୍ୱକରି ତାଙ୍କୁ ରାଜ୍ୟଚ୍ୟୁତ କରିଲୁ । ମୋର ସ୍ୱାମୀଙ୍କୁ ବିନା ଅପରାଧରେ କାରାଦଣ୍ଡ ଦେଲୁ, ପୁଣି ନାନା ପ୍ରଲୋଭନ ଦେଖାଇ ମୋର ସତୀତ୍ୱ ନଷ୍ଟ କରିବାକୁ ଏ ପତ୍ର ଖଣ୍ଡି ଲେଖିଛୁ । ମୂର୍ଖ ! ଯେ ତୋତେ ପୁତ୍ରଠାରୁ ଅଧିକ ସ୍ନେହ କରି ତୋର ବାଲ୍ୟ ଜୀବନ ଗଢ଼ିଥିଲା ବର୍ତ୍ତମାନ ତୁ ତା ନିକଟରୁ ପତ୍ନୀତ୍ୱ ପ୍ରେମ ଭିକ୍ଷା କରୁଛୁ । ହା ଦୁର୍ବୃତ୍ତ ! ତୋର ସ୍ୱପ୍ନ ଭୁଲେ, ଏତ ବର୍ତ୍ତମାନ ଯୁଗର ନ୍ୟାୟ; ଦେଖାଯାଉ କିଣ ହେଉଛି ଭଗବାନ । ମୋତେ କାହିଁକି ଏ ବନଗହନରେ ପକାଇ ହରବର କରୁଛନ୍ତି । ସ୍ୱାମୀ କାରାଦଣ୍ଡ ଭୋଗ କଲେ ମୁଁ ପାଷାଣ୍ଡ କିଣ ଏ ଜଘନ୍ୟ ନର ପିଶାଚର କବଳରେ ପଡ଼ିବି ? ଦୁଇଦିନ ହେଲା ଉପବାସ, ଦ୍ୱାରଖୋଲି ବାହାରକୁ ଯିବାକୁ ସାହସ ହେଉନାହିଁ ପାଖରେ ମଧ୍ୟ ଭରସା ଜଣେ କେହି ନାହିଁ, କିଣ କରିବି, ହା ଦଇବ ।

ଗୀତ

(ଆସ କିଏ ହୋଇବ ପାର—ତୃତେ)

ମୋ ଧନ ସନ୍ତ ତ ନାହିଁ
ଧନବନ୍ତୁ ଏ ଧରାରେ ହଠା କର ତାହି ପାଇଁ ।
ଗୁହ ମୋତେ ଜୀବଧନ
ରହିଲେ ତାପ ଭବନ ।
ମୁଁ ଭୋଗୁଛି ଏ କଷଣ ଏକାକୀ ଥାଇ । ୧ ।
ବିଧି ! ତୁ ଏତେ ଦାରୁଣ
ତୋତେ ନ ହେଲ୍ ସନ୍ତାନ
ଧିକ ମୋ ଅବଳା ଜନ୍ମ ସାହା କେ ନାହିଁ । ୨ ।
ସ୍ୱାମୀ ଅଛି ମୂର୍ଚ୍ଛି ଯେଣେ
ଶୂନ୍ୟ ବସୁଅଛି ତେଣେ
କୃପାମୟ କୃପାମୟ କୃପାମନେ ଦିଅ ହେ ସ୍ୱାମୀ । ୩ ।

ଭଗବାନ; ତୁମେହିଁ ଭରସା, ନାହିଁ କେହି ଆଶା ମୋର ଏଥି,

ନେପଥ୍ୟେ—ଧର୍ମଶାଳା ମା, କିଏ ଅଛ ଏ ନିରାଶ୍ରୟକୁ ଆଶ୍ରୟ ଦେ ମା ।

କମଳା—(ସ୍ୱଗତ) କିଏ କେଉଁଠାରେ କାହାକୁ ଡାକୁଛି ଟିକେ ଶୁଣେ ।

ନେପଥ୍ୟେ—ମା କିଏ ଅଛ, ଏ ନିରାଶ୍ରୟକୁ କିଣ ଆଶ୍ରୟ ଦେବ ନାହିଁ । ଏ ଗରିବର ଡାକ କିଣ ତୋର କର୍ଣ୍ଣକୁ ଶୁଭୁ ନାହିଁ ।

କମଳା—କିଏ ତୁମେ; କାହାକୁ ଡାକୁଛ ?

ମାଃ ତପସ୍ୱୀ—ମୁଁ ଜଣେ ଅତିଥି, କେଉଁଠାରେ ଆଶ୍ରୟ ନପାଇ ତୋ ଦ୍ୱାର ପର୍ଯ୍ୟନ୍ତ ଆସିଛି, ମୋତେ ଦୟାକରି ଆଶ୍ରୟ ଦେ ମା ।

କମଳା—ଆପଣ ଅତିଥି, ତେବେ ଯାଆନ୍ତୁ ଏହି ଅନତିଦୂରରେ ପାନ୍ଥଶାଳା ପଡ଼ିବ ସେହିଠାରେ ଆଶ୍ରୟ ନେବେ ।

ମାଃ ତପସ୍ୱୀ—କେଉଁ ପାନ୍ଥଶାଳାକୁ ଯିବି, ଯେ କଥା ଆଉ ନାହିଁ କି ସେ କଥା ମୁହଁରେ ଧରନା । ଯେଉଁଦିନୁ ରାଜା ପ୍ରତାପ ସିଂହ ରାଜ୍ୟଚ୍ୟୁତ ହୋଇ

ରାଜଗଡ଼ ପରିତ୍ୟାଗ କରିଗଲେଣି ଯେଉଁଦିନୁ ମନ୍ତ୍ରୀ ବଦ୍ୟାବନ୍ତ କାରାଦଣ୍ଡ ଭୋଗକଲେଣି ସେହିଦିନୁ ଜୟଗଡ଼ରୁ ସମସ୍ତ ପ୍ରକାର ଦାନ, ଅତିଥି, ଅଭ୍ୟାଗତ ପାନ୍ଥଶାଳା ସବୁ ଗଲାଣି । ମୋତେ ସେ କଥା ଆଉ କହନା । ମୁଁ ବି ଅନୁକୂଳରେ ଆଜ ମଠରୁ ବାହାରିଥିଲି କେଜାଣି ମୁଠାଏ ଭିକ କେଉଁଠି ମିଳିଲା ନାହିଁ କି ଅନ୍ନଜଳ ଟିକେ ମୁହଁରେ ଦେବାକୁ ମିଳିଲା ନାହିଁ । କ୍ଷୁଧାରେ ମୋର ଜଠରାଗ୍ନି ଜଳୁଛି । ତୋ ବାଂଗାର ଆଉ କଏ ଅତିଥି ଅଭ୍ୟାଗତଙ୍କୁ ଚାହିଁବ । ଯଦି ଏ ପ୍ରାଣ ରଖିବୁ ତେବେ ଦ୍ୱାର ଖୋଲ ମୁଁ ଟିକଏ ବିଶ୍ରାମ ନିଏ । ଈଶ୍ୱର ତୋର ମଙ୍ଗଳ କରିବେ ।

ବିମଳା—(ସ୍ୱଗତ) କଣ କରିବି; ଦୁର୍ଜୟ ସିଂହଙ୍କ ଭୟରେ ତ ଦୁଇଦିନ ହେଲା ଦ୍ୱାର ଖୋଲି ନାହିଁ । ବର୍ତ୍ତମାନ ସ୍ୱର୍ଗ ମୋ ମନରେ ତ ଢାଉଥାଉ ପାପ ଛୁଉଁଛି । କଣ କରିବି; ପୂର୍ବ ଜନ୍ମରେ କି ପାପ କରିଥିଲି କେଜାଣି ସନ୍ତାନେ ଅପୁତ୍ରିକ । ପୁଣି ମୋର ଯୌବନ ଅବସ୍ଥାରେ ସ୍ୱାମୀ କାରାବାସ ଭୋଗ କଲେ ଆଜ ଯଦି ଅତିଥିଙ୍କୁ ନିରାଶ କରେ ତେବେ ମୋର ଇହକାଳ ଗତ କଣ ହେବ । ହେ ଭଗବାନ ! ମୋତେ କି ପରୀକ୍ଷାରେ ପକାଉଛନ୍ତି ।

ମାଃ ତପସ୍ୱୀ—ମା ! କଣ ଆଉ ଭାବୁଛୁ । ମୁଁ ଜାଣି ପାରୁଛି, ବୋଧହୁଏ ତୁ ଏକାକିନୀ । ମୋ ପ୍ରତି ତୋ ମନରେ କୌଣସି ସନ୍ଦେହ ଆସୁଛି । ନା ମା । ସେ ତୋର ଭୁଲ ଧାରଣା, ମୁଁ ଜଣେ ସଂସାରତ୍ୟାଗୀ ସନ୍ନ୍ୟାସୀ । ମୋତେ ଆଶ୍ରୟ ଦେବାଦ୍ୱାରା ତୋର ଭଗବାନ ନିଶ୍ଚୟ ମଙ୍ଗଳ କରିବେ । ମୁଁ ତୋ ସଙ୍ଗରେ ବେଶି କିଛି କଥାବାର୍ତ୍ତା କରି ପାରୁନାହିଁ । କ୍ଷୁଧାରେ ମୋର ପେଟ ଜଳିଯାଉଛି । ଆସ୍ତି ନାସ୍ତି ଦୁଇଟିକୁ ଯେଉଁଟି କହୁଛୁ ଶୀଘ୍ର କହ, ତେଣିକି ମୁଁ କର୍ମ ଆଦରି ରହିବ ।

ବିମଳା—ନା; ଯାହା ଭାଗ୍ୟରେ ଥିବ ଘଟିବ ତଥାପି ଅତିଥିଙ୍କୁ ନିରାଶ କରିବି ନାହିଁ ।

( ଦ୍ୱାର ଖୋଲି ସନ୍ନ୍ୟାସୀଙ୍କୁ ପ୍ରଣିପାତ )

ମାଃ ସନ୍ନ୍ୟାସୀ—ମା ! ଜନ୍ମ ସୁଲକ୍ଷଣୀ ହୁଅ ।

ବିମଳା ଆପଣ ଏହି ସ୍ଥାନରେ ବସନ୍ତୁ ମୁଁ ଜଳ ଆଣେ ପାଦଧୌତ କରିଦେବି ।

ମାଃ ସନ୍ନ୍ୟାସୀ – ମା ! ମୁଁ ପାଦଧୌତ କରୁଛି, ମୋର କ୍ଷୁଧାରେ ପେଟ ଜଳି ଯାଉଛି ମୋର ଖାଇବା ଖବର କିଛି ଶୀଘ୍ର ବୁଝ ।

ବିମଳା—ମୁଁ ତ ଦୁଇଦିନ ହେଲା ରନ୍ଧା ବଢ଼ା କରିନାହିଁ ଦିଓଟି ଜଳଖିଆ ଅଛି ଆଣେ, ଆପଣ ଟିକଏ ଅପେକ୍ଷା କରନ୍ତୁ । ( ପ୍ରସ୍ଥାନ )

ମାଃ ସନ୍ନ୍ୟାସୀ—ହଉ ଆଣ ( ସ୍ୱଗତ ) ଆଜ ଦୁର୍ଜୟ ସିଂହର ପରିଶ୍ରମ ସଫଳ ହୋଇଛି; ବିମଳା ଦେଖାଉ କକ୍ଷରେ ନିରାପଦରେ ପ୍ରବେଶ କରିଛି । ବିମଳା ! ତୁ ଏଥର ଦୁର୍ଜୟସିଂହର କବଳରୁ ମୁକ୍ତ ହୋଇ ପାରିବୁ ନାହିଁ, ନିଶ୍ଚୟ ମୋର ଆଶା ପୂର୍ଣ୍ଣ କରିବାକୁ ହେବ ।

ବିମଳା—(ଖାଦ୍ୟ ପାତ୍ର ନେଇ) ଆସ ଯେତେ ଯାହା ଅଛି ଦୁଃଖେ ସୁଖେ କରନ୍ତୁ ଭୋଜନ ।

(ଦୁର୍ଜୟ ଉଠି ବିମଳାର କର ଧାରଣ କରିବା)

ବିମଳା—କିଏ ତୁମ୍ଭେ ଯତି, ହସ୍ତ ମୋର ଧରୁଛ କାହିଁକି ।

ଦୁର୍ଜୟ—ବିମଳେ ! ଚିହ୍ନି ପାରୁ ନାହିଁ । (ସ୍ୱପ୍ନବେଶ ଉନ୍ମୋଚନକରଣ) ଦେଖ, ଦେଖିଅଛୁ ପରିଚୟ ମମ ।

( ବିମଳା ଥକା ହୋଇ ଦଣ୍ଡାୟମାନ )

ଦୁର୍ଜୟ— ଗୀତ

( ଆରେ ଘନ-ଜଘନା—ବୃନ୍ଦେ )

ଯତ ମୋହନା ତୁ ଘୃଣା କରନା ।

ପ୍ରେମ-ଯତ ମୁହିଁ ବର ବରନା ।

ଦେଇ ସୁରତ ଦାନ ତୋଷ କର ଏ ପ୍ରାଣ

ଅନ୍ନ ଜଳ ପାନେ ମୋର ନାହିଁ କାମନା ।୧।

ଦାମ ଅନଳେ ଦହି ସହି ପାରୁଛି କେହି

ଦେଖି ଆସିଛି ତୋ ପାଶ ଚନ୍ଦ୍ରବଦନା ।୨।

ଗର୍ବି ଅଭଳ ସଙ୍ଗ, ପ୍ରୀତି-ରସେ ରସାଇ,

ଆଶା ଆଶାଥୀ ମେଣ୍ଟାଅ ଖଞ୍ଜନନୟନା ।୩।

ପ୍ରେମ ସନ୍ନ୍ୟାସୀର ବେଶେ ଆସିଛୁ ତୋ ଦ୍ୱାରେ ପ୍ରେମ ଭିକ୍ଷା ମାଗିବାକୁ ସତ୍ୟ । ନିର୍ଦ୍ଦୟ ହୋଇ ତୁ ମୋଠାରେ ସଦୟ ହୃଦରେ ମନୋବାଞ୍ଛା କର ମୋର ପୂର୍ଣ୍ଣ । ଆନ ଭିକ୍ଷାରେ ମୋ ନାହିଁ କିଛି ପ୍ରୟୋଜନ ।

କମଳା—ଦୁର୍ଜ୍ଜୟ ସିଂହ ! ଜଣାଯାଏ ମତି ତୋର ହୋଇଛି ବିଭ୍ରମ । କି ସାହସେ ପଶି ପରଘରେ ପର ସ୍ତ୍ରୀ ଠାରେ କରୁ ପାପ ଆଶା ।

ଦୁର୍ଜ୍ଜୟ—କିଏ ପର ସଙ୍ଗି ! ପର ବୋଲି ତୁମ୍ଭେ ଥିବ ଭାବି କିନ୍ତୁ ପରାପର ନାହିଁ ମୋ ହୃଦୟର । ପରାଣ-ପଙ୍କଜିନି ପଦେ ବରି ମୁଁ ତୁମ୍ଭକୁ ପ୍ରାଣ ମୋର ତବ ପଦେ କରୁଛି ଅର୍ପଣ । ସ୍ୱଳ ବର୍ଣ୍ଣେନେ ! ଜୟଗଡ଼ ସିଂହାସନେ ବସିବ ଆନନ୍ଦେ, ପାଟରାଣୀ ହୋଇ ।

କମଳା—ଦୁର୍ଜ୍ଜୟସିଂହ ! କି କହୁଛ ତୋତେ, କହିବାକୁ ଫିଟୁନାହିଁ ତୁଣ୍ଡ ଅବଳା, ମୁଁ ଦୁର୍ବଳା ହୁଁ ଅତି ପୁଣି ଏକାକିନୀ ଅନାଥା ରମଣୀ, ତୋର ସଙ୍ଗେ ଯୁଦ୍ଧ ନାହିଁ ମୋର ସାଧ୍ୟ । ଏ କି ଅଯୁକ୍ତ କଥା କହୁଛୁ ତୁ ମୂଢ଼େ, ଶୁଣ ଥରେ ବଚନ ମୋହର !

ଦୁର୍ଜ୍ଜୟ—କି କଥା ?

କମଳା— ଗୀତ

( ହେ ଜୀବନ ଏ ତନୁ ତନକେ—ବୃତ୍ତେ )

ଶୁଣ ବୀର ! ଏ ବଡ଼ ଅନୁଚିତ ତୋହର ।
ପର ନାରୀରେ ତୁ ବଳାତ୍କାରେ
ପ୍ରେମାଳାପ ନ କର । ୧ ।
ଧର୍ମ-ବିରୋଧୀ ହେବା ଅବଧି
ନ ଜାଣୁ ତୁ କି ପାମର । ୨ ।
ମୂର୍ଖ ଅବଳା ଅତି ଦୁର୍ବଳା
ନ ବଳାଅ ତୁ ନିକର । ୩ ।

ଦୁର୍ଜ୍ଜୟସିଂହ ! ପର ସ୍ତ୍ରୀରେ ନ ବଳାଅ ମନ । ପରନାରୀ, ପରଧନ ଯେ କରେ ଲୁଣ୍ଠନ, ସତ, ଶାନ୍ତ, ଦୟା, କ୍ଷମା ନାହିଁ ଯାହାଠାରେ, ମନୁଷ୍ୟ ବୋଲି ତାହାକୁ ନ ଗଣନ୍ତି କେହି; ଜନମିଛୁ ନର ଏହି ବସୁଧାର କୋଳେ କରିବାକୁ କିଛି ମହତ୍ତ୍ୱର କାର୍ଯ୍ୟ । ଯାହା ବଳେ ଦୁର୍ଲଭ ନଶ୍ୱର ଏ ମାନବ ଜନମ ସ୍ୱର୍ଗଲୋକ ପାଇବାକୁ ସଦା ଲାଳାୟିତ ? ଦୁର୍ଜ୍ଜୟ ତୁ ସେହି ନରଦେହ ବହି ଜଘନ୍ୟ ପୈଶାଚିକ କାର୍ଯ୍ୟ ହେଉଛୁ ପ୍ରବୃତ୍ତ । ତୁ ଜାଣୁକି ପରନାରୀ ମାତୃପଦବାଚ୍ୟ । ମାତା ପାଶେ ପୁତ୍ର କେବେ ମାଗେ ପ୍ରେମାଳାପ ? ଦେଖାନାହିଁ ଶୁଣାନାହିଁ ଦୁନିଆରେ ଯାହା, ନ କର ସେ କଥା ତୁହି ଲୋଡ଼ୁ ତୋର ଶ୍ରଦ୍ଧା ।

ଦୁର୍ଜ୍ଜୟ—କମଳେ ! ମନ୍ତ୍ରୀ ଜାୟା ତୁମ୍ଭେ; ଅସାଧ ତୁମ୍ଭଙ୍କୁ ନୂତେଁ ମନ୍ତ୍ରଣା ଦେବାଟା ଦେଖି ନାହିଁ ! ମାରଭାବେ କି ଯନ୍ତ୍ରଣା ଭୋଗୁଅଛି ମୁହିଁ । ପ୍ରେମମନ୍ତ୍ର ନ ଦେଇ ମୋ କର୍ଣ୍ଣେ ଭଣ୍ଡାଭଣ୍ଡି କଥା କିମ୍ପା କହୁଛ ମୋ ଆଗେ ।

କମଳା—ଦୁର୍ଜ୍ଜୟ ! କ୍ଷମାକର ।

ଦୁର୍ଜ୍ଜୟ—କି କ୍ଷମା ?

ଗୀତ

( କହରେ ଲଳିତ—ବୃତ୍ତେ )

ଖଣ୍ଡ-ବଚନା ତୁ ଭଣ୍ଡାଭଣ୍ଡି କଥା କହି
ମୋ ହୃଦକୁ ଦହନାରେ ।
କାମ କୋଦଣ୍ଡେ ପିଣ୍ଡ ହେଉଛି ଖଣ୍ଡ ଖଣ୍ଡ
ତୁ କିପାଁ ଆଉ ମୋଠାରେ ବହନାରେ । ପଦ ।
ମତ୍ତ-ମତ-ହସ୍ତୀ ନ ହୁଅ ଅଧୀର
ପଡ଼ି ମୁଁ ତୋର ମନମୋହନାରେ ।
ସୁରତ ଦାନ ଦେଇ କରତ ରକ୍ଷ ସଖି
ନାହିଁ ଭବ ତୁ ଆଉ କହନାରେ । ୧ ।
କେତେ ଚଳାଇ କହୁ ଭଳାଇ ଦେଉ ସହ
ପଳାଇ କହାଁରେ ତୁ ରହନାରେ ।
ବଳାଇ ହସ୍ତେ ଆଜି ଦରଶରେ ହେମାଙ୍ଗି
ଲଗାଇ ମୋର ସଙ୍ଗେ ହୁଅନାରେ । ୨ ।

କମଳେ ! ଚନ୍ଦ୍ରମୁଖୀ ଭବ ସୁହୃଦଅ ଏବେ । ମୂର୍ଚ୍ଛାରେ ମୋ ପ୍ରାଣକୁ ଆସି ରସ ରଙ୍ଗ କର ମୋର ସଙ୍ଗେ । ଜାଣିଛୁ ମୁଁ ନାରୀ ଜାତି ବଡ଼ ଲଜ୍ଜାଶୀଳା ରଜାଭିନ କଥା କହି ଭୋଳନ୍ତି ସେ କେତେ । ଆସ, ଆସ, ବିଳମ୍ବରେ ନାହିଁ ପ୍ରୟୋଜନ ।

( ଧରିବାକୁ ଯାଆନ୍ତେ )

କମଳା — ସାବଧାନ ଦୁର୍ଜୟ ପାଷଣ୍ଡ । ଭାବୁଛୁକି ଅବଳା ଦୁର୍ବଳା ବଳାତ୍କାରେ ସତୀତ୍ୱ ମୋ କରିଦେବୁ ନଷ୍ଟ ନା ମୂର୍ଖ । କ୍ଷତ୍ରିୟ ରମଣୀ ମୁହିଁ କ୍ଷତ୍ରିୟ ଦୁହିତା, କ୍ଷତ୍ରିୟର ଜନ୍ତୁ ରକ୍ତ ବହେ ଏ ଶରୀରେ । ଯେଉଁ ବଂଶେ ଜାତ ଦୁର୍ଗାବତୀ, ପଦ୍ମିନୀ; ସାବିତ୍ରୀ ଅଦ୍ୟାପି ଯାହାଙ୍କ ନାମ ଅମର ଅକ୍ଷରେ ରଞ୍ଜିତ ହୋଇଛି ଏହି ନିଖିଳ ଭାରତେ, ଜାଣୁ ମୂଢ଼ ମୁହିଁ ସେହି ଅଂଶେ ଜନ୍ମ, ଭୟାତୁର ବୋଲି ନ ଭାବ ତୁ ମୋତେ । (ଅଞ୍ଚଳରୁ ଛୁରୀ କାଢ଼ି) ଦେଖ ଥରେ ଏହି ଯେଉଁ ଶାଣିତ ଛୁରୀକା ରାଜେ ମୋ ହସ୍ତେ ପୁନଃ ଯେବେ ସ୍ପର୍ଶ କରୁ ଅଙ୍ଗକୁ ମୋହର ପ୍ରାଣ ଯାଉ, ଅବା ରହୁ ମୋର ନିଶ୍ଚୟ ତୋ ପ୍ରାଣ ଆଗେ ନେବିରେ ନୃଶଂସ ( କହି ଛୁରୀକା ଉତ୍ତୋଳନ କରି ଗୋଡ଼ାଇବା )

ଦୁର୍ଜୟ—କାହିଁ । ( ଅସ୍ତ୍ର ନ ପାଇ ପ୍ରାଣ ଭୟରେ ପଳାୟନ । )

---

## ଚତୁର୍ଥ ଦୃଶ୍ୟ

ବସନ୍ତ— ଗୀତ

(ଆସ ବୃନ୍ଦାବନେ ବନେ—ବୃତ୍ତେ)

ଦେଖ ସୁନ୍ଦର ଫଳ (ଆଜ)
ଆଣିଛି ମୁଁ ଖୋଜ କରୁ
ଆସ ବାବା ଆସ ମା   ମା ଚିନ୍ତାତେଜ ମନୁ ।
ସୁସ୍ୱାଦୁ ଫଳ ପାଚିଲା
ନାରଙ୍ଗୀ ଲେମ୍ବୁ ରସାଳ
ବଦରି ଦ୍ରାକ୍ଷା ତମାଳ   ତୋଳିଛି ମୁଁ ବନ୍ଧ ଧରୁ ।
ଡାକ ଡାକ କଣ୍ଠ ମୋର
ଶୁଖିଗଲା ହେ ପିଅର
କି ଦୋଷ ଦେଖି ମୋହର   ଲୁଚିଛତ ତୁମ ତରୁ ।

ଆସ ମା ! ଆସ ବାବା ! କାହିଁଅଛ, କି ସୁନ୍ଦର ଫଳ ଆଣିଛି, ଦେଖିବ, କପରି ପାଚି ଟହ ଟହ ହୋଇଛି । ଖାଅ, ଖାଅ, ତୁମର କ୍ଷୁଧା ମେଣ୍ଟାଅ । କାହି, ମୁଁ କାହାକୁ ଡାକ ହେଉଛି । ପିତା ମାତାଙ୍କୁ ତ ଏହି ବୃକ୍ଷ ମୂଳରେ ବସାଇ ଦେଇ ଯାଇଥିଲି । ତାଙ୍କର ଖୋଜେ ଆଗକୁ ଜଳ ପିବାର ଶକ୍ତି ନ ଥିଲା, ତେବେ ସେ ଗଲେ କୁଆଡ଼େ ମୁଁ କଣ କରିବ । ମୋର ସାଦ ଆଉ ଚଡ଼ୁ ନାହିଁ । ପିତା ! ପିତା ! ମା ! ମା ! ତୁମ୍ଭେମାନେ କୁଆଡ଼େ ଗଲ । ଏ ଅଭାଗା ସନ୍ତାନକୁ ଛାଡ଼ି କୁଆଡ଼େ ଗଲ ।

ଗୀତ

(ଦୟା କର ଦୀନବନ୍ଧୁ—ବୃତ୍ତେ)

କେଉଁଣେ ଛାଡ଼ିଗଲ ତାତ ମାତ
ମୋତେ ପର କରି ।
ତବ ବିନା ଭାସିଲି ମୁଁ
ଏ ଦୁଃଖ ସାଗରେ ପଡ଼ି । ଘୋଷା ।
ଏ ଘୋର ଅରଣ୍ୟ ବନେ
ଚାହିଁ ଗଲ କେଉଁମାନେ
ଏକାକୀ ମୁହିଁ ବିଜନେ
ପ୍ରାଣ ଧରିବି କିପରି । ୧ ।
ବିଳମ୍ବ ଦେଖି ମୋହର
ସ୍ନେହ କଲେ କି ପିଅର
ମୋଠାରେ ହେଲେ ନିଷ୍ଠୁର
ଗଲ ମୁଁ ସଙ୍ଗାନ୍ତ ସରି । ୨ ।

ମୋତେ ତ ମା ବାରମ୍ବାର ମନା କରୁଥିଲେ, ମୁଁ ଚଣ୍ଡାଳ କାହିଁକି ଛାଡ଼ିକରି ଗଲି । ସେ ତ କ୍ଷୁଧାରେ ଆକୁଳ ହୋଇ ପଡ଼ିଥିଲେ । ଖୋଜେ ବୋଲି ବାଟେ ଚିବାକୁ ଶକ୍ତି ନ ଥିଲା । ସେ କଣ ଆଉ କୁଆଡ଼େ ଯାଇଥାନ୍ତେ ନା କେବେ ବିଶ୍ୱାସ ନୁହେ । ମୋତେ ଛାଡ଼ି କେଉଁଠେ ଯାଇ ନ ଥାନ୍ତେ ଆଉ କଣ ମୋର ବିଳମ୍ବ ଦେଖି ମୋର ପଥ ଅନୁସରି କୁଆଡ଼େ ଗଲେ, କିଛି ତ ବୁଝିପାରୁ ନାହିଁ । ହେ ହରି ! ଘନ ବନ୍ୟମୟ ବଦନ-କାନ୍ତାରେ, ପର ପିତାଙ୍କ ସନ୍ଧାନ ନ ପାଏ ତ ଏହିଠାରେ ପ୍ରାଣ ହରାଇ ଦେବି; ଯାଏ । ଟିକିଏ ସ୍ୱଚ୍ଛନ୍ଦ ଖୋଜିଆସେ ।

---

## ପଞ୍ଚମ ଦୃଶ୍ୟ

(ଗଫୁର ଖାଁ, କରିମ, ଖାଁ, ପ୍ରତାପ ସିଂହ, ଅନ୍ନପୂର୍ଣ୍ଣା ନବାବ ଖାଁ ଓ ସୈନ୍ୟଗଣ)

(ଗଫୁର ଓ କରିମ, ଅନ୍ନପୂର୍ଣ୍ଣା ଓ ପ୍ରତାପସିଂହଙ୍କୁ ବନ୍ଧନ କରି ନେବା ସମୟେ)

ଗଫୁର—ଓ ବାତ୍ ଛୋଡ଼ୋ ହାମକୁ ଯେସି ମାଫିକ ଅର୍ଡ଼ର ମିଲା ଏସି ମାଫିକ କାମ କରଲେଙ୍ଗେ । ତୁମ ଲୋଗୋକା ଖୁଦମେ ଯାନ୍ ଛୁଟ୍ ଯାନେଦୁ ହାମକୁ କ୍ୟା ଥୋଡ଼େ ତକଲିଫ ଲଗତା ।

ପ୍ରତାପ—ରେ ନୃଶଂସ । ଆମ୍ଭେମାନେ ଦୁଇଦିନ ହେଲା ଉପବାସୀ କ୍ଷୁଧାରେ ଅନ୍ନ ପେଟ ଜଳି ଯାଉଛି, ତୁ ଟିକିଏ ଗୁଡ଼ଦେ ନଚେତ୍ କୌଣସି ଝରଣା ବା ପୁଷ୍କରିଣୀ ନିକଟକୁ ନେ ଆମ୍ଭେମାନେ ଜଳ ଟିକିଏ ଦେଲେ ମୁହଁରେ ମାରିବୁ !

କରିମ—ଗଫୁର ଭାଇ । ବୁଢ଼ା କ୍ୟା ବାତ୍ କହତା ତୁମ୍ ସମଝଲିଆ ।

ଗଫୁର—ହିଁ । ଭାଇ ଥୋଡ଼େ ବହୁତ ସମଝଲିଆ, ଲେକିନ ହାମକୁ ନୌକରୀ ସମଯାହାଏ । ଚେଲତା ଚଲ୍‌ଓ ପର ଚଲେ ସବନା, ପର ଚଲେ, ନଦୀ କିନାରେ ଚଲେ । ଦେଖାଦେବ ହାମକୁ ଭୁଲ ବନାଦେଗା। ହାଁରେ ବୁଢ଼ା ପାନି ମାଙ୍ଗତା ଠହରେ ଜୁଆ ଅବ ତୁମସେ କେତେନା ପାନି ହଏ ଦେଖଲେ ଲେଗା ।

ପ୍ରତାପ—ଦୂରରେ କେଉଁଠୁ ପାଣି ଦେଖାଇବ ?

ଗଫୁର—ଠହରୋ । କରିମ ! ଇନ ଦୋନୋଁକୁ ଉଠାଓକେ ଦୋନୁର ସୁପି (ପ୍ରହାର) ।

ପ୍ରତାପ—ଆରେ ଚାଣ୍ଡାଳ ରହ ରହ ।

କରିମ—ରହ ରହ କ୍ୟା, ଅନ୍ଧ ନେତ୍ର ଆଁଖମେ ଯେତନା ପାନି ହଏ ଓ ବଦନମେ ଯେତେସାହଏ ଓ, ଆଉର ଶରୀରମେ ଯେତନା ପାନିହଏ ଓ ସ ନିକଲ ଯାଏଗା ତୁମ କେତେନା ପାନି ପୁଛତା ହାଏ ।

ପ୍ରତାପ— ଗୀତ

(ଆସ ଆସ ଜମା ମୋର—ତୃତୀୟ)

ଏତିକ ପାଷାଣ୍ଡ ତୁମେ ହେଉଛ ନୃଶଂସ ।
ଆମ୍ଭଙ୍କୁ ମାରି ବ୍ରହ୍ମାଣ୍ଡେ ଲଭିବ କି ଯଶ ।
ରେ ନୃଶଂସ ! ହେନେ ଏ ପାପରୁ ମୂଢ଼ ହେବ ଧ୍ୱଂସ ।

ଗଫୁର—କରିମ ! ବୁଢ଼ା ହଲଲଗି କହତା ।

ପ୍ରତାପ— ଗୀତ

କେତେଦିନ ପାଇଁ ଭାଇ ଜନମିଛ ମର୍ତ୍ତ୍ୟ ।
କିଏ ବା ସଂସାରୁ କିଛି ନେଇଯିବ ନାହିଁ ।
ଭଲ ମନ୍ଦ, ଦୁଇ କଥାରୁ ରହିବ ଏକ ପଦ ।୨।

କରିମ—ହିଁ ହିଁ ଭାଇ ! ଦେଖୋ କେତନା ବଢ଼ା ତମାସ ।

ପ୍ରତାପ— ଗୀତ

ମୋକ୍ଷ ପଦ ଲକ୍ଷ୍ୟ ରଖି ନ କଲେଟି କର୍ମ,
ଅନ୍ତିମ କାଳକୁ ନିଶ୍ଚେ ଦଣ୍ଡିବ ଶମନ
ନାମ ଚନ୍ଦ୍ର,
ଯେତୁ ଆଲ ସେତୁ ବୃଷ୍ଟି ନୋହେ ଭଲ ।୩।

ଗଫୁର—ବୁଢ଼ା ଏସ ଯବ ବକ୍ ବକ୍ ହୋଗା ତବ ଦେଖାଲେଗା ତଲେ ତୁପ ସେ ଧୂପଆନେସେ ବଢ଼ା ତକଲିଫ ହୋଗା ।

ପ୍ରତାପ—ଟିକିଏ ଅଳ୍ପେ ଅଳ୍ପେ ଚାଲ, ସେ ସ୍ତ୍ରୀ ଲୋକ ଜମା ଚାଲି ପାରୁ ନାହାନ୍ତି ।

ଅନ୍ନପୂର୍ଣ୍ଣା—ନାଥ ! ମୋ ପୁଅ ତୁଆକୁ ଭଲ; ଆପଣଙ୍କର ବସନ୍ତ କଥା କିଣ ମନେ ପଡୁ ନାହିଁ ।

ପ୍ରତାପ ପ୍ରିୟେ ! କହନା କହନା, ଏ ଚଣ୍ଡାଳଙ୍କ ଆଗରେ ତା କଥା କହନା, ସେ ତା କର୍ମ ଭୁଞ୍ଜୁ ।

ଅନ୍ନ—ନାଥ ! ପୁଅ ମୋର ଯେବେ ଆମ୍ଭମାନଙ୍କୁ ଖୋଜି ନ ପାଇବ କିଏ ତାକୁ ପ୍ରବୋଧ ଦେବ ।

ପ୍ରତାପ—ପ୍ରିୟେ ! ଆଉ କିଏ, ସେହି ଧର୍ମ ଦେବତାଙ୍କ ସାହା ଆମ୍ଭମାନଙ୍କର କିଛି ଅସୁଖ ନାହିଁ ବସନ୍ତକୁ ଏ ପାପ ଚକ୍ଷୁରେ ଦେଖିବା ଆମ୍ଭମାନଙ୍କର ଭାଗ୍ୟ କପାଳରେ ନାହିଁ ।

ଅନ୍ନ—ନାଥ ! ପୁଅକୁ ଆଉ ଦେଖିବ ନାହିଁ ସୀ ଅଧାଗା

ପ୍ରତାପ—ଦେଖିବ, ଅଳ୍ପ ଧର ।
କର୍ପୂର—ଫିକ ବୁଢ଼ୀ ଏକଟୋ ତମାସା ମନୁଷ୍ୟା ।
ପ୍ରତାପ—ପ୍ରିୟେ ଏତେ ବ୍ୟସ୍ତ ହେଲେ କଣ ହେବ ।
ଅଳି— ଗୀତ

(ନନ୍ଦ ମନ୍ଦରେ ନାଥ – ବୃତ୍ତେ)
କେବେ ନ ଦେଖି ନାଥ ମୋ ରଙ୍କନଧି
କାନ୍ଦି କାନ୍ଦି ମରିବି ମୁଁ ନିରବଧି ହେ
ଜୀବ ଜୀବନ ।
ଏ ଅଲୋଡ଼ା ଜୀବନେ କି ପ୍ରୟୋଜନ ହେ ।

ପ୍ରତାପ—ପ୍ରିୟେ ! ସେ ଆମ୍ଭର ଅଦୃଷ୍ଟର ଲେଖା । କାହାରଦୋଷ ବାଛିବା ବିଧାତା ବଦ୍ଧମନାକୁ ମଣିଷର ଆୟତ୍ତ କଣ ?
ଅଳି— ଗୀତ

ଆରେ ବିଧାତା ତୁମ୍ଭ ଏଡ଼େ ଦାରୁଣ
ଦେଖାଇ ହସଉଛୁ ଏ କେଉଁ ପଣରେ;
ମନ ଦହନ ।
ତୋର ଦାରୁଣ ଜ୍ୱାଳା କିଏ ସହିବରେ । ୨ ।

କର୍ପୂର—(ଠଗଠଗ ହୋଇ) କରମ ! କେଉଁର ଲଠି ସେ ଲୁଚି ନାହିଁ ହୋଗା ।
ଅଳି— ଗୀତ

କେତେ ସୁଖର ଥରେ କେତେ ସମ୍ପତ୍ତି
ଦେଖିଥାନ୍ତି ମୋର ଜନମାନଙ୍କ ହେ,
ପ୍ରାଣ ଧନ,
ଅଭାଗ୍ୟ ଦଶିଲାଣି ଏ ଦଶ ଦଶ ହେ । ୩ ।

ନାଥ ! ମୋର ଅନ୍ତର ଜଳୁଛି; ଦରିଦ୍ରର ରଣ୍ଡି ଧନକୁ ଥରେ କେତେ ସୁଖରେ ଦେଖିଥାନ୍ତି । ପୁଣି ମୋର କେଉଁଟି କଣ କରୁଥିବ ।
କର୍ପୂର—କରମ ! କନକେଳ ଯୋ ବାତ୍ ଉତହୋତ-ହଏ ଉସସେ କୁଛ୍ ସମଜନେ ଆତା ।
କରମ—ହଁ, କେସା ସମଜଣା କେବଳ କ୍ୟା ଖୁସ ଖୁସ ହୋତା ।
କର୍ପୂର—ହାମଙ୍କ ଉଲବାତ ସମଜଲିଆ, ହାମ ବୁଢ଼ା ତୁମ ଅଭି ବୋଲତାଥା ବେଟା ହାମର ସାତକେର ଆୟା ହାଏ । ବୁଢ଼ୀ ଅଭି କ୍ୟା ବୋଲତାଥା, ବଡ଼ଲଉ ଓ ବେଟା କାହା ହଏଗା ।

ପ୍ରତାପ—ପାଷାଣେ ! ଏବେ ଯେ ତୁମ୍ଭେମାନେ ମୋର ଅନ୍ତରେ ସନ୍ଦେହଜାତ ହେଉଥିଲ ସେ କଥା ଟିକିଏ ମନରେ ଭାବୁ ନାହିଁ । କେଉଁ ସାହସ ଓ ଦାମ୍ଭିକତା ଘେନି ଅଲ୍ପଦାତା ପ୍ରତି ଏ ଶବ୍ଦ କହୁଛ ?
କରମ—ଓଃ ସତବାତ୍ ! କ୍ୟା କହୁ କହାପାର ନାଇ ରହ୍ୟାଓଁମେ ଆଓର ହାତ ଆତା ନାହିଁ ଆରେ ଅବ ତୁମ ଲୋକର ସଙ୍ଗ ନେଇ ଦୋହରା ମାପିକ ପଡ଼ଦା ଗିଆ ହୁଆ, ହାସ୍ମୀ କୋ ସାତ ଲେକଯାଇ ଓ ବଡ଼ନାହିଁ । ବଡ଼ଲଉ, ବେଟାକୁ କାହିଁ ପର ଛୁପାୟା ହଏ ।
ପ୍ରତାପ—ନା, ଜାଣୁ ନାହିଁ ସେ କେଉଁଆଡ଼େ ଅଛି ।
କର୍ପୂର—କରମ ! ଇନ୍‌ଲୋକ ଏସା ପଡ଼େଲେକ ନାହିଁ, କେଉଁର ଲଠି ସେ ବୋଲତଲେକା ନାମ କହ ଇଞ୍ଜାମ ନାହିଁହୋତ ହାଏ (ପ୍ରହାର)
ପ୍ରତାପ— ଗୀତ

( ଗଜଗମନ ଯାନ – ବୃତ୍ତେ )
ଆଉ ମାରନା ମାରନା ଦୁଷ୍ଟରେ ।
କଷ୍ଟ ଲାଗିଲୁଣିତ ଅପାର ।
ଘୋର ଗଜ ବନ, ଯେଉଁ ଦାସଭୂତ,
ପଶିଲି ଅରଣ୍ୟ ଗିର ।
ତୁମ୍ଭେରେ ଘାଘାଣ୍ଡ, ଜମା ବଡ଼ ଦଣ୍ଡ,
ହେବକ କି ତାହାଦୂର ।
ଏତ ତୁମେ କହଣି;
ନ ସହିବ ତୁମକୁ ଧରମ ।୧।

କର୍ପୂର—ଅବ ତ ଦୁଖ ହୁଆନାଇ । ତୁମର ବେଟାକୁ କାହା ଛୁପାୟା ହୁଆ । ନାହିଁ ବୋଲନେସେ ତୁମ ଲୋକୋକା ଖୁନ ପିଏଗା ।
ପ୍ରତାପ— ଗୀତ

ଦୟାମୟ ହର, ଏ ଦନ ସୁଜାଉ
ଶୁଣୁନାହିଁ ତୁମ କର୍ଣ୍ଣେ ।
ଏ ମୂଢ଼ ଯବନ କେଉଁ ଛଳେ
ଜଳାହୋଷେ ଏ ଜନକେ
ନାହିଁ ଆଶ୍ରା କେ ମୋହର,
ଘନକରୁ ମୋ ଦୁର୍ଲଭ ଦର ।୨।

ହେ ଭଗବାନ ! ହେ କରୁଣାସାଗର, ହେ ଦୀନ ବାନ୍ଧବ ହେ ଆର୍ତ୍ତନାଶନ, ଏ ଯବନ କବଳରୁ ରକ୍ଷାକର ।

( ହଠାତ୍ ନବାବ ଖାଁଙ୍କ ପ୍ରବେଶ )

ନବାବ—ଖବର କରେ ! ତୁମଲୋକ କୋନ୍‌ହାଏ ! ଜହାନ୍ନାମ୍‌ମେ ଇନଲୋକକୁ ଏସା ତକଲିଫ ଦେତେ ହୋ ।

ଗଫୁର—ଆପକୋନ୍ ହାଏ !

ନବାବ—ହାମସେ ପରିଚୟ ମାଗିତେହୋ, ଥୋଡ଼ା ସବର କରିଏ ବତଲାଏଗା ଲେକିନ ବତଲାଓ କ୍ୟା ସବବସେଇନ୍ ଲୋକକୁ ଏତନା ତକଲିଫ ଦେତେହୋ ।

କରିମ—ହାମଲୋକକା ଖୁସି ଉପର, ଆପକା କ୍ୟା ହଏ । ସଚ ବତାଇଏ ଆଦମ ଆପକା ସମ୍ଭା ପଡ଼ତାଏ ।

ନବାବ—କ୍ୟା ତୁମଲୋକକା ଇରଦା । ନବାବ ଖାଁକା ଆଁଖପର ଏସା ବେଆଦବ ଅବସର ଛେଡ଼ଦେତେହେ ତବଭେ (ପ୍ରତାପ ପ୍ରତି) ମହାଶୟ ! କଏ ତୁମେମାନେ କ ଯୋଗେ ଏମାନଙ୍କ ହାତ ଧରା ହୋଇଛନ୍ତି ।

ପ୍ରତାପ—ବନ୍ଧୁ ! କ କହିବ ତବଆଗେ ମୋ ଦୁଃଖ କାହାଣି, କହିଲେ ବେଳକୁ ହେଉଅଛି ହୃଦ ଫାଣି । ଜୟପତାକା ମୁହିଁ ସୂର୍ଯ୍ୟବଂଶେ ଜନ୍ମ ନାମ ମୋ ପ୍ରତାପସିଂହ ଜାୟା ଅନ୍ନପୂର୍ଣ୍ଣା ବନ୍ଧ୍ୟା ଥାଇ ଧରି ପଞ୍ଚ ବାସନ୍ତୀ ଦେବୀଙ୍କୁ ତାଙ୍କ ଅନୁଗ୍ରହେ ବୃଦ୍ଧ ବୟସେ ଏକମାତ୍ର ପୁତ୍ର ଲଭିଲି ମୁଁ ଭୋଳେ । ଚତୁର୍ଦ୍ଦଶ ବର୍ଷ ତାକୁ ନାମ ତା ବସନ୍ତ । ଥିଲି ଆନନ୍ଦରେ ଏ ମୂର୍ଖଙ୍କ ଯୋଗେ ତାକୁ ହରାଇଛୁ ଆଜ ।

ଗଫୁର—ଚୁପ୍‌କର ବଦମାସ ।

ନବାବ—ଖବରଦାର ! ଅଚ୍ଛା ତେବେ ଆପଣମାନେ ଏ ଜଙ୍ଗଲ ମଧ୍ୟକୁ ଆସିଥିଲେ କାହିଁକି ।

ପ୍ରତାପ—ବସନ୍ତକୁ ହେଲା ଯହୁଁ ଚତୁର୍ଦ୍ଦଶ ବର୍ଷ ବୋଇଲି ମୁଁ ହିନ୍ଦାସନେ ବସାଇବ ତାକୁ । ପ୍ରଜାବର୍ଗ ପାତ୍ର ମନ୍ତ୍ରୀ ଶୁଣନ୍ତେ ମୋ କଥା, ମତ ଦେଲେ ସବେ ମିଳି ଯେ କାର୍ଯ୍ୟ ସାଧନେ । ଦୁର୍ଜ୍ଜୟସିଂହ ମୋହର ଖୁଲ୍ଲ-ତାତପୁତ୍ର ଯେନ:ପ୍ରତି କାର୍ଯ୍ୟେ ଥିଲା ମୋ ପ୍ରାଣରେ ବନ୍ଧୁବଳୁ । ବସନ୍ତର ଯୌବରାଜ୍ୟା-ଭିଷିକ୍ତ କଥା ଶୁଣିଲା ଯେମନ୍ତେ ସେହୁ ଦର୍ପିଷ୍ଟ ପାମର । ଆରମ୍ଭିଲା କୂଟ ଦ୍ୱନ୍ଦ୍ୱ ମୋର ସଙ୍ଗେ ବାରମ୍ବାର । ଶେଷେ ମୁଁ ପରାସ୍ତ ହୋଇ ପୁତ୍ର ପତ୍ନୀ ଘେନି ପ୍ରାଣ ଭୟେ ପଶିଥିଲି ବିଜନ କାନନେ । ତହିଁରେ ତା ଆଶା କଣ୍ଟୁ ହୋଇନାହିଁ ପୂର୍ଣ୍ଣ । ପଠାଇଲା ଏ ପାଷାଣ୍ଡେ ଆମ୍ଭର ସନ୍ଧାନେ । କ୍ଷୁଧାବାଧା ପାଇ ଆମ୍ଭେ ବସିଲେ କାନନେ ବସନ୍ତ ମନା ନ ମାନି ଗଲା ଫଳ ପାଇଁ । ଧନ ମୋର ନ ଫେରନ୍ତୁ ଏ ପାଷାଣ୍ଡେ ଆସି ବଳାତ୍କାରେ ନେଉଛନ୍ତି ଗଳା ଧକ୍କା ଦେଇ । ପୁଣି ବୋଲନ୍ତି ଆମ୍ଭଙ୍କୁ କାହିଁ ଗଲା ପୁତ୍ର ତୋର ନ କହିଲେ ଖଣ୍ଡି ମୁଣ୍ଡ କରିଦେବୁ ତୋର ।

ନବାବ—( ଗଫୁର କରିମ ପ୍ରତି ) ଆରେ ଭଇୟା, ଏ ନାହା ନୋଖ୍ ଦଣ୍ଡ ଦେନା ମତଲବ ଅଚ୍ଛା ସେ ବୋଲତାହୁଁ ଇନଲୋକକୁ ଛୋଡ଼ ଦେ, ଇନକା କୋଇ କସୁର ନାହି ।

ଗଫୁର—ତୁମ ମୁସାଫିର ଆଦମ, ତୁମାର ଇନ୍-ଲୋକୋସେ କ୍ୟା ହଏ । ତଲେ ଆମ ଲୋକୋକା ସାତ ଏସା ବେଆଦବ ହିଂସ୍ରିତ ମତ୍ ଲଗାନା ।

ନବାବ—ଆପକୋନ ହାଏ ଅବ୍ତକ ପରିଚୟ କଇଦେହୁ । ବେ ଆଦବ ନବାବଖାଁକେ ଏତନା ତକବ ପରିଚୟନକା ନେହି ।

କରିମ—ଚଲ୍, ଚଲ ତୁମାରେ ଏସା କେତନା କେତନା ନବାବଖାଁକୁ ଦେଖ ଦେଖଲେ ଆସ୍ତାହୁ ।

ନବାବ—ଖବର କରେ, ନବାବଖାକୁ ତୁମାର ଏସା କାଫେର ନ ସମଝନା; ନବାବ ଖାଁ ମୁସଲମାନ ସେ ପଇଦା ହୋ କର ଇସଲାମକେ ନାମପର ଧରମ ରଖକେ ନବାବ ବନାହୁଁ । ଆପଲୋକକା ଏସା କାମ ନେଇ କହ୍ଁହୁ ଯବ ଆପ ଇସଲାମ ଧରମକୁ ମାନନେହ ଔର ବୋଲ ମୁସଲମାନ

ସେ ଘରଦା ହୁଆ ଏ ତବ ଆଲ୍ଲା ରସୁଲ କେ ନାମାପର ଜନତାକୁ ଇନ୍ ଲୋକକୁ ଛୋଡ଼ ଦେ !

ଗଫୁର — କବ ନାହିଁ ଛୋଡ଼େଙ୍ଗେ, ତୋମାର ବାତସେ ଛୋଡ଼େଙ୍ଗା ନା କ୍ୟା !

ନବାବ — ଆମାର ବାତ୍‌ପର ଭି ନେହି ଅବ ଦେଖଲ ଦେତହେ, ଦେଖୋ !

( ସିଟି ମାରିବାରୁ ସୈନିକଗଣଙ୍କ ପ୍ରବେଶ )

ସୈନିକ — ହଜୁର ! କ୍ୟା ଏସା ଜରୁରତ !

ନବାବ — ଏ ଦୋନୋ କାଫେରକା ବହୁତ ଦିମାକ ହୋଚୁକାହି, ଇନ ଲୋକକୁ ଗିରଫ କରୋ ।

( ସୈନ୍ୟଗଣ ବେଷ୍ଟିତ ହୋଇ ଗିରଫ କରିବା )

ଗଫୁର, କରମ — ହଜୁର ଔର ଏସିକାମ ନେହିଁ କରେଙ୍ଗେ, ମାଫ କିଜିଏ ଜନାବ୍ ।

ନବାବ — (କରମ, ଗଫୁର ପ୍ରତି) ବେ ଆଦବକାବଖର୍ ଯେସାକୁ ତେସା ହୋଚୁକା, ଚଲେ । ତୁମାର ରଜାକୁ ଖବର କରେ (ପ୍ରତାପ ପ୍ରତି) ମହାଶୟ ! ମୋର ଗୋଟିଏ ନିବେଦନ ଯେବେ ଶୁଣିବେ ଯେବେ ମୋର କେତେକ ଦୁଃଖ ପ୍ରକାଶ କରିବି ।

ପ୍ରତାପ — କିଏ ତୁମ୍ଭେ ପ୍ରାଣ ଦାତା ଆମ୍ଭ, କହିଲ ଯେ ଉପକାର ଯୁଗେ ଯୁଗେ କଥା ଆମ୍ଭେ ଭୁଲିଣତା ଯାଏ । ପ୍ରକାଶନ୍ତୁ କଥା ତବ ମନୋଗତ ଭାବ, ସାଧିବି ମୁଁ ପ୍ରାଣ ପଣେ ପ୍ରାଣ ଜନମସ୍ତେ ।

ନବାବ — ମହାଶୟ ! ମୁଁ ବଙ୍ଗଦେଶର ସେନାପତି, ମୋନାମ ନବାବଖାଁ, ଜାତିରେ ଯବନ । ସେ ରାଜା ଅପୁତ୍ରିକ ଥିଲେ କେବଳ ମଲ୍ଲୀକା ନାମ୍ନୀ ଗୋଟିଏ କନ୍ୟାଥିଲା, ତାର ବୟସ ବର୍ତ୍ତମାନ ୧୨ ବର୍ଷ । ରାଜା ଓ ରାଣୀ ଉଭୟେ ପରଲୋକ ଗମନ କରିଲ ବେଳେ ମୋତେ ସେ କନ୍ୟାଟି ସମର୍ପି ଦେଇଗଲେ । ମୁଁ ସେହିଦିନୁ କନ୍ୟାଟିକୁ ସେହି ଗଡ଼ ମଧ୍ୟରେ ତାପଦାର୍ସିଙ୍କ ଦ୍ୱାରା ଲାଳନ ପାଳନ କରି ଆସୁଛି । ବଙ୍ଗଦେଶର ଆପଣଙ୍କର ସେହି ସୁଖ୍ୟାତି ଶୁଣିଛି । କନ୍ୟାଟି ମଧ୍ୟ ଅତ୍ୟନ୍ତ ରୂପବତୀ, ଧର୍ମ-ପରାୟଣା । ମୋର କାମନା ଥିଲା କୌଣସି ଉପଯୁକ୍ତ ରାଜପୁତ୍ର ହସ୍ତରେ ସେ କନ୍ୟାଟି ପ୍ରଦାନ କରି ମୋର ଅଭିଳାଷ ପୂର୍ଣ୍ଣ କରିବି । କିନ୍ତୁ ଆଜି ସେ ସୌଭାଗ୍ୟ ଘଟିଛି । ଅନୁମତି ଦିଅନ୍ତୁ ମୁଁ ଆପଣଙ୍କ ବସନ୍ତ ହସ୍ତରେ ସେ କନ୍ୟା-ରତ୍ନଟି ପ୍ରଦାନ କରିବି ।

ପ୍ରତାପ — ସେଥିରେ ମୋର କିଛି ଆପତ୍ତି ନାହିଁ । କିନ୍ତୁ ନବାବ ମୋର ସ୍ୱପ୍ନ ନାହିଁ । ସତେ କଣ ମୁଁ ତାଙ୍କୁ ପାଇ ପାରିବି ।

ନବାବ — ନିଶ୍ଚୟ ପାଇ ପାରିବେ । କିନ୍ତୁ ମୁଁ ମୋର ପ୍ରାଣପଣେ ଯଥାସାଧ୍ୟ ଚେଷ୍ଟା କରି ସେହି ଦୁର୍ଦ୍ଦାନ୍ତ ଦୁର୍ଜ୍ଜୟସିଂହର ଦର୍ପ ଚୂର୍ଣ୍ଣ କରି ବସନ୍ତଙ୍କ ସହିତ ମଲ୍ଲୀକାର ଶୁଭ ପରିଣୟ ସମ୍ପନ୍ନ କରାଇବି, ଏହା ସୁନିଶ୍ଚିତ ।

ପ୍ରତାପ — କେତେବାଟ ଯିବାକୁ ପଡ଼ିବ । ଆମ୍ଭମାନଙ୍କର ଖୋଜେ ଯିବାର ଶକ୍ତି ନାହିଁ ।

ନବାବ — ଏଇ ଅନତିଦୂରରେ ।

ଗଫୁର, କରମ — ହାମଲୋକକୁ ମାଫ କିଜିଏ ।

ନବାବ — ଅବ ଘରକୁନ ମେ ଆୟାଗେ ।

ଉଭୟେ — ଜି, ମାଲୁମ ହୁଆ ।

ନବାବ — ବେଅଦବ୍ ! ତୁମଲୋକ ଯୋନ କାମକିଆ ଏସା କୋଇ ଇସଲାମିଓଁକା କାମ ନେଇ, ଉତ୍ପାକ ଗନ୍ତୁକମେ ତୁମ ତୁମାର ଆଜବ ଖାସିଦୋକୁ ନାଇ ପଇଗ୍ମନମେ ଲାକ ଭି ସବସେ ତୁମ ଲୋକୋକୁ ବହୁତ ତକଲିଫ ଉଠାନେ ହୋଏଗା । ସମଝଲେ, ଯୋ କୋଇ କାମ, କରନେ ଉସ୍‌କୁ ଅଚ୍ଛା ତୋରକ ପର ବିଶ୍ୱାସ ରଖକର ଯେସା ମାଲିକ କି କୋଇ ହରଜା ନା ହୋଏ ଉସେଭି କାମ କରନା ଦରକାର ଖବରଦାର । ଏସା ବେଅଦବ କାମ ଯେସା ଔର କେଭି ଆଖ ପର ନା ଆଏ ।

( ବନ୍ଧନ ମୋଚନ ଉଭୟଙ୍କ ପଳାୟନ )

---

# ଦ୍ୱିତୀୟ ଅଭିନୟ

## ପ୍ରଥମ ଦୃଶ୍ୟ

( ବସନ୍ତ ମାୟା ତପସ୍ୱିନୀ )

ବସନ୍ତ— କାହିଁ କେତେ ଆଉ ତ ଖୋଜିଲି ତାଙ୍କର କିଛି ସନ୍ଧାନ ପାଇଲି ନାହିଁ । ମା, ମା, ତୁମ୍ଭେ କୁଆଡ଼େ ଗଲ, ଏ ଅଭାଗା ସନ୍ତାନକୁ ଛାଡ଼ି କୁଆଡ଼େ ମୁହିଁ ଲୁଚାଇ ଦେଲ ।

ଗୀତ

( ଦୟାକର ଘନବରନ୍—ଢଙ୍ଗରେ )

କେଉଁଣେ ଛାଡ଼ିଗଲ ତାତ ମାତ ମୋତେ ପରକର ।
ତବ ବିନା ଭ୍ରମିଲି ମୁଁ ଏ ଦୁଃଖ ସାଗରେ ପଡ଼ି । ସଦା ।
ଏ ଘୋର ଅରଣ୍ୟ ବନେ କାହିଁଗଲ କେଉଁ ମନେ
ଏକାକ ମୁହିଁ ବିଜନେ ପ୍ରାଣ କି ଧରି । ୧ ।
ଜନମ ହେଲା ମୋହର ଶେଷ କଲେ କି ପିଅର
ମୋତାରେ ହେଲ ନିଷ୍ଠୁର ଗଲ ମୁଁ ସହି । ୨ ।
କିବା ଦୋଷ୍ ଦୃଷ୍ଟିଗତ ହେଲ ତୁମ୍ଭେ ତାତ ମାତ
ଜନନୀ ନ ପାଏ ମୁଁ ତ ଭରଷା କରି । ୩ ।

ମା ! ବାବା ! ତେବେ ଆପଣମାନେ କଣ ଶତ୍ରୁ ହସ୍ତରେ ପଡ଼ିବ ହେଲେ, ନା ହିଂସ୍ରଜନ୍ତୁଙ୍କ ମୁଖରେ ପ୍ରାଣ ହରାଇଲେ, ମୁଁ ତ କିଛି ବୁଝି ପାରୁନାହିଁ । ତୁମ୍ଭମାନଙ୍କୁ ହରାଇ ମୋର ଆଉ ସୁଖ ନାହିଁ । ପିତା ପିତା କାହିଁ ଗଲେ ଛାଡ଼ି ଏ ଅଧମେ ।

ନେପଥ୍ୟ—ଧୈର୍ଯ୍ୟଧର, ଧୈର୍ଯ୍ୟଧର ।

ବସନ୍ତ—( ଚତୁର୍ଦ୍ଦିଗରେ ଏଣେ ତେଣେ ଚାହିଁ ) କିଏ, କିଏ କେଉଁଠାରେ କଣ କହିଲ, ଏ କଣ ବିଜନତାର ପ୍ରଧ୍ୱନି । ନା, ମନୁଷ୍ୟର କଣ୍ଠ ଶବ୍ଦ ତ ଶୁଭିଲା, ଦେଖେ ଦେଖେ, ଏଠାରେ କିପରି ଷଣ ଅପେକ୍ଷା କରେ ।

କମଳା— ( ପ୍ରବେଶି ଦୂରରୁ ଦେଖି ସ୍ୱଗତ ) ଏ ତ ବସନ୍ତ ମୁଁ ଏହାର କି ସୁଦୂରରେ ସବୁ ବାହାର ଜାଣିଥିଲି, କେଜାଣି ମୋର ଉତ୍କଣ୍ଠା ଅଳ୍ପେଣରେ ପୂର୍ଣ୍ଣ ହୋଇଗଲା । ତେବେ ନିକଟକୁ ଯାଇ ସମସ୍ତ ବୃତ୍ତାନ୍ତ ପଚାରିବି ( ପ୍ରକାଶେ ) ବାପ ! ବାପ ଉଠ, ଉଠ ।

ବସନ୍ତ— କିଏ ତୁମ୍ଭେ ଜନନୀ ।

କମଳା— ନା ବାପ ମୁଁ ତୋର ଜନନୀ ନୁହେଁ, ଜଣେକ ସାମାନ୍ୟ ପରିବ୍ରାଜିକା ମାତ୍ର, ପରେ ଜାଣି ପାରିବୁ ।

ବସନ୍ତ— ଯଦି ତୁମ୍ଭେ ମୋର ମା ନୁହଁ ତେବେ କାହିଁକି ମୋତେ ଉଠାଇଲ ?

କମଳା— ଗୀତ

କାହା ଲାଗି ବସି କାନ୍ଦୁଛୁ,
ବିଜନେ ଜଡ଼ ବାପ ଧନରେ
ସରସ ବଦନ ବିରସ ଦିଶୁଛୁ
ସୁଖ ନାହିଁ ମନରେ ।
କେ ଅବା ଉଡାଇ ହୋଇ ତୋର
ଶିର ଚନ୍ଦ୍ର ହରଣରେ ।
ଯେବା ମନୋଦୁଃଖ ନ ହୋଇ ବିମୁଖ
ଶୁଣି ମୋର କର୍ଣ୍ଣରେ ।

ବାପା ! କହ କହ କେଉଁ କଥା ମନରେ ଭାବି ଏତେ ଅଧୈର୍ଯ୍ୟ ହେଉଛୁ । ଏ ତ ଘୋର ଜଙ୍ଗଲ, ତୁ ବା ଏଠାକୁ କପରି ବା କାହିଁକି ଆସିଲୁ ସେ ସବୁ କଥା ଖୋଲି କହ ।

ବସନ୍ତ— ତୁମେ କିଏ ମୋତେ ପରିଚୟ ଦିଅ ।

କମଳା— ମୁଁ ପରେ ପରିଚୟ ଦେବି । ତୋ ମନ ଫିଟାଇ ଆଗେ ମୋତେ କହସାର ।

ବସନ୍ତ— ଗୀତ

( ଆଉ ଏ କେଣ ସହିବି—ଢଙ୍ଗରେ )

କି ଦୁଃଖ କହିବି ମାଆ, କହିଲେ ଉଠୁଛି ବାଧା ।
ଯାହା କରମ ଲେଖନ ଲେଖୁଛି ନ ଯାଇ ଖଣ୍ଡା ।
ଅଯୋଗ ବିପ୍ର ପିଅର, ମାତାଙ୍କୁ ମୋତେ ଘେନିଲ
ବେନି ଆସିଲେ ବନର ବାଟିରୁ ଶୁଣନ୍ତି ପାଦା ।
ଆହାର ଅନ୍ୱେଷଣକାଳେ, ମୁଁ ଗଲି ଘୋର ଅରଣ୍ୟ
ସେ ତେଜ ଗଲେଟି କେଉଁଣେ
( ମୋତେ ) ବସାଇ ଏ ଦୁଃଖକାତା ।

କି କହିବି ମାତ ! ଜୟସିଂହ ଅଧୀଶ୍ୱର ଅଟନ୍ତି ମୋ ତାତ । ମାତା ମୋର ଅନ୍ନପୂର୍ଣ୍ଣା, ମୋ ନାମ ବସନ୍ତ ।

ଶତ୍ରୁ ଭୟେ ତେଜି ଆମ୍ଭେ ରାଜ ସିଂହାସନ ପ୍ରାଣ ଘେନି ପଶିଥିଲୁ ଏ ଘୋର କାନନେ । ତାତ ମାତ କ୍ଷୁଧାବଶେ ନ ପାରନ୍ତେ ଚାଲି ଫଳାନ୍ୱେଷଣେ ମୁଁ ଗଲି ତାଙ୍କୁ ବସାଇ ଏ ସ୍ଥାନେ । ଓହୋଃ, କି କହିବି ତାହା । ଫଳ ଘେନି ଫେରିଲି ବେଳକୁ ନ ପାଉଛି ଆଉ ତାଙ୍କ ଦରଶନ । କହ ମାତା । କିଏ ତୁମ୍ଭେ ଦେବୀ ନା ମାନବୀ । ଏ ଅଭାଗା ଆର୍ତ୍ତନାଦ ଶୁଣି କୃପାକରି ଆସିଲେ ଏ ସ୍ଥାନେ । ମୋର ଏ ବିପଦବେଳେ ଯେବେ ଦେଲ ଦେଖା, ଦୟାକରି ପ୍ରକାଶ ମୋ ଆଗେ ତାତ ମାତ ମୋର ଗଲେ କାହିଁ ?

କମଳା—ବତ୍ସ ! ନୁହେ ମୁହିଁ ଦେବୀ କି କିନ୍ନରୀ, ମାନବୀ ମୁଁ ଅତି ଅଭାଗିନୀ ପୁଣି ମୋ ପରି ନ ଥିବେ ଜଣେ ସଂସାରରେ କେହି ।

ବସନ୍ତ—ତୁମ୍ଭେ ମାନବୀ ! ଏ ଘୋର ବିଜନ ବନ ମହା ଭୟଙ୍କର ଶ୍ୱାପଦ ସଙ୍କୁଳ ହିଂସ୍ର ଜନ୍ତୁ ଛଡ଼ା ସର୍ବ ନାହିଁ ମନୁଷ୍ୟର ବାସ କହ ତେବେ କି ଉଦ୍ଦେଶ୍ୟେ ଆସିଛନ୍ତି ଏଥି ?

କମଳା—ବାପ ! ଆଉ ଆଣିବ କିଏ, ସେହି କର୍ମ ଆଣିଛି । ତୁମ୍ଭମାନଙ୍କୁ ସିଏ ଏ ବିପଦରେ ପକାଇଛି ମୋତେ ମଧ୍ୟ ସିଏ ଦୁଃଖ ଦେଉଛି । ତୁ ତୋର ପିତା ମାତାଙ୍କଠାରୁ ବିଚ୍ଛିନ୍ନ ହୋଇ ଯେ ଦୁଃଖ ଭୋଗ କରୁଛୁ, ମୁଁ ମଧ୍ୟ ମୋର ସ୍ୱାମୀଙ୍କ ଠାରୁ ବଞ୍ଚିତ ହୋଇ ସେହି ମର୍ମନ୍ତୁଦ ବେଦନା ଉପଭୋଗ କରୁଛି । ଏ ଅସାର ସଂସାରରେ ଦୁର୍ଜ୍ଜନ ଲୋକମାନଙ୍କର ଅତ୍ୟାଚାର ସହ୍ୟ କରି ନ ପାରି ଏଠାକୁ ଆସିଅଛି !

ବସନ୍ତ—ତେବେ କିଏ ତୁମ୍ଭେ ପରିଚୟ ଦେଉନା କାହିଁକି ।

କମଳା—କଣ ଚିହ୍ନି ପାରୁନା ଯୁବରାଜ ! ବୋଧହୁଏ ଏ ଚିରଦୁଃଖିଆ ବେ, ଏ କଷାବସ୍ତ୍ର ତୁମରେ ପକାଇ ଦେଇଛି । ଆଜ୍ଞା ନଜର ବେଶ ଦେଖାଇ ଦେଇଛି ।

ବସନ୍ତ—ମା ! ମା ! ଏତେ କାହିଁକି ?

କମଳା—ବାପରେ ! ଦୁର୍ଜ୍ଜୟ ସିଂହ ମୋର ସ୍ୱାମୀଙ୍କୁ ବନ୍ଦୀକରି ମୋ ନିକଟରେ ଉଦ୍ଧତରେ ଆସି ପ୍ରେମଭିକ୍ଷା କରୁଥିଲା, କିନ୍ତୁ ମୁଁ ମୋର କୌଶଳ ଦ୍ୱାରା ତା ହାତରୁ ମୁକ୍ତ ହୋଇ ତୁମ୍ଭମାନଙ୍କ ଅନୁସନ୍ଧାନରେ ଚାଲି ଆସିଲି । ମୁଁ ରାଜ୍ୟରେ ଶୁଣିଥିଲି ଦୁର୍ଜ୍ଜୟ ତୁମ୍ଭମାନଙ୍କୁ ଗିରଫ କରିବା ଲାଗି ଆଗରୁ ଅନୁଚର ପଠାଇ ଥିଲା, ଏଥିରୁ ସ୍ପଷ୍ଟ ଜଣା ପଡ଼ୁଛି ମହାରାଜ ଓ ରାଣୀ ନିଶ୍ଚୟ ସେହି ଦୁଷ୍ଟମାନଙ୍କ ଆକ୍ରମଣରେ ପଡ଼ିଛନ୍ତି । ଚାଲ, ତାର ସନ୍ଧାନ କରିବା ।

ବସନ୍ତ—ମା ! ମୁଁ କଣ କରିବି, ମୋର ହାତ ତ ଆଉ ଚଳୁନାହିଁ ।

କମଳା—ନା ବାପ ! ଏପରି କାତର ହୁଅ ନା, ସମୟେ ବୀରର ଏପରେ କାତର ନୁହେ କ୍ଷତ୍ରିୟୋଚିତକର୍ମ । କ୍ଷତ୍ରିୟ ସନ୍ତାନ ହୋଇ କାତର ହେବା ଅନୁଚିତ । ଚାଲ ବାପ ତାର ପ୍ରତିକାର ଚେଷ୍ଟା କରିବା ।

---

## ଦ୍ୱିତୀୟ ଦୃଶ୍ୟ

(ଦୁର୍ଜ୍ଜୟ ସିଂହ, ରଘୁର, ଦୂତ)

ଦୁର୍ଜ୍ଜୟ—ତୁମ୍ଭେମାନେ ପ୍ରତାପ ସିଂହ ଓ ତାର ସ୍ତ୍ରୀଙ୍କୁ ଗିରଫ କଲ ମାତ୍ରେ ସେହିଠାରେ ହତ୍ୟା ନ କରି ମୋ ନିକଟ ଆଣିଥିଲ କାହିଁ, ଏବେ ଦେଖ କଣ । ନବାବ ଖାଁ ଯେବେ ସେମାନଙ୍କୁ ସାହାଯ୍ୟ ଦେଇ ଯୁଦ୍ଧ ଘୋଷଣା କରେ ତେବେ ମୋର ଗତି କଣ ହେବ ?

ରଘୁର—ଜି, ମହାରାଜ ! ନବାବ ଖାଁ ଉକ୍ତଲୋକଙ୍କୁ ସହାଗିରଣ ହୋଇନେ ଶକତ ହଏ, ଲେକନ ବସନ୍ତକୁ ନାହିଁ ପାନେକା ତକଲିଫ ବଡ଼ ଲଗାଇ ନାଇ ମାଲୁଏଗା ।

ଦୁର୍ଜ୍ଜୟ—ଅଚ୍ଛା, ବସନ୍ତ କଣ ତାର ମାତାପିତାଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଛି !

ରଘୁର—ଆମଲୋକ ଯେତେବେଳେ ଉକ୍ତ ରାଜା ଓ ରାଣୀଙ୍କୁ ଗିରଫ କଲା ଉସବକ୍ତ ଉନ୍‌କୁ ବସନ୍ତ ଖାନେକାଲିଏ ଜଙ୍ଗଲକୁ ଫଲ ଲେନେକା ବାସ୍ତେ ଗୟା ଥା ହୁଆ, ସେ ଫିର କରିବାସ ଆକୁନାଇ

ଯାସ୍ମୀରହେଗା । ଓଇସବସେ ହୁସକାହଲକୁ ସୋ ଆସ୍ମୀ ରହେଗା ଓଇ କରଲସ୍ମୀ ରହେଗା ଲେକନ ନବାବ ଖାଁ ଉନକା ଠହର ପ ନା ଠିକ୍ ନାହିଁ ।

ଦୂତ—ମହାରାଜ ! ତୁଆ ବଢ଼ଟେ, ସେ ଭୟଙ୍କର ଅରଣ୍ୟ ମଧ୍ୟରେ ଏକାକୀ ପ୍ରାଣ ଯାଇବା ସହଜ କଥା ନୁହେ । ଆଉ ପ୍ରାଣରେ ଥାଇ ମଧ୍ୟ ପଥ ଅନୁସରି କେଉଁଆଡ଼େ ଆସିବ ଏବ ସହଜ ନୁହେ । ତେଣୁ, ସେ କଥା କିଛି ନୁହେଁ ।

ଦୁର୍ଜୟ—ସେନାପତେ ! ନବାବ ଖାଁ ତ ବର୍ତ୍ତମାନ ବସନ୍ତର ଅନୁସନ୍ଧାନରେ ଯାଇଥିବ । ଏହି ସୁଯୋଗରେ ତାର ସେହି ପ୍ରତିପାଳିତା କନ୍ୟା ମଲ୍ଲୀକାକୁ ଅପହରଣ କରି ଆମ୍ଭେ ବିବାହ ହୋଇ ପଡ଼ିଲେ ଭଲ ହୁଅନ୍ତା

ଗଫୁର—ଏ କ୍ୟା ପୁଛନେକି ବାତ୍ । ନବାବଖାଁ ଯେତନା ଓ୍ୟକ୍ତ ଏବାର ଶୁନେଗା ବନ୍ଦୁକସା ରୋଷା ହୋଏଗା, କବୁଲ ଲେକିନ ଯେତନା ଓ୍ୟକ୍ତ ଶୁନେଗାକି ଲଡ଼କିକା ଆପକା ସାଥ୍ ଶାଦି ହୋଚୁକାହି ଉତନୋ ଓ୍ୟକ୍ତ ସବୁକୁଛ ଭୂଲ ହୋକରର ଦୋସ୍ତି ଯାଣ୍ଡେଗା ।

ଦୂତ—ସେ କଥା ସତ, କିନ୍ତୁ ବାନ୍ଧବଠାରୁ ଆଉ କଥା କଣ ଅଛି ।

କରିମ—ଲ ଖୋଦାବନ୍ଦ ! ଓ ଲଡ଼କିକା ନାମ, କସମତ ଅଉର ସୁରତକି ବାତ ଯୋ କୁଛ ଶୁନେଦେଓ ଆପକା ପୋଚ୍ଛେଭି ଜ୍ୱୋକ ହୁଏ । ଉନକା ନାମ ଯେସା ସୁରତ ଭ ଓସେଇ ଚମେଲିକେ ସରି ।

ଦୁର୍ଜୟ

ଗୀତ

(ଏ ଯାଗ ନନ୍ଦନ—ବୃତ୍ତି)

ଜୟ ସେନାପତେ ! ଆଜ ମୁଁ କେମନ୍ତେ
ସେ ନବ ମଲ୍ଲୀକା ପାଇବିରେ,
ଶୁଣି ତାର ନାମ ରୂପ ଗୁଣ ଚିହ୍ନ
ସ୍ଥିର୍ଯ୍ୟ ଧରି (କି) ଆଉ ରହିବିରେ । ପଦ
ପ୍ରେମ ରଜ୍ଜୁରେ ମୁଁ ଗୁନ୍ଥି କରି ମାଳା,
ସେ ମଲ୍ଲୀକା କଣ୍ଠେ ଲମ୍ବାଇବି ଗଳା,
କଏ ମୋତେ ଆଣି ଦେବ ସେ ତରୁଣୀ
ତା ଗୁଣକୁ ସଦା ଗାଇବିରେ । ୧ ।
ରାଜ୍ୟରେ ମୋ ଆଜ କରାଅ ଘୋଷଣ
କଏ ବା ଏଥିରେ କରିବ ବାରଣ ।
ବାରଣ ଗମନା ନ ପାଇଲେ ସିନା
ପରାଣ ଆଉକି ଧରିବିରେ । ୨ ।

ଯାଅ ସେନାପତେ ! ରାଜ୍ୟ ମଧ୍ୟେ କରାଅ ଘୋଷଣା ଯିଏ ଆଣିଦେବ କନ୍ୟାକୁ ଦେବ ମୋ ଛାମୁରେ ପାଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଦେବି ତାର କରେ ।

ଦୂତ—ତମେ ତ ଯିବ ଆଉ କଏ ?

ଗଫୁର—କରିମ ଖାଁ ଗିଆ ।

---

## ଚତୁର୍ଥ ଦୃଶ୍ୟ

[ ମଲ୍ଲୀକା, କୁନ୍ଦଲତା, ସେବନ୍ତୀ, ପଦ୍ମା, ମାଳତୀ ]

କୁନ୍ଦଲତା—ହଇଲୋ ଜେମାମଣି ତୁଇଦିନ ହେଲା କାହିଁକି ମନଟା ତମର ବିରସ ଥିବାର ଦେଖା-ଯାଉଛି; କଣ, କଥା କଣ, ଆମ୍ଭମାନଙ୍କ ଆଗରେ ମନ ଖୋଲି ନ କହିଲେ ଆମ୍ଭେମାନେ ଜାଣିବୁ କିପରି ?

ମଲ୍ଲୀକା—ନାହିଁ ସଖି କିଛି ନାହିଁ ।

ସେବନ୍ତୀ—ନାହିଁ କିଛି ନାହିଁ (ମୁଖଭଙ୍ଗି) ଅଉଛିକା କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ ।

ପଦ୍ମା—କଣ ସେବନ୍ତୀ କଣ, କହ କହ, ଆମେ ସଖୀଙ୍କ ପାଦରୁ ଉନଟାମାଇପେ ଥକି ଗଲୁଣି ପଦେ କିଛି ଜବାବ ମିଳୁ ନାହିଁ ।

ସେବନ୍ତୀ—ନବାବ ସାଅନ୍ତେ କୁଆଡ଼କୁ ଯାଇଛନ୍ତି ତେମେ କିଛି ଜାଣ ।

ମାଳତୀ—ତାଙ୍କର କେତେଆଡ଼େ କେତେ ମାମଲତ, କୁଆଡ଼େ ଯାଇଛନ୍ତି ବୋଲି କଣ ଠିକ ଅଛି ।

ସେବନ୍ତୀ—ତେମେସୁଦ୍ଧା ଖାଲି ଖାଇକରି ଦମାକୁ ପରି ହୋଇଛ ତମକୁ ହାନ ଲାଭ ନଫା ବଣ କିଛି ଖବର ନାହିଁ ।

କୁନ୍ଦଲତା—ତୁ ତ ବଡ଼ ଭିକାରୀଟିଏ ଅଛୁ ସବୁ ଜାଣୁ କଣ କହୁ ନାହିଁ ।

ସେବକୀ ପାଆନ୍ତେ ପର ଗୋଟିଏ ହେମାଙ୍କ ଲକ୍ଷି ବରପାଣ ପାଇଛନ୍ତି ତାଙ୍କୁ ଅକ୍ଷିଲେ ବାହାଘର ହେବ । ତେବେ ଆଉ କଣ ବୁଝିଛ କି ?

କୁନ୍ଦଲତା – ସେ କଥାରେ ତ ମନ ଆନନ୍ଦ ହେବା କଥା । ହେମାମଣି କାହିଁକି ମୁହଁ ଧାନ କସୁଆଁ ହାଣ୍ଡିପରି କରି ଦେଇଛନ୍ତି ।

ସେବକୀ—ଆଲୋ ସ୍ତ୍ରୀଅମାନଙ୍କର ଘରକର ଠିକ୍ ହୋଇଗଲେ ଉପର ମନରେ ଟିକିଏ ବିରସ ଭଙ୍ଗୀଆ ଦେଖାଇଥାଆନ୍ତି ।

ମଲ୍ଲୀକା—କଣ ଗୁଡ଼ାଏ ଏଣୁ ତେଣୁ କହୁଛୁ । ସେ କଥା କହୁ ନୁହେଁ ମୁଁ କାହିଁକି ଦୁଇଦିନ ହେଲା ବସିଲା ଠେଇଁ, ଉଠିଲା ଠେଇଁ ଖାଲି ଅମଙ୍ଗଳ ସୂଚକ ଦେଖୁଛି । ସେଇଥି ପାଇଁ ମୋତେ କିଛି ଭଲ ଲାଗୁ ନାହିଁ, ମୁଁ ଆଜନ୍ମ ଦୁଃଖିନୀ ସତ, କିନ୍ତୁ ପୁଣି କି ବିପଦରେ ଭଗବାନେ ମୋତେ ପକାଇବେ କେଜାଣି ।

କୁନ୍ଦଲତା—କଣ ଅମଙ୍ଗଳ ଲକ୍ଷଣ ଦେଖୁଛ କହିଲ—

ମଲ୍ଲୀକା— ଗୀତ

[ ଶ୍ରୀରାଧା ବାଉଳି – ବୃତ୍ତେ ]

ସଜନୀ ଦକ୍ଷିଣ ନୟନ କମ୍ପାଇ
ସ୍ଫୁରୁଅଛି ମୋର ଘନ ଘନ
ଅପଘନ ସଦା ଚମକି ଉଠୁଛି
ହେଉଅଛି ମନ ଉନ୍ମନ
ପ୍ରିୟ ସଜନୀ ଗୋ ।
ଅନ୍ଧକାର ଦିଶେ ତ୍ରିଭୁବନ । ୧ ।
ଆଜନ୍ମ ଦୁଃଖିନୀ ମୁହିଁ ଅଭାଗିନୀ
ହରୁଅଛି ଯେଣୁ ତାତମାତ
ଆଉକି ସନ୍ତାପ ଦେବ ଗୋ ବିଧାତା
ଜାଣିନା ନ ପାଏ ମୁହିଁ ମାତ
ପ୍ରିୟ ସଜନୀ ଗୋ,
ଭବ (ଭବ) ନ ଅଣ୍ଟୁଛି ହବା ସାର । ୨ ।

ସଖି ଗୋ ! ମୋର ଦକ୍ଷିଣ ନେତ୍ର ଦକ୍ଷିଣ ବାହୁ ବାରମ୍ବାର କମ୍ପୁଛି, ଏତ ବଡ଼ ଅମଙ୍ଗଳର କାରଣ ! ବିଧାତା ମୋତେ ରାଜକୁଳରେ ଜନ୍ମ ଦେଇ ବାଲ୍ୟ-କାଳରୁ ପିତାମାତାଙ୍କ ସ୍ନେହରୁ ବଞ୍ଚିତ କରିଛନ୍ତି । ଆଉ ଅଭାଗିନୀଠାରେ କି ଦାଉ ସାଧିବାକୁ ତା ମନରେ ଅଛି ।

ସଖିଗଣ — ଗୀତ

( ବୈକୁଣ୍ଠ ଉଦାସି – ବୃତ୍ତେ )

ଆଗୋ ହେମାମଣି ନ କର ଭାଳେଣି
ସୁମର ପ୍ରସ୍ତୁବ କଥା ଗୋ ।
ବିଧାତା ବିପକ୍ଷ ହେଲାବେଳେ ସିନା
ଘଟିଥାଏ ନାନା ବ୍ୟଥା ଗୋ ।
ଆଉ ଭାବିଲେ କି ହେବ ।
କର୍ମଲେଖା କେ ଆନ କରିବ ଗୋ ।୧।

କୁନ୍ଦଲତା—ହେମାମଣି ! ଆଉ ପରି କଥାସ୍ୱଭାବ କାହିଁକି ମନରେ ଭାବି ଏତେ ଅଧୈର୍ଯ୍ୟ ହେଉ-ଛନ୍ତି; ଯାହା କର୍ମରେ ଥିବ ତା ତ ହୋଇଯାଉଛି । ବିଧାତାର ବଳକୁ ମନୁଷ୍ୟର ଅସାଧ୍ୟ କଣ ।

ମଲ୍ଲୀକା—ସଖି ! ଗଲା କଥାକୁ ମୁଁ କହୁ ନାହିଁ । ବର୍ତ୍ତମାନ ମୋର ମନ କାହିଁକି ଏତେ ଅଧୈର୍ଯ୍ୟ ହେଉଛି । ଆଉ କେତେଗୁଡ଼ିଏ ଅଶୁଭ ଲକ୍ଷଣ ଦେଖି ପାରୁଛି । ସେଥିରୁ ଅନୁମାନ କରୁଛି ସଖି ! ଆଉ କହିବ ନାହିଁ କି ?

ସଖିଗଣ — ଗୀତ

ଆଗୋ ପ୍ରାଣମିତ ଏ କି ଅଦ୍ଭୁତ
କଥା କହୁଅଛ କୁଣ୍ଡେ ଗୋ ।
ତୋର ଏ ଦୁର୍ଦ୍ଦଶା ନୋହୁଁଟିରେ ଯୋଖ
କନ୍ତୁ ଚଳୁ ଅନ୍ଧ ମୁଣ୍ଡେ ଗୋ
ସଖି ତୁ ଆମର ପ୍ରାଣ ।
ତୋର ସୁଖେ ଆମ୍ଭେ ସୁଖୀଜନ ଗୋ ।୨।

ଉଦ୍ଧା—ହେମାମଣି ! ତେବେ କାହିଁକି ହେଉଛ ଏଣେ ଆଡ଼ୁ ସାଡ଼ୁ ଗୁଡ଼ାଏ କହୁଛ, ତମ କଥା ଶୁଣି ଆମେ ତ କାଠ ପାଷାଣ ହୋଇ ଗଲୁଣି ।

ମଲ୍ଲୀକା—ସଖି ! ମୋ ମନଟା କାହିଁକି ସେଥିରେ ଗୋଳେଇ ଘାଣି ହେଉଛି । ତୁମ୍ଭେମାନେ କାହିଁକି ବ୍ୟସ୍ତ ହେଉଛ !

ସଖୀଗଣ— ଗୀତ

ଆରେ ମାଧବନ ତୋହ ଲାଗି ଧ୍ୟାନ
କରୁଛୁ ଦର୍ପ ଦେବତା ଗୋ ।
ତୋର ଯେତେ ବାଣ ଭୁଟିଯିବ ଜାଣ
ପଡେ ନ ବଳିବ କଣ୍ଠ ଗୋ
ଆଉ ରହିବ ଆମ୍ଭର
ନବ ନଇବେ ଦୁର୍ଗତି ତୋର ଗୋ ।୩।

କୁନ୍ଦଲତା— ହେମାମଣି ! ତମ ଆଗ ଗୋଡ଼ରେ କଣ୍ଟା ବାଜିବ ନାହିଁ ! କାହିଁକି ଏତେ ବ୍ୟସ୍ତ ହେଉଛ । ଆମେ ଏତେ ଦର୍ପ ଦେବତା ପୂଜୁଛୁ, ସେ କଣ କୁଆଡ଼େ ଉଡ଼ିଯିବ ।

ମଲ୍ଲୀକା— ସଖିଏ ଚାଲ ଟିକିଏ ବଗିଚା ଘାଟ ଆଡ଼କୁ ଯିବା ।

ନବବସ୍ତ— ଚାଲ ତ, ହେମାଦେଈ ! ଆଉ ଗୋଟିଏ କଥା, ମହାଜନ ବଂଶ ଗୋପାଳିଙ୍କର ଖାଦ୍ୟ ପ୍ରଶଂସା; ଯେଉଁଠି ବସନ୍ତ ଉପବନରେ ଗଡ଼ିଗଲେ ଆଉ ଭାଇଏ ଖେଳ ହେଲେ ସବୁ ଶବ୍ଦ ଭୁଟିଯିବ ।

ଚମ୍ପା— ଚୋର ଖାଲି ଖାଇବା କଥା ।

ମଲ୍ଲୀକା— ଚାଲ ଚାଲ । [ ପ୍ରସ୍ଥାନ ]

---

## ଚତୁର୍ଥ ଦୃଶ୍ୟ

(ଶଙ୍କର ନାୟକ ଓ ମକର ସେନା)

ଶଙ୍କର— ମକର ହୋ, ମକର ସେନା, କଣ କାହିଁ ସହରରେ ଖବର ଟବର ହେଉଥିଲା କି ?

ମକର— ଆଜ୍ଞେ ଶଙ୍କର ନାୟକ ! ଏ ଖବର ହେଉଛି କଥାକୁ ମୋର ଆଉ ଜଣ ନାହିଁ ।

ଶଙ୍କର— କଣ କଣ କଥା କହ !

ମକର— ଆଜ୍ଞେ ଦେଖୁଛୁଟି ଗୋଟାଏ ଘର ଭାଙ୍ଗିଲା ଆଉ ପୁଣି ଗୋଟାଏ ଠାକୁର ଠାକୁର ଭାଙ୍ଗିଗଲାଣି, ଆଉ କାହା ମୁଣ୍ଡରେ ପୁଣି ହାତ ବୋଳା ହେବ । ଏମିତ ଘରପୋଡ଼ିଆ ଲୋକ ପୁଣି ଦୁନିଆରେ ଅଛନ୍ତି ।

ଶଙ୍କର— ଆରେ ଭାଙ୍ଗିଲା କଏ ଲୋ ।

ମକର— ଆଜ୍ଞେ ରାଜା ଘର ତ ଭାଙ୍ଗିଲା, ମନ୍ତ୍ରୀ ଘର ତ ଭାଙ୍ଗିଲା, ମଣିଷ ଖୁଅବୋଝ ହୋଇ ଚାଲିବା ମହାନ ବିପଦରେ ପଡ଼ିଲାଣି ।

ଶଙ୍କର— କିଏ ।

ମକର— ଆରେ ସେଇ, ଆଉ କିଏ, ବୁଦ୍ଧି ନାହିଁ ଆଉ ଏମନ୍ତ ପ୍ରଚଣ୍ଡ ସିଂହ କିଏ ଅଛି ।

ଶଙ୍କର— କିଏ ରାଜାଙ୍କ କଥା କି ?

ମକର— ଅବଧାନେ, ରଜା କାହାକୁ କହନ୍ତି ହୋ । ରଜା କଣ ସବୁ ଘର ଘର ପଶି ବୁଲି ବୁଝି କରନ୍ତି । ଏ ତ ଗୋଟାଏ ଅଇଁଠା ଚାଟୀ କୁକୁର । କାହାକୁ ଏବେ କଣ କହିବା ! ଦେଖୁନ ରଜା ବଇଁଶିକୁ ମୂଳପୋଛ କଲା, ପୁଣି ମନ୍ତ୍ରୀଟାକୁ କଏଦ ରଖିଲା । ଆଉ ସେ ମନ୍ତ୍ରୀ ଘରଣୀଟାକୁ ଛାଡ଼ ସେ କଥା ।

ଶଙ୍କର— କଣ କଣ, କଥା କଣ ।

ମକର— ମନ୍ତ୍ରୀଙ୍କ ସ୍ତ୍ରୀଟା ଘର ସୁନ୍ଦରୀ ଆଉ ଭଦ୍ର ଲୋକର ଝିଅ । ତାର ପଛରେ ଏ କୁକୁର ଯାଇଁ କଣ କଲା କେଜାଣି, ସେ ମାଇକିନିଆ ଖଣ୍ଡେ ଚିଠି ମନ୍ତ୍ରୀଙ୍କ ପାଖକୁ ଲେଖି ଦେଇ କୁଆଡ଼େ ଗଲା, ତାର ପତା ମିଳୁ ନାହିଁ । ଆଜି ଏକ ଢେଣ୍ଡୁରା ପଡ଼ୁଛି । କୋଉଠି ଗୋଟାଏ ରାଜକନ୍ୟା ଅଛି ତାକୁ ଯିଏ ଖୋଜି କରି ଆଣି ଦେବ ସେ ପାଞ୍ଚଶ ସ୍ୱର୍ଣ୍ଣମୁଦ୍ରା ପାଇବ ।

ଶଙ୍କର— ଆଜ୍ଞା କିଏ ଭଲ ପାଉଛି ।

ମକର— ଆଜ୍ଞେ ଯିଏ ମାଡ଼ କନ୍ଦୁଣୀକୁ ମିଠେଇ ଭବଭୋଳ ମନେ କରିଥିବ ସେଇ ଯିବ । ମୁଁ ଯାଉଛି ଅବଧାନେ । ମୋର ଟିକିଏ କାମ ଅଛି ।

ଶଙ୍କର— ଆସ୍ତେ ଯାଅ (ସ୍ୱଗତ) କଣ ଏଟା କହୁଛି । ସତନା ମିଳୁ, ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା; ଏକ ଦୁଇ ନୁହ ୧୦୦ ପୁଣି ପାଞ୍ଚ ପାଞ୍ଚ ଥର ପାଞ୍ଚ ଶହ । ଏ ସୁଯୋଗ ଛାଡ଼ିବାର ନୁହେଁ । ଯିବା ତ ହିଁ ଉଚିତ, ଚେଷ୍ଟା କରିବା ଦେଖାଯିବ । ଓହୋ ପାଞ୍ଚଶ ଏତେ ହେଲେ, ବଡ଼ଲୋକ । ଯିବା ଯିବା ଦେରି କରିବା ଆଉ ପ୍ରୟୋଜନ ନାହିଁ ।

---

## ପଞ୍ଚମ ଦୃଶ୍ୟ

(ଶାଳରେ, ଶଙ୍କର ନାୟକ, ଦୂତ, ଦୁର୍ଜ୍ଜୟସିଂହ)

ଝଟକେ ଶୁଣିଯା କଳକାଳ ସଙ୍ଗତରେ ।
ଝାଙ୍କ ବସିଛୁ କାଳ ଚୋର ଚୋଟିକରେ ।
ପେଶ ଦେଲଣିଟି ନଶା ଘୋଷା ଦୃଷ୍ଟିକରେ
ହଂସାକର ଭୂଷ ଦେଲେ ବାପ ଭାଇକରେ ॥
ସାର ବନ୍ଧୁ ମଇଳା          ତର୍ଣ୍ଣି କଲେଣି ଦେଳା
ଶଳା ଶାଳୀରେ ଭାବ ପ୍ରୀତିକରେ । ୧ ।
ପାପ ପଙ୍କେ ବୁଡ଼ାଇଲେ ସାଙ୍ଗ ସାଥିଙ୍କ ରେ
ଧୋଇ ମନୁଷ୍ୟ ବର୍ତ୍ତି          ଅକାଳ ମୃତ୍ୟୁ ବାହ୍ନ
ଯୋଡ଼ିଲା ବାଳବୃଦ୍ଧ ମସ୍ତକରେ । ୨ ।

(ଜ୍ୟୋତିଷଙ୍କ ପ୍ରବେଶ)

ଦୂତ—ଅବଧାନେ ଭ୍ରମ !

ଶଙ୍କର—ମନ କାମନା ସିଦ୍ଧି ହେଉ, ନବଗ୍ରହ ଏକାଦଶ ଫଳ ପ୍ରଦାନ କରନ୍ତୁ ।

ଦୂତ—ଅବଧାନେ ! କୁଆଡ଼େ ଆସିଲେ କଣ କଥା କଣ ?

ଶଙ୍କର—ଆରେ ସେହି ଧେଣ୍ଡୁରା ଘଣ୍ଟା ଶୁଣି ଭ୍ରମରେ ଆସିଲୁ, କଣ କେହି ଲୋକ ସଙ୍ଗରେ ହୋଇ ଗଲେଣି ।

ଦୂତ—ନାହିଁ, କେହି ଠିକ୍ ହୋଇ ନାହାନ୍ତି । ଆପଣ କଣ ସେ କାର୍ଯ୍ୟ କରି ପାରିବେ ?

ଶଙ୍କର—ହଁ ଚେଷ୍ଟା କରିବା, ତୁ ଯା, ସାଆନ୍ତଙ୍କୁ ଆମ କଥା କହ ।

ଦୂତ—ଆଜ୍ଞା ମୁଁ ଖବର ଦେଉଛି । ଆପଣ ଏଇଠାରେ ଥାଆନ୍ତୁ । [ପ୍ରସ୍ଥାନ]

ଶଙ୍କର—(ସ୍ୱଗତ) ଓହୋ ! ପାଞ୍ଚଶ ସ୍ୱର୍ଣ୍ଣମୁଦ୍ରା ଏକାବେଳକେ କୁବେର ହୋଇଯିବା ।

ଦୁର୍ଜ୍ଜୟ—(ପ୍ରଣାମ କରଣ) ଜ୍ୟୋତିଷେ କୁଆଡ଼େ ଆସିଲ ।

ଜ୍ୟୋତିଷେ—ଆଜ୍ଞା ସେହି ଧେଣ୍ଡୁରା ଘଣ୍ଟା ଶୁଣି ତ ଧାଇଁ ଆସିଲୁ ।

ଦୁର୍ଜ୍ଜୟ—ଆପଣ ସେ କାର୍ଯ୍ୟ କରି ପାରିବେ ?

ଶଙ୍କର—କଣ ସମୁଦାୟ କଥାଟା ପ୍ରକାଶ କରନ୍ତୁ, ଆମ୍ଭେ ଗଣତନ୍ତ୍ର ସ୍ଥିର କରିବା ।

ଦୁର୍ଜ୍ଜୟ—ସିଂହପୁର ରାଜା ବସନ୍ତ କେଶରୀଙ୍କ କନ୍ୟା ନାମ ମଲ୍ଲୀକା । ରାଜା ରାଣୀ ଉଭୟେ ମରିଯିବାରୁ କନ୍ୟାଟି ଜଣେ ନବାବ ଖାଁ ନାମକ ସେନାପତି ସାହାଯ୍ୟରେ ପ୍ରତିପାଳିତା ହେଉଅଛି । ବର୍ତ୍ତମାନ ଆମ୍ଭର ଜ୍ୟେଷ୍ଠ ଭ୍ରାତା ପ୍ରତାପ ସିଂହଙ୍କ ପୁତ୍ର ବସନ୍ତ ସହିତ ସେ କନ୍ୟାଟିର ଶୁଭପରିଣୟ ହେବାର ସ୍ଥିରୀକୃତ ହୋଇଅଛି । ମାତ୍ର ବସନ୍ତ ତାର ପିତାମାତାଙ୍କଠାରୁ ବିଚ୍ଛିନ୍ନ ହୋଇ ଯାଇ ଥିବାରୁ ନବାବ ଖାଁ ପ୍ରତାପ ସିଂହ ଓ ରାଣୀ ଅନ୍ନପୂର୍ଣ୍ଣାଙ୍କୁ ସିଂହପୁର ରାଜବାଟୀରେ ରଖି ବସନ୍ତ ଅନୁସନ୍ଧାନରେ ଯାଇଛି । ସଙ୍ଗରେ ସୈନ୍ୟସାମନ୍ତ ସମସ୍ତେ ଯାଇଛନ୍ତି । ଇତ୍ୟବସରରେ କେହି ସେ କନ୍ୟାଟିକୁ ଚୋରାଇ ଆଣି ଆମ୍ଭଙ୍କୁ ଦେଲେ ଆମ୍ଭେ ତାକୁ ବିବାହ କରିବୁ, ଆଉ ଯେଉଁ ଲୋକ ଆଣି ଦେବ ତାକୁ ୫୦୦ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବୁ ।

ଶଙ୍କର—ଏହ ସାମାନ୍ୟ କଥା ତ, ଆମ୍ଭେ ତାର ବାଟ କରିଦେବୁ । କିନ୍ତୁ ଆମ୍ଭ ସଙ୍ଗରେ କେହି ସେପରି ହେମତଦାର ଲୋକ ନ ହେଲେ ଆମ୍ଭେ ଏତେ ପଥ ସେ କନ୍ୟାଟିକୁ ଆଣିବୁ କିପରି ।

ଦୁର୍ଜ୍ଜୟ—ଯେ ଲୋକ ଯିବ ସେ ରହିବ କେଉଁଠି ?

ଶଙ୍କର—ସେହି ରାଜ୍ୟରେ ବାହାରେ କୌଣସି ଦେବ ମନ୍ଦିର ନିକଟରେ ଛଦ୍ମ ଭାବରେ ରହିଥିବେ । ଆମ୍ଭେ ସେ କନ୍ୟା ନିକଟକୁ ଯାଇ ତାକୁ ଯେନ ତେନୋପାୟେ ସେହି ମନ୍ଦିର ପର୍ଯ୍ୟନ୍ତ ପଠାଇ ଦେବୁ; ମାତ୍ର ତେଣିକି ତାକୁ ଆଣିବାର ବନ୍ଦୋବସ୍ତ ହେଲେତ ହେଲା ।

ଦୁର୍ଜ୍ଜୟ—ଧନ୍ୟ ଜ୍ୟୋତିଷେ, ଧନ୍ୟ ତୁମ୍ଭର ବୁଦ୍ଧିର ଚାତୁର୍ଯ୍ୟ ।

ଶଙ୍କର—ଆମ୍ଭ ସଙ୍ଗରେ ଆଉ ଯିବ କିଏ ।

ଦୁର୍ଜ୍ଜୟ—ମୁଁ ନିଜେ ଯିବି, ସଙ୍ଗରେ ସେନାପତି ରଘୁବର ଓ କରିମ୍ ମଧ୍ୟ ଯିବେ ।

ଶଙ୍କର — ହଁ, ମାତ୍ର ଗଫୁର ଓ କରିମ୍ ସେ ମୁସଲମାନ ।
ଦେବ ମନ୍ଦିର ମଧ୍ୟକୁ ଯାଇ ପାରିବେ ନାହିଁ ।

ଦୁର୍ଜୟ — ଠିକ୍ କହୁଛ, ସେମାନେ ସନ୍ନିକଟରେ ଯାନ ବାହାନ ସହିତ ସୁସଜ୍ଜିତ ଥିବେ । ମନ୍ଦିର ମଧ୍ୟରେ ମୁଁ ନିଜେ ଥାଇ ଇଙ୍ଗିତ ଦେଲା ମାତ୍ରେ ସେମାନେ ଆସିଲେ ତାଙ୍କୁ ନେବାର ବନ୍ଦୋବସ୍ତ କରିବା ।

ଗୀତ

( କାହା ଭବେ ବୃତ୍ତେ )

ଧନ୍ୟ ହେ ଜ୍ୟୋତିଷେ ଧନ୍ୟ ତୁମ୍ଭର ସାହସ
ଏ କାର୍ଯ୍ୟ ସାଧନେ ନିଶ୍ଚେ ଲଭିବ ପୌରୁଷ ।
ସୁନ୍ଦର ମଞ୍ଜୀକା ଆଣି ମୋ ପାଶରେ ଦେଲେ
ପଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ନେବ ଅବହେଳେ
ସେ ବରବରନା ମୋର ଅର୍ଦ୍ଧାଙ୍ଗିନୀ ଯୋଗ୍ୟ
କାର୍ଯ୍ୟ ଧରି ଧନ୍ୟ ହୋଇ କରିବ ମୁଁ ଭୋଗ୍ୟ ।

ଜ୍ୟୋତିଷ ! ଆଉ ବିଳମ୍ବରେ କାର୍ଯ୍ୟ ନାହିଁ, ଶୀଘ୍ର ପ୍ରସ୍ତୁତ ହୁଅନ୍ତୁ ।

ଶଙ୍କର — ଆଜ୍ଞା; ଟିକେ ବୃଦ୍ଧଙ୍କୁ ମେଳାଣି ନେଇ ଆସେ । ଚଳ ଯାଉ ।

ଦୁର୍ଜୟ — ଯାଅନ୍ତୁ ଯାଅ, ପରେ ସମସ୍ତ ବୁଝି ପାରିବେ ।

---

# ତୃତୀୟ ଅଭିନୟ

## ପ୍ରଥମ ଦୃଶ୍ୟ

( କାରାଗାରରେ ଜ୍ୟୋତିଷ )

ଜ୍ୟୋତିଷ — (ସ୍ୱଗତ) ଦୁର୍ଜୟ ସିଂହ ! ମୋତେ କାରାଗାରରେ ରଖି ମୋର ଶରୀର ସହିତ ନଷ୍ଟ କରିବାକୁ ପାରିଥିଲୁ, ମୂର୍ଖ ତୁ ଏତିକି ବୁଝିନାହଁ, ସତ୍‌ବଂଶରେ ଜନ୍ମ ହୋଇଥିଲୁ, ତୋର ପିତା ବିକ୍ରମ ସିଂହ ଏବଂ ପ୍ରତାପସିଂହଙ୍କ ସେନାପତି କାର୍ଯ୍ୟରେ ଯେ କୀର୍ତ୍ତି ଉପାର୍ଜନ କରି ଯାଇଛନ୍ତି ତାହା ବର୍ଣ୍ଣନାତୀତ । ତୁ ମୂଢ଼ ସେହି ଅକଳଙ୍କ ଚନ୍ଦ୍ର ଭାରତକୁ ରାହୁମୂର୍ତ୍ତି ପୁତ୍ର ଜନ୍ମ ହୋଇଛୁ । ଜନନୀ ! ତୁମେ ଦୁର୍ଜୟ ସିଂହର ଅତ୍ୟାଚାର ସହ୍ୟ କରି ନ ପାରି ମୋ ନିକଟ ଏ ଭେଟି ପ୍ରେରଣ କରି ସ୍ୱର୍ଗ ଗୃହ ଚାଲିଗଲ, ମୋତେ ଟିକିଏ ମାତ୍ର ଦେଖା କରି ଗଲନାହିଁ । ମୁଁ ସତେ ଆଉ ଏ ନର ପିଶାଚ କବଳରୁ ମୁକ୍ତ ହୋଇ ତୁମ୍ଭଙ୍କୁ ଦେଖିବି, ବିଶ୍ୱାସ ନୁହେ ! ହେ ଭଗବାନ ! ମୁଁ ତ ଦୁର୍ଜୟ ସିଂହର କେତେ ଉପକାର କରିଥିଲି ତାର ପ୍ରତିଫଳ କଣ ଏଇଆ ପାଇଲି, ହା ଦଇବ !

ଗୀତ

( ଜୟ ଲଳାନନ୍ଦ ହରି — ବୃତ୍ତେ )

ନବ ନୀରଦବରନ ହେ ତବ
ଦୟା ଏ ଘନେ କାହିଁକି ।
ଶରଣାଗତ ଜନର ଏ ଆରତ
ନ ଶୁଣ କର୍ଣ୍ଣେ କାହିଁକି ॥
କୁରୁସଭା ତଳେ ଦ୍ରୌପଦୀ ଡାକିଲ
କୋଟି ବସ୍ତ୍ର ପ୍ରଭୁ ତାଙ୍କୁ ଦେଇଥିଲ
ଲଜ୍ଜାରୁ ମୁକତ କଲ ଗୋପୀନାଥ
ଏ ଅନାଥେ ବାରେ ଏଥି ଭୁଲିଲ
ଏ ପାଷଣ୍ଡ ଦୁଷ୍ଟ ଦିଏ ମୋତେ କଷ୍ଟ
(ତାଙ୍କୁ) ନଷ୍ଟ କର କୃଷ୍ଣ ଦୟାବନ୍ତ
ତୋହ ବିନା ନାହିଁ ଇଷ୍ଟ ମୋର କେହି
କୃପା ଦୃଷ୍ଟି ଦିଅ ମୋହ ପାଇଁକି

---

## ଦ୍ୱିତୀୟ ଦୃଶ୍ୟ

( ଶଙ୍କର ନାପିତ, ମଞ୍ଜୀକା ସହିତେ ଗୃହ )

ଶଙ୍କର — (ସ୍ୱଗତ) ଦୁର୍ଜୟ ସିଂହ ପ୍ରଭୃତିଙ୍କୁ ରଡ଼ିର ବାହାରେ ରଖି ଏ ନଗର ମଧ୍ୟରେ ପ୍ରବେଶ କଲି, ମାତ୍ର କାହିଁକି ଏତେବେଳ ପର୍ଯ୍ୟନ୍ତ କୌଣସି ଗୋଟିଏ ଲୋକର ସାକ୍ଷାତ ପାଇଲି ନାହିଁ, କଣ କରିବି । ମଞ୍ଜୀକା କେଉଁଠାରେ ଅଛି କହିବ ତାର ସାକ୍ଷାତ କରିବି ! ଆଜ୍ଞା ଏହିଠାରେ ଡାକିଲେ ସମସ୍ତ ଜଣା ପଡ଼ିବ ।
ମହାରାଜାଙ୍କର ଅଧିକରୁ ଅଧିକ ନେଇ, ଦୁଇ ବର୍ଷିତ ହେଇ, ଏ ସହର ଜ୍ୟୋତିଷଙ୍କୁ ଗଣ୍ଡେ ଭକ୍ଷା ମିଳୁ ।

( ସେବକ ଭୃତ୍ୟ ସେନଯାଇ ଜ୍ୟୋତିଷଙ୍କୁ ଦେବା )

ଶଙ୍କର—ମା ? ମୁଁ ଜଣେ ବିଦେଶୀ ଜ୍ୟୋତିଷ । ମୋତେ ବଳେ ଭୋଜନ ମୁତାବକ ଗୋଟିଏ ସିଧା ମିଳୁ, ମୁଠାଏ ଚାଉଳ କଣ ହେବ ? ଯାଅ ତୁମର ମାଲିକଙ୍କୁ ଜଣା, ଜଣେ ଭୂତ ଭବିଷ୍ୟତ-ଜ୍ଞାତା ବୃଦ୍ଧ ଜ୍ୟୋତିଷ ବିଦେଶରୁ ଆସିଛନ୍ତି । କୋଷ୍ଠୀପତ୍ର ଦେଖିପାରନ୍ତି । ଯଦି କାହାର କିଛି ବୁଝିବାକୁ ଥାଏ, ତେବେ ଆସି ପଚାରନ୍ତୁ । ଆମେ କିଛି ମାଗଣା ମାଗୁନାହିଁ ।

ସେବକ—ଅବଧାନେ ! ମୋ ହାତ ଟିକଏ ଦେଖିଲ—

ଶଙ୍କର—ବାଃ, ବାଃ, ଖାସା ହାତଟିଏ, ଜୀବନ କପଟ କିଛି ନାହିଁ । ୧୨୦ ବର୍ଷ ପରମାୟୁ । ଆଚ୍ଛା, ତୁମର ମନେ ଅଛି, ତୁମଙ୍କୁ ବ ୮ ର୍ଷ ମା ୯ ସ ଠେଇଁ ଭଲଭଳି କିଛି ହୋଇଥିଲା ?

ସେବକ—ସତ, ସତ, ମୁଁ ପଗ ଗାଧୋଇ ଗାଧୋଇ ବୁଡ଼ି ଯାଉଥିଲି ! ତେବେ ତେମେ ଏଇଠି ଥାଅ, ମୁଁ ଏ ସବୁ କଥା ଯାଇ ତେମାଙ୍କୁ କହିବି, ତାଙ୍କର ଗୋଟିଏ ଝିଅକୁ ପଚାରିବାକୁ ଥିଲା ।

( ପ୍ରସ୍ଥାନ )

ଶଙ୍କର—(ସ୍ୱଗତ) ଦେଖାଯାଉ, ଚେଷ୍ଟା କରୁ କରୁ ଯେଉଁ ପର୍ଯ୍ୟନ୍ତ ଯିବ । ପୁଣି ପାଉଟା ଠିକ୍ ଥିଲା ପରି ଜଣା ପଡ଼ୁଛି । ଏଇ ଆସିଲେ ସବୁ !

( ସମସ୍ତେ ଆସି ଜ୍ୟୋତିଷଙ୍କୁ ପ୍ରଣାମ କରଣ )

ଶଙ୍କର—ମା, ଅଷ୍ଟ ସୁଲକ୍ଷଣୀ ହୁଅ; ଧନଜନ ଭୋଗ-ଲକ୍ଷ୍ମୀ ମାଡ଼ଯାଉ । ନବଗ୍ରହ ଏକାଦଶସ୍ଥ ଶୁଭଫଳ ପ୍ରଦାନ କରନ୍ତୁ ।

କୁନ୍ଦଲତା—ହଇ ହେ ଅବଧାନେ, ତମକୁ ସତ ସାଧି ଆସେ ।

ସେବକ—କେଉଁ ଆସେ ବୋଲି କଣ ପଚାରୁଛନ୍ତି-ମ, ମୋ ହାତକୁ ଭଲ ଖାଲି ଦେଖି ଦେଖି ସବୁ ଯାହା ମୋ ପିଲାଟି ଦିନୁ ଘଟିଥିଲା ଠିକଠିକା କହିଗଲେ ।

କୁନ୍ଦଲତା—ନେମାମଣି, କଣ ପଚାରିବ ପଚାରୁ ନା ।

ଶଙ୍କର—ମା ! ସୃତବତ୍ସର, ଦୈବଜ୍ଞ ଜ୍ୟୋତିଷ ଏ-ମାନଙ୍କୁ ଲଜ୍ଜା କରିବାର ନୁହେଁ । ଯାହା ମନର କଥା ତା ପ୍ରକାଶ କରନ୍ତୁ ।

ମଲ୍ଲିକା - ଗୀତ

( ବନ୍ଧୁରେ ନିଷ୍ଠୁର ମରଣ – ବୃନ୍ଦେ )

କହ ହେ ଜ୍ୟୋତିଷ ମୋର ପଡ଼ୁଛି କି ଦଶା ।
ଅବରତେ କୁଲକ୍ଷଣ ଦେଖି ଉଡ଼େ ହଂସା
ହେ ଜ୍ୟୋତିଷେ । ପଦ ।
ଦକ୍ଷ ନେତ୍ର ଦକ୍ଷବାହୁ କମ୍ପୁଛି ମୁହୁର୍ମୁହୁ ।
ଜଣାଯାଏ ସ୍ୱପନେ ଆଉ ନାହିଁ ମୋ ଭରସା ।
ଧବଳେ ପେଚକ ଉଡ଼ି, ଶୁଭୁଅଛି ଘଡ଼ ଘଡ଼,
କି ବିପଦ ମୋତେ ମାଡ଼ି ଆସିବ ସହସା ।
କୁହୁଡ଼ି ଫୋଟିଲ ପରି, ଦିଗ ଦଶେ ଢଳିବ
ଜଳ, ସଂଶୟ ନ କର କି ହେବ ଦଶା ହେ ।

ଜ୍ୟୋତିଷେ ! କହନ୍ତୁ ଏ ସବୁ ଘଟିବାହାର ମୋର ଭବିଷ୍ୟତ ଗତି କଣ ହେବ ? ଏଇ ନିଅନ୍ତୁ ମୋ ଜନ୍ମ-ପତ୍ରିକାଟି ଦେଖନ୍ତୁ ।

ଶଙ୍କର—ଜନ୍ମ ପତ୍ରିକା କଣ ଦେଖିବା, ତୁମେ ଯେତେ-ଗୁଡ଼ିଏ କୁଲକ୍ଷଣ କହିଗଲଣି, ସେଥିରେ ତୁମର ଭାରି କିଛି ଅନିଷ୍ଟ ହେବାର କଥା । ତୁମେ ଏଥିର ସଦ୍ୟ ପ୍ରତିକାର କରିବା ଦରକାର । ତୁମର ମିଥୁନ ରାଶିକୁ ବର୍ତ୍ତମାନ ବୃହସ୍ପତି ଅଷ୍ଟମ । ତୁମେ ଅବିବାହିତା, ନଚେତ୍ ତୁମର ଏଠି ବୈଧବ୍ୟ ଯୋଗ ଘଟିବାର କଥା ।

ସେବକ—ଆଜ୍ଞା ଅବଧାନେ, କହିଲ ଭଲ, ତେମାଙ୍କର ଶୁଭପରିଣୟ କେବେ ହେବ ?

ଜ୍ୟୋତିଷ—ଏଇ ତିନିମାସ ମଧ୍ୟରେ ହେବାର କଥା ।

କୁନ୍ଦଲତା—ଆଜ୍ଞା କେଉଁଠି ହେବ ?

ଜ୍ୟୋତିଷ—ତେମାଙ୍କ ସମ୍ବନ୍ଧରେ ଗୋଟିଏ ପାତ୍ର ବୋଧହୁଏ ଠିକ୍ ହୋଇଥିଲା; କିନ୍ତୁ ସେ ପାତ୍ରଟି ଯୋଗ୍ୟ, ଖୁବ୍ ସମ୍ଭ୍ରାନ୍ତ ବଂଶୀୟ, ଆଉ ହେଲେ କଣ ହେଲା, ଏଇ କେତେଦିନ ମଧ୍ୟରେ ତାଙ୍କୁ ସର୍ପ । ସେଥିଯୋଗୁ ତେମାଙ୍କୁ ଏପରି ସବୁ କୁଲକ୍ଷଣ ଦେଖାଯାଉଛି ।

ସେବକ—ସତ୍ୟ ! ଆଉ ସନ୍ଦେହ ରହୁଛି କଣ ? ସେ କଥାକୁ ଏ କଥା ତ ଠିକ୍ ଘଟିଲା । ହଇ ହୋ ଅବଧାନେ ! ଏଥିର କିଛି ପ୍ରତିକାର ବାଟ ନାହିଁ ।

ଜ୍ୟୋତିଷ—ତାଙ୍କୁ କଣ ଟିକିଏ କଷ୍ଟ ପଡ଼ିବ, କହୁଛ କିଏ ?

ମଲ୍ଲିକା—ମଞ୍ଜି ଲୋ ! ମୁଁ ଆଗରୁ ଯାହା ଅନୁମାନ କରୁଥିଲି, ଏବେ ସେଇଆ ଘଟିଲା । ଜ୍ୟୋତିଷେ ! ମୋତେ ତାର ପ୍ରତିକାରର ବାଟ କହନ୍ତୁ ।

ଜ୍ୟୋତିଷ—ଆଚ୍ଛା, ତୁମର ଗଡ଼ର ବାହାରେ କୌଣସି ଶିବମନ୍ଦିର ଅଛି କି ?

କୁନ୍ଦଲତା—ହଁ ଅଛି ।

ଜ୍ୟୋତିଷ—କେଉଁଠି ?

ସେବକ—ନଈ ଘାଟ ପାଖରେ ତ, ଆମ୍ଭେମାନେ ନିତି ଯିବା ଆସିବା କରୁ । କଣ ହବ କହିଲ—

ଶଙ୍କର—ବର୍ତ୍ତମାନ ଅଡ଼େଇ ଦିନ ପର୍ଯ୍ୟନ୍ତ ସେ ଶିବ ମନ୍ଦିରରେ ଜେମା ନିଜେ ସନ୍ଧ୍ୟା ଛଅଟାଠାରୁ ସାତ ଟା ପର୍ଯ୍ୟନ୍ତ ଯେବେ ଗୋଟିଏ ମନ୍ତ୍ର ଜପ କରିବେ, ତେବେ ସବୁ ବିଘ୍ନ ଛୁଟି ଯିବ । ସେ ମନ୍ତ୍ରଟି ଆମ୍ଭେ ଲେଖିଦେବା ।

କୁନ୍ଦଲତା—ସେ କଣ ଏକା ଏ କାର୍ଯ୍ୟ କରିବାକୁ ଯିବେ ? ତା ତ ହେବ ନାହିଁ !

ଶଙ୍କର—ତୁମ୍ଭେମାନେ ସମସ୍ତେ ଯାଇପାର, କିନ୍ତୁ ପୁରୁଷର ଛାଇ ସେଠାରେ ପଡ଼ିବ ନାହିଁ । ମୋତେ ବିଳମ୍ବ ହେଲାଣି । କଣ ହୁକୁମ ଦେଉଛ ହୋଇ ଯାଉ । ମୁଁ ଯାହା କହିଲିଣି ତୁମ୍ଭେ ଶୀଘ୍ର ତାର ବନ୍ଦୋବସ୍ତ କରିଦିଅ, ସବୁ ବିଘ୍ନ ଛୁଟିବ ।

ମଲ୍ଲିକା—ସଖି ! କଣ କରିବ, ତୁମ୍ଭେମାନେ ମୋତେ ସାହାଯ୍ୟ ଦେବ ।

କୁନ୍ଦଲତା—ସ୍ୱୀକାର କଥା ନା କଣ ? ପ୍ରାଣ ମାଗିଲେ ଦେଇ ପାରୁ, ଏହା ତ କଥା !

ମଲ୍ଲିକା—ଜ୍ୟୋତିଷେ ! ଯାଆନ୍ତୁ ପୁଣି କେବେ ଆସିବେ ?

ଶଙ୍କର—ଆଜି ହେଲା ଶୁକ୍ରବାର, ଆଜିର ବାର ଠିକ୍ ଆଠଦିନେ ଆସି ପହଞ୍ଚିବୁଁ । ଜୟ ସେ ଜଗନ୍ନାଥ ।

(ଏହା କହି ପ୍ରସ୍ଥାନ)

ମଲ୍ଲିକା—ସଖି ମଞ୍ଜି, ମୋ ମନ ଆଉ କେଉଁଠି ଲାଗୁ ନାହିଁ । (ପ୍ରସ୍ଥାନ)

ଶଙ୍କର—(ସ୍ୱଗତ) ପାଞ୍ଚଶହ ସ୍ୱର୍ଣ୍ଣମୁଦ୍ରା, ବାଃ ବାଃ ଏକାବେଳକେ ପାଞ୍ଚଶ । ଏ ଅରକ୍ଷିତ ଦଶା କହିଗଲା । ଯିବା ଦୁର୍ଜୟ ସିଂହଙ୍କୁ ସେ ଶିବମନ୍ଦିର ନିକଟରେ ପହଞ୍ଚାଇବା । (ପ୍ରସ୍ଥାନ)

—*—

## ତୃତୀୟ ଦୃଶ୍ୟ

(ଦୁର୍ଜୟ ସିଂହ, ଗଫୁର ଖାଁ, ଶଙ୍କର ନାଏକ, ଦୂତ, ମଲ୍ଲିକା ଓ ସହଚରୀବୃନ୍ଦ ।)

ଦୁର୍ଜୟ—ଜ୍ୟୋତିଷେ ! ଆମ୍ଭେମାନେ କେଉଁଠାରେ ଅପେକ୍ଷା କରିବା, ତାଙ୍କ ଆସିବା ଆଉ କେତେ ବିଳମ୍ବ ପଡ଼ିବ ।

ଜ୍ୟୋତିଷେ—ଆମ୍ଭେମାନେ ଏହି ମନ୍ଦିରର ପଛ ପାଖ ସେ ଗଛ ଲହାଡ଼ରେ ବସିବା । ଯେପରି କନ୍ୟାର ଦୃଷ୍ଟି ଆମ୍ଭମାନଙ୍କଠାରେ ନ ପଡ଼େ, ସେ ତ ବର୍ତ୍ତମାନ ପ୍ରାୟ ଆସିଯିବେ ।

ଦୂତ—ଅବଧାନେ ! ଏଇ ତ କେତେଗୁଡ଼ିଏ ମାଇପେ କାନ୍ଧିକି ଏ ଆଡ଼କୁ ବାହେଇଛନ୍ତି ।

ଶଙ୍କର—ମହାରାଜ ! ଲୁଚଯାନ୍ତୁ, ଏ ତ ସେମାନେ ଆସିଲେ ପରା ।

ଜେମା ଓ ସହଚରୀଙ୍କ ଗୀତ—

( ମଦ ନଶା ଠା କେରେ—ଦୁଗ୍ରେ )

ପ୍ରିୟ ସଜନୀ ଗୋ ଦେଖ ସନ୍ଧ୍ୟା ହେଲାଣି
ଖେଚରବୃନ୍ଦ ରବ କଲେ ପଡ଼ିଗଲାଣି,
ନଭମଣି ଦୂରରେ
ଭରିଲେଣି ଘନ ଆକାଶେ
ସୁବାସିତ କୁମୁଦୀ ବିକଶିଲାଣି
ବନେ ନାନା କୁସୁମ
ଫୁଟି ଅଛନ୍ତି ଦେଖ କି ମନୋରମ
ଦକ୍ଷିଣୋ ପବନେ ବାସ ବହଟିଲାଣି !

କୁନ୍ଦଲତା—ସ୍ୱଳ ତ ଆସିବ, ଏମିତ ଗୋଡ଼ ନଟେଇ ନଟେଇ ପକାଉଛ କଣ ମ ?

ସେବକ—ତେମେ ଲେ ଭଉଣୀ ଖାଲି ଯିଲ କହ, ମୁହଁରେ ପଥ ହୋଇଛ ଯେ, ତମକୁ କହୁ ବାଧୁ

ନାହିଁ । ମୁଁ ତ ଜର ଶରଦରେ ସଢ଼ ପଡେଯାଉଛି,
ମୋର ବଳ କୋଉଠୁ ଆସିବ ଲୋ ମା' ।

ମଲ୍ଲିକା—ସଖି ! ସବୁ ଦିନେ ତ ଦର୍ପଣ ପାଖକୁ ଆସୁଥାଇ, କେଡ଼େ ଭଲ୍ ଦିଶୁ ଲାଗେ, ଆଜି କାହିଁକି ଏ ସ୍ଥାନଟା ଏପରି ମାଡ଼ ମାଡ଼ ପଡୁଛି !

ସ୍ନେହବତୀ—ହିଁ, ହିଁ, ଖାଲି ସାହିଁ ସାହିଁ ଶଉ ଶଉ ହେଲାପରି ଲାଗୁଛି ଜେମାଦେଈ ! ତମ କାହିଁ ବଢ଼ାଅ ତଣ୍ଡିଳ ଉଠେଇବା ।

( ଜେମାର ହରଙ୍କ ନିକଟରେ ସ୍ତୁତି )

ହର ହେ ମୋର ହର ଦୁର୍ଦ୍ଦଶା !
ହେ ଚନ୍ଦ୍ରଶେଖର    ଭୋଳା ମହେଶ୍ବର
ଶ୍ମଶାନବାସୀ ବିଭୂତି ଭୂଷା ।
କଇଳାସପତି    ପ୍ରଭୁ ଉମାପତି
ଘୋଟିଛି ମୋତେ ଏ ଘୋର ବିବଶା ।
ଆହେ ତ୍ରିଲୋଚନ    ମୋ ଦୁଃଖ ଖଣ୍ଡନ
ନ କଲେ ନିଶ୍ଚୟ ଉଡ଼ିବ ହଂସା ।। ୧ ।।
ଦେବ ଦେବ ମହା-    ଦେବ ଶମ୍ଭୁ ଶିବ
ଶମ୍ଭୂବଣ ମୋର ଶୁଣ ଦୁର୍ଦ୍ଦଶା ।
ହେ ଚନ୍ଦ୍ରମୌଳି    ବାମଦେବ ଶୂଳି
ଏ ବାମାର ବାରେ ପୂରାଅ ଭରସା ।

(ଇତ୍ୟବସରରେ ଦୁର୍ଜ୍ଜୟ ପ୍ରଭୃତି ପ୍ରବେଶି ମଲ୍ଲିକାକୁ ଧରନ୍ତେ । )

ଦାସୀଗଣ—ଜୟ ରୁମ୍ଭେ, ଆମ୍ଭ ଜେମାମଣିକ କେଉଁଠି ନେଉଛ କହ, କହ !

ମଲ୍ଲିକା— ସଖିଏ ! ମୋତେ ଧର ।

ଦାସୀଗଣ - ହେ, ଆମ ଜେମାକୁ ଛାଡ଼ିଦିଅ ।

ଦୁର୍ଜ୍ଜୟ —( ଠେଲି ଦେଇ ପ୍ରସ୍ଥାନ )

ମଲ୍ଲିକା – ସଖି ଟେ' ।

ଦାସୀଗଣ—    (ଗୀତ)

( ଆଜ ଦେଖିଲ ବନମାଳୀ ଲୋ – ବୃତ୍ତେ )

ପ୍ରିୟ ସଜନୀ ଗୋ,
ଆମ୍ଭରେ ଛାଡ଼ିଲେ୍ କେଣିକି ।
ହରିଲ ତୋରେ ଧନ    ନ ରହେ ପିଣ୍ଡେ ପ୍ରାଣ
ଅନ୍ଧାର ଦଶେ ଦିଶୁ ଯେଣିକି !
କ ଦେଖି ବୋଲି ଘରେ    ଜଗ ଜନକୁ ତା'ରେ
ଲଗ ଲଭିବୁ କଷ୍ଟେ କେଣିକି ।
ଏ ଅଲେଖା ପତ୍ରଣ    ଆଉ କି ପ୍ରୟୋଜନ
ଶ୍ବାସ ଦେବା ଗୋ ଭୁଲ ପାଣିକି । (ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

( ପ୍ରତାପ ସିଂହ, ଅନ୍ନପୂର୍ଣ୍ଣା ଓ ସହଚରୀ )

ପ୍ରତାପ—ଦେବ ! ଆମ୍ଭମାନଙ୍କ ଏ ପୋଡ଼ାକପାଳକୁ ସବୁ ଅମଙ୍ଗଳ ଆସି ଘୋଟୁଛି । ପୁତ୍ରଜନ୍ମ ଠାରୁ ଯେତେବେଳେ ପୁତ୍ରର ଶୁଭ କାର୍ଯ୍ୟମାନ ଦେଖି ଏ ନେତ୍ର ସଫଳ କରିଥାନ୍ତେ, ସେତେବେଳେ ପୁତ୍ରକୁ ହରାଇବସିଲୁ । ପୁଣି ଏଠାରେ ପାଦ ପକାଇଲାମାତ୍ରେ ଏ କନ୍ୟାଟିକୁ ଜୟ ନେଇଗଲେଣି । କଣ କରିବା, ନବାବ ଖାଁଙ୍କୁ କଣ ବୋଲି କହିବା । ସେ ବସନ୍ତର ସନ୍ଧାନକୁ ଗଲାବେଳେ ମୋତେ ବାରମ୍ବାର ଏହି କନ୍ୟାଟିର ତତ୍ତ୍ବ ନେବାକୁ କହିଯାଇଥିଲେ । ମୁଁ ମୂର୍ଖ କଣ କଲି ! ଏବେ କଣ କରିବା । ହେ ଭଗବାନ, ଆମ୍ଭମାନଙ୍କ ପ୍ରାଣ ଛାଡ଼ିଯାନ୍ତା ହେଲେ, ଭଲ ହୁଅନ୍ତା । ନବାବ ଖାଁ ସଭାଠାରୁ ଫେରିଆସି ମଲ୍ଲିକାର ଦୁର୍ଦ୍ଦଶା ଶୁଣି ଅବାକ୍ ହୋଇ ବସିଛନ୍ତି ।

ଅନ୍ନପୂର୍ଣ୍ଣା—ନାଥ ! ନବାବ ବୋଧହୁଏ ଆମ୍ଭମାନଙ୍କ ଠାରେ ବିରକ୍ତ ହୋଇ ଆଉ ଆମ୍ଭ ନିକଟକୁ ଆସୁନାହାନ୍ତି । କଣ କରିବା । ନାଥ ! ମୁଁ ବସନ୍ତକୁ ହରାଇଥିଲି, ପୁଣି ପର ଝିଅଟିର ଅଦୃଷ୍ଟରେ ରହି ତାକୁ ମଧ୍ୟ ହରାଇଲି । ଶୁଣ ନାଥ, ଆମ୍ଭମାନଙ୍କ ଗ୍ରହ ତ ଖରାପ, ଆମ୍ଭେ ଯେଉଁଠି ପାଦଦେବା ସେ ସ୍ଥାନର ଶିରୀ ଯିବ । ମୃତ୍ୟୁ ଆମ୍ଭମାନଙ୍କର ଶ୍ରେୟସ୍କର ।

ନବାବ (ପ୍ରବେଶ) ବନ୍ଧୁ ! ବୃଥା ଚିନ୍ତା ଆଉ କରନାହିଁ । ମୁଁ ଦାସୀମାନଙ୍କଠାରୁ ସେ ସବୁ ବିଷୟ ଭଲକରି ଶୁଣିଲିଣି । ସେଥିରୁ ସ୍ପଷ୍ଟ ଜଣାପଡୁଛି, ଦୁର୍ଜ୍ଜୟ ସିଂହ ବୃଦ୍ଧିମ କରି ମଲ୍ଲିକାକୁ ମୋର

ଅପହରଣ କରି ନେଇଛି । ବର୍ତ୍ତମାନ ସଦ୍ୟ ପ୍ରତିକାର କରିବା ଧର୍ମାଧୂ । ମୋ ସଙ୍ଗରେ ଚାଲନ୍ତୁ ।

ପ୍ରତାପ—ଚାଲ ବନ୍ଧୁ !

—*—

## ପଞ୍ଚମ ଦୃଶ୍ୟ

( ଦୁର୍ଜ୍ଜୟସିଂହ, ଗଫୁର ଖାଁ, ଶଙ୍କର ନାୟକ, ଦୂତ, ମଲ୍ଲିକା, ବନ୍ଦୀ ଓ ଜନତା )

ମଲ୍ଲିକା—ହେ ଯୁବକ ! ମୋତେ ଛାଡ଼ଦିଅ, ମୁଁ ତୁମର କିଛି ଦୋଷ କରି ନାହିଁ । ମୋତେ କାହିଁକି ଏତେ ହଟହଣା କରୁଛ ?

ଦୁର୍ଜ୍ଜୟ—ତୁମେ ରାଜକନ୍ୟା, ତେବେ କୌଣସି ରାଜପୁତ୍ରର ଅର୍ଦ୍ଧାଙ୍ଗିନୀ ହୋଇଥାନ୍ତ । ତେବେ ଆମ୍ଭଙ୍କୁ ପତିରେ ମ କରିବାଟା ଅନ୍ତ କଣ ? ଆମ୍ଭେ କଣ ଉପଯୁକ୍ତ ନୋହୁଁ ।

ଦୂତ—ହଇ ଟେ ରାଜକନ୍ୟା ! ଆମ ରାଜାଙ୍କ ରୂପକୁ ଆପଣଙ୍କ ରୂପ ତ ଠିକ । ଆମ ରାଜାଙ୍କର ପାଟରାଣୀ ହୋଇ ବସିବ । ଆଉ ମନରେ ଏତେ ଦୁଃଖ କାହିଁକି କରୁଛ ?

ମଲ୍ଲିକା— ଗୀତ

( କ ଜ୍ଞାତି କରକ ଭେଣିକ—ଝୁଲେ )

ନରପତି ହୋଇ କର ଅନ୍ୟାୟ
ପର ନାରୀରେ ବଳାଇଛ ମତି
ଶାସ୍ତ୍ରରେ ଅକୀର୍ତ୍ତି ଦେଉଛି ଜାଣ
ସର୍ବାସ୍ତ୍ର ନୃପଙ୍କୁ ବଡ଼ ଦୂଷଣ
ଆହେ ଧାର୍ମିକ ରାଜା
ଅଧର୍ମ କଥା ନ କରନ୍ତି ଆଜ୍ଞା ।

ହେ ବୀର ! ତୁମ୍ଭେ ରାଜପୁତ୍ର ହୋଇ ଏପରି ଅନ୍ୟାୟ କାର୍ଯ୍ୟ କରିବା କଣ ଉଚିତ ମନେ କରୁଛ ?

ଦୁର୍ଜ୍ଜୟ—କିଛି କ୍ଷତି ନାହିଁ, ଆମ୍ଭେ ରାଜା, ତୁମ୍ଭେ ରାଜକନ୍ୟା । ଏଥିରେ ଅନ୍ୟାୟ କଣ ହେଉଛି ? ସେ ସବୁ ଛାଡ଼ଦିଅ ।

ମଲ୍ଲିକା— ଗୀତ

ଚନ୍ଦ୍ରସେନ ଯାକୁ ବରିଛି ମୁହିଁ
ତାଙ୍କ ବିନା ଅନ୍ୟ କେ ମୋର ନାହିଁ
କାହିଁକି ମୋତେ କର ହରବର
ପତିବ୍ରତା ଧର୍ମ ନ ଛୁଟା ମୋର
ଆହେ ନରପତି
ପର ପୁରୁଷେ ନାହିଁ ମୋର ମତି ।

ହେ ଯୁବକ ! ମୋର ଧର୍ମପିତା ମୋ ନିମିତ୍ତ ପତି ଅନ୍ୱେଷଣେ ଯାଇଛନ୍ତି, ପ୍ରାୟ ଏହି ଦୁଇଦିନ ମଧ୍ୟରେ ଫେରି ଆସିବେ । ତୁମ୍ଭେ ମୋତେ ଛାଡ଼ଦିଅ, ମୁଁ ପିତାଙ୍କ ଠାରୁ ଯାହାଙ୍କ ନାମ ଶୁଣିଛି, ତାଙ୍କୁ ସେହି ମୁହୂର୍ତ୍ତରେ ପତିରୂପରେ ବରଣ କରିଛି । ମୋତେ କ୍ଷମାଦିଅ, ମୋର ପତିବ୍ରତା ଧର୍ମରେ ବାଧା ଦିଅନା ।

ଦୁର୍ଜ୍ଜୟ—ସୁନ୍ଦରୀ ! ସେ ଉପଦେଶରୁ କଣ ମିଳିବ ! ମୁଁ ସେ ସବୁ କିଛି ଶୁଣିବି ନାହିଁ । ଜ୍ୟୋତଷେ ! ଆମ ସୁନ୍ଦରୀ ମଣିଷଙ୍କୁ ଧରେଇ ଦେଲଣି, କପାଳ ନବା କହିଲ ?

ଜ୍ୟୋତଷେ—ଦୂତ ଟିକିଏ ବାନ୍ଧିକରି ନେଇ ଯାଉ ।

ଦୂତ—କାହିଁକି, ଆପଣ ନେଉ ନାହାନ୍ତି ? ମୁଁ ଅଣ୍ଡିରି ପୁଅଟାଏ ମାଇକିନିଆଟାକୁ କାନ୍ଧରେ ବସାଇକରି ନେବି । ନା, ନା, ମୁଁ ପାରିବି ନାହିଁ ।

ଗଫୁର—କନ୍ଧର ଲେନେକୋ ହୋଗା ।

ଦୂତ—ଆରେ ଯା ହୋ, ମୋତେ ଗୋଲ ଦେଖିଲ ନା କଣ ? ଟେକ୍କା ଜାତକୁ ସେ ଠାଣ, ତେମେ ସିନା ଚୁରି ଦରଜଟା ଲଗା ପକାଅ । ନହନା ତେମେ ।

ଗଫୁର—ହାମ ଲୋକତା ମୁସଲମାନ ଧରମ୍‌ନେ ଏସା କାମ ନେହିଁ ।

ଦୂତ—ତେବେ ଆମର ଧର୍ମରେ ଅଛି ମାଇକିନିଆ ମୁଣ୍ଡେଇ କରି ଯିବୁ ।

ଜ୍ୟୋତଷେ—ମହାରାଜ, ଏତେ ଲୋକଙ୍କୁ ଖୋସାମତ କାହିଁକି ? ଆମେ ଧରିବୁଁ ।

ମଲ୍ଲିକା—ଓହୋ ! କାହିଁକି ମୋତେ କୁଆଡ଼େ ନେଇ ଯାଉଛ ? କିଏ କେଉଁଠାରେ ଅଛ ମୋତେ ଏ ବିପଦରୁ ରକ୍ଷାକର ।

ଗୀତ

ଅହେ ଦେବାଦେବ କେ କେଣେ ଅଛ
ଏ ଅଭାଗିନୀ ଦୁଃଖ ଦେଖି ନ ଆସ
ନିଦାଣ କଲେ ମୁଁ ଗଲିଟି ସରି
ମଲି ଏ ନୃଶଂସ କବଳେ ପଡ଼ି
ଅହେ ଧର୍ମ ଦେବ
ତୁମ୍ଭ ବିନା ସାହା କେ ମୋର ହେବ । ୩ ।

ହେ ଦଣ୍ଡଗୋପାଳେ ! ହେ ଦେବାଦେବୀଗଣ ! କେ କେଉଁଠାରେ ଅଛ, ରକ୍ଷାକର, ରକ୍ଷାକର !

(ନେପଥ୍ୟେ) ଭୟନାହିଁ ଧୈର୍ଯ୍ୟ ଧର । (ପ୍ରବେଶି)

ବସନ୍ତ— ତୁଷ୍ଟ କରେ ସେହି ଶତ୍ରୁକୁଳାନ୍ତକ ଦୁର୍ଜୟ ସିଂହ ।
କହ ଏ କାହାର କନ୍ୟା,
ବଳେ ବଳେ କରୁଛୁ ହରଣ ? ମୂର୍ଖ କ୍ଷତ୍ରିପୁତ୍ର ହୋଇ ,
ଏ ଜଘନ୍ୟ କାର୍ଯ୍ୟେ ହୋଇଛୁ ପ୍ରବୃତ୍ତ ।

ଗୀତ

(ଆଲେ ଦୁଷବୃଷ—ତୁଭେ)

କହ ରେ ବର୍ବର ଏ କନ୍ୟା କାହାର
କେଉଁଭଳି ନେଉଛୁ ବଳେ
ଦେଖୁନାହୁଁ ଯୋଷା ଲଭୁଛି ଏ ଦଶା
ତୋ ପଦ ତଳେ ଆକୁଳେ
ମୁକ୍ତ ନ ଦେଲ ବାରେ
ତୁହେତ କାହିଁ ହେଜଯାଉ ଅଛୁ ରେ ତାରେ । ୧ ।

ମୂର୍ଖ, ସେ କନ୍ୟାର ବଦନ ଦେଖି ତୁମମାନଙ୍କ ମନରେ ଦୟା ଆସୁନାହିଁ । ନିର୍ବୋଧ ! ଶୀଘ୍ର ତାକୁ ବନ୍ଧନରୁ ମୁକ୍ତ କର, ନଚେତ୍ ଦେଖିବୁ ।

ଦୁର୍ଜୟ—(ସହାସ୍ୟେ) ଅଚ୍ଛା, ଅଚ୍ଛା ।

ବସନ୍ତ— ଗୀତ

ଅରେ ନରାଧମ କରୁ ମନ୍ଦ କର୍ମ
ସମ୍ଭବ ନାହିଁଟି ଧର୍ମ
କେତେ ଦିନ ପାଇଁ କରିବୁ ତୁ ମସ୍ତି
ଧରି ଏ ମାନବ ଜନ୍ମ
ଲକ୍ଷ ମୋକ୍ଷ ନ କଲେ
ମୂର୍ଖ ପଡ଼ିବ ନରକେ ଯମର କବଳେ । ୨ ।

ମୂର୍ଖ ! ତୁ ଯେଉଁ ନୃଶଂସ କାର୍ଯ୍ୟରେ ପ୍ରବୃତ୍ତ ହୋଇଛୁ, ନିଶ୍ଚେ ତାର ଫଳ ଅନ୍ତରେ ଭୋଗ କରିବୁ । ଯେବେ ଭଲ ଚାହୁଁ ଅଛୁ, ଏ କନ୍ୟାକୁ ମୋକ୍ଷ ଦେ ।

ଦୁର୍ଜୟ—କିଏ ତୁରେ ଶିଶୁ,
କାହାବଳେ ଏଡ଼େ ଦମ୍ଭେ କହୁ ମତେ ଏପ: ।

ବସନ୍ତ—ମୂର୍ଖ ! ଚିହ୍ନି ପାରୁନାହୁଁ ?

ଦୂତ—ସେନାପତେ ! ଏ ତ ସେହି ।

ଦୁର୍ଜୟ— ଗୀତ

ଆରେ ଆରେ ଛୋଟା ଏତିକି ଟୋକଟା
ଏତା ଅହଂକାର କରୁଛୁ କେତେ
ଗୋଲଟା ମାଡ଼ରେ ତୋ ପିଠି ଭାଙ୍ଗିବ
ହଟହଟା ବଡ଼ କଲୁଣି ମୋତେ ।
କଥାରେ କଥାରେ ପାଉ ତୁ ବଳ
ମଥା ଫିଟି ତୋର ଦେବ ଦୁଆର
ଲଜ୍ଜଲାଣି ତୋତେ ଧରମ କରମ
ଭାସିଯିବୁ ମୂର୍ଖ ଏକାକ-ସ୍ରୋତେ ।
ଧର୍ମଧାମେ ତୋତେ ନ ଦେବ ବାସ,
ଧରି ପଡ଼ିଛୁ ତୁ ଆରେ ନୃଶଂସ,
ଅଣ୍ଡ ବଂଶ ତୋର ଖୋଜି ମୁଁ ମାରିବି,
ଧ୍ୱଂସ ହେବା ଯୋଗ ପଡ଼ିଛି ଏବେ ।
ମୂର୍ଖ ! ରକ୍ଷା ଆଉ ନାହିଁ ତୋତେ,
ଖଣ୍ଡ ଖଣ୍ଡ କରି ଗଣ୍ଡି ମୁଣ୍ଡ ଆରେ
ନଚେତ୍ ମୁଁ ଖୁଆଇବି ଶୃଗାଳ କୁକୁରେ ।
ଦେଖିବୁ,
ତୋ କେଉଁ ବୋଉ ଆସି ପଡ଼ିବ ପିଠିରେ ।

ବସନ୍ତ—ମୂର୍ଖ ! ଦଳବଳ ଅଛନ୍ତି ତୋ ସଙ୍ଗେ,
ନଚେତ୍ ଏକାକୀ ତୁ ଥିଲେ,
ଏ ଦାମ୍ଭିକ ପଣ ତୋର ଦେଇନ୍ତି ଛଡ଼ାଇ ।

ଦୁର୍ଜୟ—ମେଣ୍ଢା ଖଣ୍ଡେ
ତୁ କଣ ଜାଣୁ ଯୁଦ୍ଧ !
ଏକା ସ୍ୱସ୍ତ୍ରଭାବେ କାଢ଼ିଦେବି
କଲ୍ଲ ଦୁଧ ତୋର,

ଏକାକୀ ଯୁଝିବୁ ପର
ଆସ ମୋର ସଙ୍ଗେ,
ଦେଖିବ ତୋ ଗାରବ ବଡ଼ିମା ।
(ଅଭୟ ମଲ୍ଲ କ୍ରୀଡ଼ାରେ ଦୁର୍ଜୟ ପରାସ୍ତ ହେବାରୁ ତରବାରି ହସ୍ତେ ଯୁଦ୍ଧୋଦ୍ୟତ)

ଦୁର୍ଜୟ—ଆସ ମୂର୍ଖ ! ଅସି କ୍ରୀଡ଼ାରେ ହୁଅ ଉଦ୍ୟତ ।

ବସନ୍ତ - ଅସମ୍ଭବ କହୁଅଛ ତୁମ୍ଭେ ।
ନରଦେବ ମୁଁ,
ନାହିଁ ଅସ୍ତ୍ର କରେ ! (ନେପଥ୍ୟେ) ଭୟ ନାହିଁ,
ହୁଅ ଅଗ୍ରସର,
ପୃଷ୍ଠଭଙ୍ଗ କ୍ଷତ୍ରୀ ପକ୍ଷେ ନୁହଇ ଶୋଭନ ।

ବସନ୍ତ - (ସ୍ୱଗତ) ଅବଶ୍ୟ
ପୃଷ୍ଠଭଙ୍ଗ ମମପକ୍ଷେ ନୁହଇ ଶୋଭନ ।
ଭଗବାନ !
ତୁମେ ମୋର ଅଗତିର ଗତି, ଦୁର୍ବଳର ବଳ !
ଏ ସମୟରେ ଏ ଅଧୀନକୁ ସାହାଯ୍ୟ ପ୍ରଦାନ କରି
ଅକ୍ଷୟ କୀର୍ତ୍ତି ରଖନ୍ତୁ ।
(ପ୍ରକାଶ୍ୟେ) କିଏ ଦେବେ ଖଣ୍ଡେ ଅସ୍ତ୍ର ?

ଦୁର୍ଜୟ—(ସହାସ୍ୟେ) ଅସ୍ତ୍ର ! ଅସ୍ତ୍ର ନ ପାଇ ବୁଝି ଯୁଦ୍ଧୋଦ୍ୟୋଗ ।
(ନେପଥ୍ୟରୁ କମଳା ଆସି ଅସି ଦେବା)

କମଳା—ଶୀଘ୍ର ବତ୍ସ ! ଧର ଅସ୍ତ୍ର ହୁଅ ଅଗ୍ରସର । ଯୁଦ୍ଧେ ଜୟୀ ହୋଇ ରକ୍ଷ ଅକ୍ଷୟ ଗୌରବ ଏ ଭବେ ।
(ଅଭୟଙ୍କ ଯୁଦ୍ଧରେ ଦୁର୍ଜୟ ପରାସ୍ତ ହେବାରୁ)

ଦୁର୍ଜୟ—(ସ୍ୱଗତ) କିଏ ଏହି ମୁକୁଳିତକେଶା, ପୁଣି ରକ୍ତ ବସ୍ତ୍ର ପରିହିତା ଉଗ୍ରଚଣ୍ଡୀ ମୂର୍ତ୍ତି ! ଅଦ୍ୟାପ୍ରାୟ ଅର୍ପିଣ କଟିବେ, ଅସ୍ତ୍ର ଦେଇ ହୁଏ ଅନ୍ତର୍ହିତା ! ଜଣାଯାଏ ଶତ୍ରୁବଳେ ବଳୀୟାନ ଏହି । ପାପମତି ନ୍ୟାୟଯୁଦ୍ଧେ ଅଜେୟ ସେ ମମପକ୍ଷେ । (ପ୍ରକାଶ୍ୟେ) କିଏ ଅଛୁ, ରଘୁର ! ଭୀମ ! ବେଢ଼ି ମାର ସର୍ବେ ଏ ଦୁଷ୍ଟ ବାଳକେ ( ସମସ୍ତେ ଘେରି ନିବାରୁ ଅଲକ୍ଷିତେ କମଳା ଅସି ହସ୍ତେ ଯୁଦ୍ଧେ ପ୍ରବୃତ୍ତ)

ବସନ୍ତ—ଅନ୍ୟାୟ ଯୁଦ୍ଧ, ଏ ନୁହେ କ୍ଷତ୍ରୀ ପକ୍ଷେ ଶୋଭା ।

ଦୁର୍ଜୟ—ବନ୍ଦୀକର ମୂର୍ଖେ ! ମଲ୍ଲିକା ସହିତ ମୋର ବିବାହ ଆଗରୁ ଏ ପାଷଣ୍ଡର ରକ୍ତରେ ସ୍ନାନ କଲେ ବୈର ନର୍ଯ୍ୟାତନା ଶେଷ ହେଲାବୋଲି ସମସ୍ତ ଆଶା ସଫଳ ହେବ । ରଘୁର, ଏ ପାଷାଣ୍ଡି ସେହି ମନ୍ତ୍ରୀପତ୍ନୀ କମଳା । କି ସୁନ୍ଦରୀ ! ବର୍ତ୍ତମାନ ଯିବ କେଉଁଆଡ଼େ ? ଚାଲ, ଦେଖିବ କପରି ବନ୍ଦୀ ହେବ ରାଜଗଡ଼ ମଧ୍ୟେ ! (ପ୍ରସ୍ଥାନ)

---

# ଚତୁର୍ଥ ଅଭିନୟ

## ପ୍ରଥମ ଦୃଶ୍ୟ

(ନବାବ ଖାଁ, ପ୍ରତାପ ସିଂହ, ଅନ୍ନପୂର୍ଣ୍ଣା ଓ ସହଚରୀବୃନ୍ଦ)

ପ୍ରତାପ—ନବାବ ! କଣ ସନ୍ଧାନ ପାଇଲ, ସତେ କଣ ଆମ୍ଭମାନଙ୍କର ଭାଗ୍ୟର ପରିବର୍ତ୍ତନ ଘଟିବ ?

ନବାବ—ଆଜ ରାଜଗଡ଼ରେ ଆନନ୍ଦ ଉତ୍ସବ ଲାଗିଛି; କିନ୍ତୁ ପ୍ରଜାମାନଙ୍କ ମନରେ କୌଣସି ଶାନ୍ତିର ସଞ୍ଚାର ନାହିଁ । ଅନୁସନ୍ଧାନ ଦ୍ୱାରା ବୁଝିଲି, ଦୁର୍ଜୟ ସିଂହ ମଲ୍ଲିକାକୁ ନେବା ପଥରେ ବସନ୍ତ ଓ ବୃଦ୍ଧ ମନ୍ତ୍ରୀ ବିଦ୍ୟାଧରଙ୍କ ସ୍ତ୍ରୀ ତାଙ୍କର ହସ୍ତଗତ ହୋଇଛନ୍ତି ।

ପ୍ରତାପ—ଏ କଣ ପ୍ରକୃତ କଥା ନବାବ ! ମୋର ହସ୍ତ ପଦ ଆଉ ଚଳୁ ନାହିଁ । ମୁଁ କଣ କରିବି, ମୋର ବସନ୍ତର ଦଶା କଣ ହେବ ।

ନବାବ—ଧୈର୍ଯ୍ୟ ଧରନ୍ତୁ । ଆପଣ ଯେପରି ପୁତ୍ର ନିମିତ୍ତ ଅଧୀର, ମୁଁ ମଧ୍ୟ ମୋର ସେହି ପାଳିତା ମଲ୍ଲିକା ନିମିତ୍ତ ଅଧୀର ।

ପ୍ରତାପ— ଗୀତ

(ଜୟ ଗୁରୁ ଜୟ—ବୃନ୍ଦେ)
କହ କହ ହେ ଭବେଶ କେଉଁଠି ମୁଁ ଯିବି
ଦୁର୍ଜୟ କବଳୁ କେମ୍ନେ ବସନ୍ତ ରଖିବ ।
ବତ୍ସ ! ହୁଅ ଆସି
ମୋର ତୁମ୍ଭ ବିନା କେହି ନାହିଁ ଭରସା ।

ଅଭକ୍ତି ବଳନ୍ତୁ ଦୁଷ୍ଟ ଅଟେ ସେ ଦୁର୍ଜୟ
ମୋ ପୁତ୍ର ପରାଣ ଆଜ ନେବ ସେ ନିଶ୍ଚୟ ।
କର ପ୍ରତିକାର ।
(ବନ୍ଧୁ) କେମନ୍ତେ ଲଭିବ ମୋ କୁମର । ୨ ।

ସେ ପାଷଣ୍ଡ ଦୁର୍ଜୟ ସିଂହ ନିଶ୍ଚୟ ମୋର ପୁତ୍ରକୁ ମାରି ପକାଇବ । ଯଦି ସତ୍ୱର ପ୍ରତିକାର ନ କର, ତେବେ ମୋର ସବୁ ସରିଗଲା ।

ନବାବ—ବନ୍ଧୁ ! ଭାବନା କରିବା ଆବଶ୍ୟକ ନାହିଁ ! ମୁଁ ତାର ପ୍ରତିକାରର ବାଟ ଦେଖୁଛି । ଆସ, ସୈନ୍ୟମାନଙ୍କୁ ଏ ସମସ୍ତ ବିଷୟରେ ସାବଧାନ କରାଇ ଦେବା । (ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

(ଦୂତ, ବିଦ୍ୟାବନ୍ତ, ପ୍ରଜାଏ)

ବିଦ୍ୟାବନ୍ତ—କିଣ କାରଣ କିଛି କହୁନାହଁ, ମୋତେ କୁଆଡ଼େ ନେଇ ଯାଉଛ !

ଦୂତ—ବାହାରେ ଦେଖିବେ ଆସନ୍ତୁ, ରାଜାଙ୍କର ନିମନ୍ତ୍ରଣ ହୋଇଛି ।

ବିଦ୍ୟାବନ୍ତ—କେଉଁ ରାଜାର ଉତ୍ସବର, କସନ୍ତର ?

ଦୂତ—ହଁ, ବସନ୍ତର ପୁଅ, ତୁମ୍ଭ ସ୍ତ୍ରୀଙ୍କର ସଖୀର ନଣ୍ଡ, ଆଉ ଦୁର୍ଜୟସିଂହଙ୍କର ମଲ୍ଲିକା ସହିତ ଶୁଭ ପରିଣୟ । ଏଥାଥରକେ ଭଲଗୋଟି କାର୍ଯ୍ୟ ନିମିତ୍ତ ନିମନ୍ତ୍ରଣ, ଚାଲନ୍ତୁ ।

ବିଦ୍ୟାବନ୍ତ--କଣ ହେଲା, ବସନ୍ତର ପୁଅ, ମୋ ସ୍ତ୍ରୀ ! ଓଏ ଏମନକାର ପାତ୍ରତ୍ୱ ନଷ୍ଟ ହେବ, ଏ କଣ ସତ ? ତେବେ କଣ ମୋତେ ଏହି ଦୃଶ୍ୟ ଦେଖାଇବାକୁ ଡାକି ନେଉଛ, ହା ବିଧାତା ।

ଦୂତ—ମୋତେ ଉତ୍ତର ଦେଉଛି, ଏଣେ ବରାତ ବେଦୀରେ ବରକନ୍ୟା ବସିଲେଣି । ଆପଣ ପହଞ୍ଚିଲେ ପ୍ରଥମ ଦୂରକାର୍ଯ୍ୟ ସମାପନାନ୍ତେ ବୈବାହିକ ମଙ୍ଗଳ କାର୍ଯ୍ୟ ଆରମ୍ଭ ହେବ ।

ବିଦ୍ୟାବନ୍ତ—ଦୂତ ! ସତ କି ଏ ଘଟଣା ? ମୁଁ କଣ ସ୍ୱଚକ୍ଷୁରେ ଏହା ଦର୍ଶନ କରିବ ! ନା, ନା ମୋତେ ଛାଡ଼ଦେ । ମୋର ପ୍ରାଣ ଏହି କାରାଗାରରେ ଯାଉ ବରଂ, ମୁଁ ଏ ସବୁ କଦାପି ସନ୍ଦର୍ଶନ କରିବ ନାହିଁ ।

ଦୂତ—ମୋତେ ଯାହା ହୁକୁମ ହୋଇଛି, ତା ମୁଁ ନିଶ୍ଚୟ କରିବ । ଚାଲ ଶୀଘ୍ର । (ପ୍ରସ୍ଥାନ)

---

## ତୃତୀୟ ଦୃଶ୍ୟ

(ବାଳକ ବାଳିକାଣୀ)

ଗୀତ

ବାବୁ ହୋ ! ଆମେ ଭଣ୍ଡାରୁ ଜାତ
ବାଉଳ ସାଆନ୍ତ ଆମ୍ଭ ପଣ୍ଡିତ
ଶୁଖ ମୁଠି ଖଣ୍ଡେ କାଖରେ ରହିଲେ
ପାଖକୁ ଆସିବେ ବହୁତ ବନ୍ଧୁ
କି ଧନୀ ଦରିଦ୍ର, ରାଜା ପ୍ରଜା ହେଉ
ନେଉଛୁ ପଇସା ଓଠାରୁ ଲୁଟି ।

ପୁ—ଆ ଆ ମୋ ସୁନଅ ମା
ଅକଡା ପସନ୍ଦ ହେଲ
ସ୍ତ୍ରୀ—କେଉଁଆଡ଼େ ଯିବ କସ କରିକ
ଖଣ୍ଡିଆ ମୋତେ କହନ ।
ପୁ—ରାଜାଘର ହେବ ବାହାଘର
ଓଡ଼ିଆପିଠା ଖାଇ ହେବା ଭୋଜ
ସ୍ତ୍ରୀ—ଶୁଣରେ ବସିଛୁ ରଜାପୁଅ ଆସି
ଏ କଥା ଅଛୁଟି ଜାଣି !
ପୁ—ଶୁଣରେ ଆମ୍ଭର ହୋଇବ ଭସ
ଖାଇ ପିଇ କରୁ ହେଉଁବା ଆସ ।
ସ୍ତ୍ରୀ—ବଇଁଚ ଉସ ଜାଣୁ ଭରସା
ଝରକା ଦେଲେଣି ଖୁଣି ।
ପୁ—ଆଲେ ପ୍ରଜା ହୋଇବେ ଭାଇଁକ ଗୁଣେ
ସ୍ତ୍ରୀ—ଆରେ ବାଟ ଘାଟରେ ଚହଳ
ବସିଛୁ ଖଣ୍ଡିଆ ପାଇ ଶୁଣ ।
ପୁ—ଆଲେ, ଆଉ ରଜାପୁଅ କୁଆଡ଼େ ଅଛନ୍ତି ।
ସ୍ତ୍ରୀ—ସେଇଥି ଲାଗିତ ଏତେ ଭାଣ୍ଡ ବସିଛୁ ।

---

## ଚତୁର୍ଥ ଦୃଶ୍ୟ

(ଦୁର୍ଜୟ ସିଂହ, ବଦ୍ୟାବନ୍ତ, ଗଫୁର ଖାଁ, କରିମ ଖାଁ, ଶଙ୍କର ନାୟକ, ଦୂତ, ମଲ୍ଲିକା, ପୁରୋହିତଗଣ, ବସନ୍ତ, ବିମଳା, ନବାବ ଖାଁ, ପ୍ରତାପ ସିଂହ, ଅନ୍ନପୂର୍ଣ୍ଣା, ବାଦ୍ୟକାର ଇତ୍ୟାଦି)

ଦୁର୍ଜୟ—ସେନାପତେ ! ଆଜି ବଳିଦାନ କରିବାର ଆବଶ୍ୟକ କଣ, ଶାସ୍ତ୍ର ଘାତକକୁ ଆଜ୍ଞା ଦିଅ । ବସନ୍ତର ଶିର ଛେଦନ କରୁ ? (ସମସ୍ତେ ନୀରବ ହେଲେ) ଯଦି କେହି ବସନ୍ତ ବକ୍ଷରେ ଖଡ୍ଗ ଉତ୍ତୋଳନ କରିବାକୁ ଅସ୍ୱୀକୃତ, ତା ହେଲେ ମୁଁ ନିଜେ ନିଜେ ସେ କାର୍ଯ୍ୟ ସାଧନ କରିବି । ଦିଅ ଖଡ୍ଗ ।

ଗଫୁର—ମହାରାଜ ! ଏ ଦାସକୁ ଅନୁମତି ଦିଅନ୍ତୁ । ଆପଣ କାହିଁକି ଏ ଘୃଣ୍ୟ କାର୍ଯ୍ୟଟା କରିବେ !

ଦୁର୍ଜୟ—ଗଫୁର ଖାଁ, ଯଦି ମୋର ସଂସାରରେ କେହି ବିଶ୍ୱାସୀ ଥାଏ, ତେବେ ତୁମେ । ଆଜିଠାରୁ ତୁମକୁ ଖାଁ ବାହାଦୁର ପଦ ଦିଆଗଲା ।

ଗଫୁର—(ଅବନତ ମସ୍ତକେ) ଜି, ଖୋଦାବନ୍ଦ୍ !

ଦୁର୍ଜୟ— ଗୀତ

(ରସ ମାନସ ସ୍ଥାୟୀକେଶ—ବୃତ୍ତେ)

ଭଣ୍ଡ ଷଣ୍ଡ ଖଣ୍ଡ କାଟ ଏ ଦୁର୍ଜ୍ଜୟ
ଭଣ୍ଡ ପାଷଣ୍ଡର ମୁଣ୍ଡରେ ।
ଅସ୍ତ୍ରା ତୋଳି ଖଣ୍ଡେ କାଣ୍ଡ କର କେଡ଼େ
ଚେଙ୍ଗଟ ନର ଗୁଣ୍ଡ ଗୁଣ୍ଡରେ ।
ଦଣ୍ଡଧର ବଶ କରିବ ମୁଁ ଚଣ୍ଡା
କାଳକୁ ମୋ ଡର ନଥିବଟି ଧନ୍ଦା
ବ୍ରହ୍ମାଣ୍ଡ ସ୍ୱାମୀ ଧରି କାଟ ମେଣ୍ଢାଙ୍କର
ରକ୍ତ ଭରାଇ ସେ କୁଣ୍ଡରେ ।

ବଦ୍ୟାବନ୍ତ—ରେ ନୃଶଂସ ! ଏପରି ଅନ୍ୟାୟ ପୈଶାଚିକ କାର୍ଯ୍ୟ କର ନା, ତୋର ଭଗବାନ କେବେ ମଙ୍ଗଳ କରିବେ ନାହିଁ ।

ଦୁର୍ଜୟ—ବୃଦ୍ଧ ! ଆଜି ଦମ୍ଭ ରହ, ବର୍ତ୍ତମାନ ତୋର ଶିର ଦଶା କପରି କୌତୁକମୟ ହେବ ଦେଖିବୁ । ଗଫୁର ! ବିଳମ୍ବ କାହିଁକି ?

ଗଫୁର— ହଜୁର ପ୍ରସ୍ତୁତ ।

ବିମଳା— ଗୀତ

( ରେ ବଧି ଅଞ୍ଚଳ ନଧି—ବୃତ୍ତେ )

ହେ ସାର ଶୁଣ ମୋର ବିନୟ ବାଣୀ
କ ଯଶ ଲଭିବୁ ତୁ ଏହାକୁ ହାଣି
ସୁଦୟା କର
ଏ ପରା ହେବ ତୋର ଭ୍ରାତା ଭ୍ରମର ରେ ॥

ଦୁର୍ଜୟ—ତୁ କାହାପାଇଁ ଆପତ୍ତି କରୁଛୁ, ପୁଣି ତୋ ପାଇଁ ମଧ୍ୟ କିଏ ଆପତ୍ତି କରିବ, ଏପରି ହୁଅନ୍ତା ଲାଗିଛି । ଯା ପାଷାଣ୍ଡି, ତୋ କଥା ଶୁଣିବାକୁ ସ୍ୱର୍ଗେ ନାହିଁ ।

ବିମଳା— (ଗୀତ)

ପାଷାଣୁ କଠିଣ କି ହୃଦୟ ତୋର
ପାଷଣ୍ଡ ବୃତ୍ତି ଆଚରିଲୁ ପାମର ରେ
ହେବ ଏ ଫଳ
କଷ୍ଟେ ଭୋଗିବୁ ମୂଢ଼ ଶତ୍ରୁ ସମରରେ ॥

ଦୁର୍ଜୟ—ପାଷାଣ୍ଡି !
ଏତେ ତୋ ଆସ୍ପର୍ଦ୍ଧା,
ସମ୍ମୁଖରେ ଲଜ୍ଜା ଦେଉ ମୋତେ ।

ଗଫୁର—ଅପେକ୍ଷା କାହିଁକି,
ବିଳମ୍ବରେ ନାହିଁ ପ୍ରୟୋଜନ ।
ହୁଅ ସୁକାର୍ଯ୍ୟ ତତ୍ପର ।

ବିମଳା—କାପୁରୁଷ ରେ ! ତୋର ମରଣ ଏ ପାପ ନୟନରେ ଦେଖି କିପରି ଧୈର୍ଯ୍ୟଧରି ରହିବି । ବାପ ! ତୁ ଆଜି ଛାଡ଼ି ଚାଲିଯିବୁ !

ବସନ୍ତ— ଗୀତ

( ସୁନ ମନ—ବୃତ୍ତେ)

ମା ! କାନ୍ଦନା କାନ୍ଦନା
କର୍ମେ ଭୋଗିବାକୁ ଅଛି ଘୋର ଯାତନା ।
ବିଭବ ବଣ୍ଟିଛି ଯାହା, କେ ଖଣ୍ଡିପାରିବ ତାହା,
ନାହିଁ ଆନ କେହି ସାହା ଜଗତେ ସିନା ॥

ଗଫୁର—ଆଓ, ତୁମ୍ଭେ ଦେବତା ବଡ ବଡ ହୋତା ।

(ଶୂଳରେ ବସାଇ ତରବାରି ଉଠାଇବା ବେଳେ ନେପଥ୍ୟରୁ ତୋପର ଆବାଜ, ଗଫୁରର ପତନ, ସମସ୍ତେ ଚକିତ । ନବାବ ସୈନ୍ୟଙ୍କ ପ୍ରବେଶ । ସୁରେ ସମସ୍ତଙ୍କୁ ପରାସ୍ତ କରିବା ।)

ନବାବ—ବନ୍ଦୀକର ମୂର୍ଖଙ୍କୁ, ଦାସୀମାନେ ସେ ଜ୍ୟୋତିଷ ଜାଣନ୍ତ କିଏ ?

ଗୀତ

ଧର ଧର ଦୂତେ ଧର ଏ ସ୍ୱୈରକୁ
ମାର ମାର ବେଢ଼ି ମାର ରେ ।
ଏ ମୂର୍ଖ ପାଷଣ୍ଡ କଲେ ଯେତେ କାଣ୍ଡ
ଦଣ୍ଡ ଅନ୍ତରେ ମୋର ରେ ।୧।
ହସ୍ତ ପଦ ବାନ୍ଧ ଚଳା ଏ ନୃଶଂସ
ଚିରଦିନ ପାଇ ଦିଅ କାରାବାସ ।
ଏ ଜ୍ୟୋତିଷ ମୂଢ଼ ଫାଶରୁ ନ ଛାଡ଼
କର ବନ୍ଦ ଦରବାର ରେ ।

। (ଜ୍ୟୋତିଷଙ୍କୁ ଟାଣିନେବା)

ତିଷ—ନା—ମୁଁ—ନୁହେଁ ।

ପ—ବସନ୍ତ ! ତୋତେ କିଏ ରକ୍ଷାକଲା ?

—(ପ୍ରଣାମାନନ୍ତର) ପିତା ! ଏହି ମାତା କମଳା ଦେବୀଙ୍କ ପ୍ରସାଦରୁ ମୁଁ ଅରଣ୍ୟରେ ପ୍ରାଣ ପାଇଲି । ଦୁର୍ବୃତ୍ତ ମନ୍ତ୍ରୀଙ୍କୁ ବନ୍ଦୀକରି ତାଙ୍କ ସଙ୍ଗରୁ ନଷ୍ଟ କରିବାକୁ ବସିଥିଲେ ସେ ବ୍ରତଚାରୀ ହୋଇ ମୋତେ ଭେଟିଲେ ।

—ନବାବ, ମୁଁ ବୃଦ୍ଧ ମନ୍ତ୍ରୀ ଚନ୍ଦ୍ରକାନ୍ତଙ୍କୁ ଏହିଠାରେ ରାଜପଦରେ ବରଣ କରି ସନ୍ନ୍ୟାସ ଧର୍ମ ଅବଲମ୍ବନ କରିବି । ତୁମ୍ଭେ ବସନ୍ତକୁ ନେଇଯାଅ । ମଲ୍ଲିକା ସଙ୍ଗରେ ଶୁଭପରିଣୟ କରାଇ ତୁମ୍ଭର ଉଦ୍ଦେଶ୍ୟ ପୂରଣ କରିବ ।

ନବାବ ମହାଶୟ, ମୋର ଆପଣ ବସନ୍ତ ଓ ମଲ୍ଲିକାର ଶୁଭପରିଣୟ ପରେ ଯା ଇଚ୍ଛା ତା କରି ପାରନ୍ତି ।

ରାଜା—ହଉ ନବାବ । (ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

( ବସନ୍ତ, ମଲ୍ଲିକା, ନବାବ ଖାଁ, ପ୍ରତାପ ସିଂହ, ବ୍ରାହ୍ମଣ, ଶଙ୍ଖୁଆ, ବାଜାଦାର ଓ ସଖିବୃନ୍ଦ)

(ବସନ୍ତ ମଲ୍ଲିକା ଏକତ୍ରେ ଆସୀନ, ନବାବ, ରାଜା, ମନ୍ତ୍ରୀ ପ୍ରଭୃତି ଉପସ୍ଥିତରେ ମଲ୍ଲିକାର ସଖୀମାନଙ୍କ ସହ ବରଣମାଳା ବସନ୍ତକୁ ପ୍ରଦାନ)

ଗୀତ

(ସୁର-ନୋକା—ଦୁଇ)

ଆସ ଆସ ନବବାଳ
କରେ ଘେନ ସବେ ଆରତିଥାଳ ଗୋ
ଆଜ ବନ୍ଦିବା ରାଜଦୁଲାଳ ।
ବଜାଅ ହୁଳହୁଳି ଆଜି,
କେତେ ଦାନ ଧ୍ୟାନ ଅନ୍ତେ ଲଭି
ଏସ ଉପାସ୍ୟ ଦେବା ଗୋ ଲଭ ।
ଉମାପତଙ୍କୁ ମାଗ ମାଗ,
ପୂର୍ଣ୍ଣ ତୁମ୍ଭେ ଶୋଭା ଚମ୍ପକ ଡାଳ
ସରସିଅ ଧରେ ରସାତଳ ।
କେତେ ମଦନ ଯୁବକ,
ହୋଇଛନ୍ତି ଏହି ରୂପରେ ଏକ
ଭୃଙ୍ଗ ଶୋଭାପାଏ ଶୋଭା ଦେଖ ।
ଇଷ୍ଟ ଦେବତାଙ୍କୁ ଜଣା
ବର କନ୍ୟାରେ କରନ୍ତୁ କରୁଣା
ନାମେ ଲଭିବ ଜୟ ବାନା ।



# ଇରାନ୍‌ର ରାଣୀ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ଦ୍ରାକ୍ଷାକ୍ଷେତ୍ର

( ଗୋଟିଏ ପଞ୍ଚଦଶ ବର୍ଷୀୟ ସୁନ୍ଦର ଯୁବକ ଖଣ୍ଡିଏ ପଦ ପଢ଼ୁ ପଢ଼ୁ ଉପସ୍ଥିତ ହେଲା )

ଦାରା—( ପଦଟି ପକେଟରେ ରଖି ଦେଇ ) ଏମାନେ ମୋର କେହି ନୁହନ୍ତି, ଅଥଚ ମୋତେ ପ୍ରାଣ ଅପେକ୍ଷା ଭଲପାନ୍ତି । ନାସିରଙ୍କ ଅପତ୍ୟସ୍ନେହ ମୋର ମନ ପ୍ରାଣକୁ ବାନ୍ଧି ଦେଇଛି । ସୁଜିଭ ଅପ୍ରାପ୍ତ ବୟସ୍କା ବାଳିକା ହେଲେ ବି ସେ ମୋର ଜୀବନସଙ୍ଗିନୀ ପରି ନାନା କ୍ରୀଡ଼ା କୌତୁକରେ ମୋତେ ମତାଇ ରଖିଛି । କିନ୍ତୁ ଏ ପର୍ଯ୍ୟନ୍ତ ମୁଁ ଜାଣି ନ ଥିଲି ଯେ, ମୁଁ କିଏ ? କପରି ଏଠାରେ ଏମାନଙ୍କ ସ୍ନେହାଧୀନ । ଏ ପଦଖଣ୍ଡିକ ଆଜ ମନରେ ଜୀବନର ଅତୀତ କାହାଣୀ ଜଗାଇ ଦେଉଛି; କିନ୍ତୁ ପରିଷ୍କାର ତ ଲେଖିନାହିଁ ! କାଲି ସନ୍ଧ୍ୟା ସାକ୍ଷାତରେ ସମସ୍ତ କଥାବାର୍ତ୍ତା । ଆଜି ତାଙ୍କ ନିକଟ ଯିବାକୁ ହେବ । ନିର୍ଦ୍ଦିଷ୍ଟ ସମୟରେ ସେ ମୋତେ ଅପେକ୍ଷା କରି ରହିଥିବେ । ପୁଣି ଲେଖିଛନ୍ତି, ତୁମେ ତୁମର ଜୀବନ କାହାଣୀ ଶୁଣିଲେ, ତୁମର ସମସ୍ତ ମାୟା ମମତା ସବୁଆଡ଼ୁ ଭୁଲିଯାଇ ଆତ୍ମହରା ତ ହୋଇଯିବ । ତାହାହେଲେ ସୁଜିଭକୁ ସେ ମୁଁ (ବେଦିକା ଉପରେ ବସି ପଡ଼ିଲେ ଚକିତ ଭାବେ, ପଛଆଡ଼ୁ ଚୁପି ଚୁପି ଆସି ସୁଜିଭ ଆସି ଦାରାର ଆଖି ଦୁଇଟି ବୁଜି ଧରିଲା । ଦାରା ଜାଣିପାରିଲା ନାହିଁ । ସୁଜିଭ ତହୁଁ ହାତ ଛାଡ଼ିଦେଇ ଦାରା ମୁହଁକୁ ଚାହିଁ ହସିଦେଲା । )

(ଗୀତାନ୍ତେ ଦାରା ବସି ପଡ଼ିଲା, କୋଳରେ ସୁଜିଭ ବସି ପଡ଼ିଲାବେଳକୁ ଗୋଟିଏ ସର୍ପଟି ବେଗେ ବାହାରି ଉଠିଲା ‘ଓଃ ସାପ’ ସୁଜିଭ ଭୟରେ ସାପଟାକୁ ହାଣିଦେଲା ) ।

ଦାରା—ସୁଜିଭ, ତୁମେ ମୋତେ ବଞ୍ଚାଇ ଦେଲ । ତୁମର ଏ ଉପକାର ଭୁଲିପାରିବି ନାହିଁ । କିନ୍ତୁ ଆଜ ଯେ ମୁଁ ତୁମଠାରୁ ବଦଳି ହୋଇଯାଉଛି ।

ସୁଜିଭ—କେଉଁଠାକୁ ?

ଦାରା—ସେ କଥା କହିବାକୁ ମନା ଅଛି । ଯଦି ଭଲରେ ଫେରେ ତେବେ ଦେଖା, ନଚେତ୍—

ସୁଜିଭ—ତେବେ ଏତେ ବଡ଼ ଜୀବନଟା ତ ରହିଲା, ପୁରସ୍କାର ତ କିଛି ପାଇଲି ନାହିଁ !

ଦାରା—ନାହିଁକି, ମୁଁ ତ ପୁରସ୍କାର ଦେଲି ।

ସୁଜିଭ—କାହିଁ ?

ଦାରା—ମୋର ପ୍ରାଣ ଯେ !

ସୁଜିଭ—ହଉ ବୁଝିଲି, ସୁଖ ସଙ୍ଗ ହୋଇ ଆସିବାକୁ ଘରକୁ ଯିବା ।

ଦାଉ—( ମନ ଶୁଖାଇ ) ଗୁଲ୍‌ଜାର୍, ମୋତେ ଆଜ କାହିଁକି କିଛି ଭଲ ଲାଗୁନାହିଁ । ମୋର ମନ କେମିତି କେମିତି ଜଣାଯାଉଛି ।

ଗୁଲ୍‌ଜାର—ନିଜ ଘରକୁ ଯାଅ, ତମ ମୁଣ୍ଡରେ ଟିକିଏ ଥଣ୍ଡା ତେଲ ମାଲିସ କରିଦେବ, ସବୁ ଭଲ ହୋଇଯିବ ଯେ । ( ଉଭୟଙ୍କ ପ୍ରସ୍ଥାନ )

—*—

ଦ୍ୱିତୀୟ ଦୃଶ୍ୟ

କୁଟୀର

( ନାସିର ଖାଁ ଏକ ଖଟିଆ ଉପରେ ଉପବିଷ୍ଟ )

ନାସିର୍—ହା ଖୋଦା, ତୁମର ଲୀଳା ବୁଝିବା କଠିନ । କି ଦୋଷରେ ଏତେ ବଡ଼ ରାଜ୍ୟଟା ଛାରଖାର ହୋଇଗଲା ! ସମ୍ରାଟ ଜାଫର ସାହଙ୍କ ମୃତ୍ୟୁରେ ଏ ରାଜ୍ୟର ମେରୁଦଣ୍ଡ ଭାଙ୍ଗିଯାଇଛି । ପୁଣି କ'ଣ ରାଜ୍ୟ ପାଳନ ହେବ ? ନବାବ ସମ୍ରାଟଙ୍କ ଶାସନରେ ପ୍ରଜାମାନେ ଆନନ୍ଦରେ ରହିବେ । ଏଣୁ ଦାଉ, ସରଳ ବାଳକଟି ସଂସାରର କଥା କିଛି ଜାଣେ ନାହିଁ ? ଏ ପର୍ଯ୍ୟନ୍ତ ନିଜର ବଂଶର ପରିଚୟ ମଧ୍ୟ ପାଇନାହିଁ, ବାପ ମା'ଙ୍କର ନାମ ପର୍ଯ୍ୟନ୍ତ ଜାଣେନା, କିପରି ବା ଜାଣିବ ? ଜନ୍ମ ପରେ ପରେ ତ ଅଦ୍ଭୁତ ଘଟଣା ! ଏହି ବାଳକ କ'ଣ ପରେ ରାଜ୍ୟ ଫେରପାଇ ଶାସନ କରିବ, ପ୍ରଜାମାନଙ୍କର ମନକାମନା ବୁଝିବ ? ସମ୍ଭବ ନୁହେଁ । ଆହା, ପ୍ରଭୁଭକ୍ତ ମୋବାରକ, ରାଜ୍ୟର ଶେଷ ସମ୍ପତ୍ତି ମୋ ଉପରେ ଭାର ଦେଇ କେଉଁଠି ରହିଲ । ଆଜକୁ ପ୍ରାୟ ପନ୍ଦର ବର୍ଷ ତଳର କଥା । ସ୍ୱପ୍ନ ସ୍ୱପ୍ନ ଦିନ ଗଡ଼ିଗଲା । ସେ ତ କାହାକୁ ଅପେକ୍ଷା କରେ ନାହିଁ ! ଏ ସବୁ କଥା ମନେପଡ଼ିଲେ ପ୍ରାଣ କାନ୍ଦିଉଠେ, କିନ୍ତୁ ମୋ-ପରି ଲୋକଙ୍କର ବା କଅଣ ହୋଇପାରେ !

ଗୁଲ୍‌ଜାର—( ବାପଙ୍କୁ କୁର୍ଣ୍ଣିଶ କରିକି ) ଚାଚା ଚାଚା ! ତୁମେ ଏଠାରେ, ମୁଁ ତୁମକୁ କେତେ ଖୋଜି ଖୋଜି ଆସିଲିଣି ଗୋଟିଏ କଥା କହିବ ବୋଲି ।

ନାସିର—କି କଥା ଲୋ ମା !

ଗୁଲ୍‌ଜାର—ଦାଉଙ୍କ ମୁହଁ କାହିଁକି ଶୁଖି ଯାଉଛି ? କାରଣ କଣ ? ମୁଁ ତାଙ୍କୁ ଯେତେ ପଚାରିଲି ଏହାର କାରଣ କ'ଣ, ସେ ମୋତେ କହିଲେ ଏହାର ଗୂଢ଼ ମର୍ମ ତୁ କିଛି ବୁଝିପାରିବୁ ନାହିଁ । ତୁମେ ଯାଅ, ଚାଚା ତାଙ୍କୁ ବୁଝାଇ ସୁଝାଇ ଦିଅ । ସେ କଣ ଏତେ ଭାବୁଛନ୍ତି; ନହେଲେ ତମର ଘରକୁ ଯିବାର ଯଦି ଡେରି ଅଛି, ମୁଁ ତାଙ୍କୁ ଏଠାକୁ ଡାକି ଆଣୁଛି । ( ପ୍ରସ୍ଥାନ )

ନାସିର୍—ହଁ, ଖୋଦା ! କାହାକୁ ବୁଝାଇବ, ଆଉ କଅଣ କହି ବୁଝାଇବ ! ଯେ କି କଅଁଳଆ ଶେଯରେ ଶୋଉଥାନ୍ତେ, ତାଙ୍କୁ କିନା ମୁଁ ଧୂଳିରେ ଶୁଆଇଛି, ଯେ ରାଜପ୍ରାସାଦରେ ବାସ କରୁଥାନ୍ତେ, ତାଙ୍କୁ ମୁଁ ଭଙ୍ଗା କୁଡ଼ିଆରେ ରଖିଛି । ମୁଁ ସେ ଐଶ୍ୱର୍ଯ୍ୟ ବା କାହୁଁ ପାଇବି ! ମୋବାରକ ସାହା ମୋତେ କାହିଁକି ଏ ଗୁରୁ ଦାୟିତ୍ୱ ଦେଇଗଲେ ? ମୁଁ ଗରିବ ଲୋକ, ମୋର ଶକ୍ତି କେତେ ?

( ଦାଉ ଶୀଘ୍ର ପ୍ରବେଶ କଲେ )

ଦାଉ—ଚାଚା, ଚାଚା ! ଆଉ ତୁମମାନଙ୍କୁ ମୋ ପାଇଁ କଷ୍ଟ ସହିବାକୁ ହେବନାହିଁ । ଆଜ ସକାଳେ ଘୋଡ଼ା ପିଠିରେ ଚଢ଼ି ଜଣେ ଗୋଟିଏ ଯୁବକ ମୋତେ ଏ ପତ୍ରଖଣ୍ଡିକ ଦେଇ ଯାଇଛନ୍ତି । ସେହି ମୁହୂର୍ତ୍ତରୁ ମୋ ମନ ଅନ୍ୟ ରକମ ହୋଇଯାଉଛି । ଏ ପତ୍ରର ପ୍ରତି ଅକ୍ଷର ମୋର ସମସ୍ତ ଶକ୍ତିକୁ ଏକତ୍ରିତ କରି ଜଗାଇ ଦେଉଛି ! ମୁଁ ଆଜ ସବୁ ବୁଝି ପାରୁଛି । ସେଥିପାଇଁ ତୁମ ପାଖରୁ ବିଦାୟ ନେବାକୁ ଆସିଛି । କାଲି ସକାଳ ୧୨ଟା ପୂର୍ବରୁ ମୋତେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବାକୁ ହେବ ।

ନାସିର୍—କାହିଁ ପତ୍ର, ଦେଖେଁ ? (ଦାଉଠାରୁ ପତ୍ର ନେଇ ପଢ଼ିସାରି) ହଁ, ଏବେ ମୁଁ ସବୁ ବୁଝିଲି । ଏ ଘଟଣା ଦିନେ ଘଟିବ ବୋଲି ମୁଁ ଭଲ କରି ଜାଣେ । କିନ୍ତୁ ସାବଧାନ ! ଏ କଥା କାହାରି ପାଖରେ କହିବ ନାହିଁ, ଏହା ଅତି ଗୋପନୀୟ ପତ୍ର ।

ମୋତେ ନିଷେଧ ଥିବାରୁ ମୁଁ ତୁମକୁ ଏ ପର୍ଯ୍ୟନ୍ତ କହି ନ ଥିଲି । ପ୍ରକୃତରେ ଏ ପଦର ସାର ମର୍ମ ଖୁବ୍ ସତ୍ୟ ।

ବାବୁ—ଚାଚା, ଚାଚା ! ମୋତେ ବୁଝାଇ ଦିଅ । କଅଣ ମୋ ଜନ୍ମ ବୃତ୍ତାନ୍ତ, ଆଉ ମୋର ପିତା ମାତାଙ୍କର ନାମ କ'ଣ ? କେଉଁ ବଂଶଧର ମୁଁ ?

ନସିରୁ—କହିପାରେ ନା, ସେ ଶକ୍ତି ମୋର ନାହିଁ । ଇହସ୍ମୃତିକୁ ସଙ୍ଗରେ ନେଇ ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଅ । ସେଇଠାରୁ ସମସ୍ତ ବୁଝି ପାରିବ; କିନ୍ତୁ ଏଇ ବଡ଼ ଦୁଃଖ ଯେ, ମୋର ବୃଦ୍ଧାର ଦଶା କଣ ହେବ ? ସେ ତ ଦଣ୍ଡେ ତୁମକୁ ନ ଦେଖିଲେ ସ୍ଥିର ହୋଇ ରହିପାରିବ ନାହିଁ ? ତାକୁ ଏବେ କ'ଣ କହି ବୁଝାଇବି, ସେ ତ ଏ କଥା ଶୁଣିଲେ ଜୀବନ ହରାଇବେକ । (ସ୍ୱଗତଃ) ଚନ୍ଦ୍ରମାକୁ ଏତେ-ଦିନ ଘରେ ବାନ୍ଧି ରଖିଥିଲି, ଆଜି ମୋର ଘର ଅନ୍ଧାର କରି ଚାଲିଯିବ । ଧନ୍ୟ ମୋବାରକ ସାହା, ତୁମେ କେବଳ ବୀର ନୁହଁ, ପ୍ରଭୁଭକ୍ତ, ଚତୁର, ସାହସୀ । ତୁମକୁ ଖୋଦା ବଞ୍ଚାଇ ରଖନ୍ତୁ । ଯା ହେଉ ଖୋରସାନ ଅଲଗ ହୋଇ ପଡ଼ିଥିଲା, ପୁଣି ନୂତନ ରାଜାଙ୍କ ଶାସନରେ ଆସିବ ହେବ ।

ବାବୁ—ସମସ୍ତଙ୍କଠୁଁ ବିଦାୟ ନେଇ ଆସିଲିଣି, କେବଳ ତୁମଠୁଁ ବିଦାୟ ନେବାକୁ ଆସିଛି ।

ନସିର—ବୃଦ୍ଧା କ'ଣ ଜାଣେ ?

ବାବୁ—ନା ଜାଣେନା, ତା ସାଙ୍ଗରେ ଦେଖା ହେଲେ ତ ଯାଇପାରିବି ନାହିଁ । ମୁଁ ରାତି ଥାଉଁ ଉଠି ଚାଲିଯିବି, ସଲାମ ।

ନସିର—ଆଲ୍ଲା ରହୋ ବେଟା (ମୁଣ୍ଡରେ ହାତ ବୁଲାଇ ଦେବା )

ବାବୁ—ଆସୁଛି । (ପ୍ରସ୍ଥାନ)

ନସିର—(ଦୁଃଖରେ) ବାବୁ, ନା ଥାଉ, ଘର ଅନ୍ଧାର କରି ଚାଲିଗଲା ! (ପ୍ରସ୍ଥାନ)

—*—

## ତୃତୀୟ ଦୃଶ୍ୟ

( ପ୍ରମୋଦ ଉଦ୍ୟାନରେ ଇରାନର ରାଣୀ ସଙ୍ଗରେ କେତୋଟି ପରିଚାରିକା, ନର୍ତ୍ତକୀଟିଏ ଗୀତଗାଇ ନାଚୁଛି)

(ଗୀତ) ଝିଞ୍ଜୁଟି

କୁହୁ କୁହୁ କୋଇଲି ଡାକୁଚେରି ତାନେ ।
ଉଜାଗରେ ଜାଗିଲି — ସାରା ନିଶି ତ ତୁ
ଚୁମ୍ବିଲି ଘନ ମେଘେ — ହସେ ପାହାନ୍ତି ତାର
ମଧୁପ କୁ ଦଗାଦାର ହେଲ୍ ଜାହା ପ୍ରେମେ ।୧।
ଗନ୍ଧ ବେହ୍ୱ ସମୀର — ପରଶେ ଅଙ୍ଗ ମୋର
ଖାଇଁଲ ଗଲ ଲଗେ — ସୁବାସ ଚନ୍ଦ୍ରସାର
ଜାଗି ଖେଦେ ମନ ଲଗେ ବସିଲି ମୁଁ ଅଭିମାନେ ।୨।

୧ମ ପରିଚାରିକା—ସାମ୍ରାଜ୍ଞୀ, ଆପଣଙ୍କର କେଉଁ କଥା ଅଭାବ ଯେ, ଆପଣ ସଦାବେଳେ ଆଖିରୁ ଲୁହ ଝରାଉଛନ୍ତି ! ଆପଣ ଯାହା ଖାଇକରି ବା ବ୍ୟବହାର କରି ପିନ୍ଧି ଦେଉଛନ୍ତି, ତାହା ଅନ୍ୟ ଅନ୍ୟ ଲୋକ ପାଇ ନ ଥିବେ । ଆପଣଙ୍କର ଗୋଟାଏ ଦୁଃଖ କଣ ।

ରାଣୀ—କେବଳ ଖାଇବା ପିନ୍ଧିବା ଜୀବନର ଏକମାତ୍ର ସୁଖ ନା, ନାରୀ ଜନ୍ମରେ ଅନ୍ୟ କିଛି ସୁଖ ନାହିଁ ।

୨ୟ—ଆମର ପେଟକୁ ମୁଠାଏ ଖାଇବା, ଦେହକୁ ଖଣ୍ଡେ ପିନ୍ଧିବା, ଏତିକି ହେଲେ ଆଉ କୋଉ କଥାକୁ ଚିନ୍ତା ନାହିଁ ମ ।

୧ମ—ନାହିଁ ଲୋ, ଆଉ କିଛି ଗୋଟିଏ କଥା ଅଛି । ବାହାର କଥା ସିନା ସମସ୍ତେ ଜାଣିବେ, ଭିତର କଥା କିଏ ଜାଣିବ ! ବିବାହ ହେବାର କେତେ ବର୍ଷ ପୂରିଗଲା, ସନ୍ତାନଟିଏ ।

ରାଣୀ—ଦୂର୍ କର ।

୨ୟ—ନାହିଁ ସନ୍ତାନଟିଏ ହେଲେ ଭଲ ହୁଅନ୍ତା ।

ରାଣୀ— ତୋ ମୁଣ୍ଡଗଣ୍ଡି, ଏଠୁ ଯା ଚାଲିଯା । ପେଟ ମୁଠାକ ପାଇଁ ଚାକିରି କରୁଛ, ସେତିକି ପାଇଲେ ତୁମର ହେଲା, ଅନ୍ୟ କାହାର କେଉଁ କଥା ତୁମେ କଅଣ ଜାଣିବ ?

୧ମ—ଜାଣୁଛୁ, ସବୁ ଜାଣୁଛୁ, ହାଣ ଝିଅଙ୍କୁ ଉପରେ ରଖି ସବୁ କଥା ଚପି ରଖୁଛୁ ଲୋକଟି ପାଉଛି ।

ସୁ—ଦେଖନ୍ତୁ ନେ, ବାଦସାହା ଏଣେ ଆସୁ ହେଉଛନ୍ତି । ଏ ସମୟେ ଦାଉଦ୍ ସାହା ପ୍ରବେଶ କଲେ । ପରିଚାରିକାମାନେ ସମ୍ମାନ ଜଣାଇ ଚାଲିଗଲେ ।

ଦାଉଦ୍ ସାହ—ସାମ୍ରାଜ୍ଞୀ, ତୁମର ରୂପର ଶିଖା ଏ ଅନ୍ତରର ଅନ୍ଧକାର ଗୁଡ଼ାକୁ ଧ୍ୱଂସ କରି ପକାଉଛି ।

ରାଣୀ—ତେବେ ଖୋଲି ରଖି ଦେଲେ ଭଲ ହୁଅନ୍ତା ।

ଦାଉଦ୍ ସାହା—ତା ଅର୍ଥ, ମୁଁ କଅଣ ତୁମକୁ ଭୂଷଣ-ହୀନା ଦେଖିବାକୁ ଚାହୁଁଛି ।

ରାଣୀ—ହଁ ବୁଝିଛି, ମୋର ରୂପର ପ୍ରଶଂସା କରୁଛ । ସେ ପ୍ରଶଂସା ଶୁଣିବାକୁ ମୁଁ ଆକାଂକ୍ଷିତ ନୁହେଁ ।

ଦାଉଦ୍—ଜନ୍ମ ମୁଁ ଯେ ତୁମକୁ ପାଇ ଧନ୍ୟ ହୋଇଛି । ତୁମର ସ୍ପର୍ଶରେ ମୋର ଏ ବାର୍ଦ୍ଧକ୍ୟଗ୍ରସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଉଲ୍ଲସିତ ହୋଇଉଠୁଛି । ତୁମେ ମୋର ଶେଷ ଜୀବନର ଶାନ୍ତିଦାୟିନୀ ଦର୍ଶନୀୟ ମୂର୍ତ୍ତି । ତୁମରି ସେବା ପୂଜାରେ, ତୁମରି ରୂପର ସ୍ରୋତରେ ମୋର ଜୀବନ ତରଙ୍ଗକୁ ବାହିନେବି । ତୁମର ରୂପର ତୁଳନାରେ ରାଜ୍ୟ, ଐଶ୍ୱର୍ଯ୍ୟ ସବୁ ତୁଚ୍ଛ । ତୁମର ଦର୍ଶନରେ ମୁଁ ସ୍ୱର୍ଗସୁଖ ଅନୁଭବ କରୁଛି ।

ରାଣୀ—ଏତେକରେ ମୁଁ ତୃପ୍ତ, ଏଥର ମୋଠାରୁ ଶୁଣିବାକୁ ପ୍ରସ୍ତୁତ ତ ?

ଦାଉଦ୍—ହଁ ଏହି ଅମୃତବୋଳା ମିଠା ବଚନ ପଦେକ ! କେଉଁ ସୌଭାଗ୍ୟ ବଳରୁ ମୁଁ ତୁମକୁ ପ୍ରାଣପ୍ରିୟା ରୂପେ ପାଇଛି ! ତୁମେ ମୋର ମରୁ ହୃଦୟ କାନନରେ ପୂତ ମନ୍ଦାକିନୀ ଧାରା । ତୁମେ ମୋର ଭଗ୍ନ ମନ ମନ୍ଦିରରେ କମନୀୟା ଦେବୀ, ମହା ମହିମାମୟୀ ବାଦ୍‌ସାହ୍ନି । ତୁମେ ଏ ଭବନର ରାଜ-ସିଂହାସନ ମଣ୍ଡନ କରି ଧନ୍ୟ ହୁଅ । ମୁଁ ତୁମର ଅନୁରକ୍ତ ଓ ଶରଣାଗତ ପ୍ରାୟ ପାଦେ ପାଦେ ଥିବି । ଆସ ଶଯ୍ୟାମନ୍ଦିରକୁ ଆସ, ମୁଁ ଟିକିଏ ତୁମ କୋଳରେ ମସ୍ତକ ରଖି ବିଶ୍ରାମ କରିବି ।

( ରାଣୀଙ୍କୁ ନେଇ ଚାଲିଗଲେ )

—*—

## ଚତୁର୍ଥ ଦୃଶ୍ୟ

### ମସ୍‌ଜିଦ୍

(ଚକ୍ ବଜାର ସମ୍ମୁଖ ବଗିଚା ସମ୍ମୁଖରେ ମସ୍‌ଜିଦ, ଦାସ ଓ ଇଉସୁଫ୍ ପ୍ରବେଶ )

ଇଉସୁଫ୍—ଦାସ ! ମୁଁ ଟିକିଏ ପାଣି ନ ପିଇଲେ ପାଦେ ଆଗକୁ ଯାଇପାରିବି ନାହିଁ । ମୁଁ ବଡ଼ କ୍ଳାନ୍ତ ଅନୁଭବ କରୁଛି । ତୁମର ମତଲବ କଅଣ ମୁଁ ତ କିଛି ବୁଝି ପାରୁନାହିଁ । ଗୋଟାଏ ମୂର୍ଖ ଅପରିଚିତ ଲୋକ, କଏ ବୋଲି କଏ, ତା କଥାରେ ବିଶ୍ୱାସ କରି ତୁମେ ଏତେ ଦୂର ଆସିଲ !

ଦାସ—ନା, ନା ଇଉସୁଫ୍ ତା ନୁହେଁ ତୁମେ ଜାଣନା, ବୋଧହୁଏ ଏ ସେହି ସଙ୍କେତ ସ୍ଥାନ । ତୁମକୁ ଆଉ ଚାଲିବାକୁ ପଡ଼ିବ ନାହିଁ । ଏହି ଦେଖ କଏ ଜଣେ ଆସୁଛି । ତାକୁ ପଚାରିଲେ ସବୁ ଜଣାପଡ଼ିବ । (ଲୋକଟିଏ ପଥରେ ଚାଲିଯାଉଥିଲା) ହେ ବାବୁଜୀ, ଶୁଣନ୍ତୁ ଶୁଣନ୍ତୁ ।

ନାଗରିକ—କଅଣ ପଚାରୁଛ ?

ଦାସ—ଏ କଅଣ ଲାହୋରର ସେହି ସର୍ବୋତ୍କୃଷ୍ଟ କୀର୍ତ୍ତି-ସ୍ତମ୍ଭ ? ଏ କଅଣ ସେହି ଭୁବନବିଦିତ ମସ୍‌ଜିଦ୍‌ର ଦ୍ୱାରଦେଶ ?

ନାଗରିକ—ହଁ ହଁ, ଏ ସେହି ସ୍ଥାନ (ଚାଲିଗଲା)

ଦାସ—( ଅଙ୍ଗ ଭିତରୁ ପତ୍ରଟି କାଢ଼ି ) ଦେଖା ଏଣିକି ବାରଦଣ୍ଡା । ବର୍ତ୍ତମାନ-ମୁଁ ଲାହୋର୍ ସହରର ଚକ୍ ବଜାର ସାମନା ସେହି ତୋରଣ ଦ୍ୱାରରେ ଉପସ୍ଥିତ । ପୁଣି ଅଜ ତ ଶୁକ୍ରବାର ।

ଇଉସୁଫ୍—ଆଚ୍ଛା ଦାସ, ତୁମେ ସେ ଲୋକକୁ ଦେଖିଲେ ଠିକ୍ ଚିହ୍ନି ପାରିବ ତ ?

ଦାସ—( ପତ୍ର ପାଠକରି ) ହଁ, ପତ୍ରରେ ଲେଖା ଅଛି, ମୋର ପରିଧେୟର ଚିହ୍ନ ଏହି ଯେ, ବାଇଗଣି ରଙ୍ଗର ପୋଷାକ, ମସ୍ତକରେ ଓମରାହୋ ପରିଧେୟ ମଣି ଖଚିତ ମୁକୁଟ ।

ଇଉସୁଫ୍—ବାଃ ବାଃ ! ଏକାଥରକେ ବିଜୟ ଉତ୍ସବ କର । ଆଚ୍ଛା ଦାସ ! ସେଇ ମହାଶୟ ତୁମର ଜନ୍ମ ଓ ବଂଶର ପରିଚୟ ଦେବେ ନା ? ବାଃ ବାଃ ।

ଦାସ—ଶୁଣ ଭାଇ ଇଉସୁଫ୍, ମୁଁ ଅଙ୍ଗୁର କ୍ଷେତରେ କାର୍ଯ୍ୟ କରୁଥିଲି । ଏହିପରି ସମୟରେ ଘୋଡ଼ା ପିଠିରେ ଚଢ଼ି ଜଣେ ଲୋକ ମୋ ନିକଟରେ ଯାଇଁ ମୋତେ ପଚାରିଲେ, ତୁମର ନାମ କଅଣ ଦାସ ? ମୁଁ ଉତ୍ତର ଦେଲି ହଁ । ଏତିକି ମାତ୍ର ଶୁଣି ମୋ ହାତରେ ଖଣ୍ଡେ ପତ୍ର ଦେଇ କହିଲେ, ଯଦି ତୁମେ ତୁମର ଜନ୍ମବୃତ୍ତାନ୍ତ ଜାଣିବାକୁ ଇଚ୍ଛାକର, ତା ହେଲେ କାଲି ଶୁକ୍ରବାର ଦିବା ୧୨ଟା ସମୟରେ ଇସ୍ପାନ୍ ସହରର ଚକ୍ ବଜାର ସାମନା ମସ୍‌ଜିଦ ଫାଟକ ନିକଟରେ ଉପସ୍ଥିତ ଥିବ । ବର୍ତ୍ତମାନ ଯେଉଁ ନାସିର ସାହେବଙ୍କ ପାଖରେ ଅଛ, ସେ ତୁମର କେହି ନୁହଁନ୍ତି; କେବଳ ତୁମକୁ ପାଳନ କରୁଛନ୍ତି ମାତ୍ର । ତୁମର ଜନ୍ମବୃତ୍ତାନ୍ତ ଅଦ୍ଭୁତ ।

ଇଉସୁଫ୍—ନାସିର ସାହେବ ତେବେ ପ୍ରକୃତରେ ତୁମର ପିତା ନୁହନ୍ତି ! ଆଚ୍ଛା, ତୁମେ କଅଣ ତୁମର ପିତାଙ୍କ ନାମ ଏ ପର୍ଯ୍ୟନ୍ତ ଜାଣନା ?

ଦାସ—ନା (ଏ ସମୟରେ ଘଣ୍ଟାରେ ଠନ୍ ଠନ୍ ହୋଇ ୧୨ଟା ବାଜିଲା)

ଇଉସୁଫ୍—ଏଇ ଶୁଣ, ବାରଟା ତ ବାଜିଗଲା, କାହିଁ ତୁମର ବଂଶପରିଚୟ ଦେବାକୁ କେହି ତ ଏ ପର୍ଯ୍ୟନ୍ତ ଆସିଲେ ନାହିଁ ? ତୁମେ ଯେପରି ଲୋକ ନା !

ଦାସ—ଏଇ ତ ଠିକ୍ ସେହି ସମୟ ହେଲା (ଦୂରକୁ ଚାହିଁ) ଏଇ ତ ଇଏ ବୋଧେ ଜଣେ ଆସୁଛନ୍ତି (ନାଦେର ପ୍ରବେଶ)

ନାଦେର—ତୁମର ନାମ ଦାସ ନା ?

ଦାସ—ଜୀ-ହାଁ ।

ନାଦେର୍—ଯା ହେଉ, ଠିକ୍ ସମୟରେ ଆସି ଉପସ୍ଥିତ ହୋଇଛ ।

ଦାସ—ମୋର ପିତା ଜୀବିତ ଅଛନ୍ତି ?

ନାଦେର୍—ଠିକ୍ ତୁମର ଆକୃତି, ସେହିପରି ଗଠନ । ମୋର ମନେହୁଏ, ତୁମର ଆଉ ତୁମର ପିତାଙ୍କର ଏକା ଆକୃତି । ସେହି କାନ୍ତି, ସେହି ରୂପ । ମନେ କରୁଛି, ଆକୃତିପରି ପ୍ରକୃତି ମଧ୍ୟ ସମାନ ଥିବ । ତାଙ୍କର ଅନ୍ତର ଯେପରି ଥିଲା, ତୁମର ଅନ୍ତର ମଧ୍ୟ ସେହିପରି ହୋଇଥିବ ।

ଦାସ—ମୋର ପିତାଙ୍କର କଥା କୁହନ୍ତୁ ।

ନାଦେର୍—ସେ କଥା ତୁମ ଛଡ଼ା ଆଉ କେହି ଜାଣିବେ ନାହିଁ । (ଇଉସୁଫ୍‌କୁ ଦେଖାଇ ତାଙ୍କୁ କୁହ କିଛି ସମୟ ଅନ୍ୟଠାରେ ଅପେକ୍ଷା କରନ୍ତୁ ।

ଦାସ—ସେ ମୋର ଅନ୍ତରଙ୍ଗ ବନ୍ଧୁ ! ସେ ମୋର ଭାଇ କହିଲେ ଚଳେ । ଆମର ଉଭୟଙ୍କ ମଧ୍ୟରେ କୌଣସି କଥା ଗୋପନ ନାହିଁ ।

ନାଦେର୍—କିନ୍ତୁ ମୋର କଥା ଅତି ଗୋପନୀୟ । ତୁମ ଛଡ଼ା ଅନ୍ୟକୁ ପ୍ରକାଶ କରିବାକୁ ଖୋଦାଙ୍କର ମନା ।

ଇଉସୁଫ୍—ଦାସ, ମୁଁ ଏ ସ୍ଥାନରୁ କିଛିଦୂର ଚାଲିଯାଉଛି, ତୁମେ କଥାବାର୍ତ୍ତା ହୁଅ । ମୋ ମନରେ କିଛି କଷ୍ଟ ନାହିଁ ।

ଦାସ—ହଁ ଭାଇ, ଯାଇଥାଅ । (ଇଉସୁଫ୍ ଚାଲିଗଲା) ଏଇଥର କୁହନ୍ତୁ, ମୋର ପିତା କିଏ ? ସେ କଅଣ ଖୁବ୍ ବଡ଼ଲୋକ ଥିଲେ ? ସେ କଅଣ କୌଣସି ଦେଶର ରଜା ଥିଲେ, ଯେପରି ମନେହୁଏ ଯେ, ମୁଁ ଜଣେ ରାଜପୁତ୍ର ।

ନାଦେର୍—ନିଶ୍ଚୟ ସେ ଜଣେ ରଜା ଥିଲେ । ଶୁଣ ଦାସ ! ଏଠାରେ ବର୍ତ୍ତମାନ ମୁଁ ସରଦାର୍ ନାଦେର ନାମରେ ପରିଚିତ; କିନ୍ତୁ ଦିନେ ମୁଁ ଖୋରସାନର ଉର୍ଦ୍ଧ୍ୱସ୍ଥ ଥିଲି । ଆଉ ସମସ୍ତ ଅପେକ୍ଷା ମୋର ଅଧିକ ପରିଚୟ ଥିଲା, ତୁମର ପିତାଙ୍କର ଅକୃତ୍ରିମ ବନ୍ଧୁ ମୋବାରକ୍ ସାହା ।

ଦାସ—ମୋର ପିତା କଅଣ ଜୀବିତ ନାହାନ୍ତି ?

ନାଦେର୍—ଶୁଣ, ତୁମର ପିତା ଥିଲେ ଖୋରସାନର ଅଧିପତି । ତାଙ୍କର ନାମ ଥିଲା ଜାଫର ସାହା । କେତେ ଥର ଯେ ତାଙ୍କର ଉଜ୍ଜ୍ୱଳ ତରବାରୀ ଶତ୍ରୁ ସେନାଙ୍କ ରକ୍ତରେ ରଞ୍ଜିତ ହୋଇଛି, ତାର କଳନା ନାହିଁ । ସେହି ଯୁଦ୍ଧରେ ଖୋରସାନର ଜୟ ପତାକା ମୋ ନିଜ ହାତରେ···

ଦାସ—ଥାଉ, ଥାଉ । ତାଙ୍କର ମୃତ୍ୟୁ କଥା କୁହନ୍ତୁ, ସେ କଥା ଶୁଣି ମୋର ନୟନ ଅଶ୍ରୁ ବର୍ଷଣ କରୁ ।

ଅନୁମାନ ହେଲା, ମୋର ପିତା ରଣକ୍ଳାନ୍ତ ଥିଲେ। ସେହି ରଣରେ ପ୍ରାଣ ହରାଇଲେ। ହା ପିତା ! (ଅସ୍ଥିର ହେବା)

ନାଦେର୍—ଶୁଣ ଶୁଣ, ଅସ୍ଥିର ହୁଅନା। ଧୈର୍ଯ୍ୟଧର, ମନଦେଇ ଶୁଣ। ଗ୍ରୀକ୍‌ମାନଙ୍କ ସଙ୍ଗରେ ଯେତେବେଳେ ତୁମ ପିତାଙ୍କର ଯୁଦ୍ଧହୁଏ, ସେତେବେଳେ ଗୋଟାଏ ବିଶ୍ୱାସଘାତକ କୌଶଳରେ ତୁମ ପିତାଙ୍କ ଅନୁଧାବନ କରୁଥିଲା। ଯେତେବେଳେ ଗ୍ରୀକ୍‌ମାନଙ୍କୁ ପରାସ୍ତକରି ତୁମର ପିତା କ୍ଳାନ୍ତ ଓ ଅବସନ୍ନ, ସେହି ସୁଯୋଗରେ ସେହି ବିଶ୍ୱାସଘାତକ ପାପିଷ୍ଠ ତୁମର ପିତାଙ୍କୁ ବନ୍ଦୀ କରି ଖୋରାସାନ ଅଧିକାର କଲା। ତା ପରେ ଯେପରି ହୀନ ପଶୁମାନେ ଲୌହ ଶୃଙ୍ଖଳରେ ଆବଦ୍ଧ ହୋଇ ବଳିସ୍ଥାର୍ଥେ ଆନୀତ ହୁଅନ୍ତି, କ କହିବ ତାସ୍! ସେହିପରି ତୁମର ପିତାଙ୍କୁ, ଖୋରାସାନର ଅଧିପତି ଜାଫର୍ ଖାଁଙ୍କୁ ଏଇ ଇସ୍ପାହାନର ହାଟ ମଧ୍ୟରେ ଶୃଙ୍ଖଳାବଦ୍ଧ ସିଂହକୁ, ଘାତକର ଖଡ୍ଗର ମୁଖକୁ ସହାସ୍ୟ ବଦନରେ ଠେଲିଦେଇଛି, ଉଃ, ଅକୃତଜ୍ଞ ସମ୍ରାଟ୍!

ତାସ୍—କିଏ ସେ ? ସେ କଅଣ ଅଦ୍ୟାପି ଜୀବିତ ଅଛି ?

ନାଦେର—ହଁ, ନରାଧମ ଅଦ୍ୟାପି ଜୀବିତ ଅଛି, ମୁଁ ତୁମକୁ ତାହାର ନିକଟକୁ ନେଇଯିବି।

ତାସ୍—(ବ୍ୟଗ୍ର ହୋଇପଡ଼ି) ଚାଲନ୍ତୁ, ମୋର ତୀକ୍ଷ୍ଣ ଶାଣିତ ତରବାରି ତାର ବକ୍ଷରେ ବସାଇ ଦେଇ ମୋର ପିତୃ ପ୍ରତିହିଂସା ସାଧନ କରିବି। ଏତେ-ବଡ଼ ବିଶ୍ୱାସଘାତକକୁ ପୃଥ୍ୱୀ କିପରି ବହନ କରୁଛି, ମୋର ପିତାଙ୍କୁ ହତ୍ୟାକରି ସେ ନରାଧମ କଅଣ ପାଇଛି ?

ନାଦେର—କଅଣ ଆଉ ନ ପାଇଛି ? ସମ୍ରାଟଙ୍କର ଅତ୍ୟଧିକ ଆନୁଗତ୍ୟ ପାଇଛି, ସମଗ୍ର ଖୋରାସାନ ରାଜ୍ୟ ପାଇଛି, ଏହାଠାରୁ ଅଧିକ ଆଉ କଅଣ ପାଆନ୍ତା ?

ତାସ୍—ତାର ସେହି ସମଗ୍ର ସାମ୍ରାଜ୍ୟ ମଧ୍ୟରେ କେବଳ ହାତ ମାପ ଭୂମି ତାର ଅନ୍ତ୍ୟେଷ୍ଟିର ସ୍ଥାନ ହେବ। ସେ ନରାଧମ କାହିଁ, କାହିଁ ସେ ନରପ୍ରେତ ? ତାକୁ ଥରେମାତ୍ର ମୋତେ ଦେଖାଇଦିଅନ୍ତୁ ! ସେ ଯେତେ ଲୌହ ବର୍ମରେ ଆପାଦମସ୍ତକ ଆବୃତ କରି ରଖୁ, ସହସ୍ର ସହସ୍ର ଶାଣିତ କୃପାଣ ଯେତେ ତାର ପ୍ରାଣ ରକ୍ଷାର୍ଥେ କୋଷମୁକ୍ତ ହେଉ, ତଥାପି ଏଇ ତରବାରି ଦ୍ୱାରା ତାର ହୃତ୍‌ପିଣ୍ଡକୁ ଟାଣି ଆଣି ପଦାଘାତରେ ଖଣ୍ଡ ଖଣ୍ଡ କରି ଏଇ ଇସ୍ପାହାନର ପ୍ରତ୍ୟେକ ନର ନାରୀଙ୍କ ସମ୍ମୁଖରେ ତାର ଘୃଣ୍ୟ ଶରୀରକୁ ଶୃଗାଳ କୁକୁର ସମ୍ମୁଖରେ ନିକ୍ଷେପ କରିବି।

ନାଦେର୍—ନିର୍ବୋଧ ! ସେଥିରେ କଅଣ ପ୍ରତିଶୋଧ ପୂର୍ଣ୍ଣ ହେବ ! ଯିଏ ଜନ୍ମ ହୋଇଛି, ସେ ତ ଦିନେ ହେଲେ ମରିବ। ଏପରି ହଠାତ୍ ମୃତ୍ୟୁ, ସେତ ସମସ୍ତଙ୍କର ବାଞ୍ଛନୀୟ ! ତୁମର ପିତା ବିଶ୍ୱାସଘାତକ-ଙ୍କଦ୍ୱାରା ପ୍ରତାରିତ ହୋଇଥିଲେ, ସେଇ ବିଶ୍ୱାସ-ଘାତକ ତୁମର ପିତାଙ୍କୁ ବନ୍ଦୀ କରି ହତ୍ୟା କରି-ଥିଲା, ମନେରଖ ! ତୁମକୁ ମଧ୍ୟ ସେଇ କାର୍ଯ୍ୟ କରିବାକୁ ହେବ। ମୁଁ ତୁମକୁ ସେହି କୃତଘ୍ନ ସଙ୍ଗେ ପରିଚୟ କରାଇଦେବି। ତୁମେ ତା ଘରେ ରହିବ, ବିଶ୍ୱାସୀ ଅନୁଚର ପରି ସଙ୍ଗେ ସଙ୍ଗେ ଥିବ। ଏକ ସଙ୍ଗେ ଆହାର ବିହାର ମଧ୍ୟ କରିବ।

ତାସ୍—ଆପଣ କଅଣ କହୁଛନ୍ତି ମୁଁ ସେହି ପିତୃହନ୍ତାର ଅଧୀନ ହେବି, ଆଉ ସେହି ବିଷାକ୍ତ ଅନ୍ନ ଭୋଜନ କରିବି ?

ନାଦେର୍—କିନ୍ତୁ ଉପକରଣ ଅତି ଉପାଦେୟ। ପ୍ରତି-ହିଂସା ସେ କଟୁ ଭୋଜନକୁ ସୁମିଷ୍ଟ କରିବ, ତୁମେ ତା ସଙ୍ଗେ ଭଲ ରକମ ମିଶିଯିବ। ସେ ହସିବାକୁ କହିଲେ ହସିବ, ଆଉ କାନ୍ଦିବାକୁ କହିଲେ କାନ୍ଦିବ। ତାକୁ ଉନ୍ମତ୍ତ ହେବାର ଦେଖିଲେ ତୁମେ ଉନ୍ମତ୍ତ ହେବ। ତାପରେ ଯେଉଁ ଦିନ ଠିକ୍ ସମୟ ଆସିବ (ତାସ୍ ଉତ୍ତେଜିତ ହୋଇଉଠିଲା)

ତାସ୍—କହନ୍ତୁ କହନ୍ତୁ, ଦୟାକରି ମୋତେ ଥରେ ସେଇ ପାପିଷ୍ଠ ସଙ୍ଗେ ସାକ୍ଷାତ କରାଇ ଦିଅନ୍ତୁ।

ନାଦେର୍—ସ୍ଥିର ହୁଅ। ତାପରେ ଯେଉଁଦିନ ଠିକ୍ ସମୟ ଆସିବ, ନରାଧମ ଯେତେବେଳେ ତୁମକୁ ସମ୍ପୂର୍ଣ୍ଣ ଭାବେ ବିଶ୍ୱାସ କରିବ, ସେଇ ସମୟରେ (ତାସ୍

ତରବାରି କଟିରୁ ଖୋଲିବାକୁ ଉଦ୍ୟତ) ନା, ନା, ଏତେ ଦୂର ଅଗ୍ରସର ହେବାର ବର୍ତ୍ତମାନ ସମୟ ଆସି ନାହିଁ । ତରବାରି କୋଷବଦ୍ଧ କର । ଏପରି ବିଚଳିତ ହେଲେ ପ୍ରତିଶୋଧ ନେଇପାରିବ ନାହିଁ । ଦେଖ, ଏହା ବାଳକର କ୍ରୀଡ଼ା ନୁହେଁ, ପିତୃହତ୍ୟାର ପ୍ରତିଶୋଧ । ବୁଦ୍ଧି କାର୍ଯ୍ୟକର । ଶୁଣ, ମୁଁ ସେହି ସମୟରେ ଗୁପ୍ତଚର ଦ୍ୱାରା ସମ୍ବାଦ ଦେବି ।

ଦାରା—ତା ହେଲେ କୁହନ୍ତୁ, କି ଉପାୟରେ ମୁଁ ତାକୁ ହତ୍ୟା କରିବି ?

ନାଦେର—ତୁମେ ତାର ଶୟନ ମନ୍ଦିରକୁ ଯିବ, ଯେବେ ଦେଖିବ ସେ ଶୋଇଥାଏ, ତେବେ ତାକୁ ଉଠାଇ ତୁମର ବଂଶ ପରିଚୟ ଦେବ, ଖୁବ୍ ଗୋପନରେ ଏବଂ ସାବଧାନରେ ଏ କାର୍ଯ୍ୟ କରିବାକୁ ହେବ ।

ଦାରା—ହଁ କୁହନ୍ତୁ (ଉଦ୍‌ବେଗ)

ନାଦେର—ମନେ ଥାଏ ଯେପରି, ସେହି ଦିନ ରାତିରେ ସେ ଜାଣିପାରିବ, ଜାହାର ରକ୍ତ ତୁମ ଧମନୀରେ ପ୍ରବାହିତ ହେଉଛି, ଆଉ ତୁମେ କିଏ ଓ କାହିଁକି ଏଠାକୁ ଆସି ତାର ଦାସତ୍ୱ ସ୍ୱୀକାର କରିଥିଲ । ସେ ପ୍ରଥମେ ଶିହରି ଉଠିବ, ତୁମକୁ ହୁଏତ ତାର ପ୍ରାଣ ଜୀବନଭୟରେ ପ୍ରଚୁର ଅର୍ଥ ଦେବାକୁ ଚାହିଁବ; ତାର ଯଥାସର୍ବସ୍ୱ ଦେଇ ମଧ୍ୟ ଶରଣ ପ୍ରାର୍ଥନା କରିବ; କିନ୍ତୁ ତୁମେ ସେ ସମସ୍ତ ପ୍ରତ୍ୟାଖ୍ୟାନ କରିବ । ତୁମେ ଯୁବକ, ସେ ବୃଦ୍ଧ, ଭୟର କିଛି କାରଣ ନାହିଁ; ମାତ୍ର ସତର୍କତା ଆବଶ୍ୟକ, ଖୁବ୍ ଧୈର୍ଯ୍ୟ ସହିତ ତାକୁ ଜାହାନ୍ନମକୁ ପଠାଇବ । ପ୍ରତିଜ୍ଞା କର, ମୋର କୌଣସି ସଙ୍କେତ ବା ଆଦେଶ ନ ପାଇବା ପର୍ଯ୍ୟନ୍ତ ତାକୁ ତୁମେ ହତ୍ୟା କରିବ ନାହିଁ ।

ଦା.ସ—କଦାପି ନୁହେଁ ?

ନାଦେର୍—ବିଶ୍ୱାସ କଅଣ ?

ଦାରା—ମୋର ପିତାଙ୍କର ତରବାରିକୁ ସ୍ମରଣ କରି ପ୍ରତିଜ୍ଞା କରୁଛି ।

ନାଦେର୍—କାହିଁ ତୁମର ପିତାଙ୍କର ତରବାରି ଦାରା ?

ଦାରା—ତେବେ ମୋର ପିତାଙ୍କର କବରର ଶପଥ କରି କହୁଛି ।

ନାଦେର୍—କବର ! କାହାର କବର ? ତୁମର ପିତାଙ୍କର ? କିଏ ତାଙ୍କର କବର ଦେଲା ? ମୁଁ ସ୍ୱଚକ୍ଷୁରେ ଦେଖିଛି ସେହି ମହାତ୍ମାଙ୍କର ଦେହ ଖଣ୍ଡ ଖଣ୍ଡ କରି ପଦାଘାତରେ ଧୂଳି ସହିତ ମିଶାଇ ଦିଆ ହୋଇଛି । ତାଙ୍କର ସେହି ରକ୍ତୋଲ୍ଲିତ ଶିର ବର୍ଚ୍ଛାର ଅଗରେ ବନ୍ଧ କରି ଏଇ ଇସ୍ପାହାନର ପ୍ରତ୍ୟେକ ବଜାରରେ ବୁଲି ହୋଇଛି ।

ଦାରା—ପିତା ! ପିତା ! ତୁମର ପବିତ୍ର ନାମ ସ୍ମରଣ କରି ମୁଁ ପ୍ରତିଜ୍ଞା କରୁଛି, ତୁମର ନିଷ୍ଠୁର ହତ୍ୟାର ଉଦ୍ଦେଶିକା ମୋର ସମ୍ମୁଖରେ ସ୍ଥାପନ କରି ପ୍ରତିଜ୍ଞା କରୁଛି, ସେହି ପାପିଷ୍ଠକୁ ସବଂଶେ ହତ୍ୟାକରି ପ୍ରାଣର ଜ୍ୱାଳା ଶୀତଳ କରିବି । ଏହା ନିଶ୍ଚୟ । ମହାଶୟ ! ଆପଣଙ୍କର ଆଜ୍ଞା ବା କୌଣସି ସଙ୍କେତ ନ ପାଇବା ପର୍ଯ୍ୟନ୍ତ ମୁଁ ସ୍ଥିର ହୋଇ ରହିବି, କିନ୍ତୁ ଆପଣଙ୍କର ସଙ୍କେତ କଅଣ ? ଉଃ, ଆଉ କିଛି ଶୁଣି ପାରୁ ନାହିଁ । କର୍ଣ୍ଣ ରୁଦ୍ଧ ହୋଇ ଯାଉଛି, ପ୍ରାଣ ଛଟପଟ କରୁଛି । ଆଃ, ପୃଥ୍ୱୀ ଏ ତ ସ୍ପନ୍ଦନ ଅନୁଭବ କରୁଛି !

ନାଦେର—ଧୈର୍ଯ୍ୟ ଧର, ଅଧୀର ହୁଅନା, (ନିଜର ଅଙ୍ଗ ଭିତରୁ ଖଣ୍ଡେ ଛୁରି କାଢ଼ିଲେ) ଏହି ଛୁରି, ଏହାକୁ ତୁମର ପିତାଙ୍କର କଟି ଦେଶରେ ଶୋଭା ପାଉଥିଲା ।

ଦାରା—ଏହି ମୋର ସ୍ୱର୍ଗୀୟ ପିତାଙ୍କର ଛୁରି, ମୋ ପ୍ରତି କଅଣ ପିତାଙ୍କର କିଛି ଆଦେଶ ନ ଥିଲା ? ସେ କଅଣ ମୋତେ ଦେଖି ନାହାନ୍ତି ?

ନାଦେର—ନା, କିପରି ବା ଦେଖିବେ । ବିଶ୍ୱାସଘାତକ କର୍ତ୍ତୃକ ଯେତେବେଳେ ସେ ବନ୍ଦୀ ହେଲେ, ତାଙ୍କ ଅନୁଚରମାନଙ୍କ ମଧ୍ୟରୁ ମୁଁ କେବଳ ଆତ୍ମ-ଗୋପନ କରି ପାରିଥିଲି, ମୁଁ ଯେତେବେଳେ ଏ ସମ୍ବାଦ ତୁମର ମାତାଙ୍କୁ କହେ—

ଦାରା—ମୋର ମା ! କାହାନ୍ତି ସେ ?

ନାଦେର—ଆହା ! ସତୀ ସାଧ୍ୱୀ ଶିରୋମଣି ସେହି ଦୁଃସମ୍ବାଦ ପାଇବା ମାତ୍ରେ ମୂର୍ଚ୍ଛିତା ହୋଇ ପଡ଼ିଲେ । ସେହି ଅବସ୍ଥାରେ ତୁମେ ମାତା ଗର୍ଭରୁ ଭୂମିଷ୍ଠ

ଅଧିକ ହେଉ, ଧନ ଜନ ଗୋପ ଲକ୍ଷ୍ମୀ ମାଡ଼ି-ଯାଉ ।

ନାଗରିକ — (ସ୍ୱଗତ) ଧନ ଜନ ସବୁଥିରେ ଭଗବାନ ଭରପୂର ରଖିଛନ୍ତି, କିନ୍ତୁ ଏପରି ଲକ୍ଷ୍ମୀଟିଏ ନଥାନ୍ତା ଅଭାବ । ( ପ୍ରକାଶ୍ୟେ ) ଏ ବାଳିକାଟି ତୁମର କେତେଦିନରୁ ସହ ସଙ୍ଗିନୀ ।

ଅନ୍ଧ — ଆବାଲ୍ୟରୁ···

ନାଗରିକ — ଏଁ ଆବାଲ୍ୟରୁ ସମ୍ଭବତଃ ଉଭୟଙ୍କ ମଧ୍ୟରେ କଅଣ, କହିଲେ କିଛି ତ୍ରୁଟି ଅଛି ?

ଅନ୍ଧ — ତ୍ରୁଟି ନାହିଁ କଥା ଲଜ୍ଜା ବି ନାହିଁ , ଆମେ ଦୁହେଁ ଭାଇ ଭଉଣୀ ।

ନାଗରିକ — ବାଳିକାଟି ତ ଯୌବନରେ ପଦାର୍ପଣ କଲାଣି, ଏପର୍ଯ୍ୟନ୍ତ ବିବାହ ନ ହେଉଛି କିଆଁ ?

ଅନ୍ଧ — ତା'ର ଅନିଚ୍ଛା ସତ୍ତ୍ୱେ ।

ନାଗରିକ — ନା, ତୁମର ଅନିଚ୍ଛା ସତ୍ତ୍ୱେ ବୋଧହୁଏ । ବାଳିକାଟି ଅନ୍ୟର ହୋଇଗଲେ ଅନ୍ଧର ଚଳାଚଳ ପକ୍ଷେ ଅସୁବିଧା ଘଟିବ, ତେଣୁ···

ଅନ୍ଧ — ସେ ଯା ହେଉ, ଆମ୍ଭଙ୍କୁ ଭିକ୍ଷାଦାନ କରାଇବୁ ବାଃ କହୁଅଛନ୍ତି, ବାରଦ୍ୱାର ଭିକାରି ବାରଦ୍ୱାର ହେବୁ ।

ନାଗରିକ — ଏ କନ୍ୟାଟିର ଯିଏ ପାଣିଗ୍ରହଣ କରିବ, ସେ ତ ତୁମର ଦୁଃଖ ଦୁର୍ଦ୍ଦଶା ସବୁ ମୋଚନ କରିଦେବ । କେହି ଐଶ୍ୱର୍ଯ୍ୟଶାଳୀ ଲୋକ ନିଶ୍ଚୟ ବାଳିକାଟିକୁ ପସନ୍ଦ କରିବ ।

ଅନ୍ଧ — ଦିନେ ମଧ୍ୟ ଆମର ଖୁବ୍ ସମ୍ପଦ ଥିଲା । କୋଠା-ବାଡ଼ି ଥିଲା । କିନ୍ତୁ ସେ ସବୁ ଭାଗ୍ୟଚକ୍ରରେ ଧୂଳିସାତ ହୋଇଯାଇଛି । ଆମେ ଦୁହେଁ ମୁକ୍ତ ପକ୍ଷୀ ପରି ଖୁବ୍ ଆନନ୍ଦରେ ବୁଲୁ ଛୁ ।

ନାଗରିକ — ସହରରେ ଆଶ୍ରମ ନେଉ କେଉଁଠି ?

ଅନ୍ଧ — ପାନ୍ଥଶାଳା ।

ନାଗରିକ — ତୁମେ ଆଉ କେବେ ଇସ୍ପାହାନ ସହରକୁ ଆସିଥିଲ, ନା ଏଇ ପ୍ରଥମ ?

ଅନ୍ଧ — ଆସିଥିଲୁ, ମନେ ନାହିଁ ! ଆମକୁ କିଏ ନାଦେର ସାହାଙ୍କ ଦେଖିବୁଁ,ବାଃ ଭଲ ହେବେ କି ?

ନାଗରିକ — ନାଦେର ସାହା ! ତାଙ୍କ ସଙ୍ଗରେ ତୁମର ସମ୍ପର୍କ କଅଣ ?

ଅନ୍ଧ — ସମ୍ପର୍କ କିଛି ନାହିଁ ; ତଥାପି ଆମ ଦୁଃଖରେ ତାଙ୍କର ସହାନୁଭୂତି ଅଛି ।

ନାଗରିକ — (ସ୍ୱଗତ) ଆରେ ବା, ବା, ନାଦେର ସାହାଙ୍କ ଜଣାଶୁଣା ଲୋକ, ମୁଁ ତ ଜାଣୁ ଜାଣୁ ନିଆଁରେ ଗୋଡ଼ ପୂରାଇଥିଲି ରେ ! (ପ୍ରକାଶ୍ୟେ) ଠିକ୍ ମୁହିଁ ସଳଖ ବୁଲିଯା, ବଡ଼ ମସ୍‌ଜିଦର ପୂର୍ବପଟେ ତାଙ୍କର ଘର ।

ଅନ୍ଧ — ହଉ ବାବା, ଈଶ୍ୱର ତୁମର ମଙ୍ଗଳ କରନ୍ତୁ । (ଉଭୟ ପ୍ରସ୍ଥାନ)

ନାଗରିକ — ଶିକାରଟା ଜୁଟିଥିଲା ; କିନ୍ତୁ କେଜାଣି ନୁହେ, ଖସିଗଲା । ଓଃ, ବାଳିକାଟା ଗାଇଁକି ଭଣ୍ଡର ପଦେ ମିଳନ୍ତା ନାହିଁ, ନାଦେର୍ ସାହା ନାଁଟା ଶୁଣି ମନଟା ଦବିଗଲା । ଦେଖାଯାଉ, ହାତରେ ତ କିଛି ନ ଥିଲା । ନଇଲେ ପ୍ରଲୋଭନ ଦେଖାଇ ଖାଆ ପିଆ ଦେଇ ଅନ୍ତତଃ କରି ପାରିଥାନ୍ତି । ଅଚ୍ଛା, ଦେଖାଯାଉ ଦିନେ ତ'ଦିନ ଏଠି ରହିବ ତ ! ଆଉ କେଉଁଠା ଯିବ ।

(ପ୍ରସ୍ଥାନ)

—*—

## ଷଷ୍ଠ ଦୃଶ୍ୟ

### ରାଜସଭା

(ମସ୍‌ନଦ୍ ନିକଟ, ନାଦେର, ଦାଉ ଓ ଇଉସୁଫ୍ ପ୍ରବେଶ କଲେ । ଅଦୂରରେ ଇରାନ ସମ୍ରାଟ ଆସୁଥିବାର ଦେଖି)

ନାଦେର୍ — ଇଉସୁଫ୍, ତୁମେ ଟିକେ ଦୂରରେ ଅପେକ୍ଷା କର । (ଦାଉଙ୍କୁ) ଏଇ ଯେ ଇରାନ ସମ୍ରାଟ ଆସୁଛନ୍ତି । ହଁ, ମନେରଖ, ମୁଁ ଯାହାର ସମ୍ମୁଖରେ ନତଜାନୁ ହେବ, ସେହି ତୁମର ଟିକୁଦକା । ମନେରଖ (ପିବାକୁ ଉଦ୍ୟତ ହେବା ସମୟରୁ ଦାଉ ତରବାରି ଖୋଲିବାକୁ ଉଦ୍ୟତ) ଏତେ ଶୀଘ୍ର ଭୁଲିଗଲ ! ତରବାରି କୋଷବଦ୍ଧ କର ।

(ସମ୍ରାଟ ପ୍ରବେଶ କଲେ)

(ଅଭିବାଦନ ଗ୍ରହଣ କରନ୍ତୁ ସମ୍ରାଟ୍)

ସମ୍ରାଟ—ଜୟ ନାଦେର ଶାହ ! ସର୍ଦ୍ଦାର ନାଦେର, ତୁମର ବାଳକଙ୍କୁ ପେଶବନ୍ଦ ଶିକାର କରିବାକୁ ଯାଇଥିଲ, ମୋହବତଙ୍କ ତୁମର ଆଉ ମୋ ସହିତ ଦେଖା ହୋଇନାହିଁ । ଏତେଦିନ ପରେ କାହିଁ କମନ କରୁଥିଲ ? (ଦାଗକୁ ଦେଖି) ଏ କିଏ ?

ନାଦେର—ଜାହାଁପନା ! ସେ ମୋର ଭଣଜା ।

ସମ୍ରାଟ—ଏହାର ନାମ କଅଣ ?

ନାଦେର—ଏହାର ନାମ ଦାଗ ଯୋଦେସ୍ଥାର ।

ସମ୍ରାଟ—ଘର କେଉଁଠି ?

ନାଦେର—ଖୋରାସାନ ।

ସମ୍ରାଟ—ଏଁ, କିଏ ନାକ ?

(ଦାଗକୁ ଲକ୍ଷ୍ୟ କରି) ତୁମେ କ ଅବସ୍ଥାରେ ଚୋଟ ପାଇଛ ? ତୁମେ କ କାର୍ଯ୍ୟ କରିପାରିବ ?

ଦାଗ—ଜାହାଁପନା ! ଯାହା ଆପଣଙ୍କର ଆଦେଶ ହେବ, ତା ଏ ଦାସ ପାଳନ କରିବାକୁ ପ୍ରସ୍ତୁତ ଅଛି ।

ସମ୍ରାଟ—ତୁମର କୃତ୍ସ୍ନତ, ତୁମେ ଯୁଦ୍ଧ କରିପାରିବ । ଯଦି ଯୁଦ୍ଧ ଜାଣ ତାହାହେଲେ ଶୁଣ ମୁଁ ତୁମକୁ ସେନାପତି ପଦରେ ନିଯୁକ୍ତ କରିବି ।

ଦାଗ—ଜାହାଁପନା, ଏ ଅତି ସୌଭାଗ୍ୟର କଥା ।

ସମ୍ରାଟ—ବେଶ୍, ତା'ହେଲେ ତୁମେ ମୋର ସେନାପତି ।

(ଦାଗ ନତ ହୋଇ ସମ୍ରାଟଙ୍କ ମସ୍ତକ ସ୍ପର୍ଶ କରିବାକୁ ହସ୍ତ ପ୍ରସାରଣ କରୁଥିଲେ, କିନ୍ତୁ ନାଦେର୍ ଶାଙ୍କ ଇଙ୍ଗିତରେ ଜନମ୍ସତ ହେଲେ, ଦାଗ ପାଦ ମସ୍ତକ ସ୍ପର୍ଶ କଲେ)

ଦାଗ—ଜାହାଁପନାଙ୍କର ଜୟ ହେଉ ।

ସମ୍ରାଟ—ଆଚ୍ଛା ଯାଅ, ସମୟରେ ତୁମେ ମୋ ସହିତ ଦେଖା କରିବ ।

(ସେହି ଭଳି ଚାଲିଗଲେ)

ଦାଗ—ଏତେ ଉଚ୍ଚ ଅଧିପତି, ମୋର ଚିରନ୍ତନ, ମୁଁ ଏହାଙ୍କୁ ସଲାମ କଲି ? (ଅବଶୋଷ କରିବା)

ନାଦେର୍—ଏହାପରି ଅନେକ କାର୍ଯ୍ୟ କରିବାକୁ ପଡ଼ିବ ।

ଦାଗ—ଅନେକ ଥର !

ନାଦେର୍—ହିଁ ଭୁଲି ଯାଅନା, କଣ ପ୍ରତିଜ୍ଞା କରିଛ ?

ଦାଗ—ଏହି ପ୍ରତିଜ୍ଞା ହିଁ ମୋତେ ପାଷାଣ କରିଦେବ ।

ନାଦେର୍—(ଇଉସୁଫ୍‌କୁ ଅଦୂରରେ ଦେଖି) ଯାଅ ତୁମର ବନ୍ଧୁଙ୍କଠାରୁ ବିଦାୟ ନେଇ ମୋତେ ସ୍ତୁପରେ ଦେଖା କରିବ । ମୁଁ ଏଠାରୁ ଆସୁଛି । ହିଁ ମନେରଖ, ଆଜିଠାରୁ ଜଗତରେ ତୁମର ଆପଣାର ବନ୍ଧୁ ବୋଲି କେହି ନାହିଁ, ଏକମାତ୍ର ବନ୍ଧୁ ପ୍ରତିହିଂସା । (ପ୍ରସ୍ଥାନ)

(ଦାଗ ଇଉସୁଫ୍‌କୁ ଡାକିବାରୁ ଇଉସୁଫ୍ ଆସିଲେ)

ଇଉସୁଫ୍—କ ଖବର ଦାଗ, କ'ଣ ପଦୋନ୍ନତି ପାଇଲ ?

ଦାଗ—ଇଉସୁଫ୍, ଆଜିଠାରୁ ତୁମର ମୋର କୌଣସି ସମ୍ପର୍କ ନାହିଁ ।

ଇଉସୁଫ୍—ଏଁ ଏସବୁ କଅଣ କହୁଛ ଦାଗ ? ତୁମର ମୁଖ ଏପରି ବିମର୍ଷ ଦେଖାଯାଉଛି କାହିଁକି ? ଘଟଣା କଅଣ କୁହ ଭଲା ? ଏପରି ପରିହାସ କରୁଛ କାହିଁକି ?

ଦାଗ—ନା ଇଉସୁଫ୍, ପରିହାସ ନୁହେଁ ସତ, ଯାହା ସତ ତାହାହିଁ କହୁଛି । ଯାଅ ଇଉସୁଫ୍, ତୁମେ ଖୋରାସାନ ଫେରିଯାଅ; ମୁଁ ମୋର କର୍ତ୍ତବ୍ୟ ପଥ ଅନୁସରଣ କରେ ।

ଇଉସୁଫ୍—ତୁମର ଏତେ କମ୍ବ ସୁଖସ୍ବକୁ ବନ୍ଧୁ କହିବାର ଅଛି ?

ଦାଗ—କିଛି ନାହିଁ । ମୋର ଅନ୍ତରର ଯାହାକିଛି ଥିଲା, ସେ ସମସ୍ତ ରକ୍ତର ବନ୍ୟାରେ ଲହର ଦେଉଛି । ଆଉ ମୋ ପୂର୍ବ ସ୍ମୃତି ନାହିଁ, ଦୟା ନାହିଁ, ସ୍ନେହ ନାହିଁ, ଏପରି କି ତୁମେ ମଧ୍ୟ ନାହିଁ । ବର୍ତ୍ତମାନ ମୁଁ ମୋର ସଙ୍ଗୀ, ମୁଁ ମୋର ବନ୍ଧୁ । ଏକ ପ୍ରବୃତ୍ତି ଆଜିଠାରୁ କାହାରି ଭାଗ୍ୟର । ବିଦାୟ ପ୍ରିୟ ଇଉସୁଫ୍ ବିଦାୟ ।

ଇଉସୁଫ୍—(ଇତସ୍ତତଃ ହୋଇ) ବଡ଼ ଭୁଲ ଯାଉଛି, କିନ୍ତୁ ମନେ ରଖିଥିବ, ସାଙ୍ଗ ହୋଇ ଅନେକ ଅପରାଧ କରିଛୁ, କ୍ଷମା କରିବ ! (ସ୍ୱଗତ) ବଡ଼ ଅଦ୍ଭୁତ ଘଟଣା, ଯାହାଙ୍କ ସାଙ୍ଗେ ଅନ୍ୟ ରକମ ! ସାଥି ହୋଇ ଫୁର୍ତ୍ତିରେ ଆସିଥିଲି, ଏକୁଟିଆ ଯିବି ! (ପ୍ରକାଶ୍ୟେ) ବଡ଼ ଦୁଃଖ ଲାଗୁଛି, କେତେ ଖେଳ, କେତେ କଥା, ସବୁ ପାସୋରିବାକୁ ହେବ ? ହା ଖୋଦା ! ହଁ, ଯିବାବେଳେ ଗୋଟାଏ କଥା କହି ଯାଏ, ସମ୍ପଦରେ କ ପଚାରିଲେ ନାହିଁ ଭାଇ, ବିପଦରେ ଶୀଘ୍ର ଜଣାଇବୁ ! ଏତିକ ଅନୁରୋଧ ଭାଇ, ଆସେ ତେବେ, ସଲାମ !

(ସଲାମ କରି ଇଉସୁଫ୍ ପ୍ରସ୍ଥାନ)

ଦାଉଦ—ସଲାମ ( ଉଦାସ ଇଉସୁଫ୍‌କୁ ଚାହିଁ, ଇଉସୁଫ୍ ପ୍ରସ୍ଥାନ ) ହେ ଖୋଦା, ହେ ଅନନ୍ତ ଶକ୍ତିର ଆଧାର ! ଯେବେ ଏ ହୃଦୟର ନିଭୃତ କୋଣରେ ସ୍ନେହ ମମତା, ଦୟା ମାୟାର ଗନ୍ଧସ୍ପର୍ଶ ମାତ୍ର ଥାଏ, ତୁମେ ସେ ସମସ୍ତ ଧ୍ୱଂସ କର ! ଏଇ ହୃଦୟ ଆଜଠାରୁ ପାଷାଣରେ ପରିଣତ ହେଉ, ଶୋଣିତରେ ଅଗ୍ନିର ପ୍ରବାହ ପ୍ରବାହିତ ହେଉ, ପ୍ରତି ମାଂସ ପେଶୀ ବଜ୍ରତୁଲ୍ୟ କଠିନ ହେଉ ! ଆଜଠାରୁ ଆହାରେ ବିହାରେ, ଶୟନେ ସ୍ୱପନେ ଏକମାତ୍ର ବନ୍ଧୁ ପ୍ରତିହିଂସା, ଏକମାତ୍ର ଆତ୍ମୀୟ ପ୍ରତିହିଂସା, ଏକମାତ୍ର ସଙ୍ଗୀ ପ୍ରତିହିଂସା ! ଆଜଠାରୁ ଏଇ ପ୍ରତିହିଂସା ଛାୟାପରି ମୋର ଅନୁସରଣ କରିବ ! ମୁଁ ତା ସଙ୍ଗେ କଥା କହିବି, ଗୀତ ଗାଇବି, ମାନସ କୁସୁମରେ ହାରଗୁନ୍ଥି ତା ଗଳାରେ ପିନ୍ଧାଇଦେବି ! ମୋତେ ତୃଷା ହେଲେ ପ୍ରତିହିଂସା ଶୀତଳ ପାନୀୟ ଦେବ, କ୍ଷୁଧା ହେଲେ ଅନ୍ନ ଦେବ ! ମୁଁ ଅବସନ୍ନ ହୋଇପଡ଼ିଲେ ଅତି ଯତ୍ନରେ ମୋର ଶଯ୍ୟା ରଚନା କରିଦେବ ! ମୁଁ ନିଦ୍ରାଗଲେ ମୋର କର୍ଣ୍ଣରେ ମୃଦୁ ସ୍ୱରରେ କହିବ ପ୍ରତିହିଂସା, ପ୍ରତିହିଂସା, ପ୍ରତିହିଂସା (ତରବାରି ଖୋଲି) ରେ ନରାଧମ ଦୁର୍ବୃତ୍ତ ! ଶାନ୍ତି, ତାହାଙ୍କର ପ୍ରତିହିଂସା ଜ୍ୱଳନ୍ତ ଅଗ୍ନି ଅକ୍ଷରରେ ଲେଖା ଥାଉ ! ଏଇ ମୁହୂର୍ତ୍ତଠାରୁ ଯେତେ ଦିନ ପର୍ଯ୍ୟନ୍ତ ମୋର ପିତାଙ୍କର ଖୁନ ହତ୍ୟାର ପ୍ରତିଶୋଧ ନ ନେଇଛି, ତେତେ ଦିନ ପର୍ଯ୍ୟନ୍ତ ମୁଁ ପ୍ରତିଜ୍ଞା କରୁଛି, ମୋର ଅନ୍ୟ ଚିନ୍ତା ନାହିଁ, ଅନ୍ୟ ବୃତ୍ତି ନାହିଁ, ଅନ୍ୟ କାର୍ଯ୍ୟ ନାହିଁ ! ବନ୍ଧୁତ୍ୱର ବନ୍ଧନ, ରମଣୀର ପ୍ରେମ, ସୌନ୍ଦର୍ଯ୍ୟର ଆକର୍ଷଣ ( କେତେକ ଦାସୀ ସହ ମସ୍‌ନଦ୍‌କୁ ବାହାରିଗଲେ, ପଛରେ ରକ୍ଷୀମାନେ ଯାଉଥିଲେ ! ଦାଉଦ ଦେଖି ପଚାରିଲେ) ଏ କିଏ ?

ରକ୍ଷୀ—ଇରାନ୍‌ର ରାଣୀ !

ଦାଉଦ—ଇରାନ୍‌ର ରାଣୀ ( ହାତରୁ ଛୁରି ଖସିପଡ଼ିଲା ) ଆହା କି ରୂପରାଶି, କିନ୍ତୁ ଏତେ ବିରସ କାହିଁକି ? ଯେପରି ଦୁଃଖ ଚିନ୍ତାର ରେଖା ତାର ମୁଖ ମଣ୍ଡଳରେ ଫୁଟି ଉଠୁଛି ! ରେ ହୃଦୟ, ଏହା କି ଦୁର୍ବଳତା ! ଦୃଢ଼ ହୁଅ, ମନେଧର, ପ୍ରତିହିଂସା ! ପ୍ରତିହିଂସା !! ପ୍ରତିହିଂସା !!! (ବ୍ୟଗ୍ରେ ପ୍ରସ୍ଥାନ)

---

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

### ଦ୍ରାକ୍ଷାକ୍ଷେତ୍ର

(ଦ୍ରାକ୍ଷାକ୍ଷେତ୍ରରେ ଗୋଟିଏ ବଡ଼ ଗଛରେ ଦୋଳିଟିଏ ଲଗିଥିଲା)

ସୁଲତ—(ଖୋଜି ଖୋଜି ଉତଳା ହେଲାପରି) ଦାଉଦ ! ଦାଉଦ ! କାହିଁ, ଏଠାରେ ତ ମଧ୍ୟ ନାହିଁ ! ନାଁ, ବୋଧହୁଏ କୁଆଡ଼େ ଚାଲିଯାଇଛି ! ମୋତେ ନ କହି ଚାଲିଗଲା, ତାର ମନ ଟିକେ ବିକଳ ହେଲାନାହିଁ ! ଏତେ ସ୍ନେହ, ଏତେ ମମତା, ସବୁ ଭୁଲିଗଲା ! ଦାଉଦ ! ଦାଉଦ !

ନସିବୁ—(ପ୍ରବେଶ) ଦାଈ, ଦାଉଦ କାହିଁକି ହେଉଛୁ ସୁଲତ ? ଦାଉଦ ପାଇଁ ଏତେ ଉତଳା କାହିଁକି ? ସେ ବଗିଚା କାମରେ ଯାଇଛି, ତା ସଙ୍ଗରେ ଇଉସୁଫ୍ ମଧ୍ୟ ଯାଇଛି ! ଖୁବ୍ ଅଳ୍ପ ସମୟ ମଧ୍ୟରେ ଫେରିଆସିବ ! ମନରେ ଦୁଃଖ କରିବାର କିଛି ନାହିଁ !

୨ୟ—ତାଆର ନାହିଁ, ପଲ୍ଲ ମୁଠାକ ଅଛି । ତୋତେ ପାଲି ଖେଳଆସେ ।

୧ମ—ଆରେ ଆସୁ ନ ଆସୁ ଗଡ଼େଇବା ଆଗେ । ମୋର ମୁଁ କଚେବାର ତୋତେ ତିନ ପଚଶ ।

୨ୟ—ପଚଶ, ଉଠ୍‌ବ ସେ କଉଡ଼ି ଖେଳ ।

୧ମ—ତୁ ପିଣ୍ଡା (ପାଲି ପିଣ୍ଡାରେ ବସିଲେ) ।

୨ୟ—(କାଠିଧରି) ଏ ତିନ ଗଡ଼ାଇ ଦେଲି ।

୧ମ—ମୋର (କାଠିଧରି) ନଅ ତିନ ।

୨ୟ—ଉଠୁ ବେ ତୋତେ କାଠି ଧରି ଆସେ ନାହିଁ ।

୧ମ—ତୋତେ ଖାଲି କାଠିଧରି ଆସେ । ସେମିତ ରଗ ଚଢ଼ାଉଚୁ ଧର—(ଏତେବେଳେ କବାଟରେ ଆଘାତ ଶୁଭିଲା) ଆରେ ଖାଇ କିଏ !

୨ୟ—ସକାଳ ହେଲା କିରେ !

୧ମ—ଆରେ ଯାଃ ! ଏଇତ ବାରଟା ବାଜିଲା ।

(ପୁନଶ୍ଚ ଦ୍ୱାରରେ ଧକ୍କା ଦେଲା)

୨ୟ—ଦେଇ ଶୁଣ !

୧ମ—ଆଚ୍ଛା, ମୁଁ ଦେଖିଆସେଁ (ଗୁଲାଯାଇ ଫେରି ଆସିଲା) ହେ ଗୋଟାଏ ଇସ୍ତ୍ରୀ ।

୨ୟ—ଇସ୍ତ୍ରୀ କଅଣ ବେ ।

୧ମ—ମାଇକିନିଆ ।

୨ୟ—ଦେଖିବାକୁ କେମିତ ।

୧ମ—ମୁଁ ଦେଖିଲି କେମିତ, ମୁହଁ ତ ଘୋଡ଼ାଇଛି ।

୨ୟ—ତା ହେଲେ ନିଶ୍ଚୟ ଖୁବ୍ ସୁନ୍ଦରୀ; ନ ହେଲେ ଖୁବ୍ ଅସୁନ୍ଦରୀ । ଏ ଦୁଇ ରକମ ମାଇକିନିଆ ମୁହଁ ଘୋଡ଼ାନ୍ତି । ଯା ଦ୍ୱାର ଖୋଲି ଦେ ।

୧ମ (ଦ୍ୱାର ଖୋଲି ଦେବାରୁ ଆବରଣ ଢାଙ୍କି ରାଜନନ୍ଦିଣୀ ପ୍ରବେଶ କଲେ)

୨ୟ—କଅଣ କହିବା ହେଉଛନ୍ତି, ଆମଠାରେ କି କାର୍ଯ୍ୟ ।

ରାଣୀ—ଏ କାରାଗାରର ଅଧ୍ୟକ୍ଷ କିଏ ?

୧ମ—ମୁଁ ।

୨ୟ—ନାହିଁ, ମୁଁ ।

୧ମ—ଚୁପ୍, ମୋତେ ଲୁଚୁଛି ।

୨ୟ—ନାହିଁ, ମୋତେ ଲୁଚୁଛି ।

ରାଣୀ—ଯିଏ ହୁଅ, ଆସାମୀ ସଙ୍ଗେ ମୁଁ ଦେଖା କରିବାକୁ ଚାହେଁ ।

୧ମ—ତା ହେବ ନାହିଁ ।

ରାଣୀ—ଜାଣ ମୁଁ କିଏ ? (ମୁଦ୍ରିକା ଦେଖାଇଲେ)

୨ୟ—(ଚମକି ପଡ଼ି) ଆରେ ରାଣୀ ସାହେବା ! ପଳେଇଆ, ପଳେଇଆ ।

(ଦୁହେଁ ଯିବାକୁ ଉଦ୍ୟତ)

ରାଣୀ—ଶୁଣ, ଆସାମୀ କେତେବେଳେ ବଧ ଭୂମିକୁ ଯିବ ।

୧ମ—ରାତ ଭିନସରା । ମୋର ମନେ ହୁଏ, ସେ ବିଷ ଖାଇ ମରିବଣି ।

ରାଣୀ—ବିଷ ! ବିଷ କାହୁଁ ଆସିଲା ।

୧ମ—ସେଇ ଘରେ ଥାଏ । ଶୂଳୀ ହଆହେବା ଆସାମୀ ଯେଉଁ ଘରେ ବନ୍ଦଥାଏ, ତା ନିକଟରେ ବିଷ ମଧ୍ୟ ରଖାଯାଇ ଥାଏ । ଯଦି ଆସାମୀ ବିଷ ଖାଇ ପ୍ରାଣ ହରାଏ, ତେବେ ଆଉ ବଧଭୂମି ପର୍ଯ୍ୟନ୍ତ ଯାଏ ନାହିଁ ।

ରାଣୀ—ଆଚ୍ଛା, ତୁମ୍ଭେମାନେ ଯାଅ (କହି ରାଣୀ ଭିତରକୁ ଗଲେ) ।

୧ମ—ଭାଇ ଚାକିରି ହେଲନାହିଁ; ହାତ ଦୁଇଟି ବେଶ୍ ଗୋଲଗାଲ ହୋଇଛି ।

୨ୟ—ମୋତେ ଜଣାଯାଉଛି କୌଣସି ଦାସୀ ତା ସଙ୍ଗରେ ପ୍ରେମରେ ପଡ଼ିଥିଲା, ସେଥିପାଇଁ ଶେଷ ଦେଖା କରିବାକୁ ଆସିଛି । ବାପ ରେ ମରିଲା ବେଳେ ମଧ୍ୟ ପ୍ରେମ । ଧନ୍ୟ ତୁମ ପ୍ରେମ ।

( ଉଭୟେ ପ୍ରସ୍ଥାନ )

ରାଣୀ—(ବିଷପାତ୍ର ଦେଖି ପ୍ରବେଶି) ଏଇ ବିଷ (ଶୁଙ୍ଘି) କି ଉଗ୍ର ଗନ୍ଧ । ଏଇ ସାମାନ୍ୟ ପଦାର୍ଥଟିର କି ଅଦ୍ଭୁତ ଶକ୍ତି । ଖାଇଲେ ଆଉ କିଛି ଯନ୍ତ୍ରଣା ରହିବ ନାହିଁ । ଶୋଣିତର ଦ୍ରୁତ ଗତି, ହୃଦୟର କମ୍ପନ, ଏଇ ନିଃଶ୍ୱାସ ପ୍ରଶ୍ୱାସ କିଛି ରହିବ ନାହିଁ । ମୁଁ ମରିଯିବି, ମୋର ଶରୀରକୁ ଫିଙ୍ଗି ଦେବେ । ଏଇ ସୁନ୍ଦର ବଳିଷ୍ଠ ଦେହ, ଯାହାକୁ କି ମୁଁ ଏତେ ଯତ୍ନ କରି ସଜାଇଛି । ଯାହାକୁ ଦେଖି ଦାସ

ଭଲ ପାଉଛୁ । ନା, ନା, ଭଲ ତ ପାଉନାହିଁ, ବରଂ ଘୃଣା କରୁଛୁ । ସେଇ ଦେହ ମାଟିରେ ପଡ଼ି ସଢ଼ିବ, ସେଥିରେ ପୋକ ହେବ । ଉଃ, ମୋର ଆତ୍ମାର କ ଗତି ହେବ (ଠନ୍ ଠନ୍ ଘଣ୍ଟା ଦୁଇଟା ବାଜିଲା) ଏଇ ସମୟର ଗତି କେହି ରୋଧକରି ପାରିବେ ନାହିଁ । ଏଇଥର ତ ସେଇ ଶେଷ ମୁହୂର୍ତ୍ତ ଆସିବ । ତେବେ ଆଉ ବିଳମ୍ବ କାହିଁକି ? (ବିଷପାତ୍ରକୁ ଚାହିଁ) ଏଇ ଟିକକ ଖାଇଲେ ତ ସମସ୍ତ ଶେଷ ହୋଇଯିବ । ଯେଉଁ ପାପ କରିଛୁ ତା'ର ତ ଉପଯୁକ୍ତ ଶାସ୍ତି ଆଉ କିଛି ନାହିଁ । ଉଃ, ସେ ମୋ ପାଇଁ ମୃତ୍ୟୁକୁ ଆଲିଙ୍ଗନ କଲେ, ଆଉ ମୁଁ ପାରିବ ନାହିଁ !

( ବିଷପାନ କଲେ; ଏବଂ ଶେଷରେ ପାତ୍ର ଫିଙ୍ଗି ଦେବା ଶବ୍ଦରେ ଦାସ ଉଠିଆସିଲା)

ଦାସ—କିଏ ?

(ଉଭୟ ଉଭୟକୁ କିଛି ସମୟ ଚାହିଁ ରହିଲେ)

ରାଣୀ—ଦାସ ! ମୁଁ ତୁମ୍ଭକୁ କ୍ଷମା ଭିକ୍ଷାମାଗିବାକୁ ଆସି-ନାହିଁ । ମୁଁ ଜାଣେ, ମୁଁ କ୍ଷମାର ମଧ୍ୟ ଅଯୋଗ୍ୟ । ମୋପରି ପାପୀୟସୀ, ପିଶାଚୀ ପାଇଁ କ୍ଷମା ନାହିଁ (ନିଜର ଅଳଙ୍କାର କାଢ଼ି) । ଯାଅ ଦାସ, ଏଇ ଅଳଙ୍କାର, ଏଇ ମୁକ୍ତି କା ନେଇ ପଳାଅ । ଦ୍ୱାରଦେଶରେ ଦ୍ରୁତଗାମୀ ଅଶ୍ୱ ସଜ୍ଜିତ ଅଛି । ନିଅ ମୁଦ, ଯାଅ ପଳାଅ ।

ଦାସ—ଏ କି କଥା !

ରାଣୀ—ବିଳମ୍ବ କରନା, ନିଅ ପଳାଅ । ଖୋଦା ତମକୁ ନିରାପଦରେ ରଖନ୍ତୁ ।

ଦାସ—(ସ୍ୱଗତଃ) ଜୀବନ ଯେ ଏତେ ମଧୁର, ତା ମୁଁ ଜାଣି ନ ଥିଲି ।

ରାଣୀ—ଯାଅ ଦାସ ସମୟ ହେଲଣି, ଏହିକ୍ଷଣି ଜଲ୍ଲାଦ୍ ଆସିବ ।

ଦାସ—ଜଲ୍ଲାଦ ଆସୁ ।

ରାଣୀ—ଆଉ ମୋତେ ବିଶେଷ ଲଜ୍ଜା ଦିଅନା, ଯାଅ ପଳାଅ । ( ବ୍ୟସ୍ତ ହେଉଥାନ୍ତି )

ଦାସ—ଆଉ ତୁମେ ।

ରାଣୀ—ମୁଁ ତ ଯିବି, ମୋତେ ଆଉ କେହି ରକ୍ଷା କରି ପାରିବେ ନାହିଁ । ଶୁଣ ଦାସ ! (କ୍ରନ୍ଦନ କରି) ମୁଁ ବିଷ ଖାଇଦେଇଛି । ତୁମେ ପଳାଅ । ଏଇ ସମୟ ହେଲା, ଜଲ୍ଲାଦ ଆସିବ । ବାଦ୍‌ଶାହ ଆସିବେ । ଆଉ କେହି ତୁମ୍ଭକୁ ରକ୍ଷା କରି ପାରିବେ ନାହିଁ ।

ଦାସ—କଅଣ କହିଲ, ତୁମେ ବିଷ ଖାଇଛ !

ରାଣୀ—ଖାଇବି ନାହିଁ, ନିର୍ଦ୍ଦୋଷ ହୋଇ ତୁମେ ମରିବାକୁ ଜାଣ, ଆଉ ମୁଁ ନାରୀ ହୋଇ ତା ପାରିବି ନାହିଁ ?

ଦାସ—କଅଣ କଲ ନାରି !

ରାଣୀ—ଯାହା ମୋପରି ପାପିନୀର କରିବା ଉଚିତ, ତାହାହିଁ କରିଛି । ଏମାନେ କାରାଗାରରେ ତୁମ ପାଇଁ ବିଷ ରଖିଥିଲେ ; କିନ୍ତୁ ସେମାନଙ୍କର ଭ୍ରମ ସେମାନେ ଜାଣି ନ ଥିଲେ ଯେ ଅପରାଧୀ କିଏ । ଯାଅ, ମୁଁ ମୋର କାର୍ଯ୍ୟ କରିଛି, ତୁମେ ପଳାଅ ।

ଦାସ—ଭ୍ରମ ନୁହେଁ, ସେମାନେ ଠିକ୍ ବିଚାର କରିଛନ୍ତି । ଶାସ୍ତିର ଯୋଗ୍ୟ ତୁମ୍ଭେ ନୁହଁ । ମୁଁ ଜାଣେ ପ୍ରଲୋଭନର କି ମୋହନ ଶକ୍ତି । ପ୍ରେମ କିପରି ଉନ୍ମାଦ କରେ । ତୁମ୍ଭେ ତୁମର ସ୍ୱାମୀଙ୍କୁ ହତ୍ୟା କରିଛ, ତାର କାରଣ ତ ମୁଁ । ପତି ହତ୍ୟାର ଶାସ୍ତି ଯଦି ମୃତ୍ୟୁ, ତା ହେଲେ ମୋର ବଞ୍ଚିବାର ମଧ୍ୟ କୌଣସି ଆବଶ୍ୟକ ନାହିଁ । ମନୁଷ୍ୟର ବିଚାରରେ ଯାହା ହେଉ ଖୋଦାଙ୍କର ବିଚାର ଅନୁସାରେ ତୁମ ପାପ ଅପେକ୍ଷା ମୋର ପାପ ଗୁରୁତର, କିନ୍ତୁ ମୁଁ ନିର୍ଦ୍ଦୋଷ । ମୋର ମୃତ୍ୟୁ ହେବାର ଉଚିତ ଥିଲା, ତୁମର ଦୋଷ କଅଣ ?

ରାଣୀ—ତୁମେ ତା ହେଲେ ଯିବନାହିଁ ? ମୋର ସମସ୍ତ ଚେଷ୍ଟା ତେବେ ବ୍ୟର୍ଥ ହେଲା ? ମୃତ୍ୟୁକାଳରେ ମଧ୍ୟ ମୋର ଲଲାଟରେ ଟିକିଏ ଶାନ୍ତି ନାହିଁ ! ଉଃ, କି ପାପିୟସୀ ମୁଁ । (ବିଷ ଜ୍ୱାଳାରେ ଅସ୍ଥିର ହୋଇ ବସି ପଡ଼ିଲେ) ଦାସ, ଦାସ ! ପଳାଅ । ମୋର କଥା ରକ୍ଷାକର । ଏଇ ନରକ ମୋତେ ଗ୍ରାସ କରିବାକୁ ଧାଇଁ ଆସୁଛି । ଏଇ ରକ୍ତର ତେଜ,

ଉଃ, ଚକ୍ଷୁ ଅନ୍ଧ ହୋଇଗଲା । କଣ୍ଠ ଶୁଷ୍କ । ଦାଉ ! ଦାଉ ! (ମୃତ୍ୟୁ) ।

ଦାଉ—ଯା, ସବୁ ଶେଷ ! ଅଭାଗିନୀ ନାରୀ ! ତୁମେ ଦେବୀ ହୋଇ ପାରିଥାନ୍ତ । କେବଳ ପୁରୁଷର ଅତ୍ୟାଚାରରେ, ଉତ୍ପୀଡ଼ନରେ, ଲାଞ୍ଛନାରେ, ତୁମର ଏହି ଶୋଚନୀୟ ପରିଣାମ । ରାଣୀ ! ତୁମେ ମରିଗଲ କିନ୍ତୁ ସେ ଅପରାଧ ପାଇଁ ଦାୟୀ ମୁଁ (ବାହାରେ ଶବ୍ଦ ଶୁଣି)! ଏଇ ଶବ୍ଦ ଶୁଭୁଛି, ବୋଧହୁଏ ଜଲ୍ଲାଦ ଆସୁଛି, କିନ୍ତୁ ଜଲ୍ଲାଦ ହସ୍ତରେ ଆଉ ନୁହେଁ ! (ରାଣୀଙ୍କ ହସ୍ତରୁ ଛୁରୀ ନେଇ) ଏଇ ତ ଉପାୟ । ରାଣୀ, ତୁମେ ମରିବାକୁ ଜାଣ, ଆଉ ମୁଁ ଜାଣେ ନା ! ତୁମେ କେବଳ ନରହନ୍ତା କିନ୍ତୁ ନରହନ୍ତା ନାରୀହନ୍ତା ହୋଇଛି ମୁଁ ଆଜ ଏ ପ୍ରାଣ·· ··, (ଛୁରୀ ଗଳାରେ ଲଗାଇଲା ବେଳେ)

ଗୁଲ୍ଲର—(ହଠାତ୍ ପ୍ରବେଶି, ଛୁରୀ ଧରି ପକାଇ; ଛଡ଼ାଇ ଆଣି) ଦସ୍ୟୁପଦାସ, ବିଶ୍ୱାସଘାତକ, ତୁମର ପ୍ରାଣରେ ତୁମର କି ଅଧିକାର ? ସେ କଥା ସ୍ମରଣ କର ।

ଦାଉ—ଗୁଲ୍ଲର !

ଗୁଲ୍ଲର—ହଁ ଗୁଲ୍ଲର, ଥରେ ସେହି ବାଲ୍ୟ ଜୀବନ କଥା ମନେକର । ଥରେ ସେହି ଦ୍ରାକ୍ଷା କ୍ଷେତକଥା ସ୍ମରଣକର । ସେହି ବିଷଧର ସର୍ପ କଥା ।

ଦାଉ—ହଁ, ତୁମେ ବଞ୍ଚାଇଥିଲ ।

ଗୁଲ୍ଲର—ସେଇ ଉପକାର ବିନିମୟରେ ତୁମେ ତୁମର ପ୍ରାଣ ମୋତେ ସମର୍ପି ଦେଇଥିଲ ।

ଦାଉ—କିନ୍ତୁ ଗୁଲ୍ଲର, ପ୍ରାୟଶ୍ଚିତ୍ତ ଯେ ପ୍ରୟୋଜନ । ଏହି ନାରୀ ନିଷ୍ପାପ, ନିଷ୍କଳଙ୍କ । ଏହାଙ୍କୁ ମୁଁ ନରହନ୍ତା କରିଛି (ଠନ୍ ଠନ୍ ଘଣ୍ଟା ବାଜିଲା ।) ଏଇ ଶୁଣ, ମୋର ମୃତ୍ୟୁର ଆହ୍ୱାନ । ତେବେ ଜଲ୍ଲାଦ ଆସିଲା ।

ଗୁଲ୍ଲର—ସେଥିପାଇଁ ତ ଆଉ ଶସ୍ତ୍ର ନୁହେଁ, ଦାଉ ! ତୁମେ ମୋତେ ପାଶୋରି ଦେଇଛ; କିନ୍ତୁ ତୁମର ଦଣ୍ଡାଦେଶ ଶୁଣି ମୁଁ ନାଦେର୍ ଖାଁଙ୍କୁ ଦେଖାକଲି, ସେ ତୁମର ରକ୍ଷା ପାଇବାର ଉପାୟ ଅବଲମ୍ବନ କରି ନାନା କଳ୍ପନା ଜଳ୍ପନା କରୁଥିଲେ । ମୁଁ ରାଣୀଙ୍କୁ ତାଙ୍କର ପାପ ସମ୍ବନ୍ଧେ ନାନା କଥା କହି ତାଙ୍କର ମନ ଏପରି ପରିବର୍ତ୍ତନ କରାଇ ଦେଲି ଯେ, ସେ ଆସିଥିଲେ କେବଳ ମୁକ୍ତି ଦେବା ପାଇଁ, କିନ୍ତୁ ଜାଣେ ନା ସେ ବିଷ ଖାଇ ଆତ୍ମହତ୍ୟା କରିବେ । ଆଜ ମଧ୍ୟ ନାଦେର୍ ଖାଁଙ୍କ ଇଙ୍ଗିତରେ ଖୋରାସାନ୍‌ର ଯୋଦ୍ଧାମାନେ ପ୍ରସ୍ତୁତ ଥିଲେ ଯେ କୌଣସି ମତେ ତୁମକୁ ଶୂଳରୁ ମୁକ୍ତ କରି ନେଇଥାନ୍ତେ ।

ଦାଉ— ଗୁଲ୍ଲର ! (ଛାତିକୁ ନେଲେ)

(ଏ ସମୟରେ ରାଜା, ନାଦେର୍ ଖାଁ ରକ୍ଷୀ, ଜଲ୍ଲାଦ ପ୍ରବେଶ)

ରାଜା—ଏ କଣ, ଏ କି ଘଟଣା, ଏ ତ ଇରାନ୍‌ର ରାଣୀ !

ନାଦେର୍—ସେ କଣ ?

ରାଜା—(ରାଣୀଙ୍କୁ ଦେଖି) ରାଣୀ ମୃତା ! ବିଷମ ସମସ୍ୟା, ଏ ଦାସୀ କିଏ ? ନାଦେର୍ ଖାଁ ! ତୁମେ ଏ ଗୁପ୍ତ ରହସ୍ୟ କଥା କିଛି ଜାଣ ?

ନାଦେର୍—ନା ।

ରାଜା—(ଗୁଲ୍ଲର ପ୍ରତି) ତୁମେ କିଏ ? ତୁମେ ଏଠାରେ କାହିଁକି ?

ଗୁଲ୍ଲର—ମୁଁ ରାଣୀଙ୍କର ନୂତନ ଦାସୀ ! ରାଣୀ କାରାଗାରରେ ପ୍ରବେଶ କରି ମୋତେ ଦ୍ୱାର ଦେଶରେ ରହିବାକୁ ଆଦେଶ ଦେଲେ । ଆଉ ଏହି ବାକ୍‌ସଟି ମୋତେ ଦେଇ କହିଲେ, ଯଦି ରାଜା ଆସନ୍ତି, ତେବେ ତାଙ୍କୁ ଏ ବାକ୍‌ସଟି ଦେଇଦେବ । ରାଣୀଙ୍କର ଫେରିବା ବିଳମ୍ବ ଦେଖି ମୁଁ ଏଠାରେ ପ୍ରବେଶ କରି ଦେଖେ ଯେ ରାଣୀ ମୃତା । —

ରାଜା—(ବାକ୍‌ସ ଖୋଲି ଖଣ୍ଡେ ପତ୍ର ପାଇ ତାକୁ ପାଠ କଲେ, ମନେ ମନେ ପାଠ କରିସାରି) ଶୁଣିଲଣି ନାଦେର୍ ଖାଁ ? ଦାଉର କୌଣସି ଅପରାଧ ନାହିଁ । ଅପରାଧିନୀ ମୁଁ । ସ୍ୱାମୀଙ୍କୁ ହତ୍ୟା କରିଛି, ମୋର ଅନ୍ତିମ ଭିକ୍ଷା, ଦାଉଙ୍କର ମୁକ୍ତି ଓ ଇରାନ ରାଜ୍ୟର ଅଧିନାୟକତ୍ୱ । (ଦାଉ ପ୍ରତି) ଦାଉ ସୁବେଦାର, ତୁମେ ନିର୍ଦ୍ଦୋଷରେ ମୁକ୍ତ ଓ ଏବେ ଇରାନ୍‌ର ଭାଗ୍ୟ

ସମ୍ରାଟ । ବୃଦ୍ଧ ନାଦେର୍, ତାଙ୍କର ଅଭିଷେକ ଉତ୍ସବର ଆୟୋଜନ କରିବା, ଆଉ ରାଜା ଓ ରାଣୀଙ୍କର ସମାଧି ପ୍ରତିଷ୍ଠା କରିବା ।

ନାଦେର୍—ତାପରେ ଦାରା ଖୋରାସାନର ପିତୃ ସିଂହାସନ ଆରୋହଣ କରିବ । ଆପଣଙ୍କୁ ମଧ୍ୟ ଏ ଉତ୍ସବରେ ଯୋଗ ଦେବାକୁ ପଡ଼ିବ ।

( ସମସ୍ତେ ପ୍ରସ୍ଥାନ )

(ଦାରା, ଗୁଲ୍ଶନ୍, କାଜି, ନାଦେର୍ ସାହା ଓ ପାରିଷଦବର୍ଗ)

କାଜି—ଆଜି ସ୍ୱର୍ଗତ ସାମ୍ରାଜ୍ଞୀଙ୍କ ଆଦେଶ ଅନୁସାରେ ଦାରା ସୁଦେଷ୍ଣାରଙ୍କୁ ଇରାନର ସମ୍ରାଟ ରୂପେ ଅଭିଷିକ୍ତ କଲୁ ।

(ଦାରାଙ୍କୁ ବସାଇଲେ, ସମସ୍ତେ କରତାଳି ଦେଲେ)

ଦାରା - ଆପଣମାନଙ୍କ ଦୟାରେ ମୁଁ କୃତଜ୍ଞ । ମୋର ଅନୁରୋଧ ମୁଁ ମୋର ମୃତ ପିତୃସିଂହାସନ ଖୋରାସାନ୍ ଅଧିକାର କରିବି । ତେଣୁ ମୋର ଅନୁପସ୍ଥିତିରେ ମୋର ପିତୃ ତୁଲ୍ୟ ନାଦେର୍ ଖାଁ ଏଠାକାର ସମସ୍ତ କାର୍ଯ୍ୟ ନିର୍ବାହ କରିବେ ।

(ପାରିଷଦ ଓ କାଜି ତାଳିଦେଲେ )

ନାଦେର୍—ଏ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟପାଇଁ ମୁଁ ନିତାନ୍ତ ଅକ୍ଷମ । ତଥାପି ରାଜାଦେଶ ପାଳନ କରିବାକୁ ବାଧ୍ୟ । ମୋର ଆଦେଶ ଆଜି ଇରାନବାସୀ ସ୍ୱର୍ଗତଃ ରାଜା ଓ ରାଣୀଙ୍କ ସଦ୍‌ଗତି ବିଧାନପାଇଁ ପ୍ରାର୍ଥନା କରନ୍ତୁ । ନୂତନ ରାଜାଙ୍କ ଆନୁକୂଲ୍ୟରେ ନୂତନ ପାନ୍ଥଶାଳା, ପୁଷ୍କରିଣୀ ପ୍ରତିଷ୍ଠା ହେଉ । ପ୍ରଜାମାନଙ୍କୁ ରାଜସ୍ୱ ଏକ ବର୍ଷ ପାଇଁ ଛାଡ଼ ଦିଆଯାଉ । କାରାରୁଦ୍ଧ ବନ୍ଦୀମାନଙ୍କୁ ମୁକ୍ତ ଦିଆଯାଉ । ଗୁଣ ତରିଦ୍ରମାନଙ୍କୁ ଅନ୍ନବସ୍ତ୍ର ଦିଆଯାଉ । ଆଉ ବିଚାରାଧୀନ ଥିବା ମୋକଦ୍ଦମାର ଆସାମୀମାନଙ୍କୁ ଏଠାକୁ ଅଣାଯାଇ ଦୋଷୀ କ୍ଷମା ପ୍ରାର୍ଥନା କରି ଏଠାରୁ ବିଦାୟ ନେଉ ।

( ଅନ୍ଧ ଓ ବାଳକା ପ୍ରବେଶ କଲେ ତତ୍‌ପଶ୍ଚାତ୍ ଇଉସୁଫ୍ ଓ ହୋସେନ୍ ବନ୍ଦୀହୋଇ ପହଞ୍ଚିଲେ )

ଦାରା - ଇଉସୁଫ୍ ତୁମେ (ଇଉସୁଫ୍ ମାଥା ନୁଆଁଇଲେ)

ନାଦେର୍—ସେ ସମସ୍ତ ଘଟଣା ମୁଁ ଆଦ୍ୟ ପ୍ରାନ୍ତ ସମସ୍ତ ପରେ ଶୁଣାଇବି । ଆଚ୍ଛା, ବାଳକା, ପ୍ରକୃତ ସତ୍ୟ କୁହ । ତୁମକୁ ପ୍ରକୃତ ଆକ୍ରମଣ କରିଥିଲେ କିଏ ଓ ଉଦ୍ଧାରକର୍ତ୍ତା କିଏ ।

ବାଳକା—(ହୋସେନ୍‌କୁ ଦେଖାଇ) ଏଇ ଯୁବକ ଆକ୍ରମଣକାରୀ ଓ ଇଉସୁଫ୍‌କୁ ଦେଖାଇ) ଏ ଯୁବକ ମୋର ଉଦ୍ଧାର କର୍ତ୍ତା ।

ନାଦେର୍—ଆଉ ବେଶୀ କିଛି ପ୍ରମାଣ ଆବଶ୍ୟକ ନାହିଁ । ହୋସେନ୍, ତୁମେ ପ୍ରକୃତରେ ଯଥ ଦୋଷୀ, କ୍ଷମା ପ୍ରାର୍ଥନା କର, ଏ ଶୁଭମୁହୂର୍ତ୍ତରେ ।

ହୋସେନ୍—ମୁଁ ଅପରାଧୀ, କ୍ଷମା ମୁଁ ଚାହେଁ ।

ନାଦେର୍—ଯାଅ ବାଳକା ତୁମେ ତୁମର ଅନ୍ଧ ଭାଇଟିକୁ ନେଇ ବିଦାୟ ହୁଅ ।

ଅନ୍ଧ—ହଜରତ୍, ମୋର ବଡ଼ ସୌଭାଗ୍ୟ । ଅପରୂପା ରମଣୀର ଯେ ସାହାଯ୍ୟକର୍ତ୍ତା ତାଙ୍କୁ ମୁଁ ଏ ରାଜ-ଦରବାରର ସର୍ବସମକ୍ଷରେ ମୋର ଭଗ୍ନୀଟି ଅର୍ପଣ କଲି । (ସମସ୍ତେ କରତାଳି ଦେଲେ, ଇଉସୁଫ୍‌କୁ ଅନ୍ଧ ବାଳକାଟିକୁ ସମର୍ପି ଦେଲେ ।)

ନସିର୍—ବେଗେ ପ୍ରବେଶ ଦାରା ମୋର ସିଂହାସନ ଅଧିକାର କରନ୍ତୁ, ମୁଁ ଟିକେ ଦେଖି ମୋର ନୟନ ସାର୍ଥକ କରେ ।

ଦାରା—ଚୌକିରୁ ଓହ୍ଲାଇ ଆସି (ଚାଚା, ଚାଚା, ହାତ ଧରି ଉଠାଇ ନେଲେ) ଚାଚା, ଚାଚା, ଏଇ ସେ ଇଉସୁଫ୍ ଭାଇ, ଦୁଆ କର ତାଙ୍କ ସଙ୍ଗରେ ।

ନସିର୍—ମୋ ଗୁଲ୍ଶନ୍ ?

ନାଦେର୍ - ନାସିର୍ ଖାଁ, ଏଇ ତୁମ ଗୁଲ୍ଶନ୍ ସର୍ବ ସୁଲକ୍ଷଣୀ, ବୁଦ୍ଧି ବିଚକ୍ଷଣା, ସୁଗୁଣ ସମ୍ପନ୍ନା କନ୍ୟାକୁ ଆଜି ଦାରା ସୁଦେଷ୍ଣାରଙ୍କ ହସ୍ତରେ ଅର୍ପଣ କଲି ।

ସମସ୍ତେ—ତାଳି ଦେଲେ ।

ନସିର – ମୋବାରକ୍ ସାହେବ; ସେ ଖୁସି ସେ କେବେହେଁ ନିଜର ପ୍ରଶଂସା କରେ ନାହିଁ । ତୁମେ ଯେଉଁ ସମ୍ମାନ ପ୍ରଦର୍ଶନ କଲ, ଯେଉଁ ଗୁଣାଳଙ୍କାରରେ ଭୂଷିତ କଲ ତେତେ ଦୂର ଯୋଗ୍ୟ ମୁଁ ନୁହେଁ । ମୁଁ ଦରିଦ୍ର, ମୋର କି ସାଧ୍ୟ; ସମସ୍ତ ତୁମରି ଯୋଗୁଁ । ଆଜି ଇରାନ ସଙ୍ଗେ ଖୋରାସାନ ଗଗନରେ ନବୀନ ସୂର୍ଯ୍ୟର ଉଦୟ ହେଲା । ନବୀନ ସମ୍ରାଟଙ୍କ ଜୟ ଘୋଷଣା କରି ଆସ କୃତାର୍ଥ ଲଭିବା ।

(ସମସ୍ତେ ଦାଉ ସୁବେଦାରଙ୍କ ଜୟ)

(କରତାଳି ଦେଲେ)

**( ଯବନିକା ପତନ )**



# ରୁକ୍ମିଣୀ ପରିଣୟ

## ବା

# ଶିଶୁପାଳ ଦର୍ପଚୂର୍ଣ୍ଣ

## ଗୀତାଭିନୟ

### ପ୍ରଥମ ଅଙ୍କ

#### ପ୍ରଥମ ଦୃଶ୍ୟ

#### ରାଜା ଓ ରାଣୀ

ରାଜା—ପ୍ରିୟେ ! ମୁଁ ରୁକ୍ମିଣୀ ପରି ସ୍ୱୟଂ ବର କରିବାକୁ ଦୃଢ଼ ଅଭିଳାଷ କରିଥିଲି, କିନ୍ତୁ ତୁମରି ଲାଗି ତହିଁରୁ ବିରତ ହେଲି । ଏବେ କହ ଦେଖି, ରୁକ୍ମିଣୀର ଉପଯୁକ୍ତ ବର କିଏ ? ତୁମ୍ଭେ କାହାକୁ ସ୍ଥିର କରିଛ ? ଯାଇ ମୁଁ ବିବାହର ଆୟୋଜନ କରିବି । ପ୍ରକୃତରେ କନ୍ୟା ବୟଃପ୍ରାପ୍ତ ହୋଇ ପିତା ଗୃହରେ ରହିବା ଆମ୍ଭର କୁଳର ହାନି । ଆଉ ସପ୍ତପୁରୁଷ ନର୍କବାସ, ଏଥି ଜାଣୁ ଜାଣୁ ନିଶ୍ଚିନ୍ତ ହୋଇ ବସିବା ଅନ୍ୟାୟ ।

ରାଣୀ—ନାଥ ! ରୁକ୍ମିଣୀ ପରି ରୂପଲାବଣ୍ୟ ସମ୍ପନ୍ନା ଗୁଣବତୀ କନ୍ୟାର ସ୍ୱାମୀ ଶ୍ରୀକୃଷ୍ଣଚନ୍ଦ୍ର ବ୍ୟତୀତ ଆଉ କିଏ ହୋଇପାରେ କି ? ସାଗର ଗର୍ଭ ସମ୍ଭୂତା କମଳାରୂପା କନ୍ୟା ମୋର ସେହି ନାରାୟଣଙ୍କ ଉପଯୁକ୍ତା । ଅତଏବ ତାଙ୍କୁ ବିବାହ ଦେବା ସ୍ଥିର କରନ୍ତୁ । ଅନ୍ୟ କେଉଁଠାକୁ ସନ୍ଧାନ କରିବା କିଛି ପ୍ରୟୋଜନ ନାହିଁ ।

ରାଜା—ମୋର ତହିଁରେ ଏକମତ । ପ୍ରକୃତ ରୁକ୍ମିଣୀର ଉପଯୁକ୍ତ ବର ଶ୍ରୀକୃଷ୍ଣ । ତେବେ ରୁକ୍ମଣକୁ ବର୍ତ୍ତମାନ ଦ୍ୱାରକା ପଠାଇ ସେ ସବୁ ବିଷୟ ସ୍ଥିର କରିବା । ଦୂତ କାହିଁଗଲ, ଯାଇ ରୁକ୍ମଣକୁ ଏ ସମ୍ବାଦ ଦେବ । ତୁମ୍ଭେ ଯାଅ ମୁଁ ରୁକ୍ମଣକୁ ଦ୍ୱାରକା ପଠାଇବାର ବନ୍ଦୋବସ୍ତ କରୁଛି ।

(ପ୍ରସ୍ଥାନ)

ରାଣୀ—ହଉ ନାଥ !

ରାଜା—(ସ୍ୱଗତ) ବାସ୍ତବିକ କନ୍ୟା ବରଯୋଗ୍ୟ ହୋଇ ଗୃହରେ ରହିବା ବଡ଼ ନିନ୍ଦାର ବିଷୟ । ତାର ଯେତେଦିନ ଆମ୍ଭମାନଙ୍କ ନିକଟରେ ରହିବାର ଥିଲା ବର୍ତ୍ତମାନକୁ ସେ ସମସ୍ତ ଅତୀତ ହୋଇଯାଇଛି । ଏଣିକି ପରଗୋତ୍ରୀ ହୋଇ ସ୍ୱାମୀ, ଶାଶୁ, ଶ୍ୱଶୁରଙ୍କ ସେବାରେ ନିଯୁକ୍ତ ହେବା କର୍ତ୍ତବ୍ୟ । କାହିଁଗଲ ଦୂତ ? (ପ୍ରକାଶ୍ୟେ) କିଏ ଅଛ, ରୁକ୍ମଣକୁ ଏ ସ୍ଥାନକୁ ଡାକିଦିଅ ।

(ରୁକ୍ମଣ ପ୍ରବେଶ)

ରୁକ୍ମଣ—ପିତା ! କି ନିମନ୍ତେ ଡକାଇଲେ ମୋତେ, ଶୁଭାଶୁଭ ପ୍ରକାଶନ୍ତୁ ଥରେ ।

ରାଜା—ବାପ ! ଅଶୁଭ କାରଣ କିଛି ନାହିଁ । ବର୍ତ୍ତମାନ ରୁକ୍ମିଣୀ ବୟଃପ୍ରାପ୍ତ ହୋଇଛି । ତାର

ଉପଯୁକ୍ତ ବରଘର ସ୍ଥିର କରି ଆସନ୍ତା ମାସରେ ବିବାହ ଦେବାକୁ ହେବ । ଏ ସ୍ଥଳ ତୋତେ ଡକାଇଲି ଶୀଘ୍ର ଯତ୍ନବାନ୍ ହୁଅ ।

ରୁକ୍ମ—ପିତଃ ! ସେ ବିଷୟରେ ମୁଁ ଆଗରୁ ସତର୍କ ଅଛି । କେବଳ ଆପଣଙ୍କ ଆଦେଶକୁ ଅପେକ୍ଷା ଥିଲି । ରୁକ୍ମିଣୀର ଉପଯୁକ୍ତ ଘର, ବର ଠିକ୍ ହୋଇଛି, କେବଳ ବିବାହ ଲଗ୍ନ ସ୍ଥିର କରିବା ଦରକାର ।

ରାଜା—କେଉଁଠାରେ, କାହାକୁ ? (ସ୍ୱଗତ) ଏ କି କାଣ୍ଡ, କଅଣ କିଛି ମତଭେଦ ଘଟିବ କି ? ରାଣୀ କଅଣ ରୁକ୍ମଙ୍କୁ ଏ ସମ୍ବନ୍ଧ ନେଇ କିଛି କହିଛନ୍ତି କି ?

ରୁକ୍ମ—ପିତଃ ! ଭୁଲ ହେଲି କାହିଁକି ? କଅଣ କହୁଛନ୍ତି ।

ରାଜା—ନା, ଅନ୍ୟ କିଛି କଥା ନୁହେଁ, ଆଚ୍ଛା ରାଣୀଙ୍କର ଓ ତୋର କେବେ ରୁକ୍ମିଣୀର ବିବାହ ସମ୍ବନ୍ଧ ନେଇ ପ୍ରସ୍ତାବ ହୋଇଥିଲା କି ?

ରୁକ୍ମ—ନା, ମାଆ ତ ମୋତେ ସେ ସମ୍ବନ୍ଧ ନେଇ ଥରେ ମାତ୍ର କୌଣସି କଥା କହି ନାହାନ୍ତି, ତେବେ ମା କଅଣ କାହାକୁ ରୁକ୍ମିଣୀକୁ ବିବାହ ଦେବାକୁ ମନୋନୀତ କରିଛନ୍ତି କି ?

ରାଜା—ହଁ, ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କୁ କନ୍ୟା ପ୍ରଦାନ କରିବାକୁ ରାଣୀଙ୍କର ମନ ବଳିଛି । ସେଥିରେ ତୋର ମତାମତ କଣ ?

ରୁକ୍ମ—ମୋ ମତରେ କଣ ଅଛି, ପିତା ମାତାଙ୍କ ମତରେ ବାଧା ଦେବା ସନ୍ତାନର କଣ କର୍ତ୍ତବ୍ୟ ? ପିତା ! ଆପଣ ସେଥିରେ ସମ୍ମତି ପ୍ରଦାନ କରିଛନ୍ତି କି ?

ରାଜା—ହଁ, ମୋ ମନକୁ ଏକପ୍ରକାର ଭଲ ଆସିଲା । ଶ୍ରୀକୃଷ୍ଣ ସ୍ୱୟଂ ବିଷ୍ଣୁ ଅବତାର । ମୋର ଲକ୍ଷ୍ମୀରୂପା ରୁକ୍ମିଣୀ ତାଙ୍କର ଅର୍ଦ୍ଧାଙ୍ଗିନୀ ହେବା ମଙ୍ଗଳର କଥା । ଆଚ୍ଛା, ତୁ କାହା କାହାକଥା କହୁଥିଲୁ ?

ରୁକ୍ମ—ଆଉ ସେଥିରେ ପ୍ରୟୋଜନ କଅଣ ? ଆପଣ ତ ସ୍ଥିର କରିଛନ୍ତି । ବୃଥା ଆଲୋଚନାରେ କି ଫଳ ? କିନ୍ତୁ ମୋ—

ରାଜା—ବାପ ! ତୋ ମନରେ କଷ୍ଟ ଦେଇ ମୋ ମନଇଚ୍ଛା କାର୍ଯ୍ୟ କରିବା ଉଚିତ ନୁହେଁ ? ତୋର ସମ୍ପୂର୍ଣ୍ଣ ମନର ଭାବ ପ୍ରକାଶ କର ।

ରୁକ୍ମ— ଗୀତ

ହେ ଗୃହଦେବ—ଢଙ୍ଗେ)

ହେ ତାତ ! ନ କର ଏତେ ଅଘାତ ।
ଦେବକୀସୁତରେ ନ ବଳାଅ ମତି । ଦୋଷା ।
ଯାଦବ କୁଳ କଳଙ୍କ ନାହିଁଟି ତାର ବିବେକ
ମୋ ଭଗ୍ନୀର ଉପଯୁକ୍ତ ନୁହେଁଟି ଶ୍ରୀପତି । ୧ ।

ପିତଃ ! ନୁହେଁ ସେହି ବିଷ୍ଣୁ ଅବତାର,
ନନ୍ଦକୁଳ ଭଙ୍ଗ ସେ ମୂଢ଼,
ଗୋପାଳନନ୍ଦନ ସେହି ନପଟି ମୂର୍ଖଟା
ମୋ ଭଗ୍ନୀର ଉପଯୁକ୍ତ ନ ମଣେ ମୁଁ ତାକୁ ।

ରାଜା—ବାପ ! ନୁହେଁ ସେହି ଗୋପାଳ ନନ୍ଦନ ?
ଦେବକୀ ଅଷ୍ଟମ ଗର୍ଭେ ତାର ଅବତାର ।

ରୁକ୍ମ— ଗୀତ

ଗଉଡ଼ ଘରରେ ବଢ଼ି ଗାଉଳ ଜାଣେ ସଉଡ଼
ଗୋଗୋଷ୍ଠରେ ଥାଏ ପଡ଼ି, ନାହିଁ ଜାତି ପତି । ୨ ।

ଶୁଣାଯାଏ ନନ୍ଦଘରେ ବଢ଼ିଥିଲା ଦୁଷ୍ଟା
ନପେନ୍ତ ବସ୍ତ୍ରା ଯେନ ବୁଲୁଥାଏ ଦଣ୍ଡା,
ଛତ୍ରିୟ କୁଳରେ ଆମ୍ଭେ ହୋଇଛୁ ସମ୍ଭୂତ
ଆରକ୍ଷ ଗଉଡ଼େ କପାଁ ବାନ୍ଧିବା କନ୍ୟା ।

ରାଜା—ବାପ ! ସାମାନ୍ୟ ମାନବ ବୋଲି ନ ଭାବ କୃଷ୍ଣଙ୍କୁ !
ଭକ୍ତର ବାଞ୍ଛା ପୂରଣେ ଗୋକୁଳେ ଉଦୟ,
ହୋଇଥାନ୍ତା ଯେବେ ସେହି ଗୋପାଳନନ୍ଦନ
ଟେକି କି ପାରନ୍ତା ଏକାକରେ ଗୋବର୍ଦ୍ଧନ ଗିରି ?

ରୁକ୍ମ— ଗୀତ

ଗୋପାଙ୍ଗନୀ ମୋହ କାନ ଶିଖାଇ ଏଅନ୍ତ ଜ୍ଞାନ,
ନାହିଁ ତାର କାଣ୍ଡଜ୍ଞାନ, ଅଯୋଗ୍ୟଟି ଅତି । ୩ ।

ମାମୁଁକେ ବିଦ୍ରୋହ ହୋଇ ହାରିଲା ଜୀବନ
ତାକୁ କପାଁ କହ ତାତ ସ୍ୱୟଂ ନାରାୟଣ,
ଛତ୍ରିୟ କୁଳକୁ ସିନା ଛତ୍ରିୟ କନ୍ୟା
ସ୍ଥାପନ କରିବା ଅଟେ ବିଧିର ବିଧାନ !
ସେ ବିଷୟର ନ କରଣ ତାତ !

ଅରକ୍ଷ ଗଉଡ଼ଣୀକୁ ଦେବେ କନ୍ୟା ଦାନ ?
ଯା ରୂପକୁ ବାଂଛିକନ୍ତି ଲକ୍ଷେ ନୃପଗଣ
ସେ ପୁଣି ହୋଇବ ଛାର ଗୋପାଳର ଦାସୀ ।

ରାଜା — ଶ୍ରୀକୃଷ୍ଣଙ୍କୁ ନିନ୍ଦା କରିବା ଆମ୍ଭର କଅଣ ଅଛି ? ତେବେ ତୋ ବିଚାରରେ କିଏ କିଏ ଆମ୍ଭ ରୁକ୍ମିଣୀର ଉପଯୁକ୍ତ ବର ? ପିତା, ମାତା, ଭାଇ, ଖୁଡ଼ୁତା ଏମାନଙ୍କର କର୍ତ୍ତବ୍ୟ, ଏପରି ସ୍ଥାନରେ ଝିଅଟିକୁ ଦାନ ଦେବେ, ସେ ଯେପରି ଯାବଜ୍ଜୀବନ ସୁଖୀହେବ । କହ ଦେଖି ତୁ କାହାକୁ ସ୍ଥିର କରିଚୁ ?

ରୁକ୍ମଣୀ— ପିତଃ ! ଦମଘୋଷଙ୍କ ଜ୍ୟେଷ୍ଠପୁତ୍ର ଶିଶୁପାଳକୁ ଅବଶ୍ୟ ଜାଣିଥିବେ । ଯେପରି ବିଦ୍ୟାବୁଦ୍ଧି, ସେହିପରି ରୂପଲାବଣ୍ୟ ସମ୍ପନ୍ନ ଓ ସେହିପରି ସମ୍ଭ୍ରାନ୍ତ ବଂଶୀୟ । ସେ ଆମ୍ଭ ରୁକ୍ମିଣୀର ଉପଯୁକ୍ତ ବର । ଆଉ ମଧ୍ୟ ତାଙ୍କ ସଙ୍ଗରେ ବନ୍ଧୁତା ସ୍ଥାପନ କରିବାଦ୍ୱାରା ଆମ୍ଭର ମହୋପକାର ସାଧିତ ହେବ ।

ରାଜା—ଅଚ୍ଛା କଥା, ମୋର ତହିଁରେ ଏକମତ, ତୋର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବା ମୋର ଉଚିତ ନୁହେ । ଶୀଘ୍ର ଏ ପ୍ରତି ଯତ୍ନବାନ୍ ହୁଅ ।

ରୁକ୍ମଣ—ବର୍ତ୍ତମାନ ସବୁ ସ୍ଥିର କରି ଦେଇଛି, କେବଳ ଆପଣଙ୍କ ଆଦେଶକୁ ଅପେକ୍ଷା ଥିଲା ।

(ଉଭୟେ ପ୍ରସ୍ଥାନ)



## ଦ୍ୱିତୀୟ ଦୃଶ୍ୟ

(୧ମ-ସୁରମା, ୨ୟ ଚପଳା, ୩ୟ-ଉଜ୍ଜ୍ୱଳା, ୪ର୍ଥ-ରମ୍ଭା)

ରୁକ୍ମଣୀ—ସଖି ! କାଲି ଯେଉଁକଥା କହୁଥିଲ ଆଜି ତାଙ୍କ ବିଷୟରେ ଆଉ କେତେକ କଥା ପଚାରିବାକୁ ମୋର ମନ ବଳୁଛି, ମୋ ଆଶା ପୂରଣ କରିବ ତ ?

୧ମ—କେଉଁ କଥା ? ମୋର ତ ମନେ ପଡୁନାହିଁ ।

(ରହିବା)

୨ୟ—ସେ ବୁଢ଼ୀ ଅସୁରୁଣୀ କଥାଟି ? ଅସୁରୁଣୀ ବନଟିସାକ ଘରଭିତରେ ମାଠଟି ପୋତି ହୋଇ କାଠଟିପରି ପଡ଼ିଥାଏ । ପୁଣି ଯେତେ ଯେମିତି ଦୁଏ ସେଇଁ ମୁଲକକୁ ଯିବାର ଥାଏ ସିଆଡ଼େ ଯାଏ । ( ରୁକ୍ମିଣୀପ୍ରତି ) ତେମେ ହୁଁ ମାରୁନା, କଥା କହିବାକୁ ସୁନ୍ଦର ଲାଗିବ କି ?

ରୁକ୍ମିଣୀ—ତୋ ମୁଣ୍ଡରେ ହୁଁ ମାରିବ । ମୁଁ ତୋତେ କଅଣ ସେଇକଥା ପଚାରୁଛି ?

୨ୟ—ଆଉ କୋଉ କଥା ? (ରହିବା)

୩ୟ—ସୁନାଫୁଲ କଥା କି ?

ରୁକ୍ମିଣୀ—ହେନା ସୁନ୍ଦ କଥା । (ହରକ୍ତେ)

୪ର୍ଥ—କଣ ତେମେ କହୁନା, ଆମ ମନେ ପଡ଼ୁନାହିଁ ।

ରୁକ୍ମିଣୀ—ନାହିଁ କହୁ ନାହିଁ ଯା, କାଲି ରାତିରେ ଶୋଇଲାବେଳେ କାହା କଥା ପଡ଼ିଥିଲା ?

୧ମ—ଓ ସେ କଥା । ଅଚ୍ଛା କୋଉଠୁ ବାକି ଥିଲାଟି ?

ରୁକ୍ମିଣୀ—ଶାନ୍ଦୀପନି ମୁନିଙ୍କ ଆଶ୍ରମଠାରୁ ।

୧ମ—ମରି ଯା, ମୋର କଅଣ ଏ କଥା ମନେ ଥିଲା କି ? ଶୁଣିଲଗା ମନ ଦୁ ଖୋଲିଯା । ହଁ, ସେଠାରେ କୃଷ୍ଣ ରାମ ଦୁହେଁ ବିଦ୍ୟାଶିକ୍ଷା ସାରି ଗୁରୁ ଦକ୍ଷିଣାକୁ ଗୁରୁଙ୍କ ମୃତ୍ୟୁ ପୁତ୍ରକୁ ଯମପୁରରୁ ଆଣି ଦେଇଥିଲେ ।

ରୁକ୍ମିଣୀ—ଅଚ୍ଛା, ସେ କଥା ସେଇଠି ଥାଉ, ମୁଁ ଯାହା ପଚାରୁଛି ତାର ଉତ୍ତର ଦେ ।

୨ୟ—ଆଉ କେଉଁଠା ବନରେ ତ କୃଷ୍ଣଙ୍କର ଅର୍ଦ୍ଧାଙ୍ଗିନୀ ହୋଇ ବସିବ, ସେଇଠି ସବୁ ବୁଝାଯିବ ଯେ ।

ରୁକ୍ମିଣୀ—(ହରକ୍ତେ) ମୁଁ ତୋତେ କଣ ପଚାରୁ ନାହିଁ ଯା, ତୁ ଏଠୁ ଗଲୁ ।

୨ୟ—ମୋର ଏଥିରେ ଦୋଷକଅଣ ଭାଇଲି । ତୁମେ ଯାହା ପଚାରିବାର ପଚାର । ମୁଁ ନାରଦ କଥା କଅଣ କହିଲି ! ଦେବର୍ଷି ନାରଦ ତୁମକୁ କୃଷ୍ଣଙ୍କ କଥା ତ ସବୁ କହିଛନ୍ତି, ଆଉ ଆମେ କଣ ଅଧିକା କହିବୁ ।

ରୁକ୍ମିଣୀ— ଗୀତ

( କହ ମୋ ଜାଣିଅଛି ବାସ୍ତ —ବୃତ୍ତେ )

କହ ପ୍ରିୟ ସଙ୍ଗ ମୋତେ,
ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବୟସ କେତେ । ମିତଣି ଗୋ ।
ଜଣାଅଛୁ ନାହିଁଟି କି ତୋତେ । ୧ ।

ସଖୀଏ — ଶୁଣ ଗୋ ରସିକାବର,
ବୟସ ସମ୍ଭବ ହେବ ପନ୍ଦର । ସଜନ ଗୋ ।
ଏକା ତୁମ୍ଭ ଲାଗି ସିନା ବର । ୨ ।

ରୁକ୍ମିଣୀ— କେବେ ଶୁଭ ବାହାଘର,
ସେପଣ୍ଡ କହ ମୋତେ ପରାଣ ଆଳ । ମିତଣି ରେ ।
ନେତ୍ରେ ଦେଖିବୁ କି ବନମାଳୀ । ୩ ।

ସଖୀ— ତାଙ୍କ ସୁରଙ୍ଗ ଅଧର,
ତୁଳିବଟି ଭବ ମଥାମନ୍ଦର । ସଙ୍ଗିନ ଗୋ ।
ଏଥୁ ଭଲ ଯେତେ ହେଉ କର । ୪ ।

ରୁକ୍ମିଣୀ— କେଉଁଠି ରୂପବାନ ସେହି,
କର୍ଣ୍ଣ ଟାଣି ମୋତେ କହ ବତାଇ । ମିତଣି ରେ ।
ମନ ବଳୁଛି ଶୁଣିବା ପାଇଁ । ୫ ।

ସଖୀ— ଭୁବନ ମୋହନ ଠାଣି,
ସଖୀ ମତଭୁଲ ବାଙ୍କ ଚାହାଣି । ସଜନ ଗୋ ।
ନବ ନୀରଦ ବରନ ଜାଣି । ୬ ।

ସଖୀଏ—ସତ୍ୟ ସେ ରୂପକୁ ତୁଳନା ନାହିଁ ।

ଗୀତ

ସଙ୍ଗି କି ଦେବୁ ତୁଳନା ।
କଳାରୂପକୁ ତ ନାହିଁ କଳନା ଗୋ । ପଦ ।
ନବଘନ କାନ୍ତି ନବୀନ ମୂରତି
ନାଚନ୍ତା ନବ କିଶୋର ।
ତ୍ରିଭଙ୍ଗିମା ଠାଣି ସେ ବାଙ୍କ ଚାହାଣି
ଦେଖିଲେ ହେବ ବିହ୍ୱଳ । ୧ ।
କଟିତଟେ ପୀତ ପଟ ଆଭରଣ
ଶିରେ ଶୋଭେ ଶିଖିଚୂଳ ।
ମକର କୁଣ୍ଡଳ କର୍ଣ୍ଣରେ ଝଲକେ
ଗଳେ ଗଜ ମୋତିହାର ଗୋ । ୨ ।
କୋଟି କାମଦେବ ସେ ରୂପ ମାଧୁରୀ
ଦେଖି ଜଣି ମୂର୍ଚ୍ଛା ଯାଉ ।

କେଉଁ ବିଧି ତାକୁ ଗଢ଼ିଛି କି ଭାବେ
କୋଟି ଲାବଣ୍ୟ ସୁନ୍ଦର । ୩ ।

ସେ ଶ୍ରୀକୃଷ୍ଣଙ୍କଠାରେ ସବୁ ଗୁଣ ପୂର୍ଣ୍ଣ ଭାବରେ ଅଛି । ବର୍ତ୍ତମାନ ଆମ୍ଭ କଥା କେତେକ ବର୍ଣ୍ଣାସ ହେଉଥିବ ନ ହେଉଥିବ, କିନ୍ତୁ ଆଉ କେଇଟା ଦିନରେ ତ ପ୍ରାଣରେ ପ୍ରାଣ ମିଶାମିଶି ହୋଇଯିବ, ସେତେବେଳେ ଆମ କଥା ସତ ମିଛ ଜଣା ପଡ଼ିଯିବ ଯେ ।

ରୁକ୍ମିଣୀ—ଏ ପାତକୀ ସେ ପଦ ପଙ୍କଜରେ ଶିର ନୁଆଁଇବ । ସେ ସୁଧା ପୂର୍ଣ୍ଣଚନ୍ଦ୍ର ମୁଖରୁ ଅମୃତ ବଚନ ପଦେ ଶୁଣିବ, କେ ଜାଣି ମୋତେ ସ୍ୱପ୍ନପରି ଜଣାଯାଉଛି ।

୧ମ—ଶ୍ରୀକୃଷ୍ଣଙ୍କୁ ତ ତମକୁ ଦାନ ଦେବେ ବୋଲି ବାପା ମା ସ୍ୱୟଂ ବର କରିବାକୁ ମନ କଳାଇଥିଲେ, ତା କଲେ ନାହିଁ । ଦିନେ କଥା ପ୍ରସଙ୍ଗରେ ମା ମହିମା କହୁଥିଲେ ମୋ ଝିଅକୁ ଜଣଙ୍କୁ ଦାନ ଦେବାର ସ୍ଥିର ହୋଇଛି, ଏବେ ରଜାଙ୍କୁ ନିମନ୍ତ୍ରଣ କରି ସ୍ୱୟମ୍ବର କରିବା ଫଳ କଅଣ ?

୨ୟ—ବୁଝିଲ ଆସି ଠିକି ମୁଣ୍ଡରେ ହେଲାଣି, ଏବେ ଭାବେଣି ପଡ଼ୁଛୁ କାହିଁକି ? ଚାଲ ମଣୋହୁଡି ଯିବା । ମା ମହିମା—ତେଣେ ବ୍ୟସ୍ତ ହେଉଥିବେ ।

୩ୟ—ଏକା ସତକଥା, ତମ ପାଖରେ ତ ଗପିବସିଲେ ମଣିଷର କୋଉଁ କଥା ମନେ ପଡ଼ିବ ନାହିଁ, ଚାଲନ୍ତୁ ଯିବା ।

ରୁକ୍ମିଣୀ—ହଉ ଚାଲ । (ଉଠିଯାଇ) ସଖି, ମୋ ଦକ୍ଷିଣ ନୟନ ସ୍ଫୁରିଲା କାହିଁକି ମ ? ସ୍ତ୍ରୀ ଅଙ୍ଗରେ ଦକ୍ଷିଣ ନୟନ ସ୍ଫୁରିବା ବଡ଼ ଅମଙ୍ଗଳ ।

୧ମ—ଏ କୁଆଡ଼ୁ କଅଣ ଝିକିଏ ହୋଇଗଲା, ଏବେ ଟିକ ଘରକୁ ବାହାରିବାକୁ କିଏ ରଖିଛି ? ଚାଲ ପଞ୍ଚାମୃତରେ ଠାକୁରାଣୀଙ୍କୁ ଗାଧୋଇଦେବା ।

ରୁକ୍ମିଣୀ—ହଉ ଚାଲ, ବେଳକୁ ବେଳ ବେଶି ହେଣି ଜମି ଆସୁଛି । ( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

### ଶିଶୁପାଳ ଓ ବକ୍ରଃ

ଶିଶୁପାଳ—ସଖା ! ଦେଖିଲ ଦେଖି, ଏ ପତ୍ରଟିରେ କଅଣ ଲେଖାଅଛି ? କୁଣ୍ଡିନ କଟକାଧୀଶ୍ୱର ଭୀଷ୍ମ ରାଜାଙ୍କ ପୁତ୍ର ରୁକ୍ମଣ ଦେଇଛନ୍ତି ବୋଲି ଦୂତ ମୁଖରୁ ପ୍ରକାଶ । ଦେଖ ସଖା ! ପତ୍ର ପଠାଇବାର ଉଦ୍ଦେଶ୍ୟ କଅଣ, ମୋ ମନରେ ବାରଆଡ଼ୁ ସନ୍ଦେହ ଜନ୍ମୁଛି । ସେହି କାରଣ ହେତୁ ଏତେ ପତ୍ରଟି ନ ପଢ଼ି ତୁମ୍ଭର ଅପେକ୍ଷାରେ ଥିଲି ।

ବକ୍ରଃ—ଏଥିନ୍ତୁ ବନ୍ଧୁ ! ପତ୍ରପାଠକଲାଠାରୁ ସମସ୍ତ ଜଣାପଡ଼ିବ । ରୁକ୍ମିରାଜ ତ ଆମ୍ଭର ବନ୍ଧୁପ୍ରାଣ ମୂର୍ତ୍ତି, ବୋଧହୁଏ କୌଣସି ମଙ୍ଗଳର କଥା ।

( ପତ୍ରପାଠ )

ପରମ କଲ୍ୟାଣୀୟ ଶ୍ରୀମାନ ଚେଦୀ ଯୁବରାଜ ! ଯେହେତୁ ଆମ୍ଭର କନିଷ୍ଠା ଭଗ୍ନୀ ଶ୍ରୀମତୀ ରୁକ୍ମଣୀ ଦେବୀଙ୍କୁ ପିତା ଆମ୍ଭର ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କୁ ବିବାହ ଦେବାକୁ ସ୍ଥିର କରିଥିଲେ, କିନ୍ତୁ ଆମ୍ଭର ଭିତରେ ମତଭେଦ ଘଟିବାରୁ ଆମ୍ଭେ ତୁମ୍ଭଙ୍କୁ ଆମ୍ଭ ଭଗ୍ନୀର ଉପଯୁକ୍ତ ବର ସ୍ଥିର କରି ଏବଂ ଆମ୍ଭ ପିତାଙ୍କୁ ସେଥିରେ ପ୍ରବର୍ତ୍ତାଇ ତୁମ୍ଭ ନିକଟ ପତ୍ର ଦେଲୁ, ଆସନ୍ତା ଫାଲ୍‌ଗୁନ ୨୭ ଦିନ ସୋମବାର ବିବାହ ଲଗ୍ନ ସ୍ଥିର ହୋଇଛି । ଏ ପ୍ରତି ସତ୍ୱବାନ ହୋଇ ପତ୍ରବାହକ ହସ୍ତରେ ଉତ୍ତର ଦିଅ । ଇତି ।

ପ୍ରକାଶ ଥାଉ—ଶ୍ରୀକୃଷ୍ଣଙ୍କୁ ବଡ଼ ଅପମାନିତ ହେବାକୁ ହୋଇଛି । ଏଥିରେ ବିବାହ ଦିନକୁ କୌଣସି ବାଧା ବିଘ୍ନ ଜନ୍ମାଇ ପାରନ୍ତି । ଏ ପ୍ରତି ସସୈନ୍ୟ ଯାଦବମାନଙ୍କରେ ଉପସ୍ଥିତ ବାଞ୍ଛନୀୟ ।

ଶୁଭାକାଂକ୍ଷୀ ରୁକ୍ମଣ —

ଶିଶୁପାଳ—ସଖା ! ଏହା କି ଅଦ୍ଭୁତ ? ଏ ପତ୍ରଟି ଶୁଣିଲାଠାରୁ ମନରେ ଅସୀମ ଆନନ୍ଦ ଜାତ ହୋଇ ଉଠୁଛି, ସଖା ! ଏଥିରେ ତୁମ୍ଭର ମତାମତ କଅଣ ?

ବକ୍ରଃ—ସଖା, ଏ କଥା ଭାବିବାକୁ ଅଛି । ରୁକ୍ମଣୀର ରୂପ ଆଉ ଗୁଣ ଅତୁଳନୀୟ । ଅନେକାନେକ ରାଜା ମହାରାଜାମାନଙ୍କ ମଧ୍ୟ ଆଗରୁ ରୁକ୍ମଣୀକୁ ବିବାହ କରିବାଲାଗି ଚେଷ୍ଟା କରି ବିଫଳ ମନୋରଥ ହୋଇଛନ୍ତି । ଆପଣଙ୍କୁ ତାର ପିତା କଲେ କଲେ ବିବାହ ଦେବ, ବଡ଼ ଆଶ୍ଚର୍ଯ୍ୟର ବିଷୟ । ଶୀଘ୍ର ଏ ପ୍ରତି ସତ୍ୱବାନ ହୁଅନ୍ତୁ । ଏଭଳି ସୁବର୍ଣ୍ଣ ସୁଯୋଗ ହରାଇଲେ କାଳକୁ ପସ୍ତାଇ ହେଉଥିବେ ।

ଶିଶୁପାଳ—ତେବେ ଆଜ ରାଜ୍ୟରେ ଘୋଷଣା ଦିଅ, ନିର୍ଦ୍ଦିଷ୍ଟ ଦିନକୁ ସମସ୍ତେ ଯେ ଯାହାର କର୍ତ୍ତବ୍ୟ କାର୍ଯ୍ୟରେ ନିଯୁକ୍ତ ହୁଅନ୍ତୁ । ଆଉ ରୁକ୍ମଣୀର ଶ୍ରୀକୃଷ୍ଣଙ୍କୁ ବିବାହ ପ୍ରସ୍ତାବ ଆଗରୁ ହୋଇଥିଲା, ସେଥିରେ ମତଭେଦ ଘଟିଛି । ଯୁଦ୍ଧ ଘଟିବାର ଖୁବ୍ ସମ୍ଭାବନା । ସୈନ୍ୟ କିଛି ସଙ୍ଗରେ ନେବା ଦରକାର, ଚାଲ ଏ ବିଷୟ ପିତାଙ୍କୁ ଜଣାଇବା ।

( ପ୍ରସ୍ଥାନ )

—*—

## ଦ୍ୱିତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ପ୍ରଥମ ଓ ଦ୍ୱିତୀୟ ସଖୀ )

ରୁକ୍ମଣୀ—( ବ୍ୟସ୍ତ ଭାବରେ ବସିବା )

୧ମ—କେମିତେଲୋ ! ଏ ତ ବିଧାତାର ସର୍ଜନା ଜଣା, ମନୁଷ୍ୟ ହାତରେ କଅଣ ଅଛି ? ଯାହା ଯୋଗ ନ ପାଉଛି, ଦେଖ ଉପରୁ ତ ବର ନେଇଟି ଯାଉଛି । ଆଉ ଦୁଃଖିତ ହେଲେ କଅଣ ହେବ ।

ରୁକ୍ମଣୀ—ସଖି ଗୋ ! ମୋ କର୍ମରେ ବିଧାତା ଏଇଆ ଲେଖିଥିଲା । ମୁଁ ଯୋଉଁମାନଙ୍କୁ ନ ମନ ପାଇ ବାଛିଲି, ଏଥିପାଇଁ ମନରେ ଦାରୁଣ ଯନ୍ତ୍ରଣା ଅନୁଭବ କରୁଛି ।

୨ୟ—କେମିତେଲୋ ! ବ୍ୟସ୍ତହେଲେ କଅଣ ହେବ ? ସେ ଜନ୍ମ କର୍ମଦୋଷ । ବିଧାତାର ବଳକୁ ମନୁଷ୍ୟର କି ଆୟତ !

ରୁକ୍ମିଣୀ— ଗୀତ

( ଅସ କେ ନେବ ମାନ୍ଧ କଣି ଗୋ—ବୃନ୍ଦେ )

ଜନ୍ମ କମ୍ପା କଲ ମନ୍ଦ କନ୍ଧରେ, ପ୍ରିୟସଖି !
ଯାକୁ କରିଥିଲି ଆଶା ସେ ମୋ କର୍ମେ ନାହିଁ । ପଦ ।
ଭ୍ରାତା ମୋ ହେଲେ ଭଗାରି, ବୁଡ଼ାଇଲେ ଆଶା ତରି !
ଆଉ କି ଏ ପ୍ରାଣ ଧରି କା ମୁଖକୁ ଚାହିଁ ରେ ।୧।

ସଖି ! ନିଜର ସହୋଦର ଏତେ ଦୃଷ୍ଟତା କଲେ କଅଣ କରିବି ସଖି ?

୧ମ—ହିଁ ହିଁ, ସେ କଥା ଠିକ୍ । ମନ ଯାହିଁ କାହିଁରେ ଲାଗିଥିଲା, ପୁଣି ଯାଇ କାହିଁରେ ପଡ଼ିବ ! ସତେ କଅଣ ଶିଶୁପାଳଙ୍କ କଥା ଠିକ୍ ହୋଇଗଲାଣି ! ଏଇଆ ହିଁ କିଏ ତମ ଲାଗି ସେ ନୁହେଁ ।

ରୁକ୍ମିଣୀ— ଗୀତ

ଶରଣ ବତ୍ସଳ ଦାନା ମୋପରେ କାହିଁକି ଜଣା
ଆଉ କି ପରମ ସୁନା ଏ ଜୀବନେ ପାଇ ରେ ।୧।

ସଖି ! ସତେ ଏ ପୋଡ଼ା କରମରେ ସେ କାଳିଆ ସୁନାକୁ ପାଇବି ନାହିଁ । ସେ ମନମୋହନ ପାଦ ପଦ୍ମରେ ମୋର ଶିର ଲାଗିବା ଉପଯୁକ୍ତ ହେଲା ନାହିଁ । ତେବେ ଏ ଦଗ୍ଧ ପ୍ରାଣ ଥାଇ କା କି ପ୍ରୟୋଜନ ? ( ବ୍ୟସ୍ତହେବା )

୨ୟ—ଓଃ ! ଏମିତ କାହିଁକି ହଉଛ, ଟିକିଏ ଧୈର୍ଯ୍ୟ ଧର !

ରୁକ୍ମିଣୀ— ଗୀତ ।

ସେ ମନ ମୋହନ ଲାଗି କେତେ ଦିନ ଥିଲି ଚାହିଁ,
ଆଉ ବଞ୍ଚିବ କା ଲାଗି, ଥିବୁ କୋହେ ଦେଖି ରେ ।୩

ସଖି ! ଆଉ କାହିଁକି ପ୍ରାଣ ରଖିବି ? ତୁମ୍ଭେମାନେ ମୋ ନିକଟରୁ ଯାଅ । ସେହି ରାଧା ମୋହନ ରୂପକୁ ହୃଦୟରେ ରଖି ତୁଷାନଳରେ ( ତୁଷକାଡ଼ି ) ଆତ୍ମ ହତ୍ୟା କରିବି ।

୧ମ—( ତୁଷ ଧରିପକାଇ ) ଏ କଅଣ କେମାନେ ! ସ୍ୱାନା କଅଣ କଥା ?

ରୁକ୍ମିଣୀ—ସଖି ! ମୋତେ ଛାଡ଼ିଦିଅ, କାହିଁକି ବାଧା ଦେଉଛ ।

ସଖିଏ— ଗୀତ ।

( କି ଦଶା ପଡ଼ିଲା · ବୃନ୍ଦେ )

ସଜନି ରେ ଛାଡ଼ ଗୁମାନ ।
ଏ ଛାର କଥାକୁ କାହିଁ ଚିନ୍ତୁଛୁ ଧନ ।
ତୋର ସୁଖେ ଥିବା ସୁଖୀ,
ତୋର ଦୁଃଖେ ସଦା ଦୁଃଖୀ
ତୁ ଆମ୍ଭର ପ୍ରାଣସଖୀ,
ଆମ୍ଭେ ତୋ ପ୍ରାଣ । ୧ ।

୧ମ— କେମାମଣି ! ତୁମ୍ଭର ଯେବେ ଏ ଦଶା ହେବ ଆମ୍ଭମାନଙ୍କର ଆଉ ସୁଖ କାହିଁ ? ସଖି ! ତୁମ୍ଭେ ଧୈର୍ଯ୍ୟଧର ।

ସଖୀଏ— ଗୀତ ।

ସେ ମଦନଧନ ଲାଗି, ଚନ୍ଦ୍ରମୁଖୀ କାହିଁ କାନ୍ଦ,
ଉପାୟ ଜାଣୁ ହେମାଙ୍ଗୀ ଦେଖୁ ମୋହନ ।୨

୨ୟ— ସଖି ! ସେ ବଂଶୀବଦନ ଲାଗି ଏତେ ଉତଳ ହୁଅନା । ଆମ୍ଭେ ନିଶ୍ଚୟ ପ୍ରେମପିଞ୍ଜରାକୁ ତୋର ବର କରିଦେବୁ । ତୁମେ ଗୋଟିଏ ଉପାୟ କହିବ କି ?

ରୁକ୍ମିଣୀ— କି କଥା ସଖି ? ମୋର ବୁଦ୍ଧି ବିଭ୍ରମ ହୋଇଗଲାଣି, କି ଉପାୟ କହିବି କହ ।

ସଖିଏ— ଗୀତ ।

ତୁମ୍ଭ ଅନ୍ତର ବେଦନା, ପତ୍ରରେ ଲେଖିଣ ଜଣା,
ଜାଣିବେ ଜଗମୋହନ, ନିଶ୍ଚେ ଏମାନ ।୩।

ସଖି ! ଶ୍ରୀକୃଷ୍ଣଙ୍କ ନିକଟକୁ ଖଣ୍ଡେ ପତ୍ରଲେଖି ଗୁପ୍ତଭାବରେ ପଠାଇବା, ସେ ଅନ୍ତର୍ଯ୍ୟାମୀଙ୍କର ତୁମ୍ଭଠାରେ ସ୍ନେହଥିଲେ ନିଶ୍ଚେ ସେ ଉଦ୍ଧାର କରିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ରୁକ୍ମିଣୀ— ସଖି ! ମିଛରେ ଭଣ୍ଡାଉଛ କାହିଁକି ? ତାଙ୍କ ନିକଟରେ ମୋର ଦୁଃଖ କିଏ ଜଣାଇବ ? ଲଜ୍ଜା ପରିକା ନେବ କିଏ ?

୧ମ— ଆମ୍ଭର ସେହି ବଶିଷ୍ଠଙ୍କ ସୁଦେବ ବ୍ରାହ୍ମଣ ହାତରେ ପଠାଇବା ।

ରୁକ୍ମଣୀ—ସତେ ସେ ସ୍ୱର୍ଗଦେବ ? ମୋର ଦୁଃଖର କାହାଣୀ ସେ ମୁରଲୀଧରଙ୍କ ନିକଟରେ କିଏ ଯାଇ ଶୁଣାଇବ ? ତେବେ ତାକ କିଏ ଯିବ ।

୧ମ—ତୁମେ ଚାଲ, ମୁଁ ଯାଇ ବ୍ରାହ୍ମଣ ଜଣେ ଡାକିଆଣି ତୁମ୍ଭ ନିକଟରେ ପଠାଇବି । ( ପ୍ରସ୍ଥାନ )

—*—

## ଦ୍ୱିତୀୟ ଦୃଶ୍ୟ

( ଦୁଇଜଣ ତରୁଣଆପଣା ପିଲାଙ୍କ ଓ ରାଜପଥ ଛତା ହସ୍ତେ ପ୍ରବେଶ )

୧ମ—ଆହେ କେତେ ପୁଣ୍ୟବାନ ଦାତାମାନେ ଥିବ, ବୈଶାଖ ମାସରେ ଦାଣ୍ଡେ ଡାକ ହାକ ବ୍ରାହ୍ମଣ ତୁଣ୍ଡରେ ଅନ୍ନଜଳ ଦେଇ ଧର୍ମ କରିବ ହେ ।

୨ୟ—ଆହେ କର୍ଣ୍ଣ ସମାନେ ଦାତାଥିବ, ବଳୀ ସମାନେ ଦାନଥିବ, ମାନଧାତା ସମାନେ ମାନ ଥିବ, ବ୍ରାହ୍ମଣ କରେ ଅନ୍ନ ଜଳ ଦାନ କରିବ ହେ ।

୧ମ—ଆହେ ଅନ୍ନଦାନ ଦେଲେ ବୈକୁଣ୍ଠେ ସ୍ଥାନ, ଜଳଦାନ ଦେଲେ ତୃଷା ନିବାରଣ, ଛତ୍ରଦାନ ଦେଲେ ପିତୃଙ୍କୁ ତାରଣ ହେ ।

୨ୟ—ଆହେ ଅନ୍ନ ସଙ୍ଗେ ଡାଲିତରକାରୀ ଆଉ ଚାଉଳଣେ ବଢ଼ ଅଳ୍ପ ଚୁରିଟି କୋଶଳା ଶାଗ କିଛିତ ପ୍ରମାଣ ହେ ।

୧ମ—ତା ସଙ୍ଗକୁ କିଛି ଜାଳଣି କାଠ କିମ୍ବା ଉଷିଷଫଟା ଡାଣ, ହଳଦୀ ଲୁଣ ପୁଟଣ ଆଉ ଲଙ୍କା ସୋରିଷ-ତେଲ ଅଳ୍ପ ପ୍ରମାଣ । ( ୨ୟ ୧ମ ପ୍ରତି ) ହଇଏ ପଣ୍ଡେ, ଗ୍ରାମ ଗୋଟାକେତ ବୁଲିଲେ ସେଇ ପ୍ରସ୍ତୁନାହିଁ । ସେଥିକ ପୁଣି ଦୁଇ ଦୁଇ ଜଣ ଲେଖାଁ ପନ୍ଥଙ୍କ ଯାଉଛ କିଆଁ ? ଯାହାର ମୁଠିଏ ଦବାର ଇଚ୍ଛାଥିବ ସେ ତ ଦୁଇଜଣ ବ୍ରାହ୍ମଣ ତୁଣ୍ଡ ଶୁଣିଲେ ଭୁଲ୍ କିନା ଦରେ ବସିବ, ଗୋଟିଏ ଗ୍ରାମରେ ଦୁଇଜଣ ଲେଖାଁ ବୁଲିହେବା କି ଫଳ ।

୧ମ—ଆମ୍ଭେ ତ ଯାହା କହୁ ଏ ବୁଦ୍ଧି ମୁଠା ପାଇଥାନ୍ତୁ ତୁମ୍ଭେ ଆସିଥାନ୍ତୁ ତ ସବୁ ବନ୍ଦ, ଆମ୍ଭେ ତ ଏ ଗ୍ରାମକୁ ଆଗେ ଆସିଥିଲୁଁ ।

୨ୟ—ଆମ୍ଭେ ତ ଆଗେ ଆସିଛୁଁ ।

୧ମ—ବୃଥାରେ କଳି କରିବା ଫଳ କଅଣ ? ଭଲସ୍ତ ନିୟମ ହେଲେ, ଏଥର ଆଉ ଗୋଟିଏ ଗ୍ରାମକୁ ଦୁଇ ଜଣ ଯିବା ନାହିଁ ।

୧ମ ସଖୀ ସୁରମା—ହୋ ନନା ! ଟିକଏ ଅଡ଼କୁ ଆସିବ କି ?

୧ମ—ହଉ ଚାଲନ୍ତୁ ।

୨ୟ—ହଉ ଚାଲନ୍ତୁ ।

ସୁରମା—ନାହିଁ ନାହିଁ ଜଣେ କେହି ଆସନ୍ତୁ ।

୧ମ—ହଉ ତେବେ ଆମ୍ଭେ ଯାଉଛୁ ।

୨ୟ—ନାହିଁ ନାହିଁ ଆମ୍ଭେ ଯାଉଛୁଁ ।

୧ମ—ରହ ହେ ସେ ଆମ୍ଭକୁ ଡାକୁଛନ୍ତି ଆମ୍ଭେ ଯିବୁ ।

୨ୟ—ନାହିଁ ହେ, ସେ ଆମ୍ଭକୁ ଡାକୁଛନ୍ତି ଆମ୍ଭେ ଯିବୁଁ ।

ସୁରମା—କଳି କରିବା କିଛି ଆବଶ୍ୟକ ନାହିଁ । ଆମ୍ଭର ଜଣକଠାରେ କିଛି କାର୍ଯ୍ୟ ଅଛି ।

୧ମ—ତେବେ ଆମ୍ଭେ ସେ କାର୍ଯ୍ୟ କରିବୁଁ ।

୨ୟ—ଅଚ୍ଛା ତୁମ୍ଭେ ଯେବେ ସେ କାର୍ଯ୍ୟ କରିବ ଯାହା ପାଇବ ଆମ୍ଭକୁ ଅଧେ ଦବାକୁ ପଡ଼ିବ ।

୧ମ—ଭଲକଥା, ଆମ୍ଭେ ଯାହା ପାଇବୁ ତୁମ୍ଭକୁ ଆଗେ ଅଧେ ଦବୁ ଆଉ ଅର୍ଦ୍ଧେକ ଆମ୍ଭେ ନବୁ । ମା ! ଯେଉଁକାର୍ଯ୍ୟ ଆମ୍ଭଦ୍ୱାରା ସାଧିତ ହେବ ସେଥିର ପାରିଶ୍ରମିକ ମୂଲ୍ୟ କୋଡ଼ିଏ ଅଧା ତଙ୍କା ଆମ୍ଭକୁ ଦବାକୁ ପଡ଼ିବ । ଆଉ ଆମ୍ଭ ଭଗିବାରକୁ ତହିଁରୁ ଅର୍ଦ୍ଧେକ ଦେଇ ଦଅନ୍ତୁ ।

୨ୟ—ନାହିଁରେ ବାପା ! ଆମ୍ଭର କିଛି ଆବଶ୍ୟକ ନାହିଁ ତୁମ୍ଭେ ଯାଅ, ଆମ୍ଭେ ଚାଲିଲୁଁ ।

୧ମ—କି ଗିଦ ବୁଝାହେ, ଅଧେ ନବ ତ ?

୨ୟ—ନାନା ଆମ୍ଭର ଦର୍କାର ନାହିଁ । (ପ୍ରସ୍ଥାନ)

୧ମ—ମା ! କି କାର୍ଯ୍ୟ କୁହନ୍ତୁ ତ ।

ସୁରମା—ଗୋସାଇଁ ! ଆମ୍ଭ ଜେମାମଣି ରୁକ୍ମିଣୀ ଦେଈ ଗୋଟିଏ ଖବର ଶ୍ରୀକୃଷ୍ଣଙ୍କ ନିକଟକୁ ଦେବେ । ଆପଣ ସେ କାର୍ଯ୍ୟକୁ ସମର୍ଥ ହେବେ ତ ?

୧ମ—ହଁ ସମର୍ଥ ହେବା, ପାଉଣା କଅଣ ମିଳିବ ?

ସୁରମା—ଗାଈ ଯୋଡ଼ି ଟଙ୍କା ପାଇବ, ଆଉ କଅଣ ?

୧ମ—ହଉ ସୁଲକ୍ଷ ମା ! ଶ୍ରୀକୃଷ୍ଣଙ୍କ ଦର୍ଶନ ତ ହେବ ଆଉ ମିଳିବା ନ ମିଳିବାରେ ଅଛି କଣ ?

(ପ୍ରସ୍ଥାନ)

—*—

## ତୃତୀୟ ଦୃଶ୍ୟ

ରୁକ୍ମିଣୀ—ସଖି ! ସୁରମା ଜାଣିକି ଏତେବେଳ ଯାଏ ଫେରିଲା ନାହିଁ କଅଣ କାହାକୁ ପାଇଲା ନାହିଁ ?

୨ୟ—ହଁ ବର୍ତ୍ତମାନ ଆସି ପହଞ୍ଚିବ ତୁମେ ଆଉ (ଉଚ୍ଚା) ବ୍ୟସ୍ତ ହୁଅନା । ଲଳିମା ! କିଛିଏ ଅନେଖା କରିବୁଟି ।

ଲଳିମା—ହେଇ ସେ ଫେରିଲାଣି ସାଙ୍ଗରେ କାହାକୁ ଜଣେ ଆଣିଛି ।

ରୁକ୍ମିଣୀ—ଆସିଲାଣି କାହିଁ ?

( ସୁରମା ବ୍ରାହ୍ମଣ ସହ ପ୍ରବେଶ )

ସୁରମା—ଜେମାଦେଈ ! ଏହି ବ୍ରାହ୍ମଣଙ୍କ ହସ୍ତରେ ଯାହା ମନର କଥା ଶ୍ରୀକୃଷ୍ଣଙ୍କ ନିକଟକୁ ଖବର ଦିଅନ୍ତୁ । ଉନା ବଡ଼ ଲକ୍ଷ୍ମମ ଲୋକ, ମୋ କଥା ଶୁଣିଲା ମାତ୍ରକେ ସ୍ୱଇ ଆସିଲେ ।

ରୁକ୍ମିଣୀ—( ଦ୍ୱିଜଙ୍କୁ ପ୍ରଣାମ କରି ) ଦ୍ୱିଜବର ! ମୋର କିଛି ଉପକାର କରି ପାରିବ ?

ବ୍ରାହ୍ମଣ—ହଁ ମା ! ଆମ୍ଭେ ସମସ୍ତ ବିଷୟ ଶୁଣି ଆଇଲୁଁ । ତେବେ କେତେକ କଥାରେ ଅବସର ଅଛି, ଚି ନା ଏବେ ପ୍ରକାଶ କରନ୍ତୁ, ଆଉ ଆମ୍ଭ ପାଉଣାଟା କଥା ତ ଯା—

ସୁରମା—ହଇ ହୋ ତୁମ୍ଭଙ୍କୁ ତେବେ ମୁଁ ପାଉଣା କଥା କହିଛି ତମର କଅଣ ବିଶ୍ୱାସ ହେଉ ନାହିଁ ।

ବ୍ରାହ୍ମଣ—ହଉ ମା କହ ।

ରୁକ୍ମିଣୀ— ଗୀତ

( କହିଁ ଜାକୁ ଯାଯା ବୋଲି—କୁଡ଼ଙ୍ଗ )

ଯା ଦ୍ୱିଜ ! ମୋହନେ କହିବ ଯା,
ସେ ମନମୋହନ ମୂର୍ତ୍ତି ନ ଦେଖିଲେ ଫଣ୍ଟ ଯାଉ
ଜାଟି ଦେବ କଲଜା । ପଦ ।

ଦ୍ୱିଜବର ! ଏ ପତ୍ରିକା ଶ୍ରୀକୃଷ୍ଣଙ୍କୁ ଦେଇ କହିବ ଯଦି ଅଧୀନୀକୁ ସେ ଚରଣରୁ ବଞ୍ଚିତ କରିବେ ତେବେ ଅବଶ୍ୟ ତାଙ୍କ ବିନା ନିଷ୍ଠେ ଜୀବନ ହରାଇଦେବି ।

ବ୍ରାହ୍ମଣ—କାହିଁକି ମା ?

ରୁକ୍ମିଣୀ— ଗୀତ

ବାଳକାଳୁ ଅନୁସରି ଥିଲି ସେ ମୋହନେ ବରି
ସହୋଦର ହୋଇ ଆସି, କରିଲେଣି ଅନ୍ୟ ରାଜା ।୧।

ଦ୍ୱିଜବର ! ପିଲାଦିନୁ ଦେବର୍ଷି ନାରଦଙ୍କଠାରୁ ଶ୍ରୀକୃଷ୍ଣଙ୍କ ଗୁଣାବଳୀ ଶୁଣି ମନେ ମନେ ପତିରୂପରେ ବରଣ କରିଥିଲି, କିନ୍ତୁ ବର୍ତ୍ତମାନ ମୋର ଭାଇ ସେ ମନମୋହନଙ୍କୁ ନିନ୍ଦାକରି ଦମଘୋଷଙ୍କ ପୁତ୍ର ଶିଶୁପାଳଙ୍କୁ ମୋତେ ବିବାହ ଦେବେ । ମୁଁ ଯେ ଆତ୍ମାକୁ ତାଙ୍କ ପଦରେ ମୋର ସମସ୍ତ ସ୍ନେହ ଉତ୍ସର୍ଗ କରି ସାରିଛି—ଏ ଲଜ୍ଜାକଥା ତାଙ୍କୁ ହେବ ନାହିଁ ?

ଗୀତ

ଯେବେ ସେ କରୁଣାମୟ ଦାସୀରେ ଦେବେ ଆଶ୍ରୟ
ନାଶିବେ ଅଧୀନା ଭୟ, ବାଳୀର ଯିବଟି ଲଜ୍ଜା ।୨।

ଦ୍ୱିଜବର ! ଶୀଘ୍ର ଯାଅନ୍ତୁ, ଏ ପତ୍ରିକା ଦେବେ ଏବଂ ମୌଖିକ ସମସ୍ତ ମୋର ଦୁଃଖ କହିବେ । ଯଦି ମୋତେ ବରଣ କରିବେ ତେବେ ତାଙ୍କ ଲାଗି ଅଗ୍ନିସାତ ହେବି ।

ବ୍ରାହ୍ମଣ—ମା ! ଆମ୍ଭ ପାଉଣାଟା ଆଗେ ନ ହେଲେ ଭଲଲୋକ କଥା ଛଡ଼ିବ ନାହିଁ । କାରଣ ମଧ୍ୟସ୍ଥି ହେଲେ କେତେବେଳେ କ ଖୋଧା କେତେ-ବେଳେ ବ ବଧା ମିଳିବ । ତଣ୍ଡବତ ଆଉ ବିଦ୍ୟୁତର ଏତ ବାଳ ମାମଲତ ତୁଟେ ।

ରୁକ୍ମିଣୀ—ହଉ ସୁଲକ୍ଷ, ବର୍ତ୍ତମାନ ସୁରମା ଯାହା ଜବାବ କରିଛି ଦେବ, ପରେ କାର୍ଯ୍ୟ ଶେଷରେ ଯାହା ମାଗିବ ତା ଦେବ ।

ବ୍ରାହ୍ମଣ—ହଉ, ଯାଆନ୍ତୁ । (ପ୍ରସ୍ଥାନୋଦ୍ୟତ) ଆମ୍ଭେ ତ ଏମିତ ଅର୍ଦ୍ଧମୃତ ହୋଇଛୁଁ, ଦ୍ୱାରକା ଯିବାକୁ ହେଲେ ଟିକିଏ ହୃଷ୍ଟପୁଷ୍ଟ ହୋଇ ଯିବା ଦରକାର ।

ସୁରମା—ହଉ, ଯାଅ । (ପ୍ରସ୍ଥାନ)

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଦ୍ୱାରକା ରାଜସଭା ରାଜବେଶେ ଶ୍ରୀକୃଷ୍ଣ ]

( ବନ୍ଦୀଗଣ )

ଗୀତ

ପୂର୍ଣ୍ଣିମା ନକ୍ଷତ୍ର ଭଳେ କି ସୁନ୍ଦର ।
ସରସୀର ଶୋଭା କିବା ତଟରେ ଦ୍ରୁମମନ୍ଦର । ପଦ ।
ସୁବାସ ଅଙ୍କେ ବୋଳ ପ୍ରେମେ ଜଳଧି ଅଳ
ପଙ୍କଜମାରେ ଖେଳ କିବା ଆଦର । ୧ ।
ପ୍ରଖର ଉଦୟାସେ ଝଲସି ସ୍ୱର୍ଣ୍ଣେ ଦର୍ପେ
ଧନ୍ୟ ବିଧାତା ଧନ୍ୟ ତୋର ସୁନ୍ଦର । ୨ ।

ଦୂତ—ମହାବାହୁ ! ଦ୍ୱାରଦେଶରେ ଜଣେ ବ୍ରାହ୍ମଣ ତୁମ୍ଭଙ୍କ ଦର୍ଶନ ଅପେକ୍ଷା କରୁଛନ୍ତି ।

ଶ୍ରୀକୃଷ୍ଣ—ଜଣେ ବ୍ରାହ୍ମଣ ! ତେବେ ଆସିବାକୁ ଆଦେଶ ଦିଅ । (ସ୍ୱଗତ) ଜଣେ ବ୍ରାହ୍ମଣ ଆସିବାର ଉଦ୍ଦେଶ୍ୟ କଅଣ ! ଅଚ୍ଛା, ସାକ୍ଷାତରେ ସମସ୍ତ ଜଣାପଡ଼ିବ ।

( ବ୍ରାହ୍ମଣ ପ୍ରବେଶ )

ଶ୍ରୀକୃଷ୍ଣ—( ଉଠି ) ଆସ ଦ୍ୱିଜ ! ମୋର ପ୍ରଣାମ ଗ୍ରହଣ କରି ମୋତେ ଆଶୀର୍ବାଦ କର ।

ବ୍ରାହ୍ମଣ—( ତଟସ୍ଥ ) ଆଜ୍ଞା ନା—ମୁଁ—

ଶ୍ରୀକୃଷ୍ଣ—ଇତସ୍ତତଃ କରୁଛ କାହିଁକି ? ( ଆସନରେ ବସାଇ )

ଗୀତ

ଭବ ଦ୍ୱିଜ କେଉଁ କାର୍ଯ୍ୟେ ତବ,
ଆଗମନ ମୋ ପୁର । ଘୋଷା ।
ବଡ଼ ଭାଗ୍ୟେ ଆଜ୍ଞା ଅଛି ଦେଖିଲି ଯା ତୁମ୍ଭ ମୁଖଶଶୀ,
ବସି ଏ ପଲଙ୍କେ ସୁଖେ ସନ୍ତାପକୁ ହର । ୧ ।

ଦ୍ୱିଜବର, ଅନେକ ପଥରୁ ବୋଧହୁଏ ଆସିଛନ୍ତି, ଆପଣ ବଡ଼ କ୍ଳାନ୍ତହୋଇ ପଡ଼ିଛନ୍ତି, ଦୟାକରି ଅନୁମତି ଦିଅନ୍ତୁ, ମୁଁ ଟିକିଏ ପଦସେବା କରିଦିଏଁ ।

ବ୍ରାହ୍ମଣ—ନା ପ୍ରଭୁ, ମୋତେ କିଛି ବାଧା ହୋଇନାହିଁ, କ୍ଷମା କରନ୍ତୁ ।

ଶ୍ରୀକୃଷ୍ଣ—ନା, ନା, ଇଏ ନା କଅଣ କଥା ? ଆପଣଙ୍କ ପଦ ଲାଗି ମୋର ପୁଣ୍ୟ ସାର୍ଥକ ହୋଇଛି ।

( ଉଭୟଙ୍କ ପଦସେବା )

ଗୀତ

ତୁମ୍ଭ ଘର ଗ୍ରାମ କେଉଁ ଦେଶ
ପ୍ରକାଶନ୍ତୁ କିବା ଅଭିଳାଷ
ଶୁଭ କି ଅଶୁଭ ଲାଗି ସନ୍ଦେହ ମୋହର । ୨ ।

ଦ୍ୱିଜବର ! କି କାରଣରେ ମୋ ପୁରକୁ ଆପଣଙ୍କର ପାଦ ପଡ଼ିଲା, ଦୟାକରି ପ୍ରକାଶ କରନ୍ତୁ । କିଛି ଭଲ କଥା ତ ? ମୋ ମନରେ କାହିଁକି ବାର ଅଡ଼କୁ ସନ୍ଦେହ ଆସୁଛି ।

ବ୍ରାହ୍ମଣ—ନା-ପ୍ରଭୁ ! ସବୁ ଭଲ ।

ଶ୍ରୀକୃଷ୍ଣ—

ଗୀତ

କେବା ଖବ ଗାଉଥିଲି ମୋତେ
ଦୟା କରି ପ୍ରକାଶ କହିବେ
(ମୋର) ସନ୍ଦେହ ଜନ୍ମୁଛି ଚିତ୍ତେ,
କପଟ ନ କର । ୩ ।

ଇତସ୍ତତଃ କରୁଛ ବ୍ରାହ୍ମଣ ! ହେଲା କ କେଉଁ ଖବର୍ ମୋର ସଙ୍କେତ ଉତ୍ତେଜିତ ?

ଦ୍ୱିଜ—ନା ପ୍ରଭୁ !

ଗୀତ

ଦୀନବାନ୍ଧବ ହେ,
ଶୋକ ଦୀନଜନ ରଞ୍ଜନ । ଘୋଷା ।
ବ୍ରହ୍ମା ହର ଯାଙ୍କ ପଦ ସେବିବାକୁ
ଜପୁଥାନ୍ତି ଦିନ ପ୍ରତି ।
ମୁଁ ସାମାନ୍ୟ ଦ୍ୱିଜ ଏତେ ମୋର ଭାଗ୍ୟ
ଦେଖିଲି ଶ୍ରୀମୁଖ ଜ୍ୟୋତି । ୧ ।

ବିଦର୍ଭ ଦେଶରେ ଘର ମୋ ଠାକୁରେ
ଜାତକା ମୋ ଭୀଷ୍ମ-ପାର୍ଷି,
ଗୋଷ୍ଠକ ଦୁଲଣୀ ସତୀ ରତ୍ନମଣି
(ମୋତେ) ବରଗିଲେ ତୁମ୍ଭ ଜଣ । ୨ ।
ତୁମ୍ଭ ବିନୁ ଆନ ନ ଜାଣେ ସେ ଜାଣ
ମନେ ବରିଥିଲ ଯିନ୍ତ,
(ତାର) ଭ୍ରାତା ହୋଇ ଅରି ଶିଶୁପାଳେ ବର
କରାଇ ଦେବ ଝଟିଡ । ୩ ।
ବଳେ ବା କୌଶଳେ ଆଣି କନ୍ୟା ନୋଳେ
କ୍ଷିତିରେ ନୋହୁ ଅକୀର୍ତ୍ତି ।
ତୁମ୍ଭେ କଲେ ଆନ ତେଜିବ ଜୀବନ
ବାଳାମଣିର ଭରସା । ୪ ।

ପ୍ରଭୁ ! ଏ ଲେଖା ପଢ଼ି ପ୍ରଭୁତ ତାର ମନର ଭାବ ବୁଝିଥିବେ, ମୁଁ ସ୍ୱଚକ୍ଷୁରେ ଯାହା ଦେଖିଲି ବା ତାର ମନର ଭାବ ଯାହା ଶୁଣିଲି, ଆପଣ ଯେବେ ତାର ମନୋରଥ ପୂର୍ଣ୍ଣ ନ କରନ୍ତି, ତେବେ ସେ ନିଶ୍ଚୟ ଜୀବନ ହରାଇ ଦେବ ।

ଶ୍ରୀକୃଷ୍ଣ—( ପତ୍ର ପଢ଼ି ) ଗୀତ
ପ୍ରାଣବାନ୍ଧବୀ ରେ କିମ୍ପା କରୁ ମନେ ଶଙ୍କା ।
ମୁଁ ତୋ ଜୀବନର ଜୀବନ ତୁହି ମୋର ନାୟିକା । ପଦ ।
ତୋହର ମୋହର ଭାବ ଯେବା କରିବ ଅଭାବ
ଗଢ଼ିବ ତା ମସ୍ତକେ କୋଦଣ୍ଡି ଲେ ରକ୍ଷା । ୧ ।
ବୃଥାରେ ଭାବନା କିମ୍ପା କରୁଅଛ, ପ୍ରିୟେ !
ପ୍ରାଣପଣେ ଚେଷ୍ଟା ତୋହଲାଗି ସଖି !
କିଏ ମୂଢ଼ କରୁଅଛି କ୍ଷଳନ ଅନଳେ ନମସ୍କେପ ?
ଉଚକା ପରସ୍ପ ହେବ ତାର ଅଧୋଗତି ନିଶ୍ଚେ ।
ଗୀତ
କାମରୂପୀ ନାରାୟଣୀ ତୁମ୍ଭଠୁ କି ଭାବ ସେନ
କେବା ଜାଣିଛି ଅଜ୍ଞ ନେବ ତୋ ପ୍ରାଣସଖା । ୨ ।
(ସ୍ୱଗତ) ତୁମ୍ଭଠୁ କିପାଇଁ ସନ୍ଥ ପଡ଼ ମାୟା ମୋହେ ?
ସାଗରେ ମନ୍ଥନ୍ତୁ ଯେବେ ଲକ୍ଷ୍ମୀ ଆବିର୍ଭୂତ ତା
ମର୍ତ୍ତ୍ୟଲୋକ ଆଣ୍ଡି ଅବା ଜନ୍ମପାଶରେ ଭୋଗ
ଯେ ଯାହାର ସେ ତାହାର

ବିଧିର ବିଧାନ
କେଉଁ ମୂର୍ଖ ବଳେ ତାହା କରିଦେବ ଆନ ?
ଗୀତ
ପଙ୍କଜନ୍ମ ସଙ୍ଗେ ଭେକ ତେଜିବକି ଭେ ବାନ୍ଧବୀ
ସଙ୍ଗିନ ତୋ ଭବ ଭାବ ଲାଗିଲାଣି ଚାଟିକା । ୪ ।
(ସ୍ୱଗତ) ପ୍ରେୟସି ! ନ ହୁଅ ଅଧୈର୍ଯ୍ୟ ବୃଥା,
ବଳେ ବା କୌଶଳେ ଆଣିବି ମୁଁ ତୋତେ
(ପ୍ରକାଶ୍ୟେ) କିନ୍ତୁ ଦ୍ୱିଜ ବଡ଼ ଦୁଃସାଧ୍ୟର କଥା,
କି ଉପାୟେ କେଉଁବଳେ ଆଣିବି ମୁଁ ତାକୁ,
ବଡ଼ ଭୟ ହୁଏ ମୋର ମନେ,
ଶିଶୁପାଳ ବଡ଼ ପ୍ରତାପୀ ଦାନବ;
ପୁଣି ରୁକ୍ମଣ ଅଛି ତାର ସାହା ।
ନିଶ୍ଚେ ହେବ ଅପଯଶ,
ପ୍ରୟୋଜନ ନାହିଁ ଯିବ ମୋର ।
ଦ୍ୱିଜବର ! ଅନ୍ୟଠାରେ କରନ୍ତୁ ସନ୍ଧାନ
ନଚେତ୍ କହନ୍ତୁ କ୍ଷଗାୟ
କି ରୂପେ ମୁଁ ହରିବି ସେ କନ୍ୟା ?
ବ୍ରାହ୍ମଣ—ନଟବର ! ତଟର ସାଗର ତୁମ୍ଭେ
ମୁଁ ସାମାନ୍ୟ ମାନବ ବୁଝିବି ବା କାହିଁ !
ତେବେ ଯାହା କହୁ ଯଦ୍‌ମର୍ଶ ମାଗୁଛନ୍ତି ମୋତେ
କ ଶେ ଯାହା କହିବି ଅବଶ୍ୟ !
ପ୍ରଭୁ ! କୁଳାଚାର ବିଧିମତେ ଦେଶାଚାରେ
କନ୍ୟାସହ ସଖୀଗଣେ ଆସିବେ ଅବଶ୍ୟ,
ସେସମୟେ ଅନ୍ତଃପୁରେ ଲୁଟିନେବ ପ୍ରଭୁ !
ହରିନେଲେ କିଛୁ ବାଧା ନ ଥିବ ତୁମ୍ଭକୁ ।
ଶ୍ରୀକୃଷ୍ଣ—ଅଚ୍ଛା, ତେବେ ଯାଆନ୍ତୁ, ଏ ବିଷୟରେ ରୁକ୍ମଣୀକୁ ସତର୍କ କରିଦେବେ ।
ବ୍ରାହ୍ମଣ—ମେଲାଣି ନେଉଛି, ପ୍ରଭୁ ! ( ପ୍ରସ୍ଥାନ )
ଶ୍ରୀକୃଷ୍ଣ— ଦୂତବର ! ଯାଅ ବଜାରରେ ଘୋଷଣା କର,
ଯଦୁବଂଶମାନେ ସମସ୍ତେ ଯେ ଯାହାର ସତର୍କରେ
ରହିବେ, ଆଉ ବଳଙ୍କୁ ଏ ଲେଖା ନେଇ ଦେବ ।
ଦୂତ—ଯେ ଆଜ୍ଞା ! ( ପ୍ରସ୍ଥାନ )

—*—

## ଦ୍ୱିତୀୟ ଦୃଶ୍ୟ

(ଦୁଇଜଣ ସଖୀ ଓ ରାଜା ଭୀଷ୍ମକ ପ୍ରବେଶ)

ଗୀତ

ଆହା କି ଅପୂର୍ବ ଶୋଭା     କରେ ଜନମନ ଲୋଭା
ଶୋଭାରେ ଜିଣେ ମଘବା ସଭା ।
ସ୍ଥିର ଗ୍ରହଣି ପ୍ରତିକ     ଦିଶେ କେଡେ ଝକମକ
ଶତକୋଟି ଚନ୍ଦ୍ର ଜିଣି ଆଭା । ୧ ।
ଦ୍ୱାରେ ରମ୍ଭା ବୃକ୍ଷମାନ     ସୁବର୍ଣ୍ଣ ବେଦୀ ସ୍ଥାପନ
ଦିଶେ ସୁଚାରୁ ଦିବ୍ୟ ତୋରଣା ।
ପଡ଼େ ଚାମର ଆଲଟ     ଟଣାଅଛି ଚନ୍ଦ୍ରାତପ
ବାଜୁଅଛି ବିବିଧ ବାଜଣା । ୨ ।
ପାଠ ଜ୍ୟୋତିଷ ବ୍ରାହ୍ମଣ     ଛନ୍ଦ ନିଜ ନିଯୋଗେଣ
ସଭା ଶୋଭା ନ ହୁଏ କଳନା ।
ନିଯୋଗୀ ଗଣବେଷ୍ଟିତ     ଗଗନେ କି ତାରାଯୂଥ
ଧନ୍ୟ ଧନ୍ୟ କରୁଛି ଘଟଣା । ୩ ।

ରାଜା—ମନ୍ତ୍ରିବର ! ଆଜ ସଭାଟି ସାଜ ସଜ୍ଜାରେ ବଡ଼ ଚମତ୍କାର ହୋଇଛି, ବାହ୍ୱା ! ବ୍ରାହ୍ମଣ, ଜ୍ୟୋତିଷ ଏ ପର୍ଯ୍ୟନ୍ତ ତ ଦେଖାନାହାନ୍ତି !

(ଦୂତ ପ୍ରବେଶ)

ଭଲ, ବାହାଘର ଯେଉଁ ନାଆଁଟି
କାନରେ ପଡ଼ିଲେ     ପ୍ରାଣ ଉଲ୍ଲସୁଛି
ପେଟ ଖାଲିହୁଏ ଗାଣ୍ଡି ଟେକନ୍ତି । ପଦ ।
ଗଜା ପୁରି ଲଡ଼ୁ ମିଠାଇ,
କେତେ ଖାଇ ପିବେ ମୁଠାଇ
ମୁଁ ହିଁ ଦରଜା     ପଟହ ବଜାଇ
ଜଳ ଜଳ କରି ଗୁଣ୍ଡିହୁଅନ୍ତି । ୧ ।
ବାହାଘର ଭୋଜଟା ଧନ;
ଖଟି ଖଟି ପିଠ ଗାଦକ ।
ଖାଇବା ପିଇବା     ହୋଇବ ସ୍ୱପନ
ଖାଡ଼ା ପଦରରେ ପିବନ୍ତି କଣ୍ଟି । ୨ ।
ମୋହଠାରୁ ଯେ ପାନ ଚୁଆ,
ହେଲେଣିଟି ଭୋଜଟା ବାହା ।
ମୋର ବାପ ମାଆ     ଏତେ ପଥରିଆ
ପିଲ ବୋଲି ମୋତେ ନ ଦେଲେ ଦୃଷ୍ଟି । ୩ ।

ବାହାଘର ବୋଲି ଯେଉଁ ଗ୍ରହଣା ଅକ୍ଷର ସେଥିରେ କି ସୁଖ ଲଡ଼ୁ ମିଠାଇ ଭଲିକ ପର ପାଟିରେ ପଡ଼ିଲେ ପେଟ ପୂରି ଉଠୁଛି । କହୁଣ କହିବ ? ବାହାଟିଏ ଖାଲି କେମନ୍ତ ହୁଅନ୍ତା ! ଏମନ୍ତ କଥା କହୁ କହୁ ଦିନ ଯିବ, ମୋ କାମରୁ ଆସେ ।

(ରାଜାଙ୍କୁ ଅଭିବାଦନ)

ରାଜା—ଦୂତ ! ଏତେ ବିଳମ୍ବ କାହିଁକି ? ତୋ ଅପେକ୍ଷାରେ କେତେ କାର୍ଯ୍ୟ ନଷ୍ଟ ହେଲାଣି ।

(ଗୀତ)

(ଏ କୁଳଜନଙ୍କ—ବୃତ୍ତେ)

ଯାଅ ଦୂତ ରାଜ୍ୟ ମଧ୍ୟେ କରାଅ ଘୋଷଣା ରେ ।
ଉଲ୍ଲସିତ ହୋନ୍ତୁ ସର୍ବେ ଏ ମଙ୍ଗଳ ଦିନରେ । ୧ ।
ବଜାଇ ବିବିଧ ବାଦ୍ୟ ଚମକା ଗଗନରେ
ଗୀତ ବାଦନରେ ବର ନିମନ୍ତ୍ରିଣ ଆଣରେ । ୨ ।
ନାନା ବେଶ ଭୂଷା କରି ଅଣାଅ ଦୂତୀଚାରେ ।
କୁଳାଙ୍ଗର ମତେ ଦେଖ ମଣ୍ଡପକୁ ପଠାରେ । ୩ ।
ପୁଣ ଜ୍ୟୋତିଷ ବ୍ରାହ୍ମଣ ବେଦ ଅଧ୍ୟାପିଣ ରେ ।
ବିଧି ବିଧାନରେ କାର୍ଯ୍ୟ କରନ୍ତୁ ସମ୍ପୂର୍ଣ୍ଣ ରେ । ୪ ।

ଯାଅ, ବର୍ତ୍ତମାନ ସମସ୍ତେ ଆୟୋଜନ କରି ଗୀତ ବାଦନ ନେଇ ବର ଆଣିବାର ବନ୍ଦୋବସ୍ତ କର ।

ଦୂତ—ଯେ ଆଜ୍ଞା ! ବର୍ତ୍ତମାନ ତତ୍ପର ହେଉଛି ।

(ଦୂରରୁ ଗୋଟିଏ ସ୍ତ୍ରୀର ଆଗମନ ଦେଖି)

ଗୀତ

ଧୀରେ ଧୀରେ ଏଣିକୁ ତାର ଆସୁଛି ରେ । ଘୋଷା ।
ମନ୍ଦହାସୀ ମଦାଳସୀ     କୁନ୍ଦରଦନା ସୁକେଶୀ
ମଦନ ତା ସଙ୍ଗେ ଆସି ମିଶୁଛି ରେ । ୧ ।
ହେବ ପଦର କସ୍ତୁରୀ     ମଦର ତା ନାହିଁ ଶରି
ସୁନ୍ଦର ଚାହିଁ ତା ମନ ରମୁଛି ରେ । ୨ ।
ତା ନେତ୍ର ବାଙ୍କ ଚାହାଣି.     ଜନ ମନ ନିଏ କିଣି
ମୋ ପଞ୍ଚ ପରାଣ ତାରେ ଭାସୁଛି ରେ । ୩ ।

ଆହା ! କେଡ଼େ ସୁନ୍ଦର କନକ ପ୍ରତିମାଟିଏ ମୋର ଆଡ଼କୁ ଗଡ଼ିଆସୁଛି ! ଆଜ୍ଞା ଆସୁ ଆସୁ ।

(ଦାସୀ ପ୍ରବେଶ)

ଦୂତ—(ଗତ କ୍ରୋଧ କରି) ହେ କିଏ ? କୁହା ନାହିଁ, ବୋଲି ନାହିଁ କୁଆଡ଼େ ମାଡ଼ିପାଉଛୁ ?

ଦାସୀ—ମୁଁ ମହାରାଜାଙ୍କ ସାକ୍ଷାତକୁ ଯାଉଛି ।

ଦୂତ—ସେଇଠି ରହ, ମହାରାଜାଙ୍କୁ ମୁଁ ଜଣାଏ, ତେବେ ଯାଇଁ ଯିବାକୁ ଦେବ । ମୋ ପାଉଣା କଅଣ ଦେଲ, ମୁଁ ଜଣାଇଦିଏ ।

ଦାସୀ - ତୋତେ କ ପାଉଣା ଦେବ ? ମୁଁ ନଅର ମା ମଣିମାଙ୍କ ଦାସୀ । ଯା, ରାଜାଙ୍କୁ ଜଣାଇ ଦେ ଯା ।

ଦୂତ—ବାହିଁକି ଏଡ଼େ ତୋଡ଼ ? ତୁ ଯିବା ମା ମଣିମାଙ୍କ ଦାସୀ, ମୁଁ ତ ବା ମଣିମାଙ୍କ ଦାସ ! ତୁ ମୋତେ ଡରଉଛୁ କଅଣ ? ଅଚ୍ଛା, ଜଣାଇ ଦଉଛି—( ରାଜାଙ୍କୁ ଜଣାଇବା ) ମହାରାଜ ! ଦ୍ୱାରରେ ଭିଅଁସର ଜଣେ ଦାସୀ ତୁମ୍ଭଙ୍କ ସାକ୍ଷାତ ଅପେକ୍ଷା କରୁଛି ।

ରାଜା—ଆସିବାଦିଅ !

ଦୂତ - ଯେ ଆଜ୍ଞା; (ଦାସୀକୁ ରାଜାଙ୍କ ନିକଟ ପଠାଇବା)

ରାଜା—ଦାସି ! କ ସମ୍ବାଦ ?

ଦାସୀ—ମା ମଣିମାଙ୍କର ଶରୀର ଅସୁସ୍ଥ, ଆପଣଙ୍କ ଦର୍ଶନ ଅପେକ୍ଷା କରୁଅଛନ୍ତି ।

ରାଜା—ତେବେ ଚାଲ, ମୁଁ ଯାଉଛି । ( ସ୍ୱଗତ ) ବୋଧହୁଏ ରୁକ୍ମିଣୀର ଓ ରାଣୀଙ୍କର ମତଭେଦରେ ରାଣୀଙ୍କର ଦୁଃସ୍ୱପ୍ନମାନ ଘଟିଛି, ଚାଲ ମନ୍ତ୍ରି !

—*—

## ତୃତୀୟ ଦୃଶ୍ୟ

( ରୁକ୍ମିଣୀ ଦାସୀ ସଙ୍ଗ )

ରୁକ୍ମିଣୀ—ସଖି ! ବ୍ର ଦୂତ ଯାହା କହିଲେ, ତୋ ମନକୁ କେମିତି ଆସିଲା ? ସତେ କଅଣ ସେ ଆସିବେ, ବାହିଁ ମୋତେ ତ ବିଶ୍ୱାସ ହେଉ ନାହିଁ ।

ସୁରମ—ସଖି ! ନିଶ୍ଚୟ, ଆସିବେ ତେବେ ଆଉ ବ୍ୟସ୍ତ ହୁଅ ନା !

ରୁକ୍ମିଣୀ— ଗୀତ

ସ୍ୱପନ ଅବସ୍ଥେ ଦେଖୁଛି ଯୋ ଆଜ
ପ୍ରିୟତମ ମୋର ଆସିବେ କି ?
ଅଙ୍କଗିଣ କରେ ଧରି ପୀତାମ୍ବର
କୋଟି ଜନ୍ମ ଦୁଃଖ ନାଶିବେ କି ।
ଖଣ୍ଡି ଯିବ ମୋର ଅମା ଅନ୍ଧକାର
ପୂର୍ଣ୍ଣଶଶୀ ଆସି ହସିବେ କି ?
(ମୂର୍ଚ୍ଛା) ମୋର ଶୀତଦିନେ ବସନ୍ତ ବହିବ
କୋକିଳ ଆନନ୍ଦେ ଗାଇବ କି ।

( ରାଣୀଙ୍କର ପ୍ରବେଶ )

ସୁରମା—କେମା ! ଦେଖିଲ, ମା ମଣିମା ଏଣେ ଆସିଲେଣି ! ଚମ ଲାଗି ତାଙ୍କର ତ ଖିଆ ପିଆ ଏକରକମ ବନ୍ଦ ହୋଇଗଲାଣି ।

ରାଣୀ—( ପ୍ରକାଶ୍ୟେ ) ମା’ ମ ! ତୁ ସଦାବେଳେ ଯେଉଁଠି ମନ ସେଠି ବସି ଲୁହ ଗଡ଼ାଇଲୁ । ତୁ ଏମିତି ହେଲେ ତ ତୋ ମଣିଷପଣିଆ ଶେଷ ହୋଇଯିବ । ଧନ ମୋର ! ଲକ୍ଷ୍ମୀ ମୋର ! ଆଉ ମନଟାକୁ ଏତେ ଅଧୈର୍ଯ୍ୟ କରନା ।

( ସୁରମା ପ୍ରତି )

ସୁରମା ! ଝିଅକୁ ମୋର ବଗିଚ୍ଚ ଆଡ଼େ ବୁଲେଇ ଆଣିବୁଟି । ମହାରାଜ ଏଠିକି ଆସିବେ, ଏଠୁ ତୁମେ ଟିକିଏ ଯାଅ ।

ସୁରମା—ହଉ ଯାଉଛୁଁ । କେମାମଣି ! ଚାଲ, ଟିକିଏ ବଗିଚ୍ଚ ଆଡ଼େ ବୁଲି ଆସିବା । ( ପ୍ରସ୍ଥାନ )

ରାଣୀ—( ସ୍ୱଗତ ) ମୁଁ କଅଣ କରିବ, ରାଜାଙ୍କୁ ଭଲ ରୁକ୍ମିଣୀର ଦୁଃଖ କଥା କହନ୍ତି । କିନ୍ତୁ କହିଲେ କଅଣ ହେବ । ରୁକ୍ମିଣ ତ ଦୁଷ୍ଟଲୋକ, ସେ ତ ସବୁ ବାଧା କଲାଉଛି । ଏ କଅଣ ଦାରୁଣ ଥିଲେ ? ଆଜ ଆଉ ଥରେ କହିବ । ରୁକ୍ମିଣୀ ! ତୋ କପାଳ କଥା । ଏଇ ତ ଆସିଲେଣି ।

( ରାଜା ପ୍ରବେଶ ) ( ରାଣୀ ଘାରବେ ବସିବା )

ରାଜା—ପ୍ରେୟସି ! ତୁମର ଶରୀର କଅଣ ଅସୁସ୍ଥ ହୋଇଛି ? ଆଜ ଏପରି ଆନନ୍ଦ ଦିନରେ ତୁମର ଏପରି ବିରସ ବଦନରେ ବସିବା କଅଣ ଭଲ ମନେ କରୁଛ ? କଅଣ କହିବଟି ? ପିତା ମାତା ଭାବରେ କନ୍ୟାଟିକୁ ସାନ୍ତ୍ୱନା ଦେଇ ବିଦାୟ ଦେବା କହିବା । ତୁମ୍ଭେ ତ ଏପରି ହେବ, କନ୍ୟାକୁ ପ୍ରବୋଧ ଦେବ କିଏ ? ନା, ଅନ୍ୟ

କୌଣସି କଥାରେ ବ୍ୟଥିତ ଅଛ, ମୋତେ ନ କହିଲେ ମୁଁ ଜାଣିବି କପରି ?

ଗୀତ

ଆହା ରେ କନକକେଶୀ
କାହେଁ ବେଦନ ମୋ ଜନତ
ହୀନ-ଭରକା ତୋ ବଦନେ
ନାହିଁ ମୋର ଅନ୍ୟ ଗତି । ୧ ।
ଜାଣାକଣା ତୋର ବାଣୀ
ଶୁଣାଅ ଗୋ ରମାମଣି
ଧରୁଅଛୁ ତୋର ପାଣି
ଦାଣିଦୁଏ ହୃଦୟଟି । ୨ ।
ମତ୍ତ-କରଣୀ ଗମନା
କାହିଁକି ହେଉ ବିମନା
ମୁଁ ପରା ତୋହର ଜଣା
ଜାଣ ନ ପାରେ ଗୋ ମତି । ୩ ।

ପ୍ରେୟସି ! ଆଉ କେଉଁ କଥା ପ୍ରକାଶ କର । ତୁମ୍ଭେ କହୁ ନ କହିଲେ ମୁଁ ଜାଣିବ କପରି ?

ରାଣୀ—ନାଥ ! ରୁକ୍ମିଣୀର ଶୋକାକୁଳ ନୟନ ଦେଖିଲେ କେଉଁ ପାଷାଣର ହୃଦୟ ବିଦୀର୍ଣ୍ଣ ହୋଇ ନ ଯିବ ? ବିବାହ ଉତ୍ସବରେ ଏଏ କେତେ ଆନନ୍ଦ ଉପଭୋଗ କରୁନାହିଁ; କିନ୍ତୁ ମୋ କନ୍ୟାର ଅବସ୍ଥା ଆଉ କହି ହେଉନାହିଁ । ଅତଏବ ବର୍ତ୍ତମାନ ତାକୁ ବିବାହ ଦିଅନ୍ତୁ ନାହିଁ ।

ରାଜା—ଏ ଅସମ୍ଭବ କଥା । ସେ ପିଲା ବୋଲି ତୁମ୍ଭେ ଏ ଶେଷପରି କଥା କହୁଛ ! ବିବାହ ଦିନ କି ବନ୍ଦ ହୋଇପାରେ ? ଯେଉଁଦିନ ହେଲେ ତ ସେ ଆମ୍ଭମାନଙ୍କ କୋଳରୁ ଅନ୍ତର ହେବ । ଝିଅ, ଝିଅ, ଏ କେଉଁ ସାଇତିବା ଧନ କି ? ସେ ସ୍ୱଭାବତ ସର୍ବଜନୀୟ କଥା, ଆମ୍ଭର ଏକ୍ତିଆର କିଛି ନାହିଁ । ଆମ୍ଭେ ସିନା ଜନ୍ମ ଦେଇଛୁ, କିନ୍ତୁ କର୍ମ ତ ଦେଇନାହୁଁ । ତୁମ୍ଭେ ବୃଥାରେ ଅନ୍ୟ ଆଶା ମନରେ ଜାଗରିତ କରନା । କେବଳ ବାଦ୍ୟ ଶୁଭିଲଣି । ତୁମ୍ଭେ କନ୍ୟାକୁ ବୁଝାସୁଝା କରି ଦେବୀମନ୍ଦିରକୁ ଏବଂ ମଙ୍ଗଳବାକୁ ପଠାଅ । ଆସ, ଆଉ କେତେକ ବିଷୟ ପରୁଝିବାକୁ ଅଛି ।

—*—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( ଶିଶୁପାଳ ବର ବେଶେ ବେଷ୍ଟନ ସହ ଯାନ-ଯାନକରେ ପ୍ରବେଶିବା ଓ ରାଜପୁରୋହିତ ବାଟ-ବରଣି କରି ନେଇଯିବା । )

( ନେପଥ୍ୟେ ଶଙ୍ଖାଦି ଡାକ )

ରାଜା—ଦୂତ ! ଯା, ଅନ୍ତଃପୁରରେ ଖବର ଦେ, ଶୀଘ୍ର ଶୀଘ୍ର କନ୍ୟାକୁ ଦେବୀ ମନ୍ଦିରକୁ ପଠାନ୍ତୁ । ବରକୁ ନୂଆ ଆବାସରେ ରଖାଅ । ଆଉ ଯିଏ ଯିଏ ରାଜାମାନେ ଆସୁଛନ୍ତି, ସେମାନଙ୍କୁ ସମ୍ମାନ ଦେଇ ରଖାଅ ।

ରୁକ୍ମ—ପିତା ! ବିବାହ କାର୍ଯ୍ୟ ଖୁବ୍ ଶୀଘ୍ର ଆରମ୍ଭ କରିବା ଦରକାର । (ପ୍ରସ୍ଥାନ)

—*—

## ଦ୍ୱିତୀୟ ଦୃଶ୍ୟ

( ରୁକ୍ମିଣୀର ସଖୀସହ ଦେବୀ ମନ୍ଦିରକୁ ଗମନ, ଶଙ୍ଖ ହୁଳହୁଳି ଇତ୍ୟାଦି )

୧ମ ସଖୀ—ତେମେ ଏମିତି ହେଲେ ହେବ ? ପିତା ତଥା ଖୁସି ହେଉଛନ୍ତି ! ଉଃ, ଟିକିଏ ଚାଲିଆସ ।

ରୁକ୍ମିଣୀ—ନାହିଁ ସଖି ! ଯିବି ନାହିଁ । ମୋତେ ବାଧ୍ୟ କର ନା, ଗୁହାରି ।

୨ୟ ସଖୀ—ଆ ଲୋ କଅଣ କଥା ! ତେମେ ପିଲ ନୁହଁ, ଛୁଆ ନୁହଁ, ଏମିତି ଅବୁଝା କଅଣ ହେଉଛ ?

୩ୟ ସଖୀ—ଜାଣ ଲୋ ! ବ୍ରାହ୍ମଣଟା ଭଲ ଥାଆନ୍ତା, ପୁଣି ଥରେ ହେଲେ କହନ୍ତା ଯାଆନ୍ତା । ଯୋଗିଆଣିଆ ଭଳି ଘରେ ବସି ରହିଲୁ, ଏଣେ ସ୍ୱାଙ୍ଗ ଭଙ୍ଗ ଏମିତି । ନେମାରେଲ ! ତେମେ ଭଲ ସ୍ୱର ।

ରୁକ୍ମିଣୀ— ଗୀତ
କାହିଁକ ରେ ସତ୍ୟ ମେତେ ବଳାଅ ପରା । ପଦ ।
କାହିଁ ସେ ଲାବଣ୍ୟ ମୂର୍ତ୍ତି କାହିଁ ସେ ଶ୍ରୀମୁଖ ଜ୍ୟୋତି,
କାହିଁ ସେ ପ୍ରାଣ ବନ୍ଧୁଟି ହୃଦୟହାରା । ୧ ।
ସଖି ! ସେ ଲାବଣ୍ୟ ପ୍ରତିମା ମୋର ନୟନ ପଥୁକା କାହାନ୍ତି ?

୨ୟ ସଖୀ — ବ୍ୟସ୍ତ ହେଉଛ କାହିଁକି ? ସେ ଅନ୍ତର୍ଯ୍ୟାମୀ, ନିଶ୍ଚେ ତୁମ୍ଭର ଅନ୍ତରବେଦନା ଜାଣିଛନ୍ତି । ସେ ତାର ପ୍ରତିକାର କରିବେ ।

ରୁକ୍ମିଣୀ— ଗୀତ
କାହିଁ ସେ ମନମୋହନ ? କାହିଁ ସେ ବଂଶୀବଦନ,
କାହିଁ ସେ କାଳଆସୁନା ପ୍ରେମ ପସରା । ୨ ।
ସଖି, ସତେ ଆସିବେ ନାହିଁ ! ସତେ ମୋତେ ଦେଖାଦେବେ ନାହିଁ ?

୩ୟ ସଖୀ—ହିଁ ଆସିବେ, ତେମେ ତ ବେଶ୍ ଆମକୁ ଧଇଲାଧଇଲ କରି ସାରିଲଣି ।

ରୁକ୍ମିଣୀ— ଗୀତ
କାହିଁ ଶ୍ରୀଖଣ୍ଡଚୂଳଆ କାହିଁ ସେ ବନମାଳିଆ
କାହିଁ ସେ ଘନକାଳିଆ ମୋ ମନଚୋରା । ୩ ।
କାହିଁ ସୁଘଟ ନାଗର କାହିଁ ସେ ମୁରଲୀଧର,
କାହିଁ କ ହେଲେ ବନ୍ଧୁର ବାଳ ଅଧୀରା । ୪ ।
(ଦୁର୍ଗାଙ୍କ ନିକଟେ ସ୍ତବ)
ମା ଭଗବତି ! ପତି ମୋର ସେ କାଳଆ ସୁନା ।
ତାର ବିନା ଅନ୍ୟ ମୋର ନାହିଁଟି ଶୋଚନା ।
ମହିଷାମର୍ଦ୍ଦିନି ମାତ ଦୁର୍ଗତି-ନାଶିନି ! ଏ ସଙ୍କଟୁ ଉଦ୍ଧାରକୁ କରୁଣାଦାୟିନି ! (ଶୂନ୍ୟବାଣୀ)

କୃଷ୍ଣ—ଭାଗ୍ୟବତି ! ଅଚିରମେ ଭେଟିବୁ ତୁ ମୋତେ
ହବେ ମୁହିଁ ବନ୍ଧା ଏ ଜଗତେ
ଭକ୍ତଙ୍କ ହାତରେ ମୋର ନାମ ଭଗବାନ,
ଭକ୍ତର କଷଣ ସହି ! ସହେ ମୁଁ କଷଣ,
ନିଶ୍ଚୟ ବରଙ୍ଗୀ ଆଜ ହେବୁ ପ୍ରାଣସଙ୍ଗୀ
ବୃଥା କମ୍ପା ଏଣେ ତେଣେ ହେଉଅଛୁ ଧନ ?

ରୁକ୍ମିଣୀ—( ଆଶ୍ଚର୍ଯ୍ୟ ହୋଇ ) କିଏ କେଉଁଠାରେ ଏ ଅମୃତ ବାଣୀ ଶୁଣାଇଲା ! ସତେ ମୋ ବନ୍ଧୁ ଆସିବେ ?

ସଖୀଏ—ହିଁ ଆସିଲେ ପରା ? ଉର୍ଦ୍ଧ୍ୱକୁ ଚାହିଁ) ଜେମା ଦେଖ, ଦେଖିଲ, ଆକାଶ ମାର୍ଗରେ ଏ କାହାର ରଥ ? ଆମ୍ଭେ ନିଶ୍ଚୟ ଜାଣିଲୁଣି, ଏ ସେହି ନଟବର ନାଗର ଶ୍ରୀକୃଷ୍ଣ । ତାଙ୍କ ଛଡ଼ା ଆଉ କେହି ନୁହେ । ଭଲକରି ଟିକଏ ଉପରକୁ ଚାହିଁଲ ।

ସଖୀଏ— ଗୀତ
ଏହି ପରା ସେହି ଯାହା ଲାଗି ହେଉ ବାଇ ଗୋ ।
ପଥ ଜଗି ବସିଅଛୁ ତୋ ଆସିବା ଚାହିଁ । ପଦ ।
ତୋର ଅନ୍ତର ବେଦନା ଜାଣେ ସେ ମନମୋହନା,
ନ କର ଆଉ ଭାବନା ହେବୁ ତାଙ୍କ ସହି ଗୋ ।୧।

ଶ୍ରୀକୃଷ୍ଣ— ଗୀତ
ଘନକେଶି ! ଶୂନ୍ୟମାର୍ଗେ ବସି,
ତୋତେ ଚାହିଁଅଛୁ ପରାରେ
ପୀନସ୍ତନୀ ନୁହ ଭାବ,
ଏ ଜୀବନ ତୋହ ଲାଗି !
ମୀନ କି ସଲିଳ ମୁହଁଛୁ ବଲ୍ଲଭ
ତୁ ମୋ ହୃଦହାର ରେ ।୧।

ପ୍ରେୟସି ! ତୁହି ମୋର ଉକାର ରତନ, ତୋହ-ବିନା ଏ ଜଗତେ ନାହିଁ ସୁଖ ଅନ୍ୟ, ପରାଣ ପର୍ଯ୍ୟନ୍ତ ପଣ ତୋହଲାଗି ସତ ! ବିଷଣ୍ଣ ନ ହୋଇ ଆସ ପଥ ମୁଁ ଚାହିଁଛି ।

ଗୀତ—
ଶରଦ ଚନ୍ଦ୍ରବଦନା, କାହିଁକ ହେଉ ବିମନା
ତୋ ହୃଦ ପଲଙ୍କେ ବିହରିବି ସୁଖେ
ଖେଦ ତେଜ ଧୀରା ରେ ।୨।
ପ୍ରେୟସି ! କର ହସ୍ତ ଉତ୍ତୋଳନ ଶୂନ୍ୟମାର୍ଗେ । ନେବି ନନ୍ଦଘୋଷେ ।

ଦାସୀମାନେ – ଦେଖିଛ କଣ ବା ଗୁଲୁନା, ଜେମାଦେଈ, ଆମ୍ଭମାନଙ୍କୁ ଏକା ମନେ ପକାଉଥିବଟି ? କେହି କୁଆଡ଼େ ନାହାନ୍ତି, ଆଉ କାହିଁ ଦୁରକୁ ଗଲ ।
(ପ୍ରସ୍ଥାନ)

———

## ତୃତୀୟ ଦୃଶ୍ୟ

(ରାଜା, ପୁରୋହିତ ଦୁଇଜଣ, ଜ୍ୟୋତିଷ, ବାଳକ ଓ ବାଦ୍ୟକାର ଓଗେର)

ରାଜା—ପୁରୋହିତେ ! ତୁମ୍ଭର ଦେଖା ଉପର ସମସ୍ତ କାର୍ଯ୍ୟ ପ୍ରସ୍ତୁତ କରି ରଖ, ଯେପରି ଶୀଘ୍ର କାର୍ଯ୍ୟ ସମ୍ପୂର୍ଣ୍ଣ ହୁଏ ।

ବ୍ରାହ୍ମଣ  ମହାରାଜ ! ସବୁ ପ୍ରସ୍ତୁତ, ବାରିତ ଯାଇଁ ବର ଘେନିଆସୁ ! ବାହୁଅ କାର୍ଯ୍ୟ ହୋଇଯିବ ।

ରାଜା—ହଉ ଯାଅ,(ବାଳକପ୍ରତି) ଯାଅ ବର ଘେନିଆ ।

(ବ୍ରାହ୍ମଣମାନଙ୍କର କର୍ମ ଆରମ୍ଭ)

(ବର ଅଞ୍ଚଳ ଘେନ ପ୍ରବେଶ)

ବାହୁଅ ସୂତା ଧରିବା ସମୟେ ନେଲ ନେଲ ଗୋଳ ଦୂରରେ ହେବା)

ରାଜା—ଏ କି ଶବ୍ଦ ? କିଏ କାହାକୁ ନେଲ ନେଲ ଡାକ ପଡ଼ୁଛି ?

ବ୍ରାହ୍ମଣ—କେ ଜାଣି ମହାରାଜ ! ( ସମସ୍ତେ ଉଠିଛି )

ଦୂତ—( ବେଗେ ପ୍ରବେଶି ) ମହାରାଜ ! ସର୍ବନାଶ ! ଦେବୀ ମନ୍ଦିରରୁ ଜେମାମଣି ଆସିବା ସମୟେ କିଏ ଜେମାମଣିଙ୍କୁ ଧରି ନେଇ କୁଆଡ଼େ ଚାଲିଗଲା ।

ରାଜା—ଆରେ, ନେଲା କିଏ ?

ଦୂତ—ମହାରାଜ ! ଚୋର ।

ରାଜା— ଗୀତ

(ନେଲାଁ ହା ତୋ ମୁଖରେ ଲଜ୍ଜା—ବୃନ୍ଦେ)

ବେଢ଼ି ମାରି ଚୋର କେଉଁଣେ ଗଲା ରେ
ବାହୁଅ କନ୍ୟା ହରଣ   କାଳେ ମୂଢ଼ ଅଜ୍ଞାନ
ଅନ୍ତରାଳେ ରହି ଏଡ଼ା କଲା ରେ
ନେଲାରେ, କାହା ସଙ୍ଗରେ । ପଦ ।

କାର ଏ ଆସ୍ପର୍ଦ୍ଧା ? ମୋର କନ୍ୟାକୁ ବଳାତ୍କାରରେ ଦେବୀ ମନ୍ଦିରରୁ ହରଣ କରି ନେଇଗଲା ।

ଗୀତ

ଭେକ ଭୁଜଙ୍ଗ ଗର୍ତ୍ତରେ   ପଶିଛି କି ଯୁଝିବାକରେ
ବୁଝିଲି ତା କର୍ମ ବାମ ହେଲା ରେ । ୧ ।
ସିଂହ ମୁଖରେ ଶୃଗାଳ   ଘୁଚ ବେଗେ ବେଗେ ମାତର
ବାଳକୃଷ୍ଣ ବୋଲେ ଶୋକ ଦେଲାରେ । ୨ ।

ଦୂତପ୍ରତି—କହ ଦୂତ ! ସୈନ୍ୟଗଣେ ଯୁଦ୍ଧ ଲାଗି ହୁଅନ୍ତୁ ପ୍ରସ୍ତୁତ ସର୍ବେ । ଛାର ଚୋର ଗୋଟା କିଏ ବଳାତ୍କାରେ କନ୍ୟାକୁ ମୋ କରିଲା ହରଣ । କଷ୍ଟେ ଆଜ ଧରି ପାଷଣ୍ଡକୁ, ଦମାଇ ତା ବୁଝିବ କେଯାଏ ।

( ରୁକ୍ମଣ ପ୍ରବେଶ )

ରୁକ୍ମଣ—(ପିତା ପ୍ରତି) ଧୈର୍ଯ୍ୟଧର ତାତ !

ଏ ସନ୍ତାନ ଥାଉଁ ଥାଉଁ, ଆପଣ କାହିଁକି ଯୁଦ୍ଧକୁ ଅଗ୍ରସର ହେବେ ? ମୁଁ ବର୍ତ୍ତମାନ ସେ ପାଷଣ୍ଡର ଦମାକଥା ବୁଝିବି । ଚାଲ ଦୂତ, ଫେରନ୍ତୁ ପିତା ।

( ପ୍ରସ୍ଥାନ )

ବାଳକ—ନନା, ଆମେ କଅଣ କରିବା ।

୧ମ ବ୍ରାହ୍ମଣ—ଆରେ ନଡ଼ୋଇ ତ ଲାଗିଲା, ଆମେ ଏଠି ବସି ରହି କି ଫଳ ? ତୁ ବର ନେଇ ଯା, ଆମ୍ଭେ ଚାଲିଲୁ । ମିଛରେ ଏଠି ବସି କଅଣ ହାଣରେ ଯିବା ?

ବାଳକ—ବରକୁ କୋଉଠିକି ନେବି ?

୨ୟ—ଆମେ ଜାଣୁ ? ନନା ଚାଲ, ଏଠି ଆଉ ଦଣ୍ଡେ ରହି ଭଲ ନାହିଁ । ଏ ସରଞ୍ଜାମ ପୁଡ଼ା ବାନ୍ଧିନେଇ ଯିବା, ଛାଡ଼ିବା କାହିଁକି ? ଆମର ଯେତିକି ହେଲା ସେତିକି ।

( ଗୋଟେଇ ଗାଟେଇ ଘେନି ପ୍ରସ୍ଥାନ)

ବାଳକ—(ଶିଶୁପାଳ ପ୍ରତି) ଆଉ ଆପଣ ବସିଛନ୍ତି କାହିଁକି ? ପ୍ରାଣ ରଖିବା ଭାବନା ପଡ଼ିଲାଣି, ଚାଲି ଆସନ୍ତୁ ।  (ପ୍ରସ୍ଥାନ)

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

(ରୁକ୍ମଣ ସୈନ୍ୟ ସହ ପ୍ରବେଶ)

ରୁକ୍ମଣ  ଗଲା କାହିଁ ମୂର୍ଖ ?

ଦୂତ - ଯୁବରାଜ ! ଏଇ ଦେଖନ୍ତୁ ତ ଶୂନ୍ୟମାର୍ଗରେ ଗୋଟାଏ ରଥ କାହାର ଦେଖାଯାଉଛି ।

ରୁକ୍ମଣ—ହଁ, ଠିକ୍ ଏହି ।

ଗୀତ

କାହିଁ ଯିବ ପାଜ ଆଜ ମୋ କରୁ ବରନ୍ତ ।
ପାଞ୍ଚି ପୋହୁଲଣି ଯମ ନାହିଁ ଭଲ ଗନ୍ତ । ୧ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନାହିଁ ତାର ବାସ ।
ନିଷ୍ପୁର ଖୋଜ ମାରିବ ଯିବ ଏ କଳୁଷ । ୨ ।
ଦେବତା ହେଲେ ତା ମଥା କରିବ ମୁଁ ଚୂନା ।
ରାକ୍ଷସ ହେଲେ ମୁଁ ଧ୍ୱଂସ କରିପାରେ ସିନା । ୩ ।
ରଣେ ନ ଜିଣିଲେ କୁଣ୍ଡିନଗ୍ରେ ନ ପଶିବ ।
ଏ ମୋର ଦୃଢ଼ ପ୍ରତିଜ୍ଞା ଧରୁଅଛି ଜବ । ୪ ।

ଶୁଣ ସୈନ୍ୟଗଣେ !
ଯେବେ ଆଜ ନ ଜିଣେ ସେ ପାଷଣ୍ଡ ସ୍ୱେଚ୍ଛକୁ
ଯେବେ ଭଗ୍ନୀ ମୋର ନ ଆଣେ ତା କରୁ
ନ ପଶିବ କୁଣ୍ଡିନଗ୍ରେ ଏହି ଦୃଢ଼ବ୍ରତ ।

ଦୂତ – ମହାରାଜ ! ଏହି ଏହି—

ରୁକ୍ମ—ହିଁ ଏହି ତ, ରେ ରେ ପାଷଣ୍ଡ ପଳାଉଛୁ କାହିଁ ?
ଆଜ ଦଣ୍ଡେ ମାତ୍ର ରହ ସେହି ସ୍ଥାନେ,
ପାଷଣ୍ଡ ବର୍ବର ! ଏବେ ତୋ ଜମାନ,
ମୋ ଭଗ୍ନୀକୁ ହରିବାକୁ ବଳାଇଲୁ ଆଶା,
ରେ ଲମ୍ପଟ ନାସ୍ତି ଚୋର ! ଚଳ୍ପିଲଣି ତୋତେ
ଏ ମୁହୂର୍ତ୍ତେ ଖଣ୍ଡ ଖଣ୍ଡ କରିବ ତୋ ମୁଣ୍ଡ ।

(ଦଳବଳ ପ୍ରସ୍ଥାନ)

———

ଦ୍ୱିତୀୟ ଦୃଶ୍ୟ

(ଶ୍ରୀକୃଷ୍ଣ, ଯଦୁସୈନ୍ୟ, ବଳଦେବ, ରୁକ୍ମିଣୀ)

ଶ୍ରୀକୃଷ୍ଣ—ଭାଇ ! ରୁକ୍ମ ଯୁଦ୍ଧ ଲାଗି ଧାଇଁଛି । ସୈନ୍ୟମାନଙ୍କୁ ସତର୍କ କରିଦିଅନ୍ତୁ ।

ବଳଦେବ – ଏଇ ତ ସେ ଆସିଗଲା ପରା ? ଯାଦବ, ପ୍ରସ୍ତୁତ ହୁଅ ।

ଶ୍ରୀକୃଷ୍ଣ—ଭାଇ ! ମୁଁ ଟିକିଏ ଅନ୍ତରାଳରେ ରହୁଛି ।

ବଳଦେବ—ଯାଅ (କୃଷ୍ଣ ଓ ରୁକ୍ମିଣୀ ପ୍ରସ୍ଥାନ)

ରୁକ୍ମ—(ପ୍ରବେଶ)
ଆରେ ରେ ପାଷଣ୍ଡ ଯଦୁବୀର
ଗୋଟି ଗୋଟି ବନାଶି ତୁମ୍ଭଙ୍କୁ
ଅଯାଦବ କରିବ ଏ ମହୀ ।

(ଯାଦବଙ୍କ ସଙ୍ଗେ ରୁକ୍ମ ଯୁଦ୍ଧ କରୁ କରୁ ପ୍ରସ୍ଥାନ)

———

ତୃତୀୟ ଦୃଶ୍ୟ

ଶ୍ରୀକୃଷ୍ଣ - ପ୍ରିୟେ ! ଏପରି ଅନ୍ୟମନସ୍କ କାହିଁକି ? ତୁମ ମନରେ କଅଣ କିଛି ଭୟ ଆସୁଛି ? ନା, ଭୟର କାରଣ କିଛି ନାହିଁ । ତୁମ୍ଭେ ମୋ ନିକଟରେ ଅଛ; ଭୟ କାହାକୁ ।

ରୁକ୍ମିଣୀ—ନାଥ ! ଅଭାଗିନୀ ଯୋଗୁଁ ଆପଣଙ୍କୁ କେତେ କଷ୍ଟ ସହି କରିବାକୁ ପଡ଼ୁଛି ।

ଶ୍ରୀକୃଷ୍ଣ—ନା ନା, କଷ୍ଟ କଅଣ ? ତୁମ୍ଭେ ମୋ ହୃଦୟ-ନିଧି । ତୁମ୍ଭେ ମୋ ନୟନତାରା । ତୁମ ଲାଗି ପ୍ରାଣ ମଧ୍ୟ ଯିବାକୁ ଦେଇପାରେ । ଏଇ କିଏ ଆସିଲା ?

(ରୁକ୍ମ ପ୍ରବେଶ)

ପାଷଣ୍ଡ ! ଏବେ ତୋ ଆସ୍ପର୍ଦ୍ଧା
ମୋର ଭଗ୍ନୀ ବଳେ ଆଣି ରଖିଛୁ ପାଷଣ୍ଡ,
ମୂର୍ଖ, ଅଛି ଯେବେ ପ୍ରାଣେ ଆଶା
ରୁକ୍ମିଣୀକୁ ଦେଇ
ଶତେବାର କ୍ଷମା ମାଗ ମୋତେ
ନଚେତ୍ ମୁଣ୍ଡହୀନ ଗଣ୍ଡି ତୋର ଲୋଟିବ ଏ ମହୀ ।

ଶ୍ରୀକୃଷ୍ଣ—ନିର୍ଲଜ୍ଜ ତୁ, ଝିଅଣୋଇ ସାଙ୍ଗରେ ଆସି ଯୁଦ୍ଧ ଇଚ୍ଛାକରୁ ?

ରୁକ୍ମ— ଗୀତ

(ହେ ଗୁରୁଦେବ – ବୃନ୍ଦେ)

ମୂଷା ଖାଇଛୁ ଗଞ୍ଜାଇ ରେ ଯିବୁ କାହିଁ । ଘୋଷା ।
ମାର୍ଜାର କରିବ ଖଣ୍ଡ
ଯିବୁ କାହିଁରେ ପାଷଣ୍ଡ ।
ସଚରାଚର ବ୍ରହ୍ମାଣ୍ଡେ ତୋର ସ୍ଥାନ ନାହିଁ । ୧ ।

ଶିକାଚ୍ଛିଣ୍ଡା କୁଆଟ୍ଟେର
ଭାବକୁ କ ସେବ୍ୟପର ।
ମୋ ଭଗ୍ନୀକୁ ନେବୁ ହରି ଅଛୁ ମନେ ଧାଇଁ । ୨ ।
ହୁଡେ ଏ ଗଉଡ଼ ଗୋଠ
ନଷ୍ଟ ଖେଳ ପାପିଷ୍ଠ ।
ଏକ୍ଷଣି ହେବୁ ବିନଷ୍ଟ ଇଷ୍ଟ ସ୍ମର ତୁହି । ୩ ।
ପ୍ରାଣେ ଯେବେ ଲୋଡ଼ୁ ଆଣ
ଶରଣ ମାଗ ନୃଶଂସ ।
ନୋହିଲେ ହେବୁଟି ଧ୍ୱଂସ ମନ ହେଲି ବହି । ୪ ।
ଦୁରାତ୍ମା ! ସମ୍ଭାଳ ତୋ ମଥା
ପାଷଣ୍ଡ ! ବଳେବଳେ ମୃତ୍ୟୁକୁ ତୁ କଲୁ ନିମନ୍ତ୍ରଣ,
ନିଦାନ ପୂରିଲା ତୋର ଜାଣିଥା ପାପିଷ୍ଠ !
ଆସ କର ଯୁଦ୍ଧ ମୋର ତୁଲେ
ଦେଖାଯିବ ବାହାଦୁରୀ ପଣ !

ଶ୍ରୀକୃଷ୍ଣ— ଗୀତ

ଯା ଯା ରେ ନିର୍ଲ୍ଲଜ୍ଜା ଯା
ଲାଜ ମାଡ଼େ ଯୁଝିବାକୁ ରେ
ଜ୍ୟେଷ୍ଠ ଶଳା ମୋର ନ ହେଲେ ପାମର
କାଟିଥାନ୍ତି ତୁକୁ ରେ । ପଦ ।
ଚକ୍ରଧର କନ୍ଥ ଆଜ ରେ,
ବନ୍ଧ ନ ହେବୁ ତୁ ପାଜରେ ।
ନଜ୍ଞ ପ୍ରାୟେ ଖଣ୍ଡ କରି ଖଣ୍ଡ ଖଣ୍ଡ
ଭୁଞ୍ଜାଇବ କୁକୁରେ । ୧ ।
ଗର୍ବଗଞ୍ଜନ ବାନା ମୋର
ଗର୍ବ ଚୂରିବ ରେ ତୋର ।
ବର୍ବର ତୁ ଦୁଷ୍ଟ ହେବୁ ରେ ବିନଷ୍ଟ
ଡାକ ତୋର ଠାକୁରେ । ୨ ।
ଆସି କେ ସମ୍ଭାଳୁ ତୋତେ ରେ,
ନାଗ ସ୍ୱର୍ଗ ମର୍ତ୍ତ୍ୟ ଲୋକରେ ।
ଆରେ ମୂଢ଼ ଦୁଷ୍ଟ ଗୁଡ଼ ଦେ ତୋ ଆଣ୍ଠୁ
ମୃତ୍ୟୁ କମ୍ପା ଡାକୁ ରେ । ୩ ।
ରେ ନିର୍ଲ୍ଲଜ୍ଜ ! ଜ୍ୟେଷ୍ଠଶଳା ତୁହି
ଭଉଣୀର ସଙ୍ଗରେ କେତେକ କନ୍ଦିବୁ ଲଢ଼ାଇ ।

ରୁକ୍ମଣ —ବୃଥା ବାକ୍ୟେ ନାହିଁ ପ୍ରୟୋଜନ,
ଯୁଦ୍ଧ ଲାଗି ହୁଅରେ ପ୍ରସ୍ତୁତ ।
(ଉଭୟ ଯୁଦ୍ଧରେ ରୁକ୍ମଣର ପତନ, ଶ୍ରୀକୃଷ୍ଣ ମାଡ଼ି ବସିବା)

ଶ୍ରୀକୃଷ୍ଣ—ଏଥର ଯିବୁ କେଉଁଣେ ଦୁଷ୍ଟ !
ଡାକ କିଏ ଅଛି ରକ୍ଷାକରୁ ଏଥି
ମୂର୍ଖ ! ଅନ୍ତ ତୋର ଚରି, ଏଇତା ମୁଁ କରିବି ନିଷ୍ପେଷ୍ଟ

ରୁକ୍ମଣୀ—ନାଥ, ନାଥ ! କ୍ଷମାକର ।

ଶ୍ରୀକୃଷ୍ଣ—ନା ପ୍ରିୟେ ! ମୂର୍ଖକୁ କ୍ଷମା ନାହିଁ ।

ରୁକ୍ମଣୀ— ଗୀତ

ମାରନା ମାରନା ପ୍ରଭୁ, ମାରନା ମୋ ସହୋଦର,
ଏ ଦାରୁଣ ପଣ ଦେଖି କମ୍ପୁଛି ହୃଦ ପଞ୍ଜର । ପଦ ।
ଦଣ୍ଡିବା ଶକ୍ତି ତୁମ୍ଭର
ମୂର୍ଖଙ୍କୁ ନାହିଁ ଗୋଚର,
ଏ ଅପ୍ରାଧ କ୍ଷମାକର
ବାନ୍ଧବ ପର ତୁମ୍ଭର । ୧ ।
ଅର୍ଜିଲା କରମ ତାର
ଭୋଗିଲାଣି ଚକ୍ରଧର,
ମରଣ କେତେ ମାତର
ଲଜ୍ଜା ହେଲାଣି ଅପାର । ୨ ।
କରୁଣା ସିନ୍ଧୁ କରୁଣା
ନ କର ମୋଠାରେ ଊଣା,
ବାଳାମଣି ତୋହ କଣା
କ୍ଷଣେ ମୋ ସନ୍ତାପ ହର । ୩ ।

ନାଥ ! ଦିଅ, କ୍ଷମା ଦିଅ ! ମୋର ଭାଇ ପଣ୍ଡ ! ଭାଇର ପ୍ରାଣରେ ଆଘାତ ହେଲେ ଭଗ୍ନୀର କି ଦଶା, ତା କଅଣ ଆପଣଙ୍କୁ ଅଜ୍ଞାତ ?

( ବଳଦେବ ପ୍ରବେଶ )

କୃଷ୍ଣ ! କ୍ଷମା ଦିଅ । ତାକୁ ସପ୍ତ ବେଣ୍ଟିକରି ଜାନୁତଳେ ଗଳାଇ ଗୁଣ୍ଡ଼ଦିଅ । ନିଜର ଶଳା, ବନ୍ଧୁ ତ, ସେତିକି ଯଥେଷ୍ଟ ହେବ ।

( ତଥାକରଣ )

( ଶ୍ରୀକୃଷ୍ଣ, ରୁକ୍ମିଣୀ ମିଳନ, ସଖୀମାନଙ୍କ ଗାନ )

# ଘଟୋତ୍କଚ

## ଭବାନ୍ଧ ଭ୍ରାନ୍ତ

### ପ୍ରଥମ ଅଙ୍କ

### ପ୍ରଥମ—ଦୃଶ୍ୟ

### ଦ୍ୱାରକା ରାଜଅନ୍ତଃପୁର

( ବଳଦେବ, ରେବତୀ ସହ ପ୍ରବେଶ )

ରେବତୀ—ଏମିତିଆ ନିଷ୍ଠୁରିଆ ମଣିଷ ପ୍ରାପ୍ତ ପୃଥିବୀରେ ମିଳିବା କଠିନ । କେଉଁ କଥାକୁ ହୋଇ ନାହିଁ କି ହୋଇ ନାହିଁ । ମୋତେ ଏ ସବୁ ଭଲ ଲାଗୁନାହିଁ । ଲୋକ ଅପବାଦକୁ ତମର ଟିକିଏ ହେଲେ ତ ଭ୍ରୂକ୍ଷେପ ନାହିଁ ?

ବଳଦେବ—ଲୋକ ଅପବାଦ ! କାହିଁକି ? ଏପରି କି କଥା ଘଟିଛି କି ?

ରେବତୀ—ତୁମେ ଜାଣିବ କାହିଁକି ? ହାଣ୍ଡିରେ ଘାଟରେ, ହାଟରେ ବାଟରେ ସବୁଠି ପଡ଼ିଛି ସେଇ କଥା । କାନରେ କଣ ପଥର ପଡ଼ିଛି ?

ବଳଦେବ—ଓଃ ! କଥାଟା କଣ କହୁନାହିଁ । ଏଣୁ ତେଣୁ ଗୁଡ଼ାଏ କହିଯାଉଛ ଯେ !

ରେବତୀ—ମୋ କହିବାଟା ଖଟା ଲାଗୁଛି । ଏଥର ହାଣ୍ଡିର ଖେଳଭଣ୍ଡାରି କି କହିବେ । ରାଜା ହେଲ ବୋଲି, ବଡ଼ଲୋକ ହେଲ ବୋଲି, ସମୟ ଅସମୟ, କଥା ଅକଥା, ଭଲ ମନ୍ଦ ବିଚାର ଟିକିଏ ନାହିଁ ? ତୁମେ ପରା ଜଗତକୁ ଆଦର୍ଶ ଦେଖାଇବ ? ତୁମେ ରାଜା, ରାଜା ଅନୁଗତ ଧର୍ମ । କିନ୍ତୁ ତୁମେ ଯାହା କରୁଛ ତାହା ସାମାନ୍ୟରୁ ସାମାନ୍ୟ ଠାରେ ମଧ୍ୟ ଦେଖିବାକୁ ମିଳେନା ।

ବଳଦେବ—ମୁଁ କେବେ ଅନ୍ୟାୟର ପକ୍ଷପାତ ନୁହେଁ । କହୁନା ଏପରି କି କଥା ଘଟିଛି, ଯଦ୍ଦ୍ୱାରା ତୁମ ପ୍ରାଣରେ ଦାରୁଣ ଆଘାତ ଲାଗିଛି ? ମୁନିରପି ମତିଭ୍ରମ । ମୁଁ ତ ତହିଁରୁ ବାହାର ନୁହେଁ । ଭୁଲ ବଶତଃ ଯଦି କୌଣସି କାର୍ଯ୍ୟ ଘଟିଯାଇଥାଏ, ତେବେ ମୁଁ ସାବଧାନ ହୋଇଯିବି । ଅନେକ ସ୍ଥଳରେ ପୁରୁଷର ବୁଦ୍ଧି ବିଭ୍ରମ ଘଟିଲେ ସ୍ତ୍ରୀମାନେ ସାବଧାନ କରାଇଥାନ୍ତି, ଆଉ ପଥଭ୍ରଷ୍ଟ ସ୍ୱାମୀକୁ ସୁପଥକୁ ଟାଣି ଆଣନ୍ତି । କହ ରେବତି ! ମୁଁ ଏପରି କି ଭୁଲ କାର୍ଯ୍ୟ କରିଛି ?

ରେବତୀ—ତୁମେ କାହିଁକି ଭୁଲ କରିବ ? ତୁମେ ରାଜା, ପ୍ରଜାପାଳକ । ଦେଶର ହିତାହିତ ଭଲମନ୍ଦ ତମଠାରେ ନ୍ୟସ୍ତ । ବରଂ ସେ ଭୁଲଟା ମୋର ! ମୁଁ ଗୋଟିଏ ଦୁଃଖିନୀ କନ୍ୟାର ମା ହୋଇ !

ବଳଦେବ—ଥାଉ, ଥାଉ, ଆଉ କହିବା ଆବଶ୍ୟକ ନାହିଁ । ମୁଁ ପରିସ୍ଥିତି ବୁଝି ସାରିଲିଣି, ଶଶୀରେଖାର ବିବାହ କଥା । ଭଲ କୁଳ ଶୀଳ, ସୁଯୋଗ୍ୟ ପାତ୍ରଟିଏ ଖୋଜି ଖୋଜି ସମୟ ବିଳମ୍ବ ହୋଇଯାଉଛି । ଏବେ ମନୋମତ ଯାହାକୁ କରିଛି, ସେ ମୋର ମନକୁ ଖୁବ୍ ଆସିଛି । ଯେପରି ରୂପ, ସେପରି ଗୁଣ, ମଧ୍ୟ ସମ୍ଭ୍ରାନ୍ତ ବଂଶଜ ।

( ଏହି ସମୟରେ ଗୋଟିଏ ଦାସୀ ପ୍ରବେଶି ଚିଠି ଆଣି ଦେଇଗଲା )

କିଏ ? ଖବର କିଛି ଅଛି କି ?

ଦାସୀ— ଦେବର୍ଷି ନାରଦ ଆପଣଙ୍କ ସାକ୍ଷାତ ଅପେକ୍ଷା କରୁଛନ୍ତି ।

ବଳଦେବ — ଦେବର୍ଷି ନାରଦ ! ତାଙ୍କୁ କଣ ଆସିବାକୁ ଏ ସ୍ଥାନକୁ ମନା ଅଛି ? ଯାଅ ଦେଖ ! ତାଙ୍କୁ ପାଛୋଟି ଆଣ । ଚାଲ, ମୁଁ ମଧ୍ୟ ସଙ୍ଗରେ ଯାଉଛି । ମୋର ବଡ଼ ଶୁଭ ସମୟ ଉପସ୍ଥିତ । ତାଙ୍କଦ୍ୱାରା ଏ କାର୍ଯ୍ୟ ଅବଲୀଳାରେ ସମାଧାନ ହୋଇ ପାରେ । ( ଉଭୟ ପ୍ରସ୍ଥାନ )

—*—

## ଦ୍ୱିତୀୟ ଦୃଶ୍ୟ

## ନାରଦ ପ୍ରବେଶ

( ନାରଦ ବୀଣାଧରି ନାଚିକରି ଗାଇ ଗାଇ ଆସିଲେ )

ମନୁଆଁ ବୋଲ ନାମ କୃଷ୍ଣ ସୁଖଧାମ ।

ଜୀବନ ଯୌବନ ବ୍ୟର୍ଥ ସବୁ କାମ

ସାର ହରେକୃଷ୍ଣ ନାମ । ପଦ ।

ମାଟିର ଏ ଘଟ, ଏ ମାୟା ପଟ,

ନମିଷେ ହେବ ଅବସାନ ।

ମୋହର ମୁଁ ତାର ଆମ୍ଭର ତୁମର,

ଲାଗିଛି ଫାଙ୍କା ଲକ୍ଷ୍ୟଧାମ । ୧ ।

କେ ପିତା କେ ମାତା କେ ବନ୍ଧୁ କେ ଭ୍ରାତା,

ବୃଥା ଭବୁଛ ଅବଗାନ,

ତୋ ଜୀବନ ସାଥି, ତୋ ଗତି ତୋ ମୁକ୍ତି,

ଶ୍ରୀ ରାଧା ବଲ୍ଲଭ ଶ୍ୟାମ । ୨ ।

ହରି ବୋଲ ! ହରି ବୋଲ !! ହରି ବୋଲ !!!

( ବଳଦେବ ଓ ରେବତୀ ପ୍ରବେଶି ନାରଦଙ୍କୁ ପ୍ରଣାମ କରି ଆସନରେ ବସାଇଲେ )

ବଳଦେବ—ହାଁ ବ ଦେଶରେ ଅନୁମତି ଅପେକ୍ଷା କରୁ-ଥିଲେ ? ଆପଣଙ୍କ କଣ ଏ ସ୍ଥାନକୁ ଆସିବାକୁ ନିଷେଧ ଅଛି ?

ନାରଦ—ନିଷେଧ ନାହିଁ ସତ୍ୟ, ଜାଣିଲି ଦାସୀ ମାନେ କ'ଣ ଦୁଃଖ ସୁଖ ହେଉଛନ୍ତି ଯଦି ହେଲେ କଣ ହେବ ? ଟିକିଏ ସଙ୍କୋଚ ଲାଗେ ତ ?

ବଳଦେବ—ଓ, ଭଲକଥା । ହିଁ, ଆମର ଦୁଃଖ ହାଲ ତ କିଛି ବୁଝୁ ନାହିଁ ।

ନାରଦ—ଆପଣଙ୍କର ପୁଣି ଦୁଃଖ ? ଯେ ଦୁଃଖ ସୁଖର ନିୟନ୍ତା, ତାଙ୍କର ପୁଣି ଦୁଃଖ ! ଏ ତ ଏକ ବଡ଼ିଆ କଥା !

ବଳଦେବ—ଜନ୍ମ ହେଲେ ତ ପ୍ରତ୍ୟେକ କର୍ମରେ ବଦ୍ଧ । ଆମେ କ ତହିଁରୁ ବାହାର ? ବର୍ତ୍ତମାନ ଗୋଟିଏ ବିଷୟରେ ବଡ଼ ଦୁଃଖିତ ।

ନାରଦ — ତା ତ ଆମେ ଜାଣୁ ।

ବଳଦେବ — ଜାଣ ? କହ ଦେଖି ଭୂତ ଭବିଷ୍ୟ, ସବୁ ତ ତମକୁ ମାଲୁମ ଥାଏ ।

ନାରଦ — ଏକ ସନ୍ତାନ ସନ୍ତତିଟିଏ ଲଗି ବୋଧହୁଏ ମା'ଙ୍କ ମନରେ ଦୁଃଖ ।

ବଳଦେବ—ଆମର କଣ ପୁତ୍ର ନାହିଁ ? ପୁଣି ଭାଇର ପରା ଶତ ଶତ ସନ୍ତାନ । ସେ କ ଆମର ନୁହନ୍ତି ? ସେ ଚିନ୍ତା ଆମର ନାହିଁ । କେବଳ ଶଶୀରେଖା ବିବାହ କଥା, ଏକ ଗୁରୁତର ସମସ୍ୟା ହୋଇ ପଡ଼ିଛି । ତୁମେ ଟିକିଏ ହେଲେ ଏ କଥା କେବେ ହେଲେ ବୁଝିଛ ?

ନାରଦ—ଆମେ ବୁଝି ସାରିଛୁ, ନା ଆଉ ବୁଝିବାକୁ ଅଛି ?

ବଳଦେବ—କେଉଁଠାରେ ? କାହାର ଯୋଗ୍ୟପାତ୍ର ?

ନାରଦ—କେଉଁଠାରେ ବଳେ ବୁଝି ପାରିବେ ନାହିଁ, ଯେପରି ଯୋଗ୍ୟ, ସେପରି ରୂପବାନ, ସେପରି ସମ୍ଭ୍ରାନ୍ତ ବଂଶଜ । ଆଉ କଛି ବୁଝିବାକୁ ହେବନାହିଁ । ଏକାବେଳକେ ନିଷ୍ଠ ।

ବଳଦେବ---କିଏ ? କାହାର ପୁତ୍ର ?

ନାରଦ — ବୀରର ପୁତ୍ର ମହାବୀର । ସର୍ବ ଗୁଣାଳଂକୃତ ତରୁଣ ବୟସ । ଶ୍ରେଷ୍ଠ ସ୍ୱଗ ତ । ଅମ ଶଶୀରେଖାର ଠିକ୍ ଅର୍ଦ୍ଧାଙ୍ଗ ଯୋଗ୍ୟ ।

ବଳଦେବ— କିଏ ସେ କହୁନା କହୁନ ? ତୁମର ନିର୍ବାଚନ ଅବଶ୍ୟ ଯୁକ୍ତିଯୁକ୍ତ, ତା ଆମେ ସ୍ୱୀକାର କରୁଛୁ ।

ନାରଦ—ନିଶ୍ଚେ ସ୍ୱୀକାର କରିବେ । ଆମେ ଜାଣ ଚଳିତ ହଡ଼ି କୌଣସି କାର୍ଯ୍ୟ କରୁ ? ଆମ ମନକୁ

ଯେ ଆସିଛି, ତା ସାରା ଜଗତର ମନକୁ ଆସିବ ।

ବଳଦେବ—ହଉ, କୁହ ଦେଖି, ସେ କିଏ ?

ନାରଦ - ଜଗତ୍ ବିଜୟୀ ମଧ୍ୟମ ପାଣ୍ଡବଙ୍କ ପୁଅ ବୀର ଅଭିମନ୍ୟୁ ।

ବଳଦେବ—ଦେବର୍ଷେ ! ତୁମେ ତ ଗୋଟିଏ ଲଙ୍ଗଳା ଲୋକ । ତୁମର କାର୍ଯ୍ୟ ଗୁଡ଼ିକ ମଧ୍ୟ ଲଙ୍ଗଳା, ଆଗ ପଛ, ଭଲ ମନ୍ଦ କେଉଁ ବିଚାରକୁ ଲକ୍ଷ୍ୟ ନ ରଖି କଥାଟାମାନ କହିଦିଅ ।

ନାରଦ—ଆମେ ତ ବାସ୍ତବିକ ଲଙ୍ଗଳା । ଆମର ବେଶ ଭୂଷଣ କିଛି ନାହିଁ । ନିଜେ ସଫା, କାର୍ଯ୍ୟଗୁଡ଼ିକ ମଧ୍ୟ ସଫା । ଟିକିଏ ଗ୍ଲାନି ଥାଏନା ।

ବଳରାମ—ଅର୍ଜ୍ଜୁନ ଆମର ସମ୍ବନ୍ଧ ହେବାର ଉପଯୁକ୍ତ ? ସେଇମାନେ କି କୁରୁଙ୍କ ତାଡ଼ନାରେ ବନବାସରେ ରହିବା ଦୁସ୍ତର ପଡୁଛି ! ମୁଁ ଗୋଟିଏ ପାତ୍ର ନିର୍ବାଚନ କରିଛି ଶୁଣିବ ?

ନାରଦ—କୁହନ୍ତୁ, କୁହନ୍ତୁ । ଆପଣ ଜନ୍ମଦାତା, କନ୍ୟାର ହିତାହିତ, ଭଲ ମନ୍ଦ, ଚଳାଚଳ, ସୁବିଧା ଦେଖି ନିଶ୍ଚୟ ଠିକ୍ କରିଥିବେ । ମୁଁ କେବେଁ ସେ କଥା ଅସ୍ୱୀକାର କରୁନାହିଁ । ତାହା କଥା ଶୁଣିବାକୁ ଆକାଂକ୍ଷା ଜନ୍ମୁଛି ।

ବଳଦେବ—ଦୁର୍ଯ୍ୟୋଧନଙ୍କ ପୁଅ ଲକ୍ଷ୍ମଣ କୁମର ।

ନାରଦ-- ସବୁ ଠିକ୍ଠାକ୍ କରି ମୋତେ କଣ ପରୀକ୍ଷା କରୁଥିଲେ ? (ରେବତୀଙ୍କ ପ୍ରତି) ମା ! କଥାଟା ଏକା ମନକୁ ପାଇଲା, ସମାସ୍ତରକୁ ସମାସ୍ତର ! ସ୍ୱାମୀକୁ ବାଧିର ବସ୍ତର ବୋଲି କହିବାକୁ ହେବ ।

ରେବତୀ—ଲକ୍ଷ୍ମଣ କୁମର ଶଶୀରେଖାର ଉପଯୁକ୍ତ ବର ବୋଲି ତୁମେ ସ୍ୱୀକାର କର ?

ନାରଦ—ସହସ୍ରବାର ସ୍ୱୀକାର କରିବାକୁ ହେବ । ମା ! ଏକା ସମୁଦ୍ରଟାଏ, ଏକଚ୍ଛତ୍ର ଅଧିପତି । ସାରା ବ୍ରହ୍ମାଣ୍ଡରେ ଆଜି ଦୁର୍ଯ୍ୟୋଧନଙ୍କୁ ବଳି କିଏ ଅଛି ?

ରେବତୀ—ସମୁଦ୍ରକୁ କଅଣ ଆମେ ଭୁଞ୍ଜିବୁ, ତାଙ୍କ ପୁଅଟି କିପରି ? ଆମ ଝିଅ ଲାଗି ତ ?

ନାରଦ—ଯେମିତି ଭୁଞ୍ଜିଲେ ତ ଶଶୀରେଖାର ରୂପକୁ ଦେବରାଜ ଇନ୍ଦ୍ର ବି ଲକ୍ଷ୍ୟ ହେବେ ନାହିଁ, ତେବେ !

ବଳଦେବ—ତେବେ ଆଉ କଣ ଲକ୍ଷ୍ମଣକୁମର ରୂପରେ ବା ଗୁଣରେ ନ୍ୟୁନ ?

ନାରଦ—ନିଶ୍ଚେ ନିଶ୍ଚେ । ଘୃତପର ପୁଅ ଘୃତ, ଘୃତ-ପର ପୁଅ ଘୃତ । ଯାହା ବାପ ତଣ୍ଡେ ଯୋଦ୍ଧା, ତା ପୁଅ ଥୋଡ଼ା ଥୋଡ଼ା । ମୋଟ ଉପରେ ଦାନାକନା ମୁଠାକରେ ତ ସୁପ୍ତ ଅଛି । କଥାରେ ଅଛି ଘର ଦେଖି, ନାହିଁ ତ ବର ଦେଖ । ବାପାଙ୍କ ଯୋଗାଡ଼ଟା ଯାହା ହୋଇଛି, ସେଥିରେ ଆଉ ପାଣି ଫିଟେଇ-ବାକୁ ନାହିଁ । ଏମିତି ଏବେ—

ବଳଦେବ—ଏମିତି ଏବେ କଅଣ ? କହିଲ ଦେଖି କୋଉ କଥାଟା ଅଭାବ ଅଛି ।

ନାରଦ—ସବୁ ଭରପୂର । ଦୁନିଆଁରେ ତ ପାଞ୍ଚ ଆଙ୍ଗୁଠି ସମାନ ନ ଥାଏ ।

ରେବତୀ—ନାରଦ ! ତମ୍ମନକୁ ବୋଧହୁଏ ପାଉନାହିଁ ?

ନାରଦ—ନିଶ୍ଚେ ନିଶ୍ଚେ, ବଡ଼ବାପା ଯାହା କରନ୍ତୁ ସେଥିରେ ମଳଧୂଳି ନାହିଁ । ସବୁ ଆନନ୍ଦ ବାପା ! କେବେ ତିଥିଧାର୍ଯ୍ୟ ହୋଇଛୁ ?

ବଳଦେବ—ଏଇ ନିକଟରେ ହେବ । ତୁମକୁ କଣ ଅଜଣା ରହିବ ? ତୁମେ ନ ଆସି କି କାର୍ଯ୍ୟ ହୋଇପାରେ ?

ନାରଦ—ହଉ ବାପା ! ଆସୁଛି । ଗରିବ ସନ୍ତାନଟିକୁ ଭୁଲିବେ ନାହିଁ ।

ରେବତୀ—କିଛି ଜଳପାନ ନ କରି ଚାଲିଯିବେ ନା କଣ ?

ବଳଦେବ—ଯଜ୍ଞହିତ କଣ ? ଚାଲ, ଆଜ ଦୁର୍ଯ୍ୟୋ-ଧନଙ୍କ ନିକଟ ପତ୍ର ଲେଖି ତାଙ୍କର ମତାମତ ନେବା । (ସମସ୍ତେ ଚାଲିଗଲେ)

ନେପଥ୍ୟ ଗୀତ

ସବୁ ବନ୍ଦବସ୍ତ ତଳବ ତସ୍ତର
କିଏ ବା କରିବ ପଣ୍ଡ,
ପୁଣି ଜଟିଆ ନାରଦ ପଟ ଧରିଲେଣି
କରିଦେବ ଲଣ୍ଡଭଣ୍ଡ ।

ଯେ ତ ଦୁର୍ଭାକର୍ଣ୍ଣା ଦଳିବ ବଧାରା
ଯେ ତ ପାଣ୍ଡବଙ୍କ ପିଣ୍ଡ,
କୁରୁ କ କାରଣ ଧ୍ୱଜା ଉଡ଼ାଇବେ
ଧରୁ ନେବ ଖଣ୍ଡଖଣ୍ଡ ।

—*—

## ତୃତୀୟ ଦୃଶ୍ୟ

## ସଖୀଗଣ

( ସଖୀମାନେ ଗୀତ ଗାଉଥିଲେ )

ବସନ୍ତ ଆସେ ହସେ ବସୁଧା ସୁହାଗିନୀ
ନାଲି ହଳଦି ପଦେ ତରୁ ନବ ସଜାଣି । ପଦ ।
ଶାଳୁଆ ନାଲି ଛତା ଟେକି ବସିଛି ମଥା
ସରସୀ ଘରେ ଶୋଭା ବଢିଲାଣି ସରୋଜିନୀ ॥
ପିକ ପଞ୍ଚମ ତାନେ ଗାଏ କୁଞ୍ଜ କାନନେ
ଭରମ୍ଭୁକୁନ ଏବେ ଆକୁଳେ ଛୁସିଲେଣି ॥

୧ମ ନର୍ମଦା – ନବ ବସନ୍ତ ଆଗମରେ ମଳୟ ପବନ ବାଜି ଲତାମାନ ସବୁ କଞ୍ଚିଳ ଉଠି ଉପବନର ଶୋଭା ଦ୍ୱିଗୁଣ ବଢ଼ିଯାଇଛି । କିନ୍ତୁ ଆମ ସଖୀଙ୍କ ଦେହ ଦିନକୁ ଦିନ କ୍ଷୀଣ ହେଲପରି ଦେଖା ଯାଉଛି ।

୨ୟ ଭଦ୍ରା—ହବ ହେବାର କଥା । କଥିରେ ଅଛି ଲୁଣ ଖାଏ ପାଣି, ବୋଲା ଖାଏ ଗଣ୍ଡି ।

୩ୟ ମଲ୍ଲିକା — ତାଙ୍କର କେଉଁ କଥାକୁ ଚିନ୍ତା ମ । ଖାଇବା ପିଇବା ନା ପିନ୍ଧିବା ନାଇବା ।

୪ର୍ଥ ଚମ୍ପା — ନାରୀ ଜୀବନରେ ସ୍ୱାମୀ ଛଡ଼ା ଅନ୍ୟ ଅଭାବ କଣ ଅଛି ନାହିଁ ? ଦେଖିଲ, ଏ ମାଳତୀ ଲତାଟି କେତେଦିନ ଏକା ଥିଲେ କେବେ ସଙ୍ଗରେ ମୁଣ୍ଡ ଟେକି ନ ଥିଲା ! କିନ୍ତୁ ଯେତେବେଳେ ନ ଥାଇ ତଳେ ନିଜ ଦେହ ଦେଖିଲେଣି । ଆମ ସଖୀଙ୍କ ଅବସ୍ଥା ମେଞ୍ଚ ଭଳି, ବୁଝିଲୁ ? କଥାରେ ଅଛି— କୋ ଅନନ୍ତ ନ ବର୍ତ୍ତନ୍ତେ କବିତା, ବନିତା, ଲତା ।

ଶଶୀରେଖା—(ପ୍ରବେଶି) ଚମ୍ପା ! ତୁ କଣ ଖାଲି କବିତା ଦେଉଛୁ ? ତୁ ଗୋଟାଏ ଏବେ ବଡ଼ ପଣ୍ଡିତ ପାଲଟିଲୁଣି ।

୪ର୍ଥ ଚମ୍ପା—ପଣ୍ଡିତ କଣ ଆଉ ଗଛରେ ଫଳନ୍ତି କି ? ଏମିତି ହଜ ହଜ ହୁଅନ୍ତି ନା ।

ଶଶୀରେଖା—କାହା କଥା ସବୁ ପକାଇଥିଲ ?

୪ର୍ଥ ଚମ୍ପା – ଆଉ କାହା କଥା ? ଯାହାଙ୍କ ଅନ୍ନରେ ପ୍ରତିପାଳିତ, ଯାହାଙ୍କ ସେବା ଆମର କର୍ତ୍ତବ୍ୟ ବ୍ରତ, ତାଙ୍କର କଥା ଛଡ଼ା ଅନ୍ୟ କି ଚିନ୍ତା ?

ଶଶୀରେଖା—ମୋର କଣ ହୋଇଛି କି ?

୪ର୍ଥ ସଖୀ—ବାହାର ବ୍ୟାଧି ହେଲେ ସମସ୍ତେ ଚିହ୍ନି ପକାନ୍ତେ, ଏ ତ ଅନ୍ତର ବ୍ୟାଧି । ଅନ୍ତରଙ୍ଗ ଛଡ଼ା ଆଉ ବୁଝିବ କିଏ ?

ଶଶୀରେଖା—ଚମ୍ପା ! ତୁ ମଧ୍ୟ ଗୋଟାଏ କବିରାଜ ପାଲଟିଗଲୁଣି । ନାଡ଼ିକୁ ନ ଦେଖୁଣୁ ବ୍ୟାଧି ଚିହ୍ନି ପକାଉଛୁ । ଆଚ୍ଛା, କହ ତ ସେ କି ବ୍ୟାଧି ?

୪ର୍ଥ ସଖୀ – ଔଷଧ ଦେବାର ମୋର ତ ଶକ୍ତି ନାହିଁ, ଚିହ୍ନାଇ ଦେଲେ ଲାଭ କଣ !

ଶଶୀରେଖା—ତେବେ କହିଲୁ କାହିଁକି ?

୪ର୍ଥ ସଖୀ – କହିଲି ବୋଲି କଣ ଅଣ୍ଟାରେ ହାତ ଦେବ । ସମସ୍ତେ ପୁଚ୍ଛାପାସ ହେଉଥିଲେ, ମୁଁ ଟିକିଏ ବଢ଼ପାଟି କରି କହିଦେଲି ବୋଲି ମୋଠେଇଁ ଦଣ୍ଡ ଲାଗିଗଲା । କହେ ! କହୁନା ସଖୀଙ୍କ ଅବସ୍ଥା ଏପରି କାହିଁକି ?

୧ମ ସଖୀ—ଆମେ କହିବୁ କଣ, ବେଳବେଳେ ଖାଇବା ନ ହେଲେ ପେଟ ପୂରୁ ହୁଏ । ଏ ତ ସେ ଭୋକ ନୁହେ ପ୍ରେମକ୍ଷୁଧା ।

୨ୟ ସଖୀ—ପ୍ରେମ କ୍ଷୁଧା କିପରି ମେଣେ ?

୩ୟ ସଖୀ—ପ୍ରେମିକା ପ୍ରେମିକ ମିଳନରେ ।

ଶଶୀରେଖା—ତମ ମୁହଁକୁ ସବୁ ଲଜ୍ଜା ସରମ ଛାଡ଼ିଗଲା ।

୪ର୍ଥ ସଖୀ— ମୁହଁଟା ଦିନା ଲୁଚାଇଦେବୁ, କେହ ମୁଣ୍ଡ ତ ଚିହ୍ନାଇ ଦେଉଛି । ତାକୁ ଯେତେ ଘୋଡ଼ାଇଲେ—

ଶଶୀରେଖା ନେ ମୁଣ୍ଡ ଗଣ୍ଡି । ତମ ସାଙ୍ଗରେ ସାଙ୍ଗ ହେଲେ କେତେ ମହତ ଯିବ ।

୪ର୍ଥ ସଖୀ—ଆମ ସାଙ୍ଗ ଆଉ କେଶୀ ଦିନ ନୁହେ ଯେ ! ତମକୁ ଏକଲା ସାଙ୍ଗ ମିଳିବ ଆମେ ଯିବା କଥାରେ କଥାରେ ଇଙ୍ଗିତ ମହତ ସାଥ ଦେଉଛୁ, ସେ ତ କଥାରେ ନୁହେଁ—

ଶଶୀରେଖା—ଥାଉ ଥାଉ ତୋ ବାକ୍‌ଚତୁରୀ ପଣ। ଆଚ୍ଛା କହିଲ, ଏ ମାଧବୀ ଫୁଲ ସ୍ତବକ ପାଖରେ ଭ୍ରମର ଗୁଣୁ ଗୁଣୁ ହୋଇ କଣ କହୁଛି।

୪ର୍ଥ ସଖୀ—( ଅନ୍ୟମାନଙ୍କ ପ୍ରତି ) କଲେ କହୁନା ଭ୍ରମର କଣ କହୁଚି ?

୧ମ ସଖୀ—ତୁ କହୁ ନାହୁଁ। ତୁ ପରା ଆମ ଭିତରେ ପଣ୍ଡିତା।

୪ର୍ଥ ସଖୀ—ମୋ କଥାଗୁଡ଼ାକ ସଖୀଙ୍କୁ ଖଟା, ତମ କଥାଗୁଡ଼ାକ ଗୁଡ଼ ଚକା ହୋଇଛି।

ଶଶୀରେଖା—ଚମ୍ପା ! ମନେ ମନେ ଖର ରାଗିଗଲୁଣି। ନାଁ, ଏ ଉତ୍ତର ତୋତେ ଦେବାକୁ ହେବ।

( ସଖୀମାନଙ୍କ ଗୀତ )

ଫୁଲ ମନ କଣିବାକୁ ମଧୁପ
ଗୁଣୁ ଗୁଣୁ ଗାଏ ମଧୁ ସଙ୍ଗୀତ ।୦।
ସାଥି ପାଇ ଗୀତ ଦେବ ମିଳାଇ
କଥା ଅସ୍ଫୁଟେ କହୁଛି ଗେଲ୍ହାଇ
ପ୍ରେମ ମଧୁ ଚୁମ୍ବିବାକୁ ବ୍ୟଥିତ ।୧।
ଗୀତ ପାହାନ୍ତ ପବନେ ଜବା ସଞ୍ଜ ସମୀରଣେ
ଝୁଲି ଝୁଲି ଫୁଲେ ଫୁଲେ ପାଇଁ ଅନ୍ତଥ।

( ଗୀତାନ୍ତେ ଦେବର୍ଷିଙ୍କ ପ୍ରବେଶ ଓ ସମସ୍ତେ ମାନ୍ୟ କଲେ )

ନାରଦ—ହରିବୋଲ, ହରିବୋଲ, ଏଇଠି ତ ମା-ମାନଙ୍କର ମଉଜ ମଜଲିସ ଲାଗିଛି। ବନ୍ଦ ହେଲ କାହିଁକି ? ଗାଅ ଗାଅ ମନ ପୂରି କର।

୧ମ ସଖୀ—ସେ ଶୁଣିଲ ମଜଲିସ।

ନାରଦ—ନା ନା, ବଡ଼ ଆନନ୍ଦ।

୨ୟ ସଖୀ—ସବୁ ଆନନ୍ଦ ନିରାନନ୍ଦରେ ପରିଣତ ହୋଇଯାଇଛି।

ନାରଦ—କାହିଁକି ମା ! ରଜାଘର କେଉଁ କଥାକୁ ଭଣା ?

୩ୟ ସଖୀ—କଣ ଭଣା, ଆପଣ କଣ ଜାଣି ପାରୁ ନାହାନ୍ତି ?

ନାରଦ—ଆମେ ସବୁ ଜାଣିପାରୁଛୁ ଯେ, ମୁଖ ନ ଫିଟିଲେ ଦୁଃଖ ଯାଏ ?

୪ର୍ଥ ସଖୀ—ଏ ବାବାଜି ଏଇ ଗୋଟିଏ କଥା କହନ୍ତୁ। ବାହା ହୋଇନା ବୋଲି କଣ ବର ସାହିରେ କ ଯାଇନାହିଁ। ଝିଅମାନେ ସବୁ ବାପ ମାଙ୍କ ଆଗରେ ବାହା ହେବେ ବୋଲି କହୁଥାନ୍ତି ? ସଖୀଙ୍କ ଅବସ୍ଥା ଦେଖୁଛ ତ ? ଆଉ କେଇଦିନ ···

ଶଶୀରେଖା—(ଆଖି ଦେଖାଇ) ବିରକ୍ତ ଭାବେ ଚୁପ୍।

ନାରଦ—ବିଲକୁଲ ଡେରି ନାହିଁ, ଜମ ନଗରା ନଗର ଉପରେ।

୪ର୍ଥ ସଖୀ—ପାତ୍ରଟି କେମିତି ? ଆମ ସଖୀ ଲାଖିବ ତ ?

ନାରଦ—ଆଖି ଦେଖିବ, ମନ ଲାଖିବ। ତେବେ ଯାଇ ସିନା କାମ।

୧ମ ସଖୀ—କଣ କେଉଁଠି ଠିକ୍ କରିଚ ?

ନାରଦ—ଏ ଝୋଲିରେ ସବୁ ଅଛି, ଯାହାକୁ ପସନ୍ଦ ହେବ ତାକୁ ଠିକ୍ କରିଦେବୁ।

୨ୟ ସଖୀ—କାହିଁ ଦେଖାଇଲ ?

ନାରଦ—ଆଚ୍ଛା, ତୁମେମାନେ ଟିକେ ଆଡ଼ ହୋଇଗଲ। ଶଶୀ ମା ସାଙ୍ଗରେ ଦି ଚାରି ପଦ କଥାବାର୍ତ୍ତା କରୁଁ।

୩ୟ ସଖୀ—ହଉ, ଆସ ଗୋ !

୪ର୍ଥ ସଖୀ—ନ ଦେଖିଲୁ ଓଉ ଛପର। ଏ ଝୋଲିରେ ପାତ୍ର ପୂରାଇ ଆଣିଛନ୍ତି, ସେମାନଙ୍କୁ ଖୋଲି ଦେଖାଇବେ। ଆମେ ଦେଖିବୁ, ତେମେ ସବୁ ଗଲେ ଯା, ମୁଁ ଜମା ଯିବି ନାହିଁ।

ନାରଦ—ଶଶୀ ମା ! ତୋର ଏ ସଖୀଟା ବଡ଼ ମୁଖରା। ହଉ ରହ ମା ! ତୋର ଚିନ୍ତାରେ ଆମେ କ ସର ଗଲୁଣି। ତୁ ଯେଉଁ ରୂପ ପାଇଛୁ, ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ କ ସେ ତୁଳନାରେ ଆସିବେ ନାହିଁ।

୪ର୍ଥ ସଖୀ—ଇନ୍ଦ୍ରାଣୀ ହେଲେ ତ ସ୍ୱର୍ଗର ଅଧିଶ୍ୱରୀ ହୋଇ ବସିବେ, ଅବାଟଣ ହେଉଛି କଣ ?

ନାରଦ—ଇନ୍ଦ୍ରପଦଟି ଭଲ। ସ୍ୱର୍ଗଲୋକ। ସବୁଥିରେ ପରିପୂର୍ଣ୍ଣ। କିନ୍ତୁ ସହସ୍ର ଆଖି ନେଇକି ପାଣି ସାଙ୍ଗ ହେଉଥାଏ। ମା ସେ ସବୁକୁ ଅସୁଖ ପାଇବ।

୪ର୍ଥ ସଖୀ—ଚନ୍ଦ୍ର ?

ନାରଦ—ହେଁଇନା, ପକ୍ଷେ ଛିଡ଼ୁଛି ପକ୍ଷେ ବଢ଼ୁଛି।

୪ର୍ଥ ସଖୀ—ସୂର୍ଯ୍ୟ ?

ନାରଦ—ସର୍ପ ? ରୂପ ଗୁଣ ସବୁ ଭଲ । ସେଥିରେ କୌଣସି ତ୍ରୁଟି ନାହିଁ । କିନ୍ତୁ ସାଙ୍ଗରେ ସର୍ବ ବୁଲେ । ବସିବା ଉଠିବାକୁ ମଧ୍ୟ ଟିକିଏ ବି ଫୁରୁସତ ନାହିଁ, ପୁଣି ସେଉଁ ତେଜ ଲୋ ମା ଆମର ଶଶୀମା କମଳ ଅଙ୍ଗ ତା ପାଖରେ ଝାଉଁଳି ପଡ଼ିବ । ତା ମଣିଷ ପଣିଆ ରହିବ ନା ?

୪ର୍ଥ ସଖୀ—ତେବେ ?

ନାରଦ—ଏ ବ୍ରହ୍ମାଣ୍ଡରେ ବହୁଁ ବଡ଼ ବହୁଁ ବଡ଼ ରାଜପୁତ୍ରମାନେ ଅଛନ୍ତି । ମା ! ପସନ୍ଦକରନ୍ତୁ, ତା ମନ ଯାହାକୁ ବାଛିଦେବ, ତାକୁ ହିଁ ଆମେ ଠିକ୍ଠାକ୍ କରିଦେବୁ । ନେ ମା ! ଏ ପ୍ରତିକୃତି ସବୁ ଦେଖିଲୁ ।

(ଝୋଲାରୁ କେତେଗୁଡ଼ିଏ ଫଟୋ ବାହାର କରିଦେବା )

୨ୟ ସଖୀ—ଆମେ ଦେଖିବୁ ନାହିଁ ?

ଶଶୀରେଖା—କାହିଁକି ସେମିତି ସବୁବେଳେ ଘାଟକ ପଛ ନେଉଛୁ ? ତମକୁ ଯଦି କହିଲେ ଯାଆଁକୁ ଟିକେ ଯା ବୋଲି ।

୩ୟ ସଖୀ—ଯାଉଛୁ । (ସଖୀଙ୍କ ପ୍ରତି) ଚାଲ ଗୋ ! ସେ ଏକାନ୍ତରେ କାଳ ନିର୍ଣ୍ଣୟ କରିବେ ।

( ସମସ୍ତେ କିଛି ଦୂର ଗଲେ )

ଶଶୀରେଖା—(ପ୍ରତିକୃତି ସବୁ ଦେଖି ଦେଖି ଦୁଇ ବାହାର କରି ନାରଦଙ୍କୁ ଦେଖାଇଲେ ) ଏ ଦୁଇ ରାଜପୁତ୍ର କିଏ ? ଏ ଦୁହିଁଙ୍କ ମଧ୍ୟରୁ ଆପଣ କାହାକୁ ପସନ୍ଦ କରନ୍ତି ?

ନାରଦ—ଗୋଟିଏ ଦେଖାଇ, ଏଇଟି ଲକ୍ଷଣ କୁମାର । ଏଇଟି ଅଭିମନ୍ୟୁ ଆମ ପସନ୍ଦରେ ଲକ୍ଷଣକୁମାର ମାନଚକ୍ରବର୍ତ୍ତୀର ପୁଅ । ଦୁର୍ଯ୍ୟୋଧନଠୁ ବଳି ଧନଶାଳୀ ରାଜା ପୃଥିବୀରେ ବିରଳ । ତାର ବୋହୂ ହେଲେ ଆଉ ଅଭାବ କଅଣ ? ଲକ୍ଷଣକୁମାର ହିଁ ଉପଯୁକ୍ତ ପାତ୍ର ।

ଶଶୀରେଖା—(ଅଭିମନ୍ୟୁ ଫଟୋ ଦେଖାଇ) ଏ କାହାର ପ୍ରତିକୃତି ।

ନାରଦ—(ସ୍ୱଗତଃ) ନଜର ସେଥିରୁ ଯାଇ ଏଥିରେ ପଡ଼ିଲାଣି ! ଆଚ୍ଛା, (ପ୍ରକାଶ୍ୟେ) ଏ ବି ଜଣେ କ୍ଷତ୍ରିୟ ସନ୍ତାନ, ମହା ଯୋଦ୍ଧା । ରୂପ ଗୁଣ ସବୁଥିରେ ପରିପୂର୍ଣ୍ଣ ।

ଶଶୀରେଖା—କାହାର ପୁତ୍ର ?

ନାରଦ—ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ । ଅବଶ୍ୟ ନାମ ଶୁଣିଥିବ ।

ଶଶୀରେଖା—ସେ କି ମୋତେ ···?

ନାରଦ—ପସନ୍ଦ କରିବା କଥା କହୁଛୁ ମା ? ମା ! ତୋ ଚେହେରାଖଣ୍ଡ ବି ଯାହା ଆଗରେ ପଡ଼ିବ, ସେ ପାଗଳ ହୋଇଯିବ । ସେ ହେବା ନ ହେବା ଦୈବସୂତ୍ର ଆମ ହାତରେ । ମା'ର ଯଦ୍ଦିକ ରାଜି, ଆମେ ଯେ କୌଣସି କୌଶଳରେ ଘଟାଇ ଦେବୁ ନିର୍ଧାର୍ଯ୍ୟ କାହାକୁ ପସନ୍ଦ କଲୁ, ମା !

ଶଶୀରେଖା—( ସବୁ ଫଟ ଫେରାଇଦେଇ ଅଭିମନ୍ୟୁ ଫଟଟି ରଖିଲେ । )

ନାରଦ—ତେବେ ସେହି ଅଭିମନ୍ୟୁ କଥା ହେଲା । ଆମେ ଆଗୁଁ ସେଇଆ ପସନ୍ଦ କରିଥିଲୁ । ପୁଣି ଭାବିଲୁ ଲକ୍ଷଣକୁମାର ରାଜଚକ୍ରବର୍ତ୍ତୀ ପୁଅ, ଆଉ ଧନାଢ୍ୟ ବ୍ୟକ୍ତି, ହାନାପାଣି ମୁଠାକରେ ସୁଖ ।

ଶଶୀରେଖା—ଯିଏ ଜନ୍ମ ଦେଇଛି ସେ କଣ ଖାଇବାର ବ୍ୟବସ୍ଥା ଦେବ ନାହିଁ ? ଧନୀ କଣ ଦରିଦ୍ର ହେଉନାହିଁ, ନା ଦରିଦ୍ର ଧନବାନ ହେଉନାହିଁ ।

ନାରଦ—ମଧ୍ୟମ ପାଣ୍ଡବ ଅର୍ଜୁନ ମହାଯୋଦ୍ଧା, ବନବାସ କେଉଁଥିରେ କ'ଣ ଭଲ ଅଛି ମା ! ଏକା ସମୁଦ୍ରକୁ ସମୁଦ୍ର ଭଲ ହୋଇଥାନ୍ତା । ଦୁର୍ଯ୍ୟୋଧନକୁ ଆମ ବଡ଼ ବାପ ।

ଶଶୀରେଖା—ଥାଉ ସେ ସବୁ କଥା, ଅଙ୍ଗିରା (ଫଟୋ ଦେଖାଇ) ଏ ଚରଣ ଛଡ଼ା ଅନ୍ୟ ଆଶ୍ରା ଲୋଡ଼େନା । ସତ୍ୟ, ଯେବେ ସେ ରାଜ ନ ହୁଅନ୍ତି, ତେବେ ଚିର ବ୍ରହ୍ମଚାରିଣୀ ହୋଇ ରହିବ ।

ନାରଦ—ସେ ସବୁ ରାଜନୁଜା ଭାର ଆମଠେଇଁ । ମା ମୁହଁରୁ ପଦେ ଶୁଣିବାକୁ ଥିଲା । ଏବେ ଆମ କାର୍ଯ୍ୟରେ ଆମେ ଚାଲିଲୁ ।

ଶଶୀରେଖା—ମୋର ପ୍ରଣାମ ନେଇକରୁ (ପ୍ରଣାମ କଲେ) ଆଉ କେବେ ଏ ଶୁଭ ସମ୍ବାଦ ମିଳିବ ?

ନାରଦ—ତୁ ତାର, ସେ ତୋର ଏକଥା ନିଧାର୍ଯ୍ୟ, ନିଧାର୍ଯ୍ୟ । ନୋହିଲେ ଏ କଥା କାହିଁ ଯୋଗାଡ଼ ହେବ । ତୁ ନିଶ୍ଚିନ୍ତ ହୋଇ ବସ । ବାପା ମା, ତାଙ୍କ ମନ ଅନ୍ୟ ଆଡ଼େ ଟଳିଯାଇ ପାରେ । କିନ୍ତୁ ଯେତେ ବାଧାବିଘ୍ନ ପଡ଼ିଲେ ବି ଆମେ ଏଇ ଅଭିମନ୍ୟୁ ହାତରେ ତୋତେ ସମର୍ପି ଦେବୁ । ବଳେ କଳେ କୌଶଳେ, ଥା ମା, ( ପ୍ରସ୍ଥାନ ) ।

ଶଶୀରେଖା – ( ସଖୀମାନଙ୍କ ପ୍ରତି ) ତେଣେ ଯାଇ ବସିଥିବ ନା କଣ, ବେଳ କେତେ ହେଲାଣି ! ମା, ତେଣେ ବ୍ୟସ୍ତ ହେଉଥିବେ ।

( ସମସ୍ତେ ଫେରିଲେ )

୪ର୍ଥ ସଖୀ – ଆମେ ପଞ୍ଜାକ ପଦ୍ମ ଡାଆଣୀ ? କାହେ ନଜର ପଡ଼ିଯିବ, ସେଥିଯୋଗୁ ଆମକୁ ଲୁଚିଲ କଥାବାର୍ତ୍ତା ହେଲ । ସଖୀ ! ଏକା ଚୁପ୍‌ଚାପ୍‌ରେ ସବୁ ବ୍ୟବସ୍ଥା କଲେ ସେମିତି କାମ ହାସଲ ବେଳକୁ ଭାରି ବିଭ୍ରାଟ ହେବ; କିନ୍ତୁ କାର୍ଯ୍ୟସିଦ୍ଧି, ଏ ପଟ୍ ହେଲାଣି ଚୁପ୍ ଚାପ୍, ସେପଟକୁ ରହିଲା ଗୋଳମାଳ । ସଖୀ ! କହିବ ନାହିଁ ? ଦେବର୍ଷି କାହା କଥା କହୁଥିଲେ ?

ଶଶୀରେଖା – ତୁମେ ମୋର ପ୍ରାଣ । ତୁମକୁ ନିଶ୍ଚୟ କହିବି । ଯେବେ କାର୍ଯ୍ୟଟି ଉଜ୍ଜ୍ୱଳ ହୁଏ, କିନ୍ତୁ ଏସବୁ କଥା ଯେପରି କେହି ନ ଜାଣନ୍ତି ।

୪ର୍ଥ ସଖୀ – ଆମର କି ଗରଜ ପଡ଼ିଛି ? ଚାଲ, ଚାଲ ମା, ଖୋଜିବେଣି । ( ସମସ୍ତେ ଚାଲିଗଲେ )

---

## ଚତୁର୍ଥ ଦୃଶ୍ୟ
## ନାଗରିକ ବ୍ରାହ୍ମଣ

( ନାଗରିକ ବ୍ରାହ୍ମଣ ଓ ବ୍ରାହ୍ମଣୀ ଦୁଇଜଣ ପ୍ରବେଶ )

ବ୍ରାହ୍ମଣ—ହୋଉଛି ପ୍ରାୟ ଡଡ଼େଇ ହେଲେ କଣ ହେଲା ? ଆମେ ଝିଅକୁ ଜନ୍ମ କରିଛୁ ନା ଝିଅ ଆମକୁ ଜନ୍ମ କରିଛି ? ଆମେ ଯାହା କହିବୁ ଝିଅର ପୁଣି ଅଛି, 'କନ୍ୟା ବରୟତେ ରୂପଂ' ଏଇ କଥାଟା ତାର, କାମିଏ ରହିବ । ଆଉ 'ମାତା ବିତ୍ତଂ ପିତା ଶ୍ରୁତଂ' ଆମ ଦୁଇଜଣଙ୍କ କଥା କୁଆଡ଼େ ଉଡ଼ିଯିବ । ତାଉ ଖାଇ ରୂପ । ଆମେ କଣ ରୂପକୁ ଚାଟିବୁ ? ଦାନା ପାଣି ମୁଠାକରେ ଯେବେ ସୁବିଧା ନାହିଁ, ସେଠି ଝିଅକୁ ଦେଇ ଲାଭ କ'ଣ ? ଦେଖୁଛୁ ତ ନଗଦ ପାଞ୍ଚଶ ମୁଦ୍ରା, ପୁଣି ବାହାଘର ଆଦି ବିଧି ଯେତେ ଖର୍ଚ୍ଚ ପଡ଼ିବ ସେ ସହିବ ।

ବ୍ରାହ୍ମଣୀ—ପାଞ୍ଚଟିର ବୟସ ଗଲାଣି, ତା ବାଣିରେ ମାଇକିନିଆଁ ଉଧୋଉ ନାହାନ୍ତି ।

ବ୍ରାହ୍ମଣ—ସେସବୁ ତାଙ୍କ କାଳେ କଥା । ନାହାକ ପଣ୍ଡିତଙ୍କ କଥା ସବୁ ସତ ହୋଇଯାଏ ? ହଁ, ମୋର ଯେଉଁ ଘରପରି ଦ'ଦଟା ମାଇକିନିଆ ମଲେ, ତାଙ୍କୁ କଣ ଯମ ନେଲା ?

ବ୍ରାହ୍ମଣୀ—ଯମ ନେଲା ନାହିଁ ଆଉ କିଏ ନେଲା ?

ବ୍ରାହ୍ମଣ—ଗୋଟାଏ ଫାଶ ଦଉଡ଼ି ଲଗାଇ ମଲା, ଆଉ ଗୋଟାଏ ପାଣିରେ ବୁଡ଼ିମଲା । ଏଗୁଡ଼ିକ ଡାଆଣୀ ହୋଇ ବଣରେ ବୁଦାରେ ରହିଲେ । ନା, ଯମର ଭେଳ ସତ୍ତ୍ୱ ନ ଥିଲା ଏଇ ଅଲକ୍ଷଣୀବୁଢ଼ୀଙ୍କୁ ଆସି ନେଉଥିଲା ।

ବ୍ରାହ୍ମଣୀ—ତମର ଯେଉଁ କ୍ଷାଳା, ମୁଁ ବିଷ ଜହର ଖାଇ ମରନ୍ତିଣି; କିନ୍ତୁ ଖାଲି ଛୁଆପିଲା ଦ'ଟାଙ୍କ ମୁହଁକୁ ଅନାଇ ପଡ଼ିରହିଛି ।

ବ୍ରାହ୍ମଣ—ଛୁଆପିଲାଙ୍କ ମୁଣ୍ଡକୁ ତ ହାତ ପାଇଲାଣି, ଏଥର ମରୁନାହଁ । ମୁଁ ପୁଣି ବିବାହ ସୁନ୍ଦର ଟୁକୁଲିଟାଏ ଘେନ ଆସିବି ।

ବ୍ରାହ୍ମଣୀ—ତମକୁ ଖାଲି ଝିଅ ବେଚିବାକୁ ଅନାଇ ବସିଛନ୍ତି !

ବ୍ରାହ୍ମଣ—ସେମିତି ନ ଦେଲେ ତ ବଦଳରେ ଦେବେ ?

ବ୍ରାହ୍ମଣୀ—ବଦଳରେ କାହାକୁ ଦେବେ ?

ବ୍ରାହ୍ମଣ—ଝିଅଟୁ ଗୋଟିଏ ।

ବ୍ରାହ୍ମଣୀ—ତୁମଠାରୁ ପାପୀ ଦୁନିଆଁରେ କେହି ନାହାନ୍ତି ।

ବ୍ରାହ୍ମଣ—ଅଜାମିଳଠାରୁ ତ ବେଶି ନୁହେଁ ?

ବ୍ରାହ୍ମଣୀ—ବଡ଼ ବୁଦ୍ଧିମାନ, ମୁଁ ଝିଅକୁ ପଛେ କାଟୁଥିବି, ସେ ବୁଢ଼ାଟାକୁ ବାହା ଦେବିନାହିଁ । ଜାଣୁ ଜାଣୁ କେଉଁ ମାଆ ଝିଅଟାକୁ ବେଢ଼ାରେ ବାନ୍ଧିବ ?

ବ୍ରାହ୍ମଣ—ବେଳକାଳ ବାନ୍ଧକୁ ଜାଣୁନ ? ଆଗେ ଜାତ ଖଣ୍ଡ ଜଡ଼ା ନେବନାହିଁ ଆଉ ଜାଗାକୁ ଉଠେଇ ଦେବ। ସ୍ତ୍ରୀଧର୍ମ ତ ବୁଝିଲୁ ନାହିଁ, 'ସଧବା ବିଧବା ନାସ୍ତି, ନାସ୍ତି ନାସ୍ତି ପତିବ୍ରତା', ବୟସ ଥିବା ପର୍ଯ୍ୟନ୍ତ ଯେତେଟା ସ୍ୱାମୀ ଧରିପାରିବ, ସେଥିରେ ବାପ ମା'ଙ୍କର ସୁବିଧା ଓ ଅର୍ଥଲାଭ। ଜାଣୁ ଜାଣୁ ଗୋଟିଏ ଯୁବକ ହାତରେ ଧରାଇ ଦେଇ ଜାଳକ ପାଟଭୁଣ୍ଡ ବୁଝି ବସିଥିବ ? ମାଇ ପଣ ଏ ଗୋଟିଏ ଖଣ୍ଡରେ ବନ୍ଧା ହୁଅନ୍ତି ନାହିଁ; ବୁଝିଲୁ !

ବ୍ରାହ୍ମଣୀ—ତମକୁ ପରା ସୁନ୍ଦର ଦିଶିବ ତୁମେ କରିବ, ମୋତେ କହୁଛ କାହିଁକି ?

ବ୍ରାହ୍ମଣ—ମୋତେ ଯାହା ସୁନ୍ଦର ତା ସଂସାରକୁ ସୁନ୍ଦର, ମୁଁ ଯାହା କରିବି ତା ଜଗତ କରିବ। ଉତ୍ସନ୍ନ ଝିଅ ବଢ଼ାଇବା ମହତଙ୍କ ଉଦ୍ଦେଶ୍ୟ, ଗୋଟିଏ କ୍ଷେତ୍ର ଫସଲ ମାଙ୍କଡ଼ ଖାଇଗଲା ବୋଲି କଣ ଜମି ପଡ଼ିଆ ପକାଇ ରଖିବା। ସେହିପରି ସବୁକଥା।

ବ୍ରାହ୍ମଣୀ—ସୁନା ପରି ଝିଅକୁ ମାଟିରେ ପକାଇବ, ଗାଁବାଲାଙ୍କର ଆଦୌ ଏଥିରେ ମତ ନାହିଁ।

ବ୍ରାହ୍ମଣ—ତୁ ତ କଣ ବୁଝୁନାହୁଁ, ଗାଁବାଲା ଆଗପାଖରେ ଏହି ପାଉଛନ୍ତି। ମୁଁ ଝିଅକୁ ଏଠି ସେଠି ଦେଇ ଯେବେ ହଜାରେ ହଜାରେ ମାରିଆଣେ ତେବେ ଗାଁରେ ଧନୀ ହୋଇ ବସିବି। ମୁଁ ବର୍ତ୍ତମାନ ତାଙ୍କ ଦ୍ୱାରକୁ ଭଜ ମୁଠାଏ ପାଇଁ ଯାଉଛି, ପୁଣି ଦିନ ଆସିବ ଗାଡ଼ି ପାଲିଙ୍କି ବେଳକୁ ଦେଖି, ନେବାକୁ କରଜ ନେବାକୁ ଏ ଗାଁ କଣ ନଜରେ କେତେ ଗାଁର ଲୋକେ ଆସି ମୋ ପିଣ୍ଡାତଳେ ବସିବେ। ଏ ସବୁ କଥାକୁ ଆଜ ଗାଁବାଲା ଛାତିରେ ଉପରେ ଘୁଣ୍ଡିଆ ପକାନ୍ତି। ଦେଖିବୁ ଦେଖିବୁ ଖାଲି ଦଶହଟା ଟଙ୍କା ଦିଆ ପଡ଼ିଯାଉ ସବୁ ମିଳାଇଯିବ। ଆଗେ ! ଝିଅଙ୍କୁ କେତେ କଷ୍ଟ ଜାଣୁ ତ ? ପଡ଼ ବିପଳେଶୀ ପାଟିଜର ଯେଉଁଥିରୁ ନ ହେଲା ତେବେ ପିଲାଙ୍କ କଥା କଣ ? ତୁ ଚୁପ୍ ହୋଇ ବସ।

ଭଗବାନ ଆମକୁ ଝିଅ ଦଉଛନ୍ତି ଦେଇ ନାହାନ୍ତି ଯେ ସ୍ୱର୍ଗ ଦେଖନ୍ତି, ଖାଲି ବୈକୁଣ୍ଠ ପାଇଲେ ହେଲା। ଚାଲ ଚାଲ, ଲୋକଙ୍କ କଥା ଶୁଣୁନା, ନ ଝିଅଙ୍କ କଥା କହୁ ଶୁଣୁନା। ମୁଁ ଯାହା ଠିକ୍ କରିଛି ସବୁ ଠିକ୍। ଆମେ ଆଦର୍ଶ ଦେଖାଇବୁ। ସେହି ଆଦର୍ଶ ଜଗତ ଶିଖିବ। ବ୍ରାହ୍ମଣ ମୁଖେ ବେଦ ସାର, ଶୁଣିନାହୁଁ ? ଚାଲ। (ଉଭୟେ ପ୍ରସ୍ଥାନ)

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ରାଜସଭା)

ଦୁର୍ଯ୍ୟୋଧନ ରାଜସଭା

(ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନି ଓ ଜୟଦ୍ରଥ ଆସୀନ)

( ନର୍ତ୍ତକୀମାନଙ୍କ ଗୀତ )

ଗାଅ ଗୋ ଆନନ୍ଦେ ସୁଲଳିତ ଛନ୍ଦେ
ଗାଅ ରାଜେଶ୍ୱର ଜୟଗାନ।
ବୀଣାକଣ୍ଠ ନାଦେ ପ୍ରେମ ଗଦ ଗଦେ
ପୂରି ଉଠୁ ଏ ସଭା ଭୁବନ। ପଦ।
ସଭାରେ ବିରାଜେ ନୃପତିନାରାଜ।
ବେଢ଼ି ରହିଛନ୍ତି ଗୁଣି ସମାଜ।
ଏ ସଭା ସୁଷମା ନାହିଁ ଗୋ ଉପମା
ବଳିଛି ବା ଇନ୍ଦ୍ର ଭୁବନ।

(ନର୍ତ୍ତକୀମାନଙ୍କ ପ୍ରସ୍ଥାନ)

ଦୁର୍ଯ୍ୟୋଧନ—ସଭାସଦ୍ ବର୍ଗ ! ଗୋଟିଏ ବିଷୟରେ ତୁମ୍ଭମାନଙ୍କର ମତାମତ ନେବା ନିତାନ୍ତ ପ୍ରୟୋଜନ ହୋଇ ପଡ଼ିଛି। କାଲି ଦ୍ୱାରକାରୁ ଗୋଟିଏ ସୁସମ୍ବାଦ ଆସିଛି।

ଶକୁନି—ଶୁଭ ସମ୍ବାଦ ! ଆଉ ମତାମତର ପ୍ରୟୋଜନ କ'ଣ ଲୋଡ଼ା ?

ଦୁର୍ଯ୍ୟୋଧନ—ଆପଣମାନଙ୍କ ବିନା ପରାମର୍ଶରେ କୌଣସି କାର୍ଯ୍ୟକୁ ଅଗ୍ରସର ହେବା ଦୁର୍ଯ୍ୟୋଧନର ଇଚ୍ଛା ନୁହେ। ଭଲମନ୍ଦ, ନ୍ୟାୟ ଅନ୍ୟାୟ, ଏ ସମସ୍ତ ଆପଣମାନଙ୍କଠାରେ ନିର୍ଭର। ମୁଁ ଏକା

ଚକ୍ରବର୍ତ୍ତୀ ହୋଇ ଯେ ହସ୍ତିନା ସିଂହାସନ ଆରୋହଣ କରିଛୁ ତାହା କେବଳ ଆପଣମାନଙ୍କ ଦୟା ଓ ଆପଣମାନଙ୍କ ଆଶୀର୍ବାଦ ଛଡ଼ା ଆଉ କିଛି ନୁହେଁ ।

ଶକୁନି—ଗୁଣବାନ ଓ ଯୋଗ୍ୟବାନ ବ୍ୟକ୍ତି ତାଙ୍କର ନିଜ ଉଦାରତା ଗୁଣରେ ସମସ୍ତଙ୍କର ଭକ୍ତି ଓ ସ୍ନେହ ଭାଜନ ହୁଅନ୍ତି । ତେବେ ପ୍ରସ୍ତାବ କଣ ଆଗତ କରାଯାଉ ।

ଦୁର୍ଯ୍ୟୋଧନ ବଳରାମଙ୍କ ପ୍ରେରିତ ପତ୍ରରୁ ପ୍ରକାଶ, ସେ ତାଙ୍କର କନ୍ୟା ଶଶୀରେଖାକୁ ଆମ୍ଭର ପୁତ୍ର ଲକ୍ଷ୍ମଣ କୁମର ହସ୍ତରେ ପ୍ରଦାନ କରିବେ । ପ୍ରତି ଉତ୍ତରରେ ଆମ୍ଭର ମତାମତ ସେ ଚାହାନ୍ତି । ତାଙ୍କର କନ୍ୟା ସୁଗୁଣସମ୍ପନ୍ନା ଏକଥା ମୁଁ ଅନେକଙ୍କଠାରୁ ଶୁଣିଛି ।

ଦୁଃଶାସନ—ସୁଗୁଣସମ୍ପନ୍ନା ସତ୍ୟ; କିନ୍ତୁ କେଉଁ କୁଳୋଦ୍ଭବା ସେ ବିଷୟ ବିଶେଷତଃ ବିବାହ କାର୍ଯ୍ୟରେ ଆବଶ୍ୟକ ପଡ଼େ ।

ଜୟଦ୍ରଥ—ତା ଯଥାର୍ଥ । ରୂପ ଗୁଣ ଛଡ଼ା ସ୍ୱକୁଳ ବୁଝିବା ରାଜରାଜେଶ୍ୱରଙ୍କର କର୍ତ୍ତବ୍ୟ । ମାନ-ଚକ୍ରବର୍ତ୍ତୀଙ୍କ ସମାସ୍ତନ୍ତ ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତି କି ବଳରାମ ? ତା ସ୍ୱର୍ଗ ମର୍ତ୍ତ୍ୟ ପ୍ରଭେଦ । ଲକ୍ଷ୍ମଣକୁମରଙ୍କୁ ଦେବରାଜ ଇନ୍ଦ୍ର ମଧ୍ୟ କନ୍ୟା ଦେବାକୁ ଲାଳାୟିତ ଥିବେ ।

ଦୁଃଶାସନ—ତା ଅସମ୍ଭବ ନୁହେ । ନୟ ଲକ୍ଷେ ରାଜାର ମଉଡ଼ମଣି, ତାର ପୁତ୍ରକୁ କି କନ୍ୟା ଅଭାବ ପଡ଼ିବ ! ଜାଣୁ ଜାଣୁ ଗୋଟିଏ ଗୋପାଳ ସଙ୍ଗେ ବନ୍ଧୁତା ସ୍ଥାପନ କରିବା ନିତାନ୍ତ ଅଯୁକ୍ତ ସଙ୍ଗତ ।

ଶକୁନି—ଏ ତୁମ୍ଭର ଭୁଲ ଧାରଣା । ବଳରାମ କେଉଁ ଗୋପାଳୁଣୀ ଗର୍ଭସମ୍ଭୂତ ନୁହନ୍ତି । ସେମାନେ ଦେବଅଂଶୀ । ସେ ବସୁଦେବଙ୍କ ପୁତ୍ର । ଏ ଆମ୍ଭର ଜଣା ଶୁଣା କଥା । ବଳଦେବ ମହାତେଜା, ହିଁ ସ୍ୱୟଂ ଶଙ୍କର୍ଷଣ ।

ଜୟଦ୍ରଥ—ହେଲେ ମଧ୍ୟ ସେମାନେ ପାଣ୍ଡବଙ୍କ ସପକ୍ଷ । ଏଣୁ ତାଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିବା ଅନୁଚିତ ।

ଶକୁନି—ସେହି କାରଣରୁ ମୁଁ କହେଁ, ଯଦି ସେ ଆମ୍ଭ ସଙ୍ଗେ ବନ୍ଧୁତା ସ୍ଥାପନ କରନ୍ତି, ତେବେ ପାଣ୍ଡବଙ୍କ ସବୁ ଆଶା ଭରସା ବ୍ୟର୍ଥ ହୋଇଯିବ । ଅବଶେଷରେ ଆମ୍ଭେମାନେ ଅକ୍ଳେଶରେ ଜୟ ଲାଭ କରିବା । କୁରୁ ପାଣ୍ଡବ ଯୁଦ୍ଧ ସେ ବେଶୀ ବିଳମ୍ବ ନୁହେଁ । ଏ ବନ୍ଧୁତା ସ୍ଥାପନକୁ ଗୋଟିଏ ସୁବର୍ଣ୍ଣ ସୁଯୋଗ ବୋଲି ମନେ କରିବାକୁ ହେବ । କଣ କହୁଛନ୍ତି ?

ଜୟଦ୍ରଥ—କୁରୁ ବଂଶର ହିତାହିତ ସବୁ ଆପଣଙ୍କଠାରେ ନିର୍ଭର । ବିଶେଷତଃ ଆପଣ ବୟୋଜ୍ୟେଷ୍ଠ, ଆପଣଙ୍କ ମତରେ ଆମ୍ଭମାନଙ୍କର ଏକମତ ।

ଦୁଃଶାସନ—ବିବାହ କାର୍ଯ୍ୟରେ ଗଲେ ସୁଦ୍ଧା ସସୈନ୍ୟ ସେଠାକୁ ଯିବାକୁ ହେବ ।

ଶକୁନି—ସ୍ୱା ହୁଅନ୍ତା ନାହିଁ କି ? ବିବାହ ଉତ୍ସବରେ ବର ନେଇଯିବା ବା ପୁତ୍ର ଯାତ୍ରା କରିବା ଏଥିରେ ପାର୍ଥକ୍ୟ ବେଶି କିଛି ନାହିଁ । ଗୁଳିଗୋଳା ବାଣ ନିଶାଣ ସବୁ ଆବଶ୍ୟକ ପଡ଼ିବ ।

ଦୁଃଶାସନ—ଗୁଳିଗୋଳା ବାଣରେ ଦ୍ୱାରକାକୁ ଜଳାଇ ଦେବାକୁ ହେବ । ଆଉ ସହସ୍ରାଧିକ ଅଶ୍ୱାରୋହୀ, ଗଜାରୋହୀ, ପଦାତିକ ସୈନ୍ୟ ଓ ସହସ୍ରାଧିକ ବରଯାତ୍ରୀ ମହାସମାରୋହରେ ସେଠାକୁ ଯିବେ । ଦ୍ୱାରକାବାସୀ ଦେଖନ୍ତୁ, ହସ୍ତିନା ରାଜାର ଆଡ଼ମ୍ବର କେତେ । ଆଉ ସେମାନେ ଯେପରି ତର୍କବାର୍ତ୍ତା କରିବାରେ ଅକ୍ଷମ ହୋଇ ପଡ଼ନ୍ତି ।

ଶକୁନି—ସେ ସବୁ କଥା ଅନୁସାରେ ତୁମ୍ଭେ କରିବ । ଆଉ କହୁଚ କାହାକୁ ? ମାନଗୋବିନ୍ଦ ସ୍ୱୀକୃତ ହୁଅ । ଏଥିରେ ଆମ୍ଭମାନଙ୍କର କୌଣସି ଆପତ୍ତି ନାହିଁ ?

ଦୁର୍ଯ୍ୟୋଧନ—ବିବାହ ଲଗ୍ନ କେବେକୁ ଧାର୍ଯ୍ୟ କରିବ ।

ଶକୁନି—ସେଠା କନ୍ୟା ପକ୍ଷକୁ ଯେଉଁ ତିଥି ଯୋଗାଇବ । ତା ସେମାନେ ସ୍ଥିର କରି ସମ୍ବାଦ ଦେବେ । ଆମେ ଅଙ୍ଗୀକାର କଲୁ ଏହିମାତ୍ର ପତ୍ରୋତ୍ତର ଦେବାକୁ ପଡ଼ିବ ।

ଦୁର୍ଯ୍ୟୋଧନ ତେବେ ଏଣିକରେ ସଭା ଭଙ୍ଗ ହେଉ ।

( ସମସ୍ତେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ପୂର୍ବ ନାଟଶାଳ ବ୍ରାହ୍ମଣ ଓ ଅଗାଧୁ ପଣ୍ଡିତ ପ୍ରବେଶ )

ଅଗାଧୁ—ଆଶ୍ଚର୍ଯ୍ୟ ମହାଶୟେ ! ଦାନ୍ତ ପଡ଼ିଗଲେ ବା ବାଳ ପାଚିଗଲେ ଲୋକ ବୁଢ଼ା ହୁଅନ୍ତି ନାହିଁ । ବୟସ ଉପରେ ସବୁ ନିର୍ଭର କରେ । ଆପଣ କୋଷ୍ଠି ଦେଖନ୍ତୁ ଅଷ୍ଟୋତ୍ତର ଶଏ ବର୍ଷ ପରମାୟୁରୁ ଜମା ଭୋଗ ହୋଇଛି ବାଷଠି ବର୍ଷ । ଆଉ ତ ଛୟାଳିଶ ବର୍ଷ । ତମ ଝିଅ କେତେ ବର୍ଷ ଭୋଗ କରୁଛି କହ ।

ବ୍ରାହ୍ମଣ—ତା ମୋ ତ ଜମା ମନୁ ନାହିଁ । ମୁଁ ପନ୍ଦର ଦିନ ହେଲା ବନ୍ ବୁଝାଇଲଣି ! ତାକୁ କଏ କହି ଦେଇଛି, ଆଶ୍ଚର୍ଯ୍ୟଙ୍କ ଘରିରେ ମାଣ୍ଡ କନିଆଁ ଉପୋଜ ନାହାନ୍ତି । ତିନ ତିନିଟା ମାଣ୍ଡ କନିଆଁ ଦଣ୍ଡାକୁ ଗଲେ । ମୁଁ ଏହା ଜାଣୁ ଜାଣୁ ଝିଅକୁ ସେଠି ବିବାହ ଦେବି ?

ଅଗାଧୁ—ତା ଯଥାର୍ଥ, ମୋର ଆୟୁଷ ରେଖାଟା ବଡ଼-ଦୀର୍ଘ, ପରମାୟୁ ମଧ୍ୟ ଜୋର । ତେଣୁ ଅଳ୍ପାୟୁଷ ମାଇକିନିଆଁ ଏଠି ଠାକୁ ନାହାନ୍ତି । ମୁଁ ଭଲକରି ଦେଖିଛି ତମ କନ୍ୟାର ସ୍ୱାଣିଟା ବ ଟାଣ ଅଛି । ଆଉ ମଧ୍ୟ ରାଜଯୋଟକ, ମଣ୍ଡଳ ଶୁଦ୍ଧି । ଆଉ କିଛି କହିବାକୁ ନାହିଁ । ମୋତେ କିଏ କନ୍ୟା ଦେବାକୁ ଲୋକେ ନାରାଜ । ବଡ ପାଞ୍ଚଟା ଏକା-ବେଳେକେ ବସିଲେ ଛନ୍ଦ ହୋଇ ପଡ଼ନ୍ତି । ନା, ଦେଖିଲ ଗରିବ ଘରୁ ପାଞ୍ଚଟିଏ ନେଲେ ଭଲ । ମୋ ହାତ ଚାକର ମଧ୍ୟ ଅନେକଟା ଅଭାବ ପୂର୍ଣ୍ଣ ହେବ । ଆଶ୍ଚର୍ଯ୍ୟ ! ଶୁଣନ୍ତୁ, ଆପଣଙ୍କ ଭାଗ୍ୟର ଉଦୟ ବୋଲି ଜାଣିବେ ।

ବ୍ରାହ୍ମଣ—ମୁଁ କିଛି ବୁଝି ନାହିଁ । ମାଇକିନିଆଁଟା ମଣୁନାହିଁ । ଦେଖିଲ ବ ଏଥିରେ କେତ୍ରିଆ ପଡ଼ିଅଛନ୍ତି ।

ଅଗାଧୁ—ବୁଝ, ବୁଝ ଆଶ୍ଚର୍ଯ୍ୟ ! ଗାଁବାଲା ତମର ମଙ୍ଗଳ ଚାହୁଁନାହାନ୍ତି କି ଅମଙ୍ଗଳ ଚାହୁଁଛନ୍ତି । ତୁମେ ବାଳକ ଲୋକାଏ ହୋଇ ତାଙ୍କ ଦୁଆରେ ହାତ ପତାଇବ । ମାଇକିନିଆଁ ତମର ଗାଁବାଲାଙ୍କ ବାର ଝିଙ୍ଗମଙ୍ଗ କରି ଟୋପେ ମଦେ ପାଣି ଆଣିବ । ଏଟା ତମକୁ ଭଲ; କିନ୍ତୁ ମୋ ଆଖିକୁ ସବୁ ଅସହ୍ୟ । ମୁଁ ତମକୁ ଜମିଦାର କରାଇ ଦେବି । ଆଶ୍ଚର୍ଯ୍ୟ, ତମ ସ୍ତ୍ରୀ ଜମିଦାରଣୀ ହୋଇ ବସିବ । ଗାଁ-ବାଲାଙ୍କ ମୁହଁ ସାନ୍ତୁ ଖାଇଲା ପରି ହୋଇଯିବ । ନିଅ ଏ ହାରଟି ( ହାର ବାହାର କରିଦେବା ) ତମ ବ୍ରାହ୍ମଣୀ ବେକରେ ଦେବ । ଏ ତ ସାମାନ୍ୟ ଟଙ୍କା, ଦୁଇଶ ତିନିଶ କଥା । ଅଷ୍ଟ ଅଳଙ୍କାରରେ ମଣ୍ଡିଦେବି । ଆହେ ସତ ଝିଅଟିଏ ଜନ୍ମ କରି ଜୀବନ ସାର୍ଥକ କ ହେଲ, ସେପରି ଝିଅ ଜନ୍ମ କରି କେତେ, ନ କରି କେତେ ।

ବ୍ରାହ୍ମଣ—ଦାନା ଅଭାବରେ ପେଟରେ ଓଦା କନା ଦିଆହେଉଛି, ହାର ନେଇ ଚିନ୍ଧିଲେ କି ପେଟ ପୂରିବ ?

ଅଗାଧୁ—ତୁମେ ଯାଅ, ମୁଁ ଗାଡ଼ିଏ ଧାନ ସାଙ୍ଗକୁ ଆଉ କିଛି ଟଙ୍କା ପଇସା ପଠାଇ ଦେଉଛି । ତୁମେ ଆଉ ପର ଦୁଆରକୁ ମୁଣ୍ଡ ନୋଇଁବାକୁ ଯିବ ନାହିଁ, ଯିବ ନାହିଁ, ଏକଥା ସ୍ୱତଃସିଦ୍ଧ । ଏଇ ଆସନ୍ତା ଭିତରେ ବଢ଼ିଘରଣୀ ଯେପରି ହୋଇଯାଏ ।

ବ୍ରାହ୍ମଣ—ମୁଁ କିଛି ଅମତ । ଖାଲି ମାଇକିନିଆଁଟା ବୁଝିଲେ ହେଲା ।

ଅଗାଧୁ—ଧନ ସବୁ ମନ ଭୁଲାଇ ଦେବ । ଯାଅ ସବୁ, ଅଭାବ ଅସୁବିଧା ମୋତେ ମଝେ ମଝେ ଖବର କହୁଥିବ । ଆଉ, ଆଉ ଗୋଟିଏ କଥା । ପାଏଟି ସାଙ୍ଗରେ ଥରେ ଦେଖା ସାକ୍ଷାତ ହେଲେ ମୁଁ ସବୁ ଠିକ୍ ଠାକ୍ କରିଦିଅନ୍ତି ।

ବ୍ରାହ୍ମଣ—ସ୍କୁଲ୍ ନାହାନ୍ତି । ସେ ତ ଆମ ଗାଁ ଆଶ୍ରମରେ ପାଠ ପଢ଼ା କରିବାକୁ ଆସିଥିବ ।

ଅଗାଧୁ—ପାଠ ପଢ଼ୁଛି ? ତା ତ କହୁନାହଁ । କଏ ଟୋକାଟାଙ୍କଆ ତାକୁ ବିଗାଡ଼ ଦେଉଛନ୍ତି । ତମେ ପାଠକୁ କଣ ଖାଇବ ମ କିଣ ସୁକଶ୍ୱ କରିବ ! ମୋ ଘରେ ତ ଛ ଛଟା ସ୍ୱାମୀ

ଖଟିହୁଅନ୍ତି । ତମ ଝିଅ ଜନ୍ମ ଖଟିଲୁ ଓହ୍ଲାଇବ ନାହିଁ, ବୁଝିଲି । ପଢ଼ା ବନ୍ଦ କରି ଦିଅ । ପାଠ ପଢ଼ି ବୁଦ୍ଧି ହୁଏ, ପୁଣି ପାଠ ପଢ଼ି ମଧ୍ୟ ବୁଦ୍ଧି ଭ୍ରଷ୍ଟ ହୁଏ । ଆଚ୍ଛା, ବେଳ ଦେଖି ତମ ଘରଆଡ଼େ ଯିବି । ତୁମେ ଯାଅ ନମସ୍କାର । (ବ୍ରାହ୍ମଣ କିଛିଦୂର ଯିବା ପରେ) ହିଁ ଶୁଣ, ଶାଶୁଙ୍କୁ ମୋର ନମସ୍କାର ଜଣାଇ ଦେବ । ( ବ୍ରାହ୍ମଣ ପ୍ରସ୍ଥାନ ) 'ସୁନ୍ଦର ଗୋଲ ସୁଗୋଲ କଳେବର । ଟଙ୍କା ଏ ସବୁ ମୁହିଁ କରିଦେବ ବଙ୍କା ।' ଜାମଟା ହାସଲ ହୋଇ-ଯାଆନ୍ତାଣି, ଏ ଗାଁ ଯୁବକ କେଇଟା ଗୋଟାଏ ସମିତି କରି ସବୁ ବିଭ୍ରାଟ ଲଗାଇଛନ୍ତି । ଆଚ୍ଛା, ଦେଖାଯାଉ ।                                  ( ପ୍ରସ୍ଥାନ )

—*—

## ତୃତୀୟ ଦୃଶ୍ୟ

( ଅଭିମନ୍ୟୁ ଓ ନାରଦ ପ୍ରବେଶ )

ଅଭିମନ୍ୟୁ—ଉର୍ବଶୀ ଅପେକ୍ଷା ଜଣେ ସୁନ୍ଦରୀ ?

ନାରଦ—ସୁନ୍ଦରୀ ବୋଲି ପଚାରିବାକୁ ଅଛି, ଦେବ-କନ୍ୟା ଆଉ ମାନବୀ ଏଥିରେ ତେଇ ପାର୍ଥକ୍ୟ ।

ଅଭିମନ୍ୟୁ—କଣ ଆଉ ପାର୍ଥକ୍ୟ ?

ନାରଦ—ତୁ କହିଣ ବାବୁ ବୁଝି ନାହୁଁ, ଆଜୁର ମତେ ଉର୍ବଶୀଙ୍କୁ ଦେଖୁଛୁ ? ଦେବକନ୍ୟାମାନେ ଚିର ଯୌବନାଙ୍ଗୀ, କିନ୍ତୁ ମାନବୀଙ୍କଠାରେ ତା କାହିଁ ସମ୍ଭବ ହେବ ।

ଅଭିମନ୍ୟୁ—ଦେବକନ୍ୟା ଦେବ ଉପଯୁକ୍ତା । ମୁଁ ମାନବଟା କପରି ତାର ଅର୍ଦ୍ଧାଙ୍ଗ ହେବି ।

ନାରଦ—ତୁ ସେ ଦେବଅଂଶୀ ପିଲା । ସେ ତତ୍ତ୍ୱର ଆମେ ସବୁ କରି ଠିକ୍ କରିଛୁ ନା ।

ଅଭିମନ୍ୟୁ—ଏ ବିବାହର ସୂତ୍ରପାତ କଲା କିଏ !

ନାରଦ—ଆମେ । କନ୍ୟାଟାର ଭବ ଭକ୍ତି ଆମଠାରେ ବହୁତ ।

ଅଭିମନ୍ୟୁ—ତାଙ୍କର ପିତାମାତା ମୋତେ କ ମନୋନୀତ କରନ୍ତି ।

ନାରଦ—ମାଆଙ୍କର ଷୋଳପଣ ଉପରେ ଅଠରପଣ, କିନ୍ତୁ ପିତାଙ୍କର ।

ଅଭିମନ୍ୟୁ—ପିତାଙ୍କର ଇଚ୍ଛା ବିରୁଦ୍ଧରେ ବିଶେଷତଃ ବିବାହ କାର୍ଯ୍ୟ ସଂଗଠନ ହେବା ଦୁଷ୍କର ।

ନାରଦ—କାହିଁକି ନ ହେବ ? ଏହିପରି ଦୁନିଆଁରେ ଅନେକଟା ହୋଇ ଆସୁଛି ନା । ଏଇଠି ଏବେ ଦେଖ ରୁକ୍ମିଣୀ ଦେବୀ ଶିଶୁପାଳକୁ ବିବାହ ହେବା ଠିକ୍ ହୋଇ ବିବାହର ସବୁ ଆୟୋଜନ ହୋଇ ସାରିଥିଲା । ଦେବୀ ମନ୍ଦିରରୁ କନ୍ୟା ଫେରିଥିଲେ ପାଣି ଗ୍ରହଣ ହୋଇଥାନ୍ତା; କିନ୍ତୁ ତମ ମାତୁଳ କୃଷ୍ଣ ରୁକ୍ମିଣୀଙ୍କୁ ନେଇ ଚମ୍ପଟ ।

ଅଭିମନ୍ୟୁ—ମୁଁ କଣ ଏପରି ଚୌରବୃତ୍ତି କରି କନ୍ୟା ଆଣିବି ? ମୁଁ ସେ କ୍ଷତ୍ରିୟ ସନ୍ତାନ ।

ନାରଦ—ଚୋରି କରି ଆଣ ବା ଯୁଦ୍ଧ କରି ଆଣ, ସେଥିରେ ଆମର କୌଣସି ଆପତ୍ତି ନାହିଁ । କିନ୍ତୁ କନ୍ୟାକୁ ନେଇ ଯଦି ବିବାହ ନ ହୁଅ ତେବେ ତୁମକୁ ଗୋଟିଏ ନାରୀହତ୍ୟା ପାତକରେ ଲାଗି ହେବାକୁ ପଡ଼ିବ । ଆଉ ଆମକୁ ମଧ୍ୟ ଗୁରୁତର ଅପମାନ ହେବ ।

ଅଭିମନ୍ୟୁ—ଆପଣଙ୍କୁ କାହିଁକି ଅପମାନ ହେବ ?

ନାରଦ—ଅପମାନ ବୋଲି ଅପମାନ ! ଲକ୍ଷ୍ମଣ ତୁମର ତୋ ତୁଳନାରେ ସେଭଳି ଯୋଗ୍ୟବାନ ନା ଗୁଣବାନ ନା ରୂପବାନ ଯେ—ତାର ପ୍ରଶଂସା ଆଉ ତୋର ନିନ୍ଦା, ତୋ ପିତାର ନିନ୍ଦା ।

ଅଭିମନ୍ୟୁ—ମୋର ନିନ୍ଦା, ସେଥିରେ ଯାଏ ଆସେ କେତେ ? ପିତାଙ୍କର ନିନ୍ଦା !

ନାରଦ—ଏକା ପିତା କଣ ? ପାଣ୍ଡବମାନଙ୍କର ନିନ୍ଦା, ଆଉ କୁରୁବଂଶର ପ୍ରଶଂସା । ଦୁର୍ଯ୍ୟୋଧନ ମାନବଜବରିଣୀ । ଲକ୍ଷେ ରାଜାର ମଣ୍ଡନମଣି ।

ଅଭିମନ୍ୟୁ—କିଏ ଏ ନିନ୍ଦା କରୁଥିଲେ ?

ନାରଦ—ଆଉ କିଏ କରିବ ? ତମ ବଡ଼ ମାମୁଁ ।

ଅଭିମନ୍ୟୁ—ସାନ ମାମୁଁ ?

ନାରଦ—ସାନ ମାମୁଁ ? ପାଣ୍ଡବ ନାଙ୍କର ଜୀବନ ପୁଣି ତୋ ପିତା ଅତି ଆତ୍ମୀୟ ବୁଝୁନାହିଁ । ତୋ

ମା ସୁଭଦ୍ରାଙ୍କୁ ଦୁର୍ଯ୍ୟୋଧନକୁ ବିବାହ ଦେବାକୁ ବଳଦେବଙ୍କର ମତ ଥିଲା । କିନ୍ତୁ ଶ୍ରୀକୃଷ୍ଣ ବଳ ପୂର୍ବକ ତୋର ପିତାଙ୍କୁ ବିବାହ କରାଇ ଦେଲେ । ସେଇ ଏଟା ତ ।

ଅଭିମନ୍ୟୁ—ତାହେଲେ ମୋତେ କଣ କରିବାକୁ କହୁଛନ୍ତି ?

ନାରଦ—ଲକ୍ଷ୍ମଣ କୁମର ଯେପରି ଶିଶୁପାଳ ଅବସ୍ଥାପ୍ରାପ୍ତ ହୁଏ, ଦୁର୍ଯ୍ୟୋଧନ ଅପମାନିତ ହୁଏ । କୁରୁଷ୍ଟ ମୁହଁରେ ଯେପରି କାଳି ବୋଳା ହୁଏ । ଆଉ ଶଶୀରେଖା ଯେପରି ତୋର ଅର୍ଦ୍ଧାଙ୍ଗିନୀ ହୁଏ । ଆଉ ଏ ଜଟିଆ ଲଙ୍ଗଳା ବାବାଜିର ଯେପରି ଟାଣ ରହେ ।

ଅଭିମନ୍ୟୁ - ତେବେ ଯାଆନ୍ତୁ ଦେବର୍ଷେ, ମୁଁ ପ୍ରସ୍ତୁତ ରହିଲି । ବିବାହ ଦିନ କେବେ ଧାର୍ଯ୍ୟ ହୋଇଛି ?

ନାରଦ—ଆମେ ସେ ଖବରଟା ଜଣାଇଦେବୁ ଯେ । ତୁ ପ୍ରସ୍ତୁତ ଥା । ଆମେ ଆସୁଛୁ ।

ଅଭିମନ୍ୟୁ—ଶୁଣନ୍ତୁ ମା'ଙ୍କ ଆଗେ ବୁଝିପିବେ ନାହିଁ ?

ନାରଦ—ଶୁଣ, କିନ୍ତୁ ତାଙ୍କୁ ମଧ୍ୟ ବର୍ତ୍ତମାନ ଏ କଥା ପ୍ରକାଶ କରିବାକୁ ହେବ ନାହିଁ ।

(ଉଭୟ ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

### (ଉଦ୍ୟାନ)

(ଶଶୀରେଖା ଏକାକୀ ଗୀତଟିଏ ଗାଇ ଗାଇ ଆସୁଥାଏ)

ମୋ ପତନ ହିଁ ତ ଦେବତା ।
ତେବେ ଆଉ ମୋ କାହିଁ କହିବ କଥା । ପଦ ।
ଦେଖି ତବ ରୂପ ଛବ     ନିରବେ ହୁଏ ମୁଁ ଭବ
ନବ ଆଶା ପଦ ଲାଖି କୁଟିବ ଚିନ୍ତା ।
ଦିନପରେ ଦିନ ବିତ     ଯାଏ ଥିବୁ କୁହେ ଯୁକ୍ତ
ଦର୍ଶନାର୍ଥ ହୋଇ ମୋ ଚିତ୍ତ ଦେବେ ବାରତା ।

ଶଶୀରେଖା—ସତେ ତାଙ୍କ ଚରଣରେ ମୋତେ ସ୍ଥାନ ଦେବେ ! ବାମନ ଚନ୍ଦ୍ର ଲଭିଲା ପରି ମୁଁ ଯେ ଆକାଶ ସୁମନ ତୋଳିବାକୁ ହାତ ବଢ଼ାଇଛି । ସତେ ଭଗବାନ ! ମୋର ମନ କାମନା ପୂର୍ଣ୍ଣ କରିବେ ।

(୧ମ ଓ ଚତୁର୍ଥ ସଖୀ ପ୍ରବେଶ)

୧ମ ସଖୀ—ମା ଠାକୁରାଣୀ କହିଲେ ଘର ଆଡ଼କୁ ଚାଲ ।

ଶଶୀରେଖା—କାହିଁକି ? ମୁଁ ଫଗୁ ମାଙ୍କ ପାଖରୁ ବର୍ତ୍ତମାନ ଆସିଲି । କାହିଁ, ମା' ତ କିଛି କହିଲେ ନାହିଁ ।

୪ର୍ଥ ସଖୀ—କାହିଁକି ଡାକୁଛନ୍ତି ସେଠିକି ଗଲେ ବୁଝିବ ନାହିଁକି ? ସାଇପାକ ମାଇପେ ସବୁ ଅନେଇ ବସିଛନ୍ତି ।

ଶଶୀରେଖା—ସାଇପାକ ମାଇପେ, କାହିଁକି ଆସିଛନ୍ତି ? କଣ କରିବେ ?

୪ର୍ଥ ସଖୀ—କେତେ ଫଟକିଆ, ମାଇପେ ଫୁଲ ଚନ୍ଦନ ଲାଗି କରାଇ କନିଅଁ କରିବେ ।

ଶଶୀରେଖା—ଯା, ଯା, ମୋତେ ବିରକ୍ତ କରନା । ମୁଁ ବର୍ତ୍ତମାନ ଯାଇ ପାରିବି ନାହିଁ ।

୪ର୍ଥ ସଖୀ—ସବୁ ଝିଅ ଏମିତି କହନ୍ତି, କେତେ ଗୋଡ଼ ଲମ୍ବାନ୍ତି । ମନ ଭିତରେ କେତେ ଭଣ ଖେଳିଯାଏ । ମୁଁ ଭ ଦାଉଁ ଦାଉଁ ପଡ଼ିବଣି । ଜେମାମଣି ଆସ, ଉଚ୍ଛୁର ହେଉଛି ପରା ।

ଶଶୀରେଖା—ସେମିତି ମୋତେ ବିଦ୍‌ଦାଗ କଲେ ଜାଣିଥା, ହଁ !

୧ମ ସଖୀ—ମା ଠାକୁରାଣୀ ଆଉ ଅନ୍ୟମାନେ ସମସ୍ତେ ଏ ଆଡ଼କୁ ଆସିଲେଣି ।

(ରେବତୀ ପ୍ରଭୃତି ପ୍ରବେଶି ଫୁଲ ଚନ୍ଦନ ପିନ୍ଧାଇ ନେଇଗଲେ)

(୨ୟ ସଖୀ ଓ ୩ୟ ସଖୀ ରହିଲେ)

୩ୟ ସଖୀ—ଭଦ୍ରା ! ଜେମାଙ୍କର ଏ ବିବାହ ପ୍ରସ୍ତାବରେ ଆଦୌ ମତ ଥିଲା ପରି ଜଣା ପଡ଼ୁନାହିଁ ।

୨ୟ ସଖୀ—ସେଥିରେ ଦୋଷର ମତଲବ ଅଛି ।

୩ୟ ସଖୀ—ଦୋଷର କଣ ? ଜେମାଙ୍କ ଲାଗି ଏ ବର କଣ ହୋଇ ନାହିଁ ।

୨ୟ ସଖୀ—ଜେମାଙ୍କ ଲାଗି ଯେ, ଆସିପାରୁ ନୋହୁ ଆଉ ହେ ସୁନ୍ଦର ।

୩ୟ ସଖୀ – ଭଡ଼ ଜହ, କୁଆଡ଼େ ?

୨ୟ ସଖୀ – ରମେଶ୍ୱରୀଙ୍କ କୁହୁକୁହୁଆ, ତମ ପାଟିରେ କଥା ରହୁବ ନାହିଁ ।

୩ୟ ସଖୀ – ମୋତେ ମୋ ଧଣୀ, ଆଜି ଚୁହିଁଛୁ, କାହା ଆଗରେ କହିବ ନାହିଁ ।

୨ୟ ସଖୀ – ଆଲୋ ! ଲକ୍ଷ୍ମଣକୁମରଠାରୁ ଆଉ ଗୋଟିଏ ସୁନ୍ଦର ବର ଜେମା ମନୋନୀତ କରିଛନ୍ତି । ରୂପରେ ଯେପରି ଗୁଣରେ ମଧ୍ୟ ତତୋଧିକ ।

୩ୟ ସଖୀ – ତେବେ ଏ ଯେ ନବକ ହୋଇଗଲା ।

୨ୟ ସଖୀ – ବେଘା ଉପରୁ ବର ତ ଉଠି ଯାଉଛି । ଏ ଏବେ ଲମ୍ବା କଥା । ଏ ସମ୍ବନ୍ଧରେ ବଡ଼ କଥା ପଶ୍ଚାତ ଘଟିବ । ଆ, ତେଣେ ଆମକୁ ଖୋଜୁଥିବେ । (ଉଭୟଙ୍କ ପ୍ରସ୍ଥାନ)

---

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

ଘଟୋତ୍କଚର ପ୍ରମୋଦୋଦ୍ୟାନ

(କେତେଗୁଡ଼ିଏ ନର୍ତ୍ତକ ନର୍ତ୍ତକୀ ମାଦଳ ବଜାଇ ନାଚୁଥିଲେ)

ଗୀତ

ଚଇତ ରାତି ସଞ୍ଜ ଗୋହାନ୍ତ
ସିଲିସିଲିଆ ବାଆ ।
ଚଞ୍ଚଳ ମନ ଭରା ଯୌବନ
ଝଲ୍‌ସାଇ ଦିଏ ଦୁଆ । ଘୋ ।
କୋଇଲି ଡାକେ ବନେ ସୁର ଝଙ୍କାର ପଞ୍ଚମତାନେ
ଶରଣ ପ୍ରାଣେ ଉଠାଏ ଆଣେ ।
ମଦନ ବାଣେ ମରେ ମରମେ,
ଖୋଜ ନ ପାଏ ଘଡ଼ା । ୧ ।
ମଲ୍ଲୀ ବକୁଳ ମାଳେ ଗଭା ସଜାଇ ଭଲେ
ତା ପରେ କେତକୀ ଗନ୍ଧ,
ସୁର ଲହରୀ ଉଠେ କ ସୁନ୍ଦର ବାଃ ବାଃ ।
ଆସ ମହୁଆ ପିଇ, ଗୀତ ଝୁମର ଗାଇ,
ଘଡ଼ା ଖେମଟା ନାଚ,
ଧଣିବ ଜନ ତା ସାଥେ ମାଦଳ ବା । ୨ ।

ଘଟୋତ୍କଚ—(ଗୀତାନ୍ତେ ତାର ସଙ୍ଗୀଙ୍କୁ କହିଲା) ଗାଅ, ନାଚ, ସ୍ଫୂର୍ତ୍ତିକର । ମହୁଆ ଖାଇ, ବେହୋସ ହୋଇଯାଅ, ଖୁବ୍ ନାଚ, ଯୋରସେ ନାଚ ।

ଅଙ୍ଗଦ—ଗାଅ, ଗାଅ ! ଏକ ମରଦକୁ ଏକ ମାଇ ପିଲା, କେମିତି ମଜା ଲଗା କରୁଛି ଖୁବ୍ ନାଚ ।

*ଅନୁଚର – (ପ୍ରବେଶ କରିଲା) ମା, ଆସୁଛନ୍ତି ।*

ଘଟୋତ୍କଚ – ମା, ! ଏଠାକୁ କାହିଁକି ? କଣ ଏପରି ଘଟିଛି କି ?

( ହିଡ଼ିମ୍ବିକା ପ୍ରବେଶ )

ଘଟୋତ୍କଚ—ମା ! କୁଆଡ଼େ ଆସିଲୁ ? ମୋତେ ଡକାଇ ଥିଲେ ତ ଯାଇଥାନ୍ତି । ତୋର ମନ ଚଞ୍ଚଳ ଚଞ୍ଚଳ, ଆଉ ଆରକ୍ତ ନୟନ କେଶ ବସନ ଅସମ୍ଭାଳ, କଣ କିଛି ବିପଦ ଉପୁଜିଛି ?

ହିଡ଼ିମ୍ବିକା – କ୍ଷୁଧା ! କ୍ଷୁଧା !!

ଘଟୋତ୍କଚ—କଅଣ ମୋର ଅଭାବ ଅଛି ଯେ ତୋର କ୍ଷୁଧା ମେଣ୍ଟାଇ ପାରୁନାହୁଁ । ଏ ସାରା ଜଙ୍ଗଲଟାରେ ମୁଁ ଏକଚ୍ଛତ୍ର ଦଣ୍ଡଧର । ମିଷ୍ଟାନ୍ନ, ବରାହ, ସମ୍ବର, ଯାହା ଚାହୁଁ, ତାହା ମୁହୂର୍ତ୍ତକେ ଲକ୍ଷ ପ୍ରମାଣେ ତୋ ନିକଟରେ ପହଞ୍ଚାଇ ଦେଇପାରେ ।

ହିଡ଼ିମ୍ବିକା—ସେଥିରେ ତୃପ୍ତି ନାହିଁ, ସେଥିରେ ଶାନ୍ତି ନାହିଁ ।

ଘଟୋତ୍କଚ---ଆଉ କେଉଁଥିରେ ଶାନ୍ତି ତୋର ମା' ? ସାଧାରଣତ ନ ଥିଲେ ନିଶ୍ଚୟ ଯୋଗାଇ ଦେଇ ପାରିବ ।

ହିଡ଼ିମ୍ବିକା—ମୁଁ ଚାହେଁ ନର ମାଂସ, ନର ରକ୍ତ, ନର ମାଂସ ।

ଘଟୋତ୍କଚ - ମା ! ତୁ ନର ମାଂସ ଖାଇବୁ ନିଷେଧ କରିଥିଲୁ, ପୁଣି ଏ କି ଅଭିରୁଚିନ, ନା ପରୀକ୍ଷା ?

ହିଡ଼ିମ୍ବିକା - ନା ! ଶୋଷା ବୁଢ଼େ । ସ୍ୱର୍ଣ୍ଣପୁରର ବିଶ୍ୱାସଘାତକ ନର ମୋର ଆହାର୍ଯ୍ୟ ବସ୍ତୁ, ପାରୁତ ଶୀଘ୍ର ଆଣି ମୋର କ୍ଷୁଧା ମେଣ୍ଟାଣ କର ।

ଘଟୋତ୍କଚ—ଯେପରି କହିବୁ ତରେ ଯୋଗାଇ ଦେବି ମା ?

ହିଡ଼ିମ୍ବିକ—ସାଧାରଣ ନର ମାଂସ ମୁଁ ଖାଏନା ! କେବଳ ବୀର ରକ୍ତ, ବୀର ମାଂସ ।

ଘଟୋତ୍କଚ—ତା ମୁଁ ଆଣି ପାରିବି ନା ?

ହିଡ଼ିମ୍ବିକ—ନ ପାରିଲେ ଧିକ୍ ତୋତେ, ଧିକ୍ ତୋର ମହାବୀର ଔରଷରେ ଜନ୍ମ ।

ଘଟୋତ୍କଚ—ମୁଁ ମହାବୀରର ପୁତ୍ର ? ମୋର ପିତାଙ୍କ ନାମ କଅଣ ? ସେ ବର୍ତ୍ତମାନ କେଉଁଠି ?

ହିଡ଼ିମ୍ବିକ—ଦ୍ୱିତୀୟ ପାଣ୍ଡବ ! ମହାପରାକ୍ରମଶାଳୀ ଭୀମ ତୋର ପିତା । ସେ ବର୍ତ୍ତମାନ ବାରୁଣୀରେ !

ଘଟୋତ୍କଚ—ସେ ଏଠାକୁ ଆସୁନାହାନ୍ତି କାହିଁକି ? ମୁଁ ତ ତାଙ୍କୁ କେବେହେଲେ ଦେଖିନାହିଁ । କହ ମା ! ସେ କଣ ଆମ୍ଭମାନଙ୍କୁ ମନରୁ ପାସୋରି ଦେଇଛନ୍ତି ।

ହିଡ଼ିମ୍ବିକ—ସେଥିଲାଗି କହୁଛି ମହାବୀର ସ୍ୱାର୍ଥପର ମନୁଷ୍ୟ ରକ୍ତ ମାଂସରେ ମାର କ୍ଷୁଧା ମେଣ୍ଟାଇବି ।

ଘଟୋତ୍କଚ—ମା ! ସେ ବୋଧହୁଏ ଭୁଲି ଯାଇଛନ୍ତି ! ମୋତେ ଆଦେଶ ଦେ ମା, ମୁଁ ତାଙ୍କୁ ସାକ୍ଷାତ କରି ତାଙ୍କୁ ଏ ସ୍ଥାନକୁ ଘେନି ଆସିବି ।

ହିଡ଼ିମ୍ବିକ—ଯଦି ତୋତେ ସେ ଚିହ୍ନି ଅପମାନିତ କରନ୍ତି ?

ଘଟୋତ୍କଚ—ତେବେ ତାଙ୍କର ସମ୍ମୁଖରେ ଆତ୍ମହତ୍ୟା କରିବି ।

ହିଡ଼ିମ୍ବିକ—ତହିଁରେ ଲାଭ କଅଣ ବାପ ! ବରଂ ମୋତେ ପ୍ରସନ୍ନା କରି ଅକ୍ଷୟ ସ୍ୱର୍ଗ ଲାଭ କରିବୁ । ତା ନୁହେଁ, ତୁ ମହାବୀରର ସନ୍ତାନ । ତୋତେ ସବୁ ଶାସ୍ତ୍ରରେ ଶିକ୍ଷିତ କରାଇଅଛି । ବିଶ୍ୱର ମଧ୍ୟରେ ଏପରି କେହି ନାହିଁ ଯେ କି ତୋତେ ସମରରେ ହରାଇପାରିବ । ଯା, ଅମର ଏହି ରାଜ୍ୟର ଚତୁର୍ଦ୍ଦିଗରେ ଅନୁସନ୍ଧାନ କର, ଦେଖ କେଉଁଠି କେଉଁ ନୃପତି ଅମର ଲୀଳାଭୂମିରେ ବିଚରଣ କରୁଛି ।

ଘଟୋତ୍କଚ—ତେବେ ଯିବି ମା ! କ୍ଷତ୍ରିୟ ସନ୍ତାନ, ମୁଁ ଯୁଦ୍ଧ ଖୋଜେ ।

ହିଡ଼ିମ୍ବିକ—ହଁ, ମନେରଖ ପୁତ୍ର ! ଆଶ୍ରୟ ପ୍ରାର୍ଥୀକୁ ଆଶ୍ରୟ ଦେବୁ, କ୍ଷମାନୁସରଣ କଲେ କ୍ଷମା ଦେବୁ । ବିପଦଗ୍ରସ୍ତ ଲୋକକୁ ଉଦ୍ଧାର କରିବୁ । ଶତ୍ରୁକୁ ପରାଜିତ କରିବୁ, ଖଳ, ଭୋଜନ କରିବୁ । ଖଲେ, ମୁଁ ଶୁଣିଛି ତୋର ପିତା ବର୍ତ୍ତମାନ କୁନ୍ତଙ୍କ ତାଡ଼ନାରେ ବ୍ୟତିବ୍ୟସ୍ତ । ଏପରି ଦିନ ଆସିବ, ଯେବେ ତୋର ପିତା ତୋତେ ଲୋଡ଼ି ଆସିବେ, ବେଶି ବିଳମ୍ବ ନାହିଁ ଯେ ଆ ।

( ସମସ୍ତେ ପ୍ରସ୍ଥାନ )

—*—

## ଦ୍ୱିତୀୟ ଦୃଶ୍ୟ

### ଶଶୀରେଖାର କକ୍ଷ

( ଶଶୀରେଖା ଗୋଟିଏ ମଲ୍ଲୀକୁ ଧରି ଗୀତଟିଏ ଗାଇ ଗାଇ ପ୍ରବେଶ )

ଗୀତ

ଏହା ଥିଲା ମୋ କପାଳେ, ପ୍ରିୟ ସଖି,
ଆଶା ମରୀଚିକା ଦେଖି ଗୋଡ଼ି ମୁଁ ମରେ ଆକୁଳେ । ପଦ ।
ସେ ଚନ୍ଦ୍ର ମୁଁ ଚକୋରୀ ମାତ୍ର,
ଲୋକେ ପତାଇଲେ ହାତ,
ସରଗ ସୁମନ, ତୋଳିବାକୁ ମନ,
ଲାଳସା ବଢ଼ାଇ ମଲି ହେଳେ । ୧ ।
ଜନ୍ମଦାତା ପିତା ମୋ ଭଗାରି,
ତା ସଙ୍ଗେ ଯିବି ମୁଁ ବାଦକରି,
ଭକ୍ଷିବି ଜହର, ଶେଷ ପ୍ରତିକାର,
ଯାଉ ଏ ଜୀବନେ ନାହିଁ ଭଲେ । ୨ ।

ମରଣ ମୋର ଶ୍ରେୟସ୍କର । ସଖି ! ଜହର ଟିକେ ଆଣି ଦିଅ, ମୋ ଜୀବନର ଅତୃପ୍ତ ପିପାସା ମେଣ୍ଟାଇ ଦେବ । ଏ ଜଗତରେ ମୋର ଦୁଃଖ ଶୁଣିବା ବାଲା କେହି ନାହାନ୍ତି । ପିତାଙ୍କ ଅଜ୍ଞାତ ସାରରେ ମୁଁ ଯାହାକୁ ଜୀବନ ସମର୍ପି ଦେଇଥିଲି ତାଙ୍କୁ ପାଇବା ଦୁର୍ଲଭ ହେଲାଣି । ପିତା ମୋତେ ଅନ୍ୟ ଯୁବକ ହସ୍ତରେ ଅର୍ପଣ କରିବେ । ମା ପିତାଙ୍କ ମତରେ ବଶମ୍ବଦା ହେଲେ ସୁଖୀ ତାଙ୍କର

ପିତାଙ୍କ ଆଦେଶ ଲଙ୍ଘନ କରିବା ସାଧ୍ୟ ନାହିଁ । ଆଉ କଏ ମୋର ଏ ଅନ୍ତରର ଉତ୍କଣ୍ଠା ବୁଝିବ ? ଚମ୍ପା ! କ'ଣ ପାଇ ସେଣେ ଉଦ୍ବିଗ୍ନ ? ବୋଧ-ହୁଏ କଥା ମୋର ଦୁଃଖକୁ କର୍ଣ୍ଣପାତ କଲେ ନାହିଁ ? ସେତ କେବେ ହେଲେ ଭ୍ରାତୃ ଆଦେଶ ଲଙ୍ଘନ କରନ୍ତି ନାହିଁ ? ତାହା ଭଳି ଆସିବାକୁ ଅନିଚ୍ଛୁକ ହୋଇଥିବେ ।

ଭଦ୍ରା—ନ ଆସିବାର ହୋଇଥିଲେ ତ ଚମ୍ପା ଫେରି ଆସନ୍ତାଣି । ତେମେ ଦୁଃଖ କରନା । ସେ ନିଶ୍ଚୟ ଆସିବେ । ତାଙ୍କର ସମସ୍ତ ପୁତ୍ର କନ୍ୟାଙ୍କ ଅପେକ୍ଷା ତୁମଠାରେ ଅଧିକ ସ୍ନେହ । ଗତ୍ୟ ଛଡ଼ା ପଥ ନାହିଁ । (ନେପଥ୍ୟକୁ ଚାହିଁ) ଏଇତ ସାନ ମଣିମା ଆସିଲେଣି । ( ଶ୍ରୀକୃଷ୍ଣଙ୍କ ଆସିବା ଦେଖି ଶଶୀ-ରେଖା ଅଧୀର ହୋଇ କାନ୍ଦିବା )

ଶ୍ରୀକୃଷ୍ଣ—( ପ୍ରବେଶି ଶଶୀରେଖାକୁ କୋଳକୁ ନେଇ ) ମା ! ଯେତେ ଦିନ ଆମ୍ଭମାନଙ୍କ ପାଖରେ ଥିଲୁ, ସେ ସମସ୍ତ ଗଡ଼ିଯାଇଛି । ପର ବୋଇଁ, ଦିନେ ପର ଘରକୁ ଯିବାକୁ ହେବ । ସେଥିଲାଗି ଦୁଃଖ କାହିଁକି ? ମା ! ଆମ୍ଭମାନଙ୍କୁ ଯେଉଁ ଭକ୍ତି ଓ ସ୍ନେହଦୃଷ୍ଟିରେ ଦେଖୁଥିଲୁ, ଏଣିକି ତୋ'ର ଶାଶୂ ଶ୍ୱଶୁରଙ୍କୁ ସେହି ଭକ୍ତି ସେହି ସ୍ନେହ ଦୃଷ୍ଟିରେ ଦେଖିବୁ । ଗୁରୁଜନ-ମାନଙ୍କୁ ମାନ୍ୟ, ଶାଶୂ ଶ୍ୱଶୁରଙ୍କ ସେବା ନିତ୍ୟବ୍ରତ ବୋଲି ଜାଣିବୁ । ହିତ ହେଉ ବା ଅହିତ ହେଉ ସେମାନେ ଯାହା କହିବେ ତା ମୁଣ୍ଡପାତି ସହିବୁ । ନିଜ ବଂଶର ଗୌରବ, ଆତ୍ମଗରିମା କେବେ ହେଲେ ସେମାନଙ୍କ ନିକଟରେ ପ୍ରକାଶ କରିବୁ ନାହିଁ । ( ଶଶୀରେଖା ବେଶି ବେଶି କାନ୍ଦିଲା ) ଏ କଣ ମା ! ଏତେ ଅଧୈର୍ଯ୍ୟ ହେଉଛୁ କାହିଁକି ? ଭଦ୍ରା ! ତାକୁ ବୁଝାଅ, ତାକୁ ସାନ୍ତ୍ୱନା ଦିଅ ।

ଭଦ୍ରା—ଆମେ ତ ବୁଝାଇ ହେଲୁ ଥକିଗଲୁଣି, ଖିଆ ନାହିଁ, ପିଆ ନାହିଁ । ଯେଉଁଠି ବସିଲେ ସେଠି । ଲୁହ ଧାରରେ ବସୁଧା ଭିଜାଇ ଦେଉଛନ୍ତି । ବିଭା ହୋଇଗଲେ ସ୍ତ୍ରୀମାନେ ଦୁଃଖ କରନ୍ତି । କିନ୍ତୁ ଏପରି ତ ନୁହେଁ । ଆମ୍ଭେମାନେ ଅନୁମାନ କରୁଛୁ ତୁମଙ୍କର ମତଲବ ଅନ୍ୟ କିଛି ଅଛି ।

ଶ୍ରୀକୃଷ୍ଣ—ଅନ୍ୟ ମତଲବ କଣ ?

( ଏ ସମୟେ ଦୂରରୁ ଗୀତ ଶୁଭିଲା )

ଅନ୍ତର୍ଯ୍ୟାମୀ ବୋଲି ନାମ ତ ବହିଛ
କଏ ବା ନ ଜାଣେ ଭବେ
ଘର କଥା ବୋଲି ଘୋଡ଼ାଇ ଦେଲେଟି
ଲୁଚିବଟି କେବେ କେବେ
ଜଗବନ୍ଧୁ ଜଗତ ନାଥ,
ଜାଣି ଅଜଣା ହେଉଛ ମାତ୍ର ।

ଶ୍ରୀକୃଷ୍ଣ—ଏ ତ ଦେବର୍ଷିଙ୍କ କଣ୍ଠସ୍ୱର । ( ଦାସମାନଙ୍କ ପ୍ରତି ) ଯାଅ ତାଙ୍କୁ ପାଛୋଟି ଆଣ ।

ଗୀତ

ଲକ୍ଷ ଯୋଜନରେ ଗଜ ଡାକଦେଲା
ତା ଡାକ ଶୁଣିଲ କର୍ଣ୍ଣେ
ବନସ୍ତେ ମୃଗୁଣୀ ହୁଙ୍କାର କଥାଟି
ପଡ଼ୁନାହିଁ ପ୍ରଭୁ ମନେ
କୃପାସିନ୍ଧୁ ମିଛେ ତ ନାମ,
ନାମ କହୁଛ ଆରତତ୍ରାଣ ।

( ନାରଦଙ୍କ ପ୍ରବେଶ )

ଶ୍ରୀକୃଷ୍ଣ—ନଉ, ଆସନ୍ତୁ ! କାହା ଆଶାରେ ଏତେ ବ୍ୟତିବ୍ୟସ୍ତ ହୋଇ ପଡ଼ିଛନ୍ତି ?

ନାରଦ—ଜଗତଟାଯାକ ଲୋକ ତ ଏ କଟିଆ ପଛରେ ଧାଇଁଛନ୍ତି । କାହା କଥା ଏବେ କେତେବେଳେ ବୁଝିବି !

ଶ୍ରୀକୃଷ୍ଣ—କେଉଁ ପ୍ରକାରେ ଧାଇଁଛନ୍ତି ?

ନାରଦ—କାହାର ବସ୍ତ୍ର ଅଭାବ, କାହାର ଅନ୍ନ ଅଭାବ, କାହାର ପୁତ୍ର ଅଭାବ, କାହାର କନ୍ୟା ଅଭାବ, କାହାର ସ୍ତ୍ରୀ ଅଭାବ, କାହାର ପୁରୁଷ ଅଭାବ, ଏହିପରି ନାନା କଥାରେ ମୁଣ୍ଡଟା ଘୂରିଯାଉଛି ।

ଶ୍ରୀକୃଷ୍ଣ—ଆଚ୍ଛା, ସମସ୍ତଙ୍କର ଅଭାବ ପୂରଣ କରି ପାରୁଛ ?

ନାରଦ—ଯେତେଟା ପାରୁଛି ପୂରଉଛି । ଯେତେଟା ନ ପାରୁଛି, ଥାପଡ଼ା ଥାପଡ଼ି କରୁଛି ।

ଶ୍ରୀକୃଷ୍ଣ—ବସ୍ତ୍ର ଅଭାବ କାହାର ପୂରଣ କରିଛ ?

ନାରଦ—ଦ୍ରୌପଦୀ ।

ଶ୍ରୀକୃଷ୍ଣ—ଅନ୍ନ ?

ନାରଦ—ସୁଦାମା ।

ଶ୍ରୀକୃଷ୍ଣ—ପୁଣ ?

ନାରଦ—ଶାନ୍ତିପନ ମୁନି ।

ଶ୍ରୀକୃଷ୍ଣ—ଏ ସବୁ ତୁମେ ମୂରଣ କରୁଛ ?

ନାରଦ—କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ । କରି ନ ଥିଲେ ତ କରାଇଥିବୁ ।

ଶ୍ରୀକୃଷ୍ଣ—ହଉ; ଥାଉ ଥାଉ ତମ ବାହାଦୁରି । ମୁଁ ଶଶୀରେଖାକୁ ବୁଝାଉଥିଲି ସ୍ଵାମୀ ଗୃହରେ କିପରି ଚଳିବୁ । କିପରି ସେମାନଙ୍କର ସ୍ନେହର ପାତ୍ରୀ ହେବୁ ।

ନାରଦ - ହିଁ, ହିଁ, ସେସବୁ କଥା ବୁଝାଇ ନ ଦେଲେ ଅପବାଦବୁଡ଼ାକ ସବୁ ସମୃଦ୍ଧ ସମ୍ବନ୍ଧୁଣୀଙ୍କ ଉପରେ ଅଜାଡ଼ି ଦେବେ । ପୁଣି ମାନ ମର୍ଯ୍ୟାଦା ଉପରେ ବାଧ ଘଟିବ । ମା ! ବାବାଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ମାନିବାକୁ ହେବ । (ଶଶୀରେଖା କାନ୍ଦି ଉଠିଲା) ମା ! ଏତେ ଅଧୈର୍ଯ୍ୟ କାହିଁକି ? ସାନ ବାପା, ବଡ଼ ବାପାଙ୍କ ଯୋଗାଡ଼ କୌଣସି କଥାରେ ତ ଊଣା ହୋଇ ନାହିଁ !

ଶ୍ରୀକୃଷ୍ଣ—ମୁଁ ତାକୁ ଅନେକବେଳୁଁ ଏ ସବୁକଥା ବୁଝାଇଲଣି, କିନ୍ତୁ ସେ ବେଳକୁ ବେଳ ବେଶି ଅଧୈର୍ଯ୍ୟ ହେଉଛି । ମୁଁ ତ କିଛି ଅନୁମାନ କରି ପାରୁନାହିଁ ।

ନାରଦ—ହିଁ, କିପରି ଅନୁମାନ କରିବେ ? ଦୂରରେ କିଏ କେଉଁଠି ଡାକଦେଲା ବାପା ସେ ବେଳକୁ କାଗଜଅର । ଏ ତ ଘର କଥା; ତେଣୁ ଶୋଇଥିବ ପିଏ, ତାକୁ ଉଠାଇବ କିଏ ?

ଶ୍ରୀକୃଷ୍ଣ—କଣ, କଣ କଣ ? ଦେବର୍ଷେ ! ମୁଁ ତ କିଛି ଅନୁମାନ କରି ପାରୁନାହିଁ । ତୁମେ କିଛି ଶଶୀ-ରେଖାର ମତଲବ ଜାଣ ? ନିର୍ବାଚିତ ରାଜକୁମାର ଲକ୍ଷ୍ମଣ କୁମର ତ କୌଣସି ବିଷୟରେ ଊଣା ନୁହେ ।

ନାରଦ ମହାମାନ୍ୟ ଦୁର୍ଯ୍ୟୋଧନ କୌଣସି ବିଷୟରେ ଊଣା ଥିଲେ କି ? କାହିଁକି ତାଙ୍କୁ—

ଶ୍ରୀକୃଷ୍ଣ—ଜାଣିଣ ତାଙ୍କୁ !

ନାରଦ—ମାନଗୋବିନ୍ଦଙ୍କୁ ସୁଭଦ୍ରା ବିବାହ ଦେବାକୁ ନାରାଜ ହେଲେ ।

ଶ୍ରୀକୃଷ୍ଣ—ମୁଁ ଭଲକରି ଜାଣିଥିଲି ଯେ ସୁଭଦ୍ରା ଅର୍ଜୁନଙ୍କୁ ଆଗରୁ ମନେ ମନେ ପତିରୂପରେ ବରଣ କରିଥିଲା ।

ନାରଦ - ଆପଣ ନ ଜାଣିଥିଲେ ଆମେ ତ ଜାଣୁ, ଶଶୀ ମା ଆମର ଆଗରୁ ଏକ ଯୋଗ୍ୟବାନ ପାତ୍ର ମନେ ମନେ ବରଣ କରି ନେଇଛି ।

ଶ୍ରୀକୃଷ୍ଣ—କେଉଁଠାରେ ? କାହାକୁ ତୁମେ ଜାଣ ? ଆଗରୁ ଏ କଥା ପ୍ରକାଶ କରିଥିଲେ ତ ଖୁବ୍ ଭଲ ହୋଇଥାନ୍ତା । ବର୍ତ୍ତମାନକୁ··· ।

ନାରଦ—ବର୍ତ୍ତମାନକୁ ବଳାଇ ଯାଉଛି କି'ଣ ? ଆଗରୁ କଥାଟି ପ୍ରକାଶ କରାଇ ଦେଇଥିଲି; କିନ୍ତୁ ସେ ମୋ କଥାକୁ କର୍ଣ୍ଣପାତ କଲେ ନାହିଁ, ବରଂ ଅପମାନିତ କରାଇଲେ ।

ଶ୍ରୀକୃଷ୍ଣ—ତୁମକୁ !

ନାରଦ—ମୋତେ ନ ହେଲା ଆପଣଙ୍କୁ । ଆପଣ ଯେ ସୁଭଦ୍ରା ହରଣର ମୂଳଗ୍ରନ୍ଥି ।

ଶ୍ରୀକୃଷ୍ଣ—ଶଶୀରେଖାର ବର ହେବାକୁ କାହାକୁ ନିର୍ବାଚିତ କରିଥିଲି ?

ନାରଦ - ନିର୍ବାଚିତ କରିଥିଲ, କରିଛ, କରିବ । ଆମେ ଜାଣିଛୁ କାଲି କୁରୁକୁଳ ପାଣ୍ଡବମାନଙ୍କ ଧ୍ୱଂସ ଯଜ୍ଞରେ ଦ୍ୱିତାହୁତ ହେବେ । ପୁଣି ଏଥିରେ ଯଜ୍ଞର ହୋତା ନିଜେ ଯଦୁପତି । ଏ କଥା ଆମେ ଜାଣୁ ଜାଣୁ କନ୍ୟାଟିକୁ ବୁଡ଼ାଇ ମାରିବୁ ? ବରଂ ମା ଆମର ବ୍ରହ୍ମଚାରିଣୀ ହୋଇ ରହିବ ।

ଶ୍ରୀକୃଷ୍ଣ ଅଜ୍ଞା, ତୁମେ କାହାକୁ ଦେବାକୁ ସ୍ଥିର କରିଛ ?

ନାରଦ—ଅଭିମନ୍ୟୁ ।

ଶ୍ରୀକୃଷ୍ଣ—ଭାଇ ଯେତେବେଳେ ସମ୍ମତି ପ୍ରଦାନ କଲେ ନାହିଁ, ତାଙ୍କର ଇଚ୍ଛା ସେ ଲକ୍ଷ୍ମଣକୁମରକୁ ବିବାହ ଦେଇ ସୁଖୀ ହେବେ । ଏଥିରେ ମୋର ମତ ବିରୋଧ ହେବା ଅନ୍ୟାୟ ଓ ଅନର୍ଥର ମୂଳ କାରଣ ।

ନାରଦ—ଅନର୍ଥ ନ ହେଲେ ଅର୍ଥ ବା ମିଳବ କେଉଁଠୁ ?

ଶ୍ରୀକୃଷ୍ଣ – ଶଶୀରେଖା ମୋର ପ୍ରାଣଠୁ ଅଧିକ, ଏ କଥା ସତ୍ୟ । ତୁମର ନିର୍ବାଚିତ ଶଶୀରେଖାର ବର ଅବଶ୍ୟ ଯୁକ୍ତ ଯୁକ୍ତ ସତ୍ୟ । ତଥାପି ମୁଁ ଭ୍ରାତୃ ଆଜ୍ଞା ଲଙ୍ଘନ କରି ପାରିବ ନାହିଁ । କିମ୍ବା ଭ୍ରାତୃ-ବିବାଦ ଘଟାଇବ ନାହିଁ ।

ନାରଦ – ଆପଣ ନିରପେକ୍ଷ ରହିଲେ ହେଲା । ଆମ କାର୍ଯ୍ୟ ଆମେ କରିପାରିବୁ ନା, ଆମେ କଣ କାହାକୁ ଅପେକ୍ଷା ରଖି କାର୍ଯ୍ୟ କରିଛୁ ?

ଶ୍ରୀକୃଷ୍ଣ – କିପରି ଏହା ସମ୍ଭବ ପାରେ ?

ନାରଦ—ରୁକ୍ମିଣୀ ଦେବୀ ତ ଜ୍ୱଳନ୍ତ ଉଦାହରଣ ।

ଶ୍ରୀକୃଷ୍ଣ – ଅପରିମିତ କୁଟୁମ୍ବଙ୍କ ନିକଟରେ ତୁମେ ଜୟଯୁକ୍ତ ହୋଇ ପାରିବ ତ ?

ନାରଦ ଗାନ୍ଧ ବା ନ ପାନ୍ଥ ମୁଣ୍ଡ ପତାଇବୁ । କାଟରେ ସ୍ୱଅଜନ୍ମ କରି ଆଉ ଡାହାଣୀକି ଭୟ ! ଖାଲି ବାପାଙ୍କ ରଖିଲେ ଅନୁଦୃଷ୍ଟି ପଡ଼ିଥିଲେ ହେଲା ।

ଶ୍ରୀକୃଷ୍ଣ – ମୁଁ ଆସୁଛି ଦେବର୍ଷେ ! ଶଶୀରେଖାକୁ ବୁଝାଇ ଦିଅ । ସ୍ୱେଚ୍ଛାଚାରୀ ପଥ ନାହିଁ ।

ନାରଦ—ଆମେ ବୁଝାଇ ଦେଉଛୁ ନା । ଖାଲି ବାପାଙ୍କ ସାମନାସାମିରେ କଥାଟା ପଡ଼ିଗଲା । ଏଣିକି ଜଟିଆ ବାବାଜି ଗୁଡ଼ ବୁଣ୍ଡେ ମେଟ । ଚାଲନ୍ତୁ ଚାଲନ୍ତୁ, ( ଶ୍ରୀକୃଷ୍ଣଙ୍କୁ କିଛି ଦୂର ବଳାଇ ଦେଇ ଫେରି ଆସି) ଶଶୀ ମା, ତୁ ନିଶ୍ଚିନ୍ତ ଥା । ଆମ ଯୋଗାଡ଼ରେ ଆମେ ଠିକ୍ ଅଛୁ । ଏଣିକି ଆଉ ମୁହାଁମୁହିଁ ନାହିଁ । ଖାଲି ଚିଠିପତ୍ରକୁ ଅପେକ୍ଷା ରଖିଥିବୁ । (ପ୍ରସ୍ଥାନ)

ସଖୀମାନେ—ଭଲ କଥା କଣ ଖାଇବ । ତମର ଏ ଅବସ୍ଥା ଦେଖି ମା'ଙ୍କର ମଧ୍ୟ ନିଦ୍ରା ପିଆ ନାହିଁ ।
(ସମସ୍ତଙ୍କ ପ୍ରସ୍ଥାନ)

—*—

## ଚତୁର୍ଥ ଦୃଶ୍ୟ

### ପଥ

[ ଅଭିମନ୍ୟୁ ଭାବି ଭାବି ଚାଲିଥାଏ ]

ନେପଥ୍ୟ—ଗୀତ

ଯାହିଁ ଯାହିଁ ତେ: ସରଣୀ  ଷିନ୍ନ ହେଲା ସେ ତରୁଣୀ
ତୋର କିଆଁ ପଡ଼ିବ କି ମନେ ।
ଜୀବନ ଯୌବନ ତାର  ଅର୍ପିଲା ତୋର ପଯ୍ୟର
ତୋ ବିନା ସେ ବଞ୍ଚିବ କି ପ୍ରାଣେ ସେ ।
ଜବାଧରା, ଝୁରି ଝୁରି ହେଲା ହତ ଶିରୀ ।
ରଣ୍ଡେ ମୁଣ୍ଡେ ଦେଇ ପାଣି  ନେଇ ବୁହାଉଛି ପାଣି
ବୁଝେ କେ ତା ଅନ୍ତର ବେଦନା ।
ପାଇ ତ ର ଯୋଗ୍ୟ ସାଥି  ମିଳାଇବ ବୋଲି ଗ୍ରୀତ
ସହିଲାଣି ଅଶେଷ ଗଞ୍ଜଣା ସେ ।
ବୃନ୍ଦାବାସି ! ବସିଅଛି ତୋ ପଦକୁ ଆଶ୍ରି । (ପ୍ରସ୍ଥାନ)

ଅଭିମନ୍ୟୁ—ଏ ତ ତାରି ଦୁଃଖ ସବୁ କହିଗଲା । ମୁଁ ତ ତାକୁ କେବେହେଁ ମନରୁ ଭୁଲି ନାହିଁ । ଦେବର୍ଷେ ନର୍ତ୍ତକ ଦିନ ମୋତେ ଜଣାଇବାକୁ କହି ଯାଇଥିଲେ; ତାଙ୍କର କଣ ମନେ ନାହିଁ ? ମୋତେ ନିଶ୍ଚୟ ଯିବାକୁ ହେବ । ତାର ସନ୍ଧାନ ନେବାକୁ ହେବ । ସେ ଯେ ମୋ ପାଇଁ ପଥ ଚାହିଁ ବସିଛି । କିପରି ଭାବେ ସେଠାକୁ ଯିବି ? କୌଣସି ନିମନ୍ତ୍ରଣ ପାଇ ନାହିଁ । ହଁ ମାତୁଳାଳୟକୁ ଯିବାକୁ ନିମନ୍ତ୍ରଣର କି ଲୋଡ଼ା ? ଯିବି, ଆଜି ନିଶ୍ଚୟ ଯିବି ।

ସୁଭଦ୍ରା—( ପ୍ରବେଶି ) ବାପ ! ଏଇ କେତେ ଦିନ ହେଲା ତୋର ମନରେ କୌଣସି ଭାବନା ଖେଳିଲା ପରି ଜଣା ପଡ଼ୁଛି । ମୁଁ ତ କିଛି ବୁଝି ପାରୁନାହିଁ ? କେଉଁ କଥାକୁ ଉଦ୍‌ବେଗ ଜନ୍ମିଛି ?

ଅଭିମନ୍ୟୁ ମାତୁଳାଳୟକୁ ଯିବାକୁ ।

ସୁଭଦ୍ରା—କାହିଁକି ? ଉଦ୍ଦେଶ୍ୟ କ'ଣ ? ମୁଁ ଶୁଣିଛି ଶଶୀରେଖାର ବିବାହ ଉତ୍ସବରେ ଦ୍ୱାରକାବାସୀ ସମସ୍ତେ ଉତ୍ସାହିତ; କିନ୍ତୁ ଭାଇ ଆମ୍ଭଙ୍କୁ ସେ ଉତ୍ସାହରୁ ବଞ୍ଚିତ କରିଛନ୍ତି । ଆମ୍ଭଙ୍କୁ ସେଠାକୁ ଯିବାକୁ ନିମନ୍ତ୍ରଣ ନାହିଁ ।

ଅଭିମନ୍ୟୁ—ନିମନ୍ତ୍ରଣ ନ ଥିଲେ କି ଗଲେ କୌଣସି କ୍ଷତି ଅଛି ?

ସୁଭଦ୍ରା—କ୍ଷତି ଆଇପାରେ । ତା ନ ହେଲେ ସଚରାଚର ବ୍ରହ୍ମାଣ୍ଡର ରାଜା ମହାରାଜାମାନଙ୍କୁ ନିମନ୍ତ୍ରଣ କରା-ଯାଉଛି, କିନ୍ତୁ ଆମକୁ ନାହିଁ । ଏଥିରୁ ସ୍ପଷ୍ଟ ଅନୁମାନ ହେଉଛି, ଆମଦ୍ୱାରା କୌଣସି ଅନିଷ୍ଟ ଘଟିବାର ସମ୍ଭାବନା ବୋଲି, ଆମକୁ ସେଥିରୁ ଉହାଡ କରୁଛନ୍ତି । କୌରବ ଓ ପାଣ୍ଡବଙ୍କର ଚିରନ୍ତନ ଶତ୍ରୁତା । ସେ ଯେତେବେଳେ ମାନ-ଗୋବିନ୍ଦର ପୁତ୍ର ଲକ୍ଷ୍ମଣ କୁମରକୁ କନ୍ୟା ପ୍ରଦାନ କରୁଛନ୍ତି, ଆମେ ସେ ସ୍ଥାନରେ ଥିଲେ କୌଣସି ମତଭେଦ ବା ଗଣ୍ଡଗୋଳ ସୃଷ୍ଟି ହୋଇପାରେ, ତେଣୁ ଆମ୍ଭମାନଙ୍କୁ ବନ୍ଧୁ ଭାବରୁ କାଟି ଦେଇଛନ୍ତି ।

ଅଭିମନ୍ୟୁ—ମା ! ଏ ଅପମାନର ମୁଁ ପ୍ରତିଶୋଧ ନେବାକୁ ଚାହେଁ । ଶଶୀରେଖାର ମନୋଭାବ ଦେବର୍ଷିଙ୍କ ଦ୍ୱାରା ମୋ ନିକଟରେ ଜଣାଇଛି । ସେ ଲକ୍ଷଣ କୁମରକୁ ବିବାହ କରିବାକୁ ଚାହେଁ ନାହେଁ । ମୁଁ ଯଦି ତାକୁ ଉଦ୍ଧାର ନ କରେ, ତେବେ ଗୋଟିଏ ନାରୀହତ୍ୟା ପାପରେ ମୋତେ ଲିପ୍ତ ହେବାକୁ ପଡିବ ।

ସୁଭଦ୍ରା—ତୋ ବଡ ମାମୁ ଯେଉଁ ପ୍ରତାପୀ ତା ତ ତୁ ଜାଣୁ । ଏତେ ସ୍ଥଳେ ଗୋଟିଏ ସୁଦ୍ଧାନଳ ଜଳା-ଇବା ଉଚିତ ବୋଲି ମୁଁ ମନେ କରୁନାହିଁ । ବାପ ! ଅପ୍ରମିତ କୁରୁସେନାଙ୍କ ସମକ୍ଷରେ ତୁ ସାମାନ୍ୟ ବାଳକ ମାତ୍ର, ତୋର କି ଶକ୍ତି !

ଅଭିମନ୍ୟୁ—ମା ! ମୁଁ କ୍ଷତ୍ରିୟ ସନ୍ତାନ, ପୁଣି ଧନୁ-ର୍ଦ୍ଧରଶ୍ରେଷ୍ଠ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ ମୋର ପିତା । ସେହି ରକ୍ତ ପ୍ରବାହିତ ଏହି ଶିରା ପ୍ରଶିରାରେ । ତୁଚ୍ଛ କୌରବକୁ କି ଡରିବ ମୁଁ ଭୟ ? ବରଂ ପଦଧୂଳି ମାଗ ! ନିର୍ଭୟ ମୁଁ ଶଶୀରେଖା ଉଦ୍ଧାର କରିବି !

ସୁଭଦ୍ରା—ଏକାକୀ ମୁଁ ନ ପାରିବି ଛାଡି । ଯେବେ ଯିବୁ ନେଇ ସଙ୍ଗେ ମୋତେ, ଦୁଃଖିର ରତନ ମୋର ତାରି ପରଖ । ତୋ ବିହୁନେ ଶୂନ୍ୟ ମୋତେ ଦିଶିବ ଏ ସୃଷ୍ଟି ।

ଅଭିମନ୍ୟୁ—ଭଲ ତେବେ ମା ! ସର୍ବ ମଙ୍ଗଳଙ୍କୁ ଆମ୍ଭ ଜଣାଇ ଧର୍ମ୍ମେ, କରି ଯିବା ଶୁଭ ଅନୁକୂଳ

( ଉଭୟ ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ
## ପାର୍ଶ

( ନାଗରିକ ବ୍ରାହ୍ମଣ ଓ ଦୁଇଗୋଟି ଯୁବକ ବ୍ରାହ୍ମଣ ପ୍ରବେଶ )

୧ମ ଯୁବକ—ଆପଣ ଆପଣଙ୍କର କନ୍ୟାକୁ ଦେଖୁଛନ୍ତି ନା ଧନକୁ ଦେଖୁଛନ୍ତି ?

ବ୍ରାହ୍ମଣ—କନ୍ୟାକୁ ଯେତେଦିନ ଦେଖିବାର ଦେଖିଲୁ । ଏଣିକି ଧନ ଦେଖିବୁ । କନ୍ୟାକୁ ଦେଖିଲେ କଣ ପେଟ ପୂରିବ ? ନା, ଘରେ ରଖିଲେ ଘର ବଢ଼ିବ ? ଯେତେଦିନ ରଖିବାର ଥିଲା, ସେ ସମସ୍ତ ଶେଷ ହୋଇଯାଇଛି । ଏଣିକି ପରଘର ସମ୍ପତ୍ତି ପର ଘରକୁ ଯିବ ।

୨ୟ ଯୁବକ—ତା ଠିକ୍ ! କିନ୍ତୁ କନ୍ୟାର ବୟସ ଅନୁ-ପାତରେ ବରପାତ୍ରଟିଏ ନିର୍ଣ୍ଣୟ କରିବା ଦରକାର । ଆପଣ ଯାହା ସ୍ଥିର କରିଛନ୍ତି ଭବିଷ୍ୟତ ବଡ଼ ଦୁଃଖମୟ ।

ବ୍ରାହ୍ମଣ—ଆମେ କନ୍ୟାର ଭବିଷ୍ୟତ ଚିନ୍ତା କରିବୁ ନା ଆମର ଭବିଷ୍ୟତ ଚିନ୍ତା କରିବୁ ? ଆମର ଧନ ଯେଉଁଠି ହେଲା, ମନ ସେଇଠି ଗଲା ।

୧ମ ଯୁବକ—ଧନ ଲୋଭରେ ଝିଅକୁ ବୁଡ଼ାଇ ମାରିବ କିନା ? ଗୋଟିଏ ଚତୁର୍ଦ୍ଦଶ ବର୍ଷ ବୃଦ୍ଧକୁ ତେର ବର୍ଷର କନ୍ୟା । ନିତାନ୍ତ ଅସଙ୍ଗତ ପ୍ରଣୟ । ଏ ବିବାହରେ ଆମ୍ଭେମାନେ ସମ୍ପୂର୍ଣ୍ଣ ବିରୋଧୀ ।

ବ୍ରାହ୍ମଣ—ମୁଁ କନ୍ୟାର ଜନ୍ମଦାତା, ପାଳନକର୍ତ୍ତା । ତୁମ୍ଭେମାନେ କଣ ଜନ୍ମ ଦେବାରେ ଲାଗି ହୋଇଥିଲ ନା, ପାଳନ କରିବାରେ ଲାଗି ହୋଇଥିଲ ? ନାହିଁ, ନାହିଁ, ଧନ ମୋ ହାତରେ ଦେଖି ତୁମ ମନ ସମ୍ଭାଳି ହେଉନାହିଁ । ଖାପନଟା ମାରି ମୋ ଛାତିରେ ଲଗିଛି ।

୨ୟ ଯୁବକ—ଆଜ୍ଞା ! ଆପଣ ତାଠାରୁ ଯେତେ ଧନ ଆଣିବାର ଆଣନ୍ତୁ; କିନ୍ତୁ ବିବାହ ହେଲା ବେଳକୁ ଆମେ ତାର ବ୍ୟବସ୍ଥା କରିବୁ ।

ବ୍ରାହ୍ମଣ—ତୁମେ କିଣ କନ୍ୟାଟିଏ ହେବ ? ଜଣାଯାଏ ମୋ ଧନ ଦେଖି ତମ ପାଟିରୁ ଲାଳ ବୋହିଲାଣି, ତେଣୁ ମୋ ସଙ୍ଗରେ ଭାଗି ହେବାକୁ ବସିଛ ।

୧ମ ଯୁବକ—ଧନ ଆମର ଲୋଡ଼ା ନାହିଁ । ତୁମେ ଯେତେ ପାର ସେତେ ଧନ ତା ଠାରୁ ନେଇଆସ । ବିବାହ ଦେବା ଭାର ଆମ ଉପରେ । ଅଗାଧୁ ପଣ୍ଡିତ ପର ବଣ୍ଟିଦେଇ ବହୁତଧନ ଠୁଳକରିଛି । ଖାତକମାନଙ୍କ ମହାଜନୀ ବ୍ୟବସାୟ କରି କେତେ ଲୋକଙ୍କୁ ଗୃହଶୂନ୍ୟ କରିଛି । କେତେ ଲୋକଙ୍କୁ ଦାଣ୍ଡର ଭିକାରି କରି ଛାଡ଼ିଛି । ତାକୁ ଆମେ ଉଚିତ ଶିକ୍ଷା ଦେବୁ । ତୁମର କିଛି କ୍ଷତି ହେବ ନାହିଁ ।

ବ୍ରାହ୍ମଣ—ଧନ ଆଣିବାରେ କିଛି ବାଧା ପଡ଼ିବ ନାହିଁ ତ ?

୧ମ ଯୁବକ—ତୁମେ ଯେତେ ପାର ଧନ ବୋହିଆଣ । ଆମର ସେଥିରେ କିଛି ଯାଏ ଆସେ ନାହିଁ, କିନ୍ତୁ ବିବାହ ଲଗ୍ନ ପୂର୍ବରୁ ଆମକୁ ଜଣାଇବାକୁ ହେବ । ଆସ ! ଆଉ ଗୋଟିଏ ବିଷୟରେ ପରାମର୍ଶ କରିବାର ଅଛି ।

( ସମସ୍ତେ ପ୍ରସ୍ଥାନ, ସମସ୍ତେ ଅଗାଧୁ ପଣ୍ଡିତଙ୍କୁ ଦୂରରୁ ଦେଖି ଯୁବକମାନେ ଚାଲିଗଲେ )

ଅଗାଧୁ—ନମସ୍କାର । କଅଣ ଟୋକାମାନଙ୍କ କବ୍‌ଜାର ପଡ଼ିଥିଲ କି ?

ବ୍ରାହ୍ମଣ—ଏଇ ବାହାଘର ଖାଇବା ପିଇବା କଥା ଆଉ କଅଣ ?

ଅଗାଧୁ—ତେବେ ପିଲାମାନେ ଟିକିଏ ମାତିଗଲେଣି ?

ବ୍ରାହ୍ମଣ—କଳା ପଡ଼ିଲେ ସବୁ ଜବତ । ଆଗରୁ ଦୋଷୀ ହେଉଥିଲେ; କିନ୍ତୁ ଟଙ୍କା ଦଶଟା ପଡ଼ିବା ମାତ୍ରେ ଚୁପ୍‌ଚାପ୍ । ବର୍ତ୍ତମାନ ବିବାହ ଯୋଗାଡ଼ରେ ଦିନ ରାତି ପ୍ରସ୍ତୁତ ।

ଅଗାଧୁ—କିଛି ପରୁଆ ନାହିଁ, ଦର୍କାର ପଡ଼ିଲେ ଆହୁରି ଟଙ୍କା ଦିଆଯିବ ।

ବ୍ରାହ୍ମଣ—ମୋତେ ନଗଦ କିଛି ଟଙ୍କା ଦେବାକୁ ପଡ଼ିବ, କାରଣ ଲୁଗାପଟା ଗହଣା ଗଣ୍ଠି ସବୁତ ଆଗରୁ ସଜାଇ କରିବାକୁ ହେବ ।

ଅଗାଧୁ—ଚାଲ ! ମୋ ସଙ୍ଗରେ ଚାଲ, ଦେବି ବୋଲି ଜବାବ୍ କରିଛି, ଆଉ କଥା ଅଛି ନା । ଟିକେ ପାତ୍ରୀ ସଙ୍ଗରେ ସାକ୍ଷାତ କରାଇଦେବ ବୋଲି କହିଥିଲ ।

ବ୍ରାହ୍ମଣ—କହିଥିଲି ଯେ ବ୍ରାହ୍ମଣୀଟା ପରା ଟିକେ ଅବୁଝା ହେଉଛି । ମୁଁ ଧନ ପୂଜାଏ ତାକୁ ଧରାଇ ଦେଲେ ତେଣିକି ତୁମେ ଆମର ଜ୍ୱାଇଁ, ତୁମେ ଆମର ପୁଅ ।

ଅଗାଧୁ—ମୋତେ ସେ କଥା କହନା । ଚାଲ ଚାଲ, ଆଜ ତାର ବ୍ୟବସ୍ଥା କରିଦେଉଛି । ଆଉ ଟୋକାମାନେ କଣ କହୁଛନ୍ତି ?

ବ୍ରାହ୍ମଣ—କହୁଛନ୍ତି ପାଲିକିଚଢ଼ା ବାହାଘର ହେବ । ରୋଷଣି ବରାତ କରିବ ।

ଅଗାଧୁ—କିଛି ପରୁଆ ନାହିଁ, ଆସ ତମ ଟଙ୍କା କଥା ଆଗେ ବୁଝେଁ । (ଉଭୟ ପ୍ରସ୍ଥାନ)

—*—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

### ସଖୀଗଣ

(ମାୟାକାମିନୀମାନଙ୍କ ଗୀତ)

ଏହି ମାୟାର ପୁରୀ ମାୟା ଅଛିଟି ଘେରି
ମାୟା ପାଲୁ ଉବୁରି ଯିବ କେ ବର୍ତ୍ତି କରି
ମାୟା କୁହୁକ ବଳେ
ପ୍ରାଣୀ ନରହି ହେଳେ ।
ହେଲେ ନରଦେବତା ନାହିଁ ନସ୍ତାର କରି ।

ଅଭିମନ୍ୟୁ—(ଦ୍ରୁତ ବେଗରେ ଧନୁଶର ହସ୍ତେ ପ୍ରବେଶି) କି ଆଶ୍ଚର୍ଯ୍ୟ ବ୍ୟାପାର ! ମୁଁ କେଉଁଠାରେ ତା' ପଛେ ପଛେ ଧାଇଁଛି । ନିମିଷକ ମଧ୍ୟରେ ଗୋଟିଏ ମୃଗଶିଶୁ ପାଲଟିଗଲା । ମୁଁ ଯେଉଁ ମୃଗ ଶିଶୁଟିକୁ ଶରସନ୍ଧାନ କଲାମାତ୍ରେ ଗୋଟାଏ

ବୟୁଙ୍କର ଶାର୍ଦ୍ଦୂଳ ହୋଇ ମୋ ଆଡ଼କୁ ଧାଇଁ ଆସିଲା । ଧୁଣ ଦେଖେ ତ କେହୁ ନାହିଁ । ଏ କଣ ମୋର ମସ୍ତିଷ୍କର ବିକୃତ ? ଏତେ ବାଟ ଗ୍ଲଲ ଗ୍ଲଲ ଆସିବାଦ୍ୱାରା ଏପରି ଦେଖିବାକୁ ପାଉଛି ? ମା' ମା' ତୁମେ ମୋ ପଛେ ପଛେ ଆସୁଥିଲ, ଆସିବାରେ ଏତେ ବିଳମ୍ବ ହେଲା କାହିଁକି ? (ଅନ୍ୟ ଦିଗକୁ ଗ୍ଲହିଁ) ଏଁ ! କେତେ ବଡ଼ ଅଜଗର ସର୍ପଟାଏ ଏଣେ ମୋତେ ଧାଇଁଛି । (ବେଗସଞ୍ଚାର କରି କପିଲା) ଏଁ ! ଚୋଟାଏ କୁହେଁ ! ଏ ଯେ ସହସ୍ର ସହସ୍ର, ତା'ର ଜଙ୍ଗଲଟା ଉପରେ ହୋଇ ଗ୍ଲଲିଛନ୍ତି । ମୁଁ ଏତେବେଳେ କାହାକୁ କରିବ ? ଏଠାରୁ ପ୍ରାଣ ନେଇ ଚାଲିବା ବୁଦ୍ଧିର ପଡ଼ୁଛି । (ଦୂରରୁ ଅଟ୍ଟହାସ୍ୟ) ଏଁ, ଏ କଣ ହେ ! (ପୁନଶ୍ଚ ଅଟ୍ଟହାସ୍ୟ) ଅଟ୍ଟହାସ୍ୟ କରୁଛି । ଜଣାଗଲା କୌଣସି ରାକ୍ଷସର ଏ ଲୀଳାଭୂମି, ଆଜି ଏସବୁ ସେହି ଅସୁରର ଆସୁରିକ ମାୟା । ନଚେତ୍, କାନନର, ରାକ୍ଷସ ତୁ ସେ ତୁମ୍ଭ । ମୋର ବାଣରୁ ତୋର ନିସ୍ତାର ନାହିଁ । (ଶର ନିକ୍ଷେପ କଲେ ଓ ଦୂରରୁ ଅଟ୍ଟହାସ୍ୟ) ତେବେ ସୁଦ୍ଧା ସେହି ଅଟ୍ଟହାସ୍ୟ ? ମୂର୍ଖ ! କେଉଁଠି ଅଲକ୍ଷ୍ୟରେ ରହି ଅଟ୍ଟହାସ୍ୟ କରୁଛୁ ? ଥରେ ସମ୍ମୁଖକୁ ଆ, ତୋର ବୀରତ୍ୱ କେତେ ଦେଖିନେବି ।

ଘଟୋତ୍କଚ—(ପ୍ରବେଶି) ଏବର ସମ୍ମୁଖ ସମରେ କେବେ ହେଲେ ଜିଣିବୁ କାହାକୁ ? ଧନୁର୍ବେଦ୍ୟା କେଉଁଠି ଶିଖିଛୁ ବାବୁ ? ଛୁଆନାହିଁ ବାଳ ଚପଳତା, ତେଣେ ତୋର ଭୁଜଙ୍ଗ ନଳଟେ ଦେଖାଉଛୁ ସ୍ପର୍ଦ୍ଧା ?

ଅଭିମନ୍ୟୁ—ଜଣାଗଲା ରାକ୍ଷସ ତୁ ଏ ବନସ୍ଥଳରେ ମାୟାର ପ୍ରଭୁ କେତେ ଥିବୁ । ମୂର୍ଖ ! ମାୟାବଳେ ଅନେକଙ୍କୁ ପଳାଇ ଦେଇଛୁ; କିନ୍ତୁ ଆଜି ତା'ର ପ୍ରାୟଶ୍ଚିତ୍ତ ହେବ ମୋହର ହାତେ ।

ଘଟୋତ୍କଚ—ହାଃ-ହାଃ-ହାଃ, ଅପୂର୍ବ୍ବ ତୋ ମଦ ଗର୍ବ୍ବ । ଆହାର୍ଯ୍ୟ ପଦାର୍ଥ ହୋଇ ଭକ୍ଷକ ସମ୍ମୁଖେ ଦେଖାଉଛୁ ନିଜର ବଡ଼ପଣ । ଜଣାଗଲା; ମୃତ୍ୟୁ ତୋର ହୋଇଛି ଆସନ୍ନ । ଚୋଲୁଥିବାରେ ପଣ ମୋର ଲୀଳାଭୂମେ, ମୋହ ସଙ୍ଗେ କରିଲୁଣି ଯୁଦ୍ଧ ଅଭିଳାଷ ? ଆଚ୍ଛା ଦଅ ତୋର ଶକ୍ତି ପରିଚୟ । ଦୁଗ୍ଧପୋଷ୍ୟ ଶିଶୁ ବୋଲି ଜନ୍ମୁଥିଲି ମାୟା; କିନ୍ତୁ, ମଦଗର୍ବ୍ବ କ୍ଷୁଦ୍ରବୁଦ୍ଧି ନର, ଉପଯୁକ୍ତ ଶାସ୍ତି ଆଜି ଲଭିବୁ ମୋ କରେ ।

ଅଭିମନ୍ୟୁ—ରଖ ତୋର ବକ୍ତୃତା ପଣ, ସମ୍ଭାଳ ଏ ଧର୍ମ ବାଣ ମୋର । (ଉଭୟ ଧନୁର୍ଧର ଯୁଦ୍ଧ କରୁ କରୁ ପ୍ରସ୍ଥାନ)

( ନେପଥ୍ୟ ଗୀତ )

ଆରେ ଦୁର୍ଦ୍ଧର୍ଷ ଦୁର୍ଦ୍ଦାନ୍ତ ମହାବଳୀ ଯୁଦ୍ଧ
ଟାଣୁଆ ବାଣୁଆ ଦୁଇ ।
ଭାଇ ଭାଇ ମଧ୍ୟେ ତୁମୁଳ ସଂଗ୍ରାମ
ନାହିଁ ନ ଦେଖିଲି କାହିଁରେ ।
ଏ ତ ମଜାର ଯୁଦ୍ଧ, ସେନା ଧାଆନ୍ତି ନିଜ ଆୟୁଧ ।୧।
ଉଭୟ ପକ୍ଷରୁ ବାଣ ବରଷଣ
ପଡ଼ଏ ଶ୍ରାବଣ ଧାର
ମାତଙ୍ଗେ ମାତଙ୍ଗ ସମର ଲଗିଛି
କମ୍ପିଉଠେ ବସୁନ୍ଧରା ରେ ।
ଗିରି ଲତା ଗହନ, ଅସ୍ତ୍ରାଘାତେ ହୁଏ ଛିନ୍ନ ଭିନ୍ନ ।୨।

( ଅଭିମନ୍ୟୁ ଓ ଘଟୋତ୍କଚ ତରବାରୀ ଧରି
ଯୁଦ୍ଧ କରୁ କରୁ ପ୍ରବେଶ )

ଅଭିମନ୍ୟୁ—ରାକ୍ଷସ ! ନାହିଁ ଆଉ ନିସ୍ତାର ଏଥର । ଏ ମୁହୂର୍ତ୍ତେ ପଠାଇବି ଯମପୁର ତୋତେ । ଅନନ୍ତ କେ ସାଙ୍ଗ ସାଥି ତୋର, ଅନନ୍ତ ଯେବେ ବା କେହି ଆତ୍ମୀୟ ସ୍ୱଜନ, ମରିବା ପୂର୍ବରୁ ଡାକ ଥରେ ତାଙ୍କୁ ।

ଘଟୋତ୍କଚ—ଛୋଟମୁଖେ କହୁ ବଡ଼ କଥା, ଆସନ୍ନ ମରଣ ତୋର ହେଲଣିଟି ଯେଣୁ, ଏ ବୃଥା ପ୍ରଳାପ ଆସି ପଶୁଛି ମନରେ । ଯେବେ ପ୍ରାଣେ ଆଶା, କର ଆତ୍ମ ସମର୍ପଣ ।

ଅଭିମନ୍ୟୁ—ଯୋଦ୍ଧାପକ୍ଷେ ପ୍ରାଣ ଅଟେ ଅତି ମୂଲ୍ୟବାନ ।

ଘଟୋତ୍କଚ—ଆଚ୍ଛା, ଦେଖାଯିବ, କେତେ ଶକ୍ତି ଅଛି ତୋ ବାହୁରେ ।

(ଉଭୟେ ଯୁଦ୍ଧ କରୁ ପ୍ରସ୍ଥାନ)

ସୁଭଦ୍ରା—ଅଭିମନ୍ୟୁ ! ଅଭିମନ୍ୟୁ ! କେବେ ପଥ ଭୁଲିଗଲୁ ବାପ ! ଏ ଅରଣ୍ୟାଣି, ବନସ୍ତ, କୁଆ କୋଇଲିର ଟେଁ ଶବ୍ଦ ନାହିଁ । ତୁ ଏକାକୀ କେଉଁଠାକୁ ଫଳପାଇଁ ଗଲୁ ? କମ୍ପା ଫଳ ନ ପାଇ କ୍ଷୁଧାତୁର ହୋଇ କେଉଁଠି ଶୋଇ ପଡ଼ିଛୁ ? କେହି ହେଲେ ତ ଏ ପଥରେ ଆସୁ ନାହାନ୍ତି । ତୋର ସନ୍ଧାନ ଦେବ କିଏ ? ଅଭି ! ଅଭି ! କେତେ ଦୂରରେ ଅଛୁ ।

(ଡାକ ଡାକ ପ୍ରସ୍ଥାନ)

(ପୁନଶ୍ଚ ଅଭିମନ୍ୟୁ ଓ ଘଟୋତ୍କଚ ବାହୁ ଯୁଦ୍ଧ କରୁ କରୁ ପ୍ରବେଶ)

ଘଟୋତ୍କଚ—ଶିଶୁ ବୋଲି ଜାଣୁଥିଲି ମାତ୍ର, କିନ୍ତୁ ନୋହୁ ତୁ ସାମାନ୍ୟ—ଉପଯୁକ୍ତ ଶାସ୍ତି ହାତରେ ପାଇବୁ । (ମୋହ କରି ପକାଇ ଦେଇ ଚାଲିଗଲା)

ଅଭିମନ୍ୟୁ—ମା ! ମା ! ଚିତ୍କାର କରି ।

ସୁଭଦ୍ରା—(ପ୍ରବେଶି) କେଉଁଠି ଶୁଭିଲା ମା' ମା' ! ଏ ତ ଅଭିର କଣ୍ଠସ୍ୱର । ବାପ କେଉଁଠ ରେ ? (ଅଭିମନ୍ୟୁଙ୍କୁ ମୂର୍ଚ୍ଛିତ ଦେଖି) ବାପ ! କ'ଣ ହେଲା । ତୋତେ ଏ ଦଶା କିଏ କଲା ? ଅନ୍ଧର ଲଉଡ଼ି ମୋର ଦୁଃଖିର ପସରା ! ମୋତେ କଣ ଏହି ଦୃଶ୍ୟ ଦେଖାଇବୁ ବୋଲି ଏଠାକୁ ଆଣିଥିଲୁ ? ମୁଁ ବାରମ୍ବାର ମନା କରୁଥିଲି । କାହିଁକି ମୋ କଥା ନ ମାନି ଏ ଦଶା ଭୋଗିଲୁ ? ମୋର ଆଉ ଗତି କ'ଣ ? ତୋ ବିନା ମୋର ଆଉ ସହାୟ ଭରସା କିଏ ? କେଉଁ ମୁହଁ ନେଇ ଆଉ ବାହୁଣୀକୁ ଫେରିବି । ମୂର୍ଚ୍ଛୁଛି ମୋର ସ୍ନେହସ୍ୱର । ହେ ବନ ଦେବତା ! ହେ ଗଗନ ପବନ ! ଦେଖ ମୋର ଧନ ବଞ୍ଚିଛି କି ? କାହିଁ ନିଃଶ୍ୱାସ ତ ପାଉନାହିଁ । ଦେହ କଳା କାଠ ପଡ଼ିଗଲାଣି । ଆଉ କଣ ମୋ ଧନ ନାହିଁ । (କାନ୍ଦଣା)

(ହିଡ଼ମ୍ବୀ ଓ ଘଟୋତ୍କଚ ପ୍ରବେଶ)

ହିଡ଼ମ୍ବୀ—କାହିଁ ଶିକାର ? କେଉଁ ବୀର ବା କେଉଁ ବୀରର ପୁତ୍ର ?

ଘଟୋତ୍କଚ—ତା ଜାଣେ ନାହିଁ ମା ! ପରିଚୟ ପଚାରି ନାହିଁ; କିନ୍ତୁ ପରୀକ୍ଷା କରି ଦେଖିଛି ବୀର ରକ୍ତେ ଗଢ଼ା ତା ଶରୀର ।

ସୁଭଦ୍ରା—କିଏ ତୁମେ ଦେଖା ଥରେ ପୁତ୍ରକୁ ମୋହର । ମୋ ଅନ୍ଧ ନୟନର ତାରା ଦୁଃଖିନୀ ପସରା ।

(କ୍ରନ୍ଦନ)

ଘଟୋତ୍କଚ—କିଏ ଏହି ନାରୀ ! ଦେଖି ତ ନ ଥିଲି ଏ ସ୍ଥାନରେ ତାକୁ, ଶୋକାକୁଳେ ଅଶ୍ରୁନୀରେ ଭସାଉଛି ଅଙ୍ଗ । ସମ୍ଭବ ଏ ପୁତ୍ର ତା'ର ।

ହିଡ଼ମ୍ବୀ—(ସୁଭଦ୍ରା ପ୍ରତି) କିଏ ତୁ ଲୋ ନାରୀ ! ଏ ଯୁବକ ସଙ୍ଗେ କି ସମ୍ବନ୍ଧ ତୋର ?

ସୁଭଦ୍ରା—ପୁତ୍ର ମୋର ପଥ କରି ମୋତେ, କ୍ଷୁଧା ହେତୁ ଫଳ ଆଣେ ଆସିଥିଲା ଏଥି । କିନ୍ତୁ, କାହାର କବଳେ ପଡ଼ି ଲଭିଲା ଏ ଦଶା । ମା ! ଦୟାକର, ମୋର ପୁତ୍ର କାହିଁକି ଏପରି ହେଲା ?

ହିଡ଼ମ୍ବୀ—ଦୟା 'କୃପା ନାହିଁ ଆମ୍ଭଠାରେ । ନର ମାଂସ ଭୋଜ୍ୟନ୍ତି ଆମ୍ଭର । ପୁତ୍ର ମୋର କରିଛି ଶିକାର । ନରମାଂସେ ଥିଲା ମୋ ଲାଳସା ।

ସୁଭଦ୍ରା—ତୁମେ ହତ୍ୟା କରିଛ ? ନରମାଂସ ପାଇଁ ଲାଳସା ବଢ଼ାଇ, ତୁମେ ମୋ ପୁତ୍ରର ଜୀବନ ନେଇଛ ? ତେବେ ମା ! କୃପାକର ଏ ପୁତ୍ରହରା ଅଭାଗିନୀକୁ ତାର ପୁତ୍ର ସଙ୍ଗରେ ଆହାର କର, ମୁଁ ଆଉ ଗୃହକୁ ଫେରିବି ନାହିଁ ।

ଘଟୋତ୍କଚ—ଯୁଦ୍ଧ ଜାଣୁ ନାରୀ ? ବିନା ଯୁଦ୍ଧରେ କାହାକୁ ହତ୍ୟା ଆମ୍ଭର ନୀତି ବିରୁଦ୍ଧ ।

ସୁଭଦ୍ରା—ହଁ, ମୁଁ ଯୁଦ୍ଧ କରିଛି । ମୁଁ ବୀରମାତା, ବୀର ରମଣୀ । ଯୁଦ୍ଧ କରି ପାରିବି । ପୁତ୍ର ଶୋକାତୁରା ମୁଁ, ପୁତ୍ର ବିଚ୍ଛେଦରେ ଯୁଦ୍ଧକ୍ଷେତ୍ରେ ରଣଚଣ୍ଡୀ ରୂପ ଧାରଣ କରିବି । ଯୁଦ୍ଧକର ଶତ୍ରୁ ପରାଜିତ କରିବି କିମ୍ବା ଶତ୍ରୁ ହସ୍ତରେ ପ୍ରାଣ ବିସର୍ଜନ କରିବି, ଆସ କର ଯୁଦ୍ଧ ।

ହିଡ଼ମ୍ବୀ—କହିଲୁ ମେ ବୀରମାତା ତୁମ୍ଭେ ବୀରର ରମଣୀ ।

ସୁଭଦ୍ରା—ହଁ, ବୀର କୁଳେ, ମହାବୀରର ରମଣୀ ମୁଁ । ମହାଶକ୍ତି ଅଂଶରେ ମୋର ଜନ୍ମ; କିନ୍ତୁ ସବୁ ସରି ଯାଇଛି, ମୃତ୍ୟୁ ମୋର ଶ୍ରେୟସ୍କର ।

ହିଡ଼ମ୍ବୀକ—କିଏ ସେହି ମହାବୀର ?

ସୁଭଦ୍ରା—କ ମିଳିବ ଦେଲେ ପରିଚୟ ? ଥାନ୍ତା ଯେବେ ଅଭିମନ୍ୟୁ ମୋର । (କ୍ରନ୍ଦନ) ।

ହିଡ଼ମ୍ବୀକ—ଶାବ୍ୱକନା ଯେବେ ନୋହୁ ତୁହି, ତୋର ମାଂସ ନାହିଁ ପ୍ରୟୋଜନ । ଯାଅ ଗୃହ ଏଥୁ, ଅମ୍ଭର ଏକା ବୀର ମାଂସ ।

ସୁଭଦ୍ରା ମହାବୀର ବନିତା ମୁଁ ପାଣ୍ଡବ ଘରଣୀ, ବସୁଦେବ କନ୍ୟା ମୁହିଁ ଶ୍ରୀକୃଷ୍ଣ ଭଗିନୀ । ଅଭାଗିନୀ ସୁଭଦ୍ରା ମୁଁ ପୁତ୍ର ଅଭିମନ୍ୟୁ, ନାହିଁ ଆଉ ସେ ଇହସଂସାରେ । (କ୍ରନ୍ଦନ)

ହିଡ଼ମ୍ବୀକ--ଜାଣିଲି ଯେ ପାଣ୍ଡବ ଘରଣୀ, ଶୁଣିଛି ପଞ୍ଚ ପାଣ୍ଡବେ ମରିଗଲେ ଶିଶୁ, ତୁମେ କେଉଁ ପାଣ୍ଡବ ବନିତା କହିବ କ ଥରେ ?

ସୁଭଦ୍ରା—କହି ଅବା ଲାଭ ଅଛି କସ ? ଥାନ୍ତା ଯେବେ ଅଭିମନ୍ୟୁ ଜୀବନେ ମୋହର ।

ହିଡ଼ମ୍ବୀକ - କହ ଦେବ ! ଅଭିମନ୍ୟୁ ମାତା ତୁମ୍ଭେ ଅର୍ଜ୍ଜୁନ ବନିତା ?

ସୁଭଦ୍ରା---ପରିଚୟ କିବା ଲୋଡ଼ା ତବ ? ଦୟାକର ନେଉ ମୋର ପ୍ରାଣ । ମୃତ୍ୟୁବାର୍ତ୍ତା ଦିଅ ମୋର ସ୍ୱାମୀ ଅର୍ଜ୍ଜୁନଙ୍କୁ ।

ହିଡ଼ମ୍ବୀକ—ପ୍ରାଣର ଭଉଣୀ ସୁଭଦ୍ରା ତୁ ଚିହ୍ନିବୁ ବା କେମନ୍ତେ ଜାହଁ ? ହିଡ଼ିମ୍ବୀକ ମୁହିଁ ସ୍ୱାମୀ ମୋର ଦ୍ୱିତୀୟ ପାଣ୍ଡବ । ଘଟୋତ୍କଚ ! କ ମୁଖ ବୁଝିବେ, ଦ ମାଗି ତୁ ପରିଚୟ ଭ୍ରାତାକୁ ତୋ କରିଲୁ ନିଧନ । ଏ ଯେ ସାନ ମା ତୋର । କ୍ଷମାମାଗ ପଦେ, ସେବେ ନ ବଞ୍ଚାନ୍ତି ପୁତ୍ରକୁ ମୋହର ଦୁଇ ଦାସୀ ହତ୍ୟା ଦୋଷ ସେନରେ ସନ୍ତାନ ।

ଘଟୋତ୍କଚ---ମହିନାହିଁ ପ୍ରାଣେ, ହୋଇଅଛି ସଂଜ୍ଞାହୀନ ଯୋଦ୍ଧା, ଏ ମୁହୂର୍ତ୍ତେ ଚେତାଇବି ତାକୁ । ଜାଣିଥାନ୍ତି ଯେବେ ଆଗୁଁ ପରିଚୟ, ଏ କାଣ୍ଡ କ ଘଟିଥାନ୍ତା କେବେହେଁ । ମା ! ଆଣିବ ମୁଁ ଔଷଧ ଭଉଣୀ, ବଞ୍ଚାଇବ ଭାଇକୁ ମୋହର । (ପ୍ରସ୍ଥାନ)

ହିଡ଼ମ୍ବୀକ—ଦୁଃଖ କରନା ଭଉଣୀ, ଏ ମିଳନ ଘଟାଇଛି ବିଧି । ସଂଜ୍ଞାହୀନ ହୋଇଅଛି ପୁତ୍ର ।

( ଘଟୋତ୍କଚ ଔଷଧ ନାକରେ ଦକାଇବାରୁ ଅଭିମନ୍ୟୁ ଉଠିବା ଓ ସୁଭଦ୍ରା କୋଳକୁ ନେଲେ)

ଅଭିମନ୍ୟୁ—ମା ! ମା !

ସୁଭଦ୍ରା—ପ୍ରଣିପାତ କର ବଡ଼ ମା'ଙ୍କୁ ତୋର, ଏ ଯେ ତୋର ବଡ଼ଭାଇ ମାଗ କ୍ଷମା ପାଦ ଧରି । ନ ଚିହ୍ନି ତୁ ଯାହାସଙ୍ଗେ କରି ରଣ ତୋଳ ପରାଭବ ଲଭିଥିଲୁ; ଏହି ଏ ଯେ ତୋର ଜ୍ୟେଷ୍ଠ ତାତଙ୍କ ତନୁଜ ।

( ଅଭିମନ୍ୟୁ ନମସ୍କାର କରି । ଘଟୋତ୍କଚକୁ କୋଳାଗତ କରି)

ଘଟୋତ୍କଚ—ମା ! ଆସ ଆମ୍ଭ ବାସ ଗୃହେ । ଗୃହ ଗୃହ ପରିଶ୍ରାନ୍ତ ହୋଇଅଛ ତୁମ୍ଭେ ।

( ସମସ୍ତେ କୋଳାକୋଳ ହୋଇ ଗୃହଗଲେ

---

## ଦ୍ୱିତୀୟ ଦୃଶ୍ୟ

## ହସ୍ତିନା ରାଜସଭା

( ଦୁର୍ଯୋଧନ, ଦୁଃଶାସନ, ଶକୁନି, ଜୟଦ୍ରଥ, ପ୍ରଭୃତି ଆସିନ )

( ନର୍ତ୍ତକୀମାନଙ୍କ ଗୀତ )

ସାଜିଛି ସଭା ଶୋଭା    ମଘବା ସଭାକୁ ଜିଣି ଗୋ ।
ହସ୍ତିନା ଧରଣୀ ହସ୍ତିନାର ସଭା ମଣ୍ଡଣି ।
ବସେ କୁରୁ ନୃପତ    ମହାମାନ ଚକ୍ରବର୍ତ୍ତୀ
କ ଦେଖିବ ତାଙ୍କ ଠାଣି ମାଣି ଗୋ ।
ହୀରା ଲଳାରେ ଖଚିତ    ସିଂହାସନ ବସେ ପତି
ଚଉଦିଗରେ ଶୋଭା ମୌକ୍ତିକମଣି ଗୋ ।
କେତେ ନୃପ ପାତ୍ର ମିତ୍ର    ସଭାସଦ ଅମାତ୍ୟ
ତାହାଗଣ ମଧ୍ୟେ ନଭମଣି ଗୋ, ବସେ କୁରୁ ମୁକୁଟମଣି ।
(ପ୍ରସ୍ଥାନ)

ଦୁର୍ଯୋଧନ – ଉତ୍ସବଙ୍କର ଆଉ ଦୁଇଦିନ ମାତ୍ର ରହିଲା । ଆମ୍ଭେ ବନକ ଅଟନ୍ତୁ ସେ ସ୍ଥାନରେ ପ୍ରବେଶ ହେବା ଦରକାର ।

ଶକୁନି—ତା ନିଶ୍ଚୟ ।

ଦୁର୍ଯ୍ୟୋଧନ—ପାଣ୍ଡବମାନେ ବର ଯାତ୍ରୀରେ ଆମ୍ଭ-ମାନଙ୍କ ସଙ୍ଗେ ଯିବେ ତ ?

ଶକୁନି—ନ ନେବ ବା କପରି ? ନିଜ ଘର ତ ?

ଦୁଃଶାସନ—କି ଭାଇ ! ଆମ୍ଭମାନଙ୍କ ସହିତ ସେମାନଙ୍କର ସମ୍ବନ୍ଧ ? କଣ କୌରବମାନେ କୌଣସି ବିଷୟରେ ଭଗ୍ନ ନୁହନ୍ତି ଯେ ସେମାନଙ୍କ ସାହାଯ୍ୟ ଏକାନ୍ତ ଲୋଡ଼ା । ବରଂ ସେମାନଙ୍କୁ ନେବା ଆମ୍ଭମାନଙ୍କ ଗୌରବରେ ହାନି ।

ଶକୁନି—ସଙ୍ଗରେ ନ ନେବା ଦ୍ୱାରା ବରଂ ସେମାନଙ୍କ ଈର୍ଷା ବଢ଼ିପାରେ । ବିବାହ କାର୍ଯ୍ୟରେ ଜାତି, ଜ୍ଞାତି ସମସ୍ତଙ୍କୁ ଲୋଡ଼ିବାକୁ ପଡ଼େ ।

ଦୁଃଶାସନ—ଲୋଡ଼ିବାକୁ ପଡ଼େ ସତ୍ୟ କିନ୍ତୁ ସେମାନେ ଯେ ଶତ୍ରୁ ।

ଦୁର୍ଯ୍ୟୋଧନ—ତେବେ ଏକା ଧର୍ମରାଜଙ୍କୁ ନେଲେ ଚଳିପାରେ ।

ଦୁଃଶାସନ—ଏକା ଧର୍ମରାଜ କାହିଁକି ? ସମସ୍ତଙ୍କୁ ସଙ୍ଗରେ ନିଅନ୍ତୁ । କିନ୍ତୁ ମୁଁ ଭଲକରି ଜାଣେ, ବଳରାମ ପାଣ୍ଡବମାନଙ୍କୁ ବିବାହ କାର୍ଯ୍ୟରେ ଯୋଗଦେବାକୁ ନିମନ୍ତ୍ରଣ କରି ନାହାନ୍ତି । ତାଙ୍କର ଯଦି କିଛି ଉପେକ୍ଷା ଅଛି କିମ୍ବା କୌଣସି ମାନ ଅଭିମାନ ଅଛି ଏପରି ସ୍ଥଳେ ଆମ୍ଭେ ସଙ୍ଗରେ ନେଇଯିବା ନିତାନ୍ତ ଅସଙ୍ଗତ । ଶ୍ରୀକୃଷ୍ଣ ପାଣ୍ଡବଙ୍କର ଅତି ପ୍ରିୟ, କିନ୍ତୁ ବଳରାମଙ୍କର ଏ କଥାରେ କୌଣସି ମତ ଭେଦ କରି ନାହାନ୍ତି ।

ଦୁର୍ଯ୍ୟୋଧନ - ତେବେ ବାକ୍ ବିତଣ୍ଡାର କୌଣସି କାର୍ଯ୍ୟ ନାହିଁ । ନିଜ ନିଜ କାର୍ଯ୍ୟରେ ଲାଗିଯାଅ । ଯେପରି କୌଣସି କାର୍ଯ୍ୟରେ ବିଶୃଙ୍ଖଳା ନ ଘଟେ ।

ଦୁଃଶାସନ—ସର୍ବେସର୍ବା ସେଠାକୁ ଯିବାକୁ ହେବ ।

ଶକୁନି—କଣ ବିବାହ ଯାତ୍ରା ନା ଯୁଦ୍ଧ ଯାତ୍ରା । କୁରୁକୁଳ କୌଣସି ବିଷୟରେ ଅକ୍ଷମ ନୁହନ୍ତି ଯେ କୌଣସି କଥା ଆମ୍ଭମାନଙ୍କୁ ବଳାଇ ପଡ଼ିବ ।

ଦୁର୍ଯ୍ୟୋଧନ—ସୈନ୍ୟ ନେବା ଦ୍ୱାରା ତାଙ୍କ ମନରେ କୌଣସି ଭ୍ରାନ୍ତି ଜନ୍ମିପାରେ । ଆମ୍ଭ ସତର୍କରେ



ଆମ୍ଭେ ଥିବା, ଆବଶ୍ୟକ ପଡ଼ିଲେ ଦେଖାଯିବ । ଗୋଟିଏ ମଙ୍ଗଳ କାର୍ଯ୍ୟରେ ଅମଙ୍ଗଳ ସୂଚନା କରିବା ବିଧେୟ ନୁହେ । ଆଜ ଏତିକିରେ ସଭା ଭଙ୍ଗ ହେଉ ।

(ସମସ୍ତଙ୍କର ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

## ଉଦ୍ୟାନ

(ଘଟୋତ୍କଚ ଓ ଅଭିମନ୍ୟୁ ଆସୀନ)

(ନର୍ତ୍ତକୀମାନଙ୍କ ଗୀତ)

ବସନ୍ତ ଋତୁ ଆସେ ଧରି କି ସୁନ୍ଦର ବେଶେ
ନାଲି ନାଲି ପତରେ ତରୁ ଶୋଭା ବିକାଶେ ।
କୋଇଲି କୁଞ୍ଜକୋଣେ କୁହୁତାନେ ହା-ହା-ହା-ହାଣେ
ବିରହୀ ପ୍ରାଣେ କାମବାଣେ ହା-ହା-ହା ।
ଫୁଲେ ଫୁଲେ ମଧୁପ ବୁଲେ ମଧୁଆଶେ
ନାନା ଫୁଲ ଫୁଲିଏ ଗୁଡ଼ି ପାଇ ବନ୍ଧୁ ପରଶେ ।
ମଲ୍ଲୀ ଟଗର ଜୁଇ ହେନା ବକୁଳ ହା-ହା-ହା
ମଳୟ ବାଜ ମେଲିଲେଣି ମୁକୁଳ ହା-ହା-ହା
ପ୍ରେମିକା ପ୍ରେମିକ ନେ ଡେଇଁଛୁ ପ୍ରେମ ଲାଳସେ
ପ୍ରେମିକା ପ୍ରେମିକ ଲୋଡ଼େ କାମଶର ତରାସେ ।

(ପ୍ରସ୍ଥାନ)

(ଘଟୋତ୍କଚ ଓ ଅଭିମନ୍ୟୁ ବୁଲୁଥିଲେ, ଅଭିମନ୍ୟୁଙ୍କୁ ଅନ୍ୟମନସ୍କ ଦେଖି)

ଘଟୋତ୍କଚ—ଅଭି ! ତୋର ମନଟା କାହିଁକି ଭଲ ନାହିଁ ? ତୋର ମନରେ ଗୋଟାଏ କିଛି ଭାବନା ଖେଳୁଥିଲା ପରି ଜାଣି ପାରୁଛି ।

ଅଭିମନ୍ୟୁ—କାହିଁ ? ନାହିଁ ତ, ମୁଁ ଖୁବ୍ ଆନନ୍ଦରେ ଅଛି । ଆପଣଙ୍କର ଆଉ ବଡ଼ ମା'ଙ୍କ ସ୍ନେହରେ ମୁଁ ଘରଦ୍ୱାର ସବୁ ଭୁଲି ଯାଉଛି । ମନେ କରେ ଏଇଠାରେ ସଦାବେଳେ ରହି କାଳାତିପାତ କରିବି ।

ଘଟୋତ୍କଚ—ମୋର ତୋର କିଛି ପ୍ରଭେଦ ନାହିଁ ଅଭି ? କିନ୍ତୁ ତୋର ମନର କଥାଟା କିଛି ଖୋଲି କହୁନାହୁଁ । ତୋର ଉପେକ୍ଷା ଅନ୍ୟ କିଛି

ଅଛି; ମୋ ନିକଟରେ କିଛି ଗୋପନ କରନା ।
ଭାଇ ! ମୁଁ ତୋ ଲାଗି ପ୍ରାଣ ବଳ ଦେଇପାରେ ।
ଅସାଧ୍ୟକୁ ସାଧନ କରିବା ମୋର କ୍ଷମତା ଅଛି ।

ଅଭିମନ୍ୟୁ—ଗୋଟିଏ ସ୍ତ୍ରୀ ମୋତେ ପତ୍ନୀରୂପେ ପାଇବା ଲାଗି ଦୃଢ଼ ସଙ୍କଳ୍ପ କରିବା ସତ୍ତ୍ୱେ ତାର ପିତା ମାତା ତାକୁ ଅନ୍ୟତ୍ର ବିବାହ ଦେବା ସ୍ଥିର କରିଛନ୍ତି । ତଦ୍ଦ୍ୱାରା ସରଳା ଅବଳା ନିଶ୍ଚୟ ଆତ୍ମହତ୍ୟା କରିବ ଏବଂ ମୋତେ ଗୋଟିଏ ନାରୀ ହତ୍ୟା ପାପରେ ଲାଗି ହେବାକୁ ପଡ଼ିବ । ବିବାହ ଲଗ୍ନ କାଲି, କିନ୍ତୁ କଣ କରିବି କିଛି ସ୍ଥିର କରି ପାରୁନାହିଁ, କିନ୍ତୁ ମୁଁ ପ୍ରତିଶ୍ରୁତ ହୋଇଥିଲି ଯେ ନିଶ୍ଚୟ ତୋତେ ବିବାହ କରିବି ।

ଘଟୋତ୍କଚ—ଏଥି ସାମାନ୍ୟ କଥାକୁ ଭାବନା କରି ବସିଛୁ ? ଅବାନ୍ତରାଳରେ ଅଶେଷ ବାଧାବିଘ୍ନ ପଡ଼ିଲେ ସୁଦ୍ଧା ମୁଁ ସେ କନ୍ୟାକୁ ଆଣି ତୋତେ ଦେଇପାରେ ।

ଅଭିମନ୍ୟୁ—ସେ ଯେ ବଳରାମଙ୍କ କନ୍ୟା ।

ଘଟୋତ୍କଚ—ଯାହାର କନ୍ୟା ହେଉ । ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଥିଲେ ସୁଦ୍ଧା ତୋ ନିକଟ ପହଞ୍ଚାଇ ଦେବି ।

ଅଭିମନ୍ୟୁ—ବର୍ତ୍ତମାନ ଦୁର୍ଯ୍ୟୋଧନଙ୍କ ପୁତ୍ର ଲକ୍ଷ୍ମଣ କୁମରକୁ ବିବାହ କରିବା ସ୍ଥିର କରାଯାଇଛି । ଅପରିମିତ କୁରୁବଳଙ୍କ ନିକଟରେ ଜୟଯୁକ୍ତ ହେବା ଦୁଃସାଧ୍ୟ ।

ଘଟୋତ୍କଚ—ସେ ଚିନ୍ତା ତୋତେ କରିବାକୁ ପଡ଼ିବ ନାହିଁ । ସାନ ମା ଏଠାରେ ଥାଆନ୍ତୁ, ଚାଲ ବର୍ତ୍ତମାନ ଦ୍ୱାରକା ଅଭିମୁଖେ ଯାତ୍ରା କରିବା ।

(ଉଭୟେ ପ୍ରସ୍ଥାନ)

---

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

### ବରଯାତ୍ରୀ

(ଦୂରରୁ ବାଦ୍ୟ ବାଜି ଉଠିଲା; ବାଣ କମାଣ ଫୁଟିବା ଶବ୍ଦ ହେଲା ।)

(ବଳଦେବ ଓ ଶ୍ରୀକୃଷ୍ଣ ପ୍ରବେଶ)

ବଳଦେବ—ବରଯାତ୍ରୀମାନଙ୍କୁ ଯଥା ସ୍ଥାନରେ ରଖାଇ ଦିଅ । ଆଜି ବାଟବରଣୀ କରି ବରକୁ ନେଇ ଆସ । କାହିଁ, ସୁଭଦ୍ରାଙ୍କର ଏ ପର୍ଯ୍ୟନ୍ତ ଦେଖା ନାହିଁ । ମହାମାନ୍ୟ ଦୁର୍ଯ୍ୟୋଧନଙ୍କ ନିକଟରେ ଯେପରି ଆମ୍ଭର କୌଣସି ବିଷୟରେ ଦୁର୍ବଳତା ଦେଖା ନ ଯାଏ । ଶୁଣୁଛି ଶକୁନି ପ୍ରଭୃତି କୁରୁବୀରମାନେ ସମସ୍ତେ ଆସିଛନ୍ତି ।

ଶ୍ରୀକୃଷ୍ଣ—ପାଣ୍ଡବମାନଙ୍କୁ ଏକାବେଳେକେ ବନ୍ଧୁ ସମ୍ବନ୍ଧରୁ କାଟିଦେଲେ ସୁଭଦ୍ରା ମନରେ କଷ୍ଟଜାତ ହୋଇଥିବ, ତଥା ପାଣ୍ଡବମାନେ ମଧ୍ୟ ।

ବଳରାମ—ନା, ସେ ସବୁ କଥା କିଛି ଭାବିବାକୁ ହେବ ନାହିଁ । ବର୍ତ୍ତମାନ ଉପସ୍ଥିତ କାର୍ଯ୍ୟ ଯାହା ତା କରିଯାଅ । (ଦୁର୍ଯ୍ୟୋଧନ ପ୍ରଭୃତି ଆସୁଥିବା ଦୂରରୁ ଦେଖି) ଏଇତ ମାନଗୋବିନ୍ଦ ପ୍ରଭୃତି ଆସିଗଲେ ।

(ସମସ୍ତେ ପରସ୍ପରକୁ କୋଳାକୋଳି ହେଲେ)

ବଳରାମ—ଆପଣମାନେ ପଦଧୌତ କଲେଣି ?

ଦୁର୍ଯ୍ୟୋଧନ—ତା ହେବ, ଆପଣ ଆଗେ ବାଟବରଣୀର ବ୍ୟବସ୍ଥା କରନ୍ତୁ ।

ବଳରାମ—ଚାଲନ୍ତୁ, ଚାଲନ୍ତୁ । କୃଷ୍ଣ ଆଉ ବୁଲୁଛ କଣ, ଦେଖ ସୁଭଦ୍ରା କେଉଁଠାରେ ?

(ସମସ୍ତେ ପ୍ରସ୍ଥାନ)

(ବ୍ରାହ୍ମଣ ବାଟବରଣ ଡାଲା ହସ୍ତେ ଓ ବାହକ ନିଦ ମଳ ମଳ ହେଉଥାଏ)

ବ୍ରାହ୍ମଣ—ଆରେ ଘନିଆଁ ନିଦ ! ଉଠ ।

ଘନିଆଁ—ହଁ, ସାଉଁକୁ ଶୋଇନ (ବସି ଘୁମାଇବା)

ବ୍ରାହ୍ମଣ—ଘନଆଁ ! ଆରେ ଉଠ । ଏଠି ବସି ଘୁମାଇଲୁ କଣ ?

ଘନଆଁ—କାହିଁକି ରୋଟାଏ ସେମିତ ହେଉଛ ? (କାନଗାର ପଡ଼ିଗଲା)

ବ୍ରାହ୍ମଣ—ଆରେ ଘନଆ ! ଶୋଇ ପଡ଼ୁଛୁ କଣ ? ଆଜିର ବାଟବରଣ ହେବ । ବର ଆସି ଦଣ୍ଡ ଦୁଆର ମୁହଁରେ, ଆରେ ଉଠ ।

ଘନଆଁ—ସେ ଉନୋଇଆ ମା'କୁ ଡାକ !

ବ୍ରାହ୍ମଣ—ଉନୋଇଆ ମା କ'ଣ ବାଟବରଣ କରିବାକୁ ଯିବ ?

ଘନଆଁ—ତେମେ ଯାଅ !

ବ୍ରାହ୍ମଣ—ଆରେ ମୁଁ ଯିବି କ'ଣ ? ପାଣି ଟୋଠାଟା ଧର !

ଘନଆଁ—କାହିଁକି ଟୋକାଏ ସେମିତ ହେଉଛ ?

ବ୍ରାହ୍ମଣ—ଏ ମାଡ଼ଖିଆ କଥା । ତୁ ବି ମାଡ଼ ଖାଇବୁ, ଆମକୁ ବି ମାଡ଼ ଖୋଇବୁ । ଆରେ ଉଠ, ଆରେ ବର ଆସିଲାଣି, ବାଟବରଣ ହେବ ।

ଘନଆଁ—ମଣିଷକୁ ଟିକଏ ଶୁଆଇ ଦେଲେ ନାହିଁ । (ଉଠି ପୁନରାୟ ଶୋଇବା) ।

ବ୍ରାହ୍ମଣ—ଆରେ ପୁଣି ଶୋଇଲୁ ? ଆରେ ଉଠ ।

ଘନଆଁ—ମୋ ସାଙ୍ଗରେ ସେମିତ ଲଗାନା କହୁଛି ।

ବ୍ରାହ୍ମଣ—ଆରେ ଟଗା କାନରେ କଣ ପଥର ପଡ଼ିଛି ?

ଘନଆଁ—ଖାଲି ସତସାଠ ବକର ବକର ହେଉଛନ୍ତି । ଟିକଏ ଆଖି କଷା କରି ଦେଲ ନାହିଁ ।

ବ୍ରାହ୍ମଣ—ମୁଁ ଏବେ କରିବି କଣ ? ଚେଣେ ଡାକସ ଉପରେ ଡାକସ । ଆରେ ଘନଆଁ ! ମୋ ବାପାଟା ପଟ ! ଉଠ, ମୋ ଧନଟା ପରି ଉଠ ।

ଘନଆଁ—କାହିଁକି ?

ବ୍ରାହ୍ମଣ—ଆରେ ବାଟବରଣ ହେବ, ବର ପଦଞ୍ଚ ଗଲାଣି ।

ଘନଆଁ—(ଉଠି ଅସ୍ତବ୍ୟସ୍ତେ) ମୋ ଗାମୁଛା କାହିଁ ?

ବ୍ରାହ୍ମଣ—ଗାମୁଛା ପଛେ ଖୋଜିବୁ, ଆଗେ ଯାଲେ ।

ଘନଆଁ—ମୋ ବଟୁଆ ହେଲା କଣ ?

ବ୍ରାହ୍ମଣ—ବଟୁଆ ଖୋଜୁଛୁ କ'ଣ ? ଆରେ ଯାଅ, ବଡ଼ ଠାକୁରେ ନଆଁ ଖପର ଦୋହଲାଲେଣି ।

ଘନଆଁ—ଯାଉଛି ।

ବ୍ରାହ୍ମଣ—ଆରେ ଟୋଠାଟା ଆଣ, ବାଟପୁଆ କୁଣ୍ଡ କାହିଁ ?

ଘନଆଁ—ତେମେ ଆଣିନା ? ଯାଅ ଯାଅ, ମୋତେ ଟିକଏ ଆଗରୁ ଉଠାଇ ଦେଲ ନାହିଁ ।

ବ୍ରାହ୍ମଣ—ତେବେ ତ ପଦହେଁ ହେଲା ଧୂଳି ଉଡ଼ାଇ ଦେଲୁଣି, ଯାଅ ଯାଅ । (ଉଭୟେ ପ୍ରସ୍ଥାନ)

(ଚେଣେ ଶଙ୍ଖ, ହୁଳହୁଳି, ବାଦ୍ୟନାଦ ଶୁଭୁଥାଏ)

—✻—

## ଦ୍ୱିତୀୟ ଦୃଶ୍ୟ

## ଲକ୍ଷ୍ମଣ କୁମାର

(ଘଟୋତ୍କଚ ଓ ଅଭିମନ୍ୟୁ ସୌଦାଗର ବେଶରେ)

ଘଟୋତ୍କଚ—ବନାରସୀ ପାଟ ଧୋତି ଓଢ଼ଣୀ ଚଦର ।

ଅଭିମନ୍ୟୁ—ବନାରସୀ କୋଟ, ପେଣ୍ଟ, ଚପ୍କନ୍ ଜରିବାଲା, ଶଲ୍ୟାଦର । ତାଛଡ଼ା ସୁନା ହୀରା ନାନା ଜହର ଗହଣା ।

(ଲକ୍ଷଣ କୁମର ଓ ତା ସାଙ୍ଗ ସାଥିମାନେ ପ୍ରବେଶିଲେ)

ଲକ୍ଷଣ କୁମର—ଆଣ ତ ଦେଖିବା ।

ଘଟୋତ୍କଚ—ବାବୁ ! ନେବେ ଯଦି ଦେଖନ୍ତୁ, ନଚେତ୍ ଆମେ ଅନ୍ୟ ଆଡ଼େ ଯିବୁ ।

ଲକ୍ଷଣ କୁମର—ଖୁବ୍ ଭଲ ଭଲ ରକମ ଅଛି ?

ଅଭିମନ୍ୟୁ—ସବୁ ରାଜାଘର ଦରକାର ଜିନିଷ । ଆମ୍ଭମାନଙ୍କ କାରବାର ସବୁ ରାଜାରାଜୋଡ଼ାମାନଙ୍କରେ ।

ଲକ୍ଷଣ କୁମର—ଆଚ୍ଛା ! ଆମ୍ଭେମାନେ ଦେଖି, ମନ ମାନିଲେ ରଖିବା ।

ଘଟୋତ୍କଚ—ସବୁ ରକମ ଜିନିଷ ଅଛି, ଆପଣ ପସନ୍ଦ କରନ୍ତୁ ।

(ଗଣ୍ଠିଲି ଫିଟାଇ ସବୁ ଦେଖାଇଲେ)

(ଦୁର୍ଯ୍ୟୋଧନ ଓ ଶକୁନି ପ୍ରବେଶ)

ଦୁର୍ଯ୍ୟୋଧନ—କୋଉଠିକାର ଜିନିଷ ଏ ସବୁ ? ତୁମ ଘର କେଉଁଠାରେ ?

ଘଟୋତ୍କଚ—ହାମ୍ ଲୋକ୍କା ମକାନ୍ ଖୋଦ୍ ବନାରସ । ଓ ସବ୍ ସଚ୍ଚା ଜରିକା କାମ୍ ।

ବିଲ୍‌କୁଲ ଖାଣ୍ଟି ସୋନା । ୟେ ତୋ ମହାରାଜାକା
ମାଥା ପରକା ସାଫକେ ସବ୍ ଠିକ୍ ହୁଏ । ଉପର
ସୋନା ସୂତା କାମ୍ ଭି ବହୁତ ହୁଏ । ଆପ୍
ମେହେରବାନି କରକେ ଦେଖ୍ ଲିଜିଏ ।

ଦୁର୍ଯ୍ୟୋଧନ — ଦରଦାମ କେତେ ?

ଘଟୋତ୍କଚ — ସୈନା ଠିକ୍ ଐସା ଦାମ୍ । ଦରଦାମ କୁଛ ଚଲେ ବଗଲ ନେହିଁ । ବଡ଼ା ବଡ଼ା ଅମୀର୍ ଲୋକ୍‌କା ସାଥ୍ ମେ ଦାମ୍ କାର୍‌ବାର୍ କରନା ହୁଏ । ଖୁଚୁରା ବସି ବିଲ୍‌କୁଲ ନହିଁ କରନା ହୁଏ ।

ଦୁର୍ଯ୍ୟୋଧନ — ଅଚ୍ଛା, ଦୁଇ ପେଣ୍ଟିରେ ଏକରକମ ଜିନିଷ ସବୁ ଅଛି ?

ଘଟୋତ୍କଚ — ଏକଦମ ଠିକ୍ !

ଦୁର୍ଯ୍ୟୋଧନ — ଏକ ପେଣ୍ଟିରେ ସମୁଦାୟ କେତେ ଟଙ୍କାର ମାଲ ଅଛି ।

ଘଟୋତ୍କଚ — ଦୋ ପେଣ୍ଟି ମେ ଦୋ ଲାଖ ରୁପେୟାକା ମାଲ ରହା ହୁଏ । ଆପ୍ କା ଜୋ ପସନ୍ଦ ହୋତା ଲିଜିଏ ।

ଲକ୍ଷ୍ମଣକୁମର—(ଦୁଇ ପେଣ୍ଟିକୁ ହଠାତ୍ ବଡ଼ ଦେଖା-ଯାଉଥିବା ପେଣ୍ଟିକୁ ପସନ୍ଦ କରିବା) ।

ଦୁର୍ଯ୍ୟୋଧନ—ଏଥିରେ ବଡ଼ସାନ ଅଛି, ଜିନିଷ କି କମ ବେଶୀ ଅଛି ?

ଘଟୋତ୍କଚ—ବିଲ୍‌କୁଲ୍ ନା । ଆପ୍ କା ଯୋ ପସନ୍ଦ ହୁଏ, ଲିଜିଏ । ଏକ-ଦୋ କା ହିସାବ ମାଲ କମ୍ ବେଶୀ ହୋତା ।

ଲକ୍ଷ୍ମଣକୁମର—(ବଡ଼ ପେଣ୍ଟିକୁ ଦେଖାଇ) ଆମର ଏଇଟାକୁ ରଖିବା ।

ଘଟୋତ୍କଚ—କୁଛ ଫରକ ନେହିଁ ।

ଦୁର୍ଯ୍ୟୋଧନ—ମୂଲ୍ୟରେ କିଛି କମ୍ ବେଶୀ ଅଛି ।

ଘଟୋତ୍କଚ—ବିଲ୍‌କୁଲ୍ ନେହିଁ, ପହେଲେସେ ବତାଦିଆ ହମ୍ ଲୋକ ମୁଲୁକକା ଦାମ ବିଲ୍‌କୁଲ୍ ନେହିଁ କମ୍ତା ହୁଏ ।

ଦୁର୍ଯ୍ୟୋଧନ—ଅଚ୍ଛା ! ତୁମର ଦାମ ନିଅ । (ଏକ ଲକ୍ଷ ଟଙ୍କା ଦେବା)

ଲକ୍ଷ୍ମଣ କୁମର—(ଫିଟାଇବାକୁ ତତ୍ପର)

ଦୁର୍ଯ୍ୟୋଧନ—ନା, ଆମର ସମସ୍ତଙ୍କୁ ଡାକ ସମସ୍ତଙ୍କ ପସନ୍ଦ ଅନୁମାନରେ ଜିନିଷମାନ ବାହାରିବ ।

ଘଟୋତ୍କଚ —ରାମ ରାମ ମହାରାଜ । ହାମଲୋକ କା ଡେରା ଉଇ ରାଜ୍ୟକା ସୀମାପର । ଫିନ୍ ଦରକାର ହୋଗା ତୋ ଖବର ଭେଜନେସେ ଔର ମାଲ ପହୁଞ୍ଚା ଦେଗା । ରାମ୍ ରାମ୍ !

(ଉଭୟ ସୌଦାଗରଙ୍କ ପ୍ରସ୍ଥାନ)

ଦୁର୍ଯ୍ୟୋଧନ—ଯାଅ, ସମସ୍ତଙ୍କୁ ଡାକିଆଣ । ହେ ମାତୁଳ ! ଆପଣ ବଳରାମଙ୍କ ନିକଟ ସମ୍ବାଦ ଦିଅନ୍ତୁ, ଦିଅ ମଙ୍ଗଳ କାର୍ଯ୍ୟ ବଢ଼ାଇଲେ ବିବାହ କାର୍ଯ୍ୟ ଆରମ୍ଭ ହେବ ।

ଶକୁନି—ସେ ସମ୍ବାଦ ଦେଇ ସାରିଛି, ପ୍ରାୟ ବେଶୀ ବିଳମ୍ବ ନାହିଁ ।

ଲକ୍ଷ୍ମଣ କୁମର—ଆମେ ଦେଖିବାକୁ ଯିବା ।

ଶକୁନି—ରାଜପୁତ୍ର ! ରାଜପୁତ୍ରର ରାଜତେଜ ମର୍ଯ୍ୟାଦା ରଖି କଥାବାର୍ତ୍ତା କହିବା ଏ ସବୁ ଲକ୍ଷଣର ଆଦୌ ନାହିଁ । ଏଥି ମଙ୍ଗଳକାର୍ଯ୍ୟ ତୁମେ ଦେଖିବ କଣ ? (ଏ ସମୟରେ ସମସ୍ତେ ଆସି ପହଞ୍ଚିଲେ) ଅଚ୍ଛା ! ଯାହାକୁ ଯାହା ଦେବାର ସବୁ ବାଣ୍ଟିଦିଅ ।

ଲକ୍ଷ୍ମଣ—( ପୋଷାକ ପେଣ୍ଟିରୁ ଖୋଲି ଖୋଲି ) ମୁଁ ଯେଉଁ ପୋଷାକ ଆଜି ଟିକେ ପସନ୍ଦ କରିଛି ତାକୁ ନେବି । ଆଉ ସବୁ ଯିଏ ଯାହା ନିଅନ୍ତୁ । (ଖୋଲି ଦେଖିଲା ବେଳକୁ, ଛିଣ୍ଡା ଅଖା, ମଇଳା ସାପ, କେତେକ ଛିଣ୍ଡା କୋଟ୍ କାମିଜ) ଏ ସବୁ କ'ଣ ସେ ପୋଷାକ ନାହିଁ ?

ଦୁର୍ଯ୍ୟୋଧନ—କି ଆଶ୍ଚର୍ଯ୍ୟ ? ଆମ୍ଭମାନଙ୍କୁ କ'ଣ କିଏ ଠକାଇ ଦେଇଗଲା । ସ୍ବଚକ୍ଷୁରେ ଜିନିଷମାନ ଦେଖିଲୁ, ଏସବୁ କି କାଣ୍ଡ । ଦେଖ, ସେ ସୌଦାଗର ଗଲେ କୁଆଡ଼େ । ଯାଅ ଦେଖ । (ଦୁଇ ସେବକଣ ଦୌଡ଼ିଗଲେ ନା, କାହାର ଏ ଷଡ଼ଯନ୍ତ୍ର !

ଶକୁନି—ଏଇଟା ଆମର ନିଜର ଭୁଲ । ଜିନିଷ ନ ଦେଖି ନ କରି କ୍ରୟ କରିବା ଅବୋଧର କାର୍ଯ୍ୟ ।

ଲକ୍ଷଣ—ଆମେ ଠିକ୍ ଦେଖିଛୁ ଜିନିଷ ସବୁ ଭଲ ଥିଲା ।

ଶକୁନ—ସେ ସୁଆଗ୍ରେର ଯେଉଁ ଗଣ୍ଡିଗ ଜିନିଷ ଦେଖାଇଲା ସେ ଗଣ୍ଡିଗ ଏ ନୁହେଁ । ଆମ ଯୁବରାଜ ବଡ଼ ଗଣ୍ଡିଗ ଦେଖି ଏଇଆକୁ ପସନ୍ଦ କଲେ । ପ୍ରତ୍ୟେକ କାର୍ଯ୍ୟରେ ଅସ୍ଥିରହୋଇ ପଡ଼ିବାର ପରିଣାମ ଏହି ।

ଜଣେ ଗୁପ୍ତ—(ଫେରିଆସି) ନା, ବହୁ ସ୍ଥାନ, ଅନେକ ପଥ ମଧ୍ୟ ଚଲୁ କରୁ ସୌଦାଗରର କୌଣସି ସନ୍ଧାନ ପାଇଲୁ ନାହିଁ ।

ଦୁର୍ଯ୍ୟୋଧନ—ନା, ଫେରିଗଲ, ମୁଁ ଏଠାରେ ସୁଅକୁ ବିବାହ ଦେଉନାହିଁ । ନିଶ୍ଚୟ ଦ୍ୱାରକାବାସୀଙ୍କର ଏ ଷଡ଼ଯନ୍ତ୍ର ।

ଦୁଃଶାସନ—ନିଶ୍ଚୟ ଷଡ଼ଯନ୍ତ୍ର, ମୁଁ ଆଗରୁ ମନା କରୁଛି । ଚାଲ, ଏ ସ୍ଥାନରେ ଦଣ୍ଡେ ରହିବା ମଙ୍ଗଳ ନାହିଁ ।

(ସମସ୍ତେ ଯିବାକୁ ଉଦ୍ୟତ)

(ବଳରାମ ଓ ଶ୍ରୀକୃଷ୍ଣ ପ୍ରବେଶ)

ବଳରାମ—(ଅସ୍ଥିର ଭାବେ) କ'ଣ ହେଲା ବନ୍ଧୁ !

ଦୁର୍ଯ୍ୟୋଧନ—କେଣ ହୋଇଛି, ଜଣାଗଲା ଆପଣମାନଙ୍କ ଭଦ୍ରତା !

ବଳରାମ—କଣ ଭଦ୍ରତା ନାହିଁକି ? ମୁଁ ତ କୌଣସି ବିଷୟରେ ତ୍ରୁଟି କରିନାହିଁ ।

ଦୁଃଶାସନ—ଆଉ କ ତ୍ରୁଟି ଘଟିଥାନ୍ତା ! ଦୁଇଟି ସୌଦାଗର ବେଶଧାରୀ ଯୁବକ ଆମର ପିଲାମାନଙ୍କୁ କେତେଗୁଡ଼ାଏ ପ୍ରଲୋଭନ ଜିନିଷମାନ ଦେଖାଇ ଲକ୍ଷେ ମୁଦ୍ରା ନେଇ ଅବଶେଷରେ ଗୁଡ଼ାଏ ଛିଣ୍ଡା କପଡ଼ା ଅଖା ଧରାଇଦେଇ ଯାଇଛନ୍ତି ଏ ଷଡ଼ଯନ୍ତ୍ର କାହାର !

ବଳରାମ—ଆପଣ ବିଶ୍ୱାସ କରନ୍ତୁ, ଆମେ ବା ଦ୍ୱାରକାବାସୀ କେହି ଏପରି କାର୍ଯ୍ୟ ଘଟାଇବା ସମ୍ଭବ ନୁହେଁ । ଅନ୍ୟ କାହାର ଏ ଷଡ଼ଯନ୍ତ୍ର ବା ଉପାୟରେ ନାମ ଶ୍ରୀକୃଷ୍ଣ ! ଦେଖ ସେ ପାଷଣ୍ଡ ଗଲା କାହିଁ ? ବାଘ ଘରେ ମିରିଗର ନାଚ । ଆଚ୍ଛା, ସେ କେଉଁଠିକାର ଲୋକ ବୋଲି ପରିଚୟ ଦେଇଥିଲା ।

ଶକୁନ—ବନାରସ ବୋଲି କହୁଥିଲା ।

ଶ୍ରୀକୃଷ୍ଣ—ତେବେ କେହି ଉଜ୍ଜୟନ୍ତର ବ୍ୟକ୍ତି ଆପଣମାନେ ଆମକୁ ନ ପଚାରି ଏପ୍ରୁ କରିବାଟା ଠିକ୍ ହୋଇ ନାହିଁ ।

ବଳରାମ—ସେ ଯାହାହେଉ, ମାନଗୋବିନ୍ଦ ମୁଁ କ୍ଷତି ପୂରଣ ଦେବାକୁ ପ୍ରସ୍ତୁତ ଆଉ ଉତ୍ତେଜିତ ହେବାର କାରଣ କିଛି ନାହିଁ । ବିବାହ କାର୍ଯ୍ୟରେ ନାନା ରକମ ଗଣ୍ଡଗୋଳ ଘଟିଥାଏ । ସେସବୁ ଆପଣା ଆପଣା ମଧ୍ୟରେ ମୀମାଂସା ନେବ । ନା ଚାଲନ୍ତୁ ଜଳଯୋଗକୁ ଯିବେ ।

ଦୁଃଶାସନ—ମୁଁ ଆଗରୁ ଏ ବିବାହ ପ୍ରସ୍ତାବକୁ ସମର୍ଥନ ଆଦୌ କରୁ ନ ଥିଲି ।

ବଳରାମ—(ହାତ ଧରି ପକାଇ) ବନ୍ଧୁ ! ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ ।

ଶକୁନ—ଗୁରୁ, ଗତସ୍ୟ ଶୋଚନା ନାସ୍ତି ।

(ସମସ୍ତେ ଚାଲିଗଲେ)

—*—

## ତୃତୀୟ ଦୃଶ୍ୟ

## ପାର୍ଶ୍ୱ

(ବଡୋଦଆ ମା ବାରିକଆଣୀ ପ୍ରବେଶ)

ବାରିକାଣୀ (ମୁକୁଟ ଟେକା ଓଗେର କୁଲାରେ ଥାଏ) ଏ କି ହିଁଅ ଲୋ ମା ! ଆମେ ପଡ଼ଦେ ହେଲା ପଞ୍ଚାଏ ମ ଭଗେ ଫାଟି ଫୁଟି ଗଲୁଣି ଘର ଭିତରୁ ହିଁ ନାହାନ୍ତି କ ଚୂଲି ନାହାନ୍ତି । ଏଣେ ବଡ଼ ଠାକୁରଙ୍କର ବଡୋଦଆ ମା ଉପରେ ଡୋଡ଼ ଯେ କହିଲେ ନ ସରେ । ତୁଆନା ପିଲା, କାଖେଇ କୁଣ୍ଢେଇ ନେଇଯିବନ୍ତି ବଡ଼ ଘର ପାଇଲା ବଡ଼ ବର ପାଇଲା ଆଉ କେଉ କଥାକୁ ଚିନ୍ତା ମ ? ନାହିଁ ନାହିଁ ; ଟେଲବସନ୍ତରେ ଫାଟି ପଡ଼ୁଛନ୍ତି ସାଇଟା- ପକ ଏବେ ହିଁଅ ବାହା ହୋଇଗଲେ ଏମିତି ତ କେହି ହେଲେ ହୋଇ ନ ଥିବେ ।

ବନଅଁ—ହେ ବଡୋଦଆ ମା ! ତୋତେ କଣ ଆସି ଲାଗିଲାଣି କି ? ବରଅଁ ମଙ୍ଗଳ ଯିବାକୁ ପଡ଼ଦେ

ନେଲ ବାଜ ଲୁଚୁ ଦାଣ୍ଡରେ ଥାଟ ପଟାଳ ମଣିଷ ବାଜାବାଲ ବଜାଇ ବଜାଇ ଥକି ଗଲେଣି ।

ବାଣକାଣୀ ମଲ ଆଣ୍ଡୁଆ ମିଣିପିଟା, ଝିଅ ତ ପଛୁ ବାହାରିଲେ ମୁଁ ନେଇଯିବି, ନା ମୁଁ ଏକା ଏକା ବର୍ଷ ମଙ୍ଗୁଳିବାକୁ ଯିବି ।

ପନଅା — ତେଣେ ସେ ସମସ୍ତେ ନାବୁଛନ୍ତି ବାଣକାଣୀର ଡେର ।

ବାଣକାଣୀ—ମୋତେ ତ ଅସରଣିଆ ଦେଖିଲେ । ସତ ପଦରେଁ ଆସି ଦନ ପନ୍ଦରେ ହେଲଣି । ମୁଁ ତ ଫାଟିଫୁଟି ଗଲିଣି ।

ନାରଦ — (ପ୍ରବେଶି) ନାରବୋଲ ! ହରିବୋଲ ! କ'ଣ ଏମିତ ଭଟ ଭଟ୍ ଲଗାଇଛ ? ହେଲା କଣ ?

ବାଣକାଣୀ — ଦେଖିବଟି ବାବାଜି ! ଝିଅ ତ ପଛୁ ଗୋଡ଼ କାଢ଼ନାହିଁ ମୁଁ ବର୍ଷ ମଙ୍ଗୁଳ ନେବ କେମିତି ? ଏ ମରଦଟା କିଛି ନ ବୁଝି ମୋ ଉପରକୁ ତାନ ବତାଉଛି ।

ନାରଦ—ଆଚ୍ଛା ବାଣକ ! ତୁ ଏଠୁ ଯା ( ବାଣକ ପ୍ରସ୍ଥାନ ) ହେ ବାଣକାଣି ! ଝିଅକୁ କୋଉଠୁ ଏ ଜମିଆ କରିଦେଇଛୁ ।

ବାଣକାଣୀ – ହଁ, ଆମର ଏଠିତ ଗୁଣୀ ଗାରଡ଼ି କମ୍ ଜାଣନ୍ତି ନାହିଁ, ଝିଅକୁ କଏ ମିଞ୍ଚାଡ଼ି ଦେଇଛି । ବାବାଜି ! ବହୁତ ଜଡ଼ିବୁଟି ଜାଣ, ଟିକଏ ଭଲ ଦେଖ ।

ନାରଦ -ଆମେ ଦେଖିବୁ କଣ ? ତୁ ନେ ଏ ଜନିଷ ଝିଅକୁ ଏକଲ ଡାକ ଦେଇଦେବୁ ! ତୋର ସାଙ୍ଗେ ସାଙ୍ଗେ ବାହାରି ଆସିବ । ଏଥିରେ ଟିକଏ ମାତ୍ର ଭୁଲ ନାହିଁ । କିନ୍ତୁ ସାବଧାନ ଅନ୍ୟ କାହାକୁ ଏ କଥା କହିବୁ ନାହିଁ ।

ବାଣକାଣୀ—ଅଚ୍ଛା, ବାବାଜି ! ତୁମ କଣ ସୁତୁଣ୍ଡ ନେଇ, ଯାଏ ।

( ପ୍ରସ୍ଥାନ )

ନାରଦ— ଗୀତ

ମାନକ ଛାଡ଼ ରେ ମନରୁ ମାନ ।
ତୋତେ ନେବାପାଇଁ ଅଛି ପଥ ଖଣ୍ଡି
ସେ ତ ଛୁଉଁା ଛଣାଣ । ୦ ।
ଯିଏଟି ଯାହାର ବଧିର ଉଆଣ
ତାକୁ କେ କରିବ ଆନ,
ମର୍କଟ ମାଳା କି ମର୍କଟ ଲଭିବ
ଏ ଯେ ବୃଥା ଆସ୍ଫାଳନ । ୧ ।
ମାନଧାତା ବୋଲି ହେଉ ନାଲିଥିଲି
କ୍ଷଣକେ ଯିବ ତୋ ମାନ,
ଜଟିଆ ପକର ଯା କରେ ଫିକର
( ତୁଅ ) ଖେଳିବାକୁ ସାବଧାନ । ୨ ।

( ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ

## ଶଶୀରେଖାର ହରଣ

( ଅଭିମନ୍ୟୁ ଓ ଶଶୀରେଖା ପ୍ରବେଶ )

( ଶଶୀରେଖା ଭୟାତୁର ହେଲା ପରି ଜଣା ଯାଉଥାଏ )

ଅଭିମନ୍ୟୁ—ଭୟର କାରଣ କିଛି ନାହିଁ । ତୁମେ ସ୍ଥିର ହୁଅ ଖବୁଛ ଏଠାରୁ କିଏ ତୁମକୁ ଛଡ଼ାଇ ନେବାର ଆଶଙ୍କା ଅଛି ? ତା ଅସମ୍ଭବ । ପୂର୍ବ ସୂର୍ଯ୍ୟ ପଶ୍ଚିମରେ ଯଦି ଉଦୟ ହୁଅନ୍ତି, ତେବେ ସୁଦ୍ଧା ତୁମକୁ ସ୍ପର୍ଶ କରିବାର କାହାର ସାଧ୍ୟ ନାହିଁ ।

ଶଶୀରେଖା - ସେ କିଏ, ଯେ ମୋର ବେଶ ଧାରଣ କରି ଗଲେ ।

ଅଭିମନ୍ୟୁ—ସେ ମୋର ଜ୍ୟେଷ୍ଠ ତାତ ଭୀମଙ୍କ ପୁତ୍ର ଘଟୋତ୍କଚ । ତାଙ୍କର ସାହାଯ୍ୟ ମୁଁ ନ ପାଇଥିଲେ ତୁମକୁ ଲାଭ କରିବା ବଡ଼ ଦୁଷ୍କର ହୋଇ ପଡ଼ଥାନ୍ତା ।

ଶଶୀରେଖା—ସେ ସେସ୍ଥାନରୁ ଆସିବେ କିପରି !

ଅଭିମନ୍ୟୁ—ସେ ମହା ଯତୀ, ବଡ଼ ମାୟାବୀ । ସେ ଇଚ୍ଛା କଲେ କୁରୁବଳଙ୍କ୍ ଏକ ମୁହୂର୍ତ୍ତକେ ପଦ-ଦଳିତ କରି ପାରିବେ । ବିବାହ ମଣ୍ଡପରେ ତାହାଙ୍କ ଉଦ୍‌ଭିବା ବଢ଼ସ ନୁହେଁ ।

ଶଶୀରେଖା — ତାଙ୍କୁ କେବେ ହେଲେ ତ ମୁଁ ଦେଖି ନ ଥିଲି ।

ଅଭିମନ୍ୟୁ — ମୁଁ ମଧ୍ୟ କେବେ ହେଲେ ଦେଖି ନ ଥିଲି । ଏଇ ଆସିବା ପଥରେ ତାଙ୍କର ଭେଟ ହେଲା । ସେ ଅନେକ କଥା, ପରେ ଶୁଣିବ । ଚାଲ ରଥ ଉପରେ ଶୂନ୍ୟ ମାର୍ଗରେ ରହି ଭାଇଙ୍କୁ ପ୍ରତୀକ୍ଷା କରିବା । ଏ ସ୍ଥାନ ସେତେ ନିରାପଦ ନୁହେଁ ।

ଶଶୀରେଖା — ପିତାଙ୍କ ସାକ୍ଷାତ ଆଉ କଣ ହେବ ନାହିଁ ।

ଅଭିମନ୍ୟୁ — ନିଶ୍ଚୟ ହେବ । ମା' ବର୍ତ୍ତମାନ ହିଡ଼ିମ୍ବିକି ବନରେ ସେଠି ଯାଇ ଘଟୋତ୍କଚଙ୍କ ବାସଭବନରେ ! ଚାଲ, ରଥ ଉପରକୁ ଚାଲ ।

( ଉଭୟେ ପ୍ରସ୍ଥାନ )

—*—

## ପଞ୍ଚମ ଦୃଶ୍ୟ

## ବିବାହ ବେଦୀ

(ବିଭାଘର ବାଦ୍ୟ ବାଜୁଥିଲା, ବରପକ୍ଷ ଓ କନ୍ୟାପକ୍ଷ ସମସ୍ତେ ବେଦୀ ଚାରି ପଟେ ଘେରି ବସିଥିଲେ ବ୍ରାହ୍ମଣ ବେଦ ଉଚ୍ଚାରଣ କରୁଥିଲେ ।)

ବ୍ରାହ୍ମଣ—ହେ। ବାଳକ ! ଯା ବରକୁ ବେଦୀ ଉପରକୁ ଆଣ ।

( ବର ଅଞ୍ଜଳ ସେନ ବେଦିରେ ପ୍ରବେଶ ଓ ଉପବେଶନ )

ବ୍ରାହ୍ମଣ— ହେ ବାଳକ ! କନ୍ୟାକୁ ଆଣ ।

( କନ୍ୟା ମଧ୍ୟ ଆସି ବେଦୀରେ ବସିଲା ) ବର-କନ୍ୟାଙ୍କ ମୁଣ୍ଡରେ ମୁକୁଟ ବନ୍ଧାଗଲା । ତା ମଧ୍ୟେ ମଧ୍ୟେ ଘଟୋତ୍କଚ ବିକୃତ ମୁଖ ଓ ନାନାପ୍ରକାର ରୂପ ଲକ୍ଷଣ କୁମରକୁ ଦେଖାଉଥାଏ । ଲକ୍ଷଣ-କୁମର ଭୟ ବିହ୍ୱଳ ହେଉଥାଏ । ଶକୁନି ଇତ୍ୟାଦି ଲକ୍ଷଣାକୁ ତାଗିଦା କରୁଥାନ୍ତି । ଅବଶେଷରେ ହାତଗଣ୍ଠି ପଡ଼ିଲା ବେଳେ ଲକ୍ଷଣ ଏକାନ୍ତ ନାରାଜ ହେଲା । ବର ତରଫ ଲୋକ ଲକ୍ଷଣକୁ ଆଖି ଦେଖାଉଥାନ୍ତି । ହାତଗଣ୍ଠି ପଡ଼ିଲା ବେଳେ ଘଟୋତ୍କଚ ଏପରି ଜୋରରେ ଲକ୍ଷଣ ହାତଧରିଲା, ଲକ୍ଷଣ ଚିତ୍କାର କରି ଉଠିଲା । ବାଡ଼କରି ପ୍ରନସ୍ତି ହାତ ଧରିଥିବାରୁ ସେହିପରି ଝିଙ୍ପିବେବାରୁ ଘାଟିକରି ମରିଗଲି ମରିଗଲି ଡାକିଲା ।

( ସମସ୍ତେ ଏ କଣ, ଏ କଣ, କହିଲେ )

( ଏହି ସମୟରେ ଘଟୋତ୍କଚ ନିଜ ରୂପଧରି ସମସ୍ତଙ୍କୁ ଧକାଧକି କରି )

ଦୁର୍ଯ୍ୟୋଧନ— କିଏ ପାଷାଣ୍ଡ ! ମାର ମାର, ଘେରି ମାର ସବେ ।

( ଘଟୋତ୍କଚ ସଙ୍ଗେ ସମସ୍ତେ ଲଗିଲେ, ସମସ୍ତଙ୍କୁ ପରାସ୍ତ କରି ଘଟୋତ୍କଚ ଚାଲିଗଲା । )

ଦୁର୍ଯ୍ୟୋଧନ—ଆମ୍ଭମାନଙ୍କୁ ଅପମାନିତ କରିବାଲାଗି ଏଠାକୁ ଆଣିଥିଲେ କିନ୍ତୁ ଫଳାଫଳ ଭଲ ନୁହେଁ !

ବଳରାମ—ଶ୍ରୀକୃଷ୍ଣ ! କିଏ ଏପରି ପାଷାଣ୍ଡ ମାୟାକରି ଏ ବିବାହରେ ବିଭ୍ରାଟ ଲଗାଇଲା ? ଆଜ ପ୍ରଳୟ ହେଉ, ସୃଷ୍ଟି ରସାତଳକୁ ଯାଉ, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରେ ପାଷାଣ୍ଡର ସ୍ଥାନ ନାହିଁ ।

ଦୁଃଶାସନ - ମୁଁ ଆଗୁଁ କହୁଛି, ଯାଦବକୁଳରେ କନ୍ୟା ସ୍ଥାପନ କରିବାରେ ଏ ସ୍ଥାନ ବ୍ୟବହାର । ଆଜ ମଧ୍ୟ ସତର୍କ କରାଇ ଦେଉଛୁ ଯଦୁକୁଳ ଆମ୍ଭ-ମାନଙ୍କର ଏହି ଅସମ୍ମାନ ବିହିତାର ପରିଣାମ ଭୋଗ କରନ୍ତୁ ।

ଜଣେ ଚର—(ପ୍ରବେଶି) ଏହି ଯେ ଶୂନ୍ୟମାର୍ଗରେ କିଏ ରଥ ବାହି ନେଉଛି । ସେ ରଥରେ ଦୁଇଜଣ ପୁରୁଷ ଓ ଜଣେ ନାରୀ ।

ଦୁର୍ଯ୍ୟୋଧନ—ଦେଖ ! ସେ ପାଷାଣ୍ଡ କିଏ ?

ବଳରାମ - ଦେଖ ! ପାଷାଣ୍ଡକୁ ଉଚିତ ଶାସ୍ତି ନ ଦେବା ପର୍ଯ୍ୟନ୍ତ ମୋର ଦ୍ୱାରକା ଫେରିବା ଅସମ୍ଭବ ।

( ଯିବା ସମୟେ )

ଅନ୍ୟ ଜଣେ ଚର—ସେ ରଥରେ ଶଶୀରେଖା ଓ ଅଭିମନ୍ୟୁ, ଅନ୍ୟ ଜଣେ କିଏ ମୁଁ ଚିହ୍ନିପାରିଲି ନାହିଁ ।

ଦୁର୍ଯ୍ୟୋଧନ— ଜଣାଗଲା (ପାଣ୍ଡବମାନଙ୍କର ଏ ଷଡ଼ଯନ୍ତ୍ର ।

ଶକୁନି—ମୁଁ ସେଥିଯୋଗୁଁ ତାଙ୍କୁ ନିମନ୍ତ୍ରଣରେ ଆଣିବାକୁ ବାଧ କରୁଥିଲି, ତା'ର ଫଳାଫଳ ଏହି ।

ବଳରାମ—ପାଣ୍ଡବେ ! ଆଜି ପାଣ୍ଡବ ନିରବ ମୁଁ ସୁଖୀ ।

ଦୁର୍ଯ୍ୟୋଧନ—ଅଭିମନ୍ୟୁ ! ଆଜି ତୁମ୍ଭ ବାପମାନଙ୍କୁ ଯେଉଁ ଅପମାନ ଦେଉଛୁ, ତାର ପ୍ରତିଶୋଧ ଏହି ମନ୍ତ୍ରୀଙ୍କ ଦ୍ୱାରା । ଚାଲ, ଫେରି ଚାଲ ।

( କୌରବମାନେ ଚାଲିଗଲେ )

ବଳରାମ—ଶ୍ରୀକୃଷ୍ଣ ! ଏତେ ଅପମାନ ମୁଁ ସହ୍ୟକରି ପାରୁ ନାହିଁ । ଏ ବିଚାର କାହା ଦ୍ୱାରା ।

ଶ୍ରୀକୃଷ୍ଣ—ଆପଣ ଜାଣନ୍ତି, ଧୃତରାଷ୍ଟ୍ରଙ୍କ ମଧ୍ୟରେ ଚିର ଶତ୍ରୁତା । ଆମର ମା ପାଣ୍ଡବମାନଙ୍କୁ ନିମନ୍ତ୍ରଣ ନ କରିବାଟା ଅନ୍ୟାୟ । ସେହି ଆକ୍ରୋଶରେ ଏପରି ଘଟିଥିବା ବିଚିତ୍ର ନୁହେଁ । ମୋଟ ଉପରେ ଯାହା ବର, ଯାହା କନ୍ୟା, ତା ବ୍ୟବହାର ଘଟସୁଖ । ଆମେ ନିଜର ଚୋଷ୍ଟ କରୁଛୁ ଦେଉଥାଇଁ କନ୍ତୁ ଶଶୀରେଖାର ଯୋଗ୍ୟ ପାତ୍ର ଅଭିମନ୍ୟୁ ।

ବଳରାମ—ଯେବେ ଏପରି ଥିଲା, କୌରବମାନଙ୍କୁ ଅପମାନିତ କରିବା ଉଚିତ ନ ଥିଲା ।

ଶ୍ରୀକୃଷ୍ଣ—ଅପମାନ ସେମାନେ ନିଜେ ନିଜେ କରୁଛନ୍ତି । ସେମାନଙ୍କର ଉଗ୍ର ସ୍ୱଭାବ ତାଙ୍କୁ ଅପଦସ୍ତ କରୁଛି । ପ୍ରଥମେ ଯେତେବେଳେ ଦ୍ୱାରକା ଦୁର୍ଯ୍ୟୋଧନଙ୍କୁ ଦେଖାଇ ବସାଇଲି ମୁଁ ପଣ୍ଡାମାନଙ୍କୁ ବୁଝିଛି ସେମାନେ ଆମ୍ଭଙ୍କୁ ଅତାନ୍ତ ଦେଖୁଛନ୍ତି ଏବଂ ଆମ୍ଭର ଦୁଃଖରେ ଉଦାସ ହେଲେ । ଅବଶେଷରେ ତାର ପରିଣାମ ସେ ଦେଖିବେ ନାହିଁ ତ ଆଉ କଏ ଦେଖିବ । ଦ୍ୱିତୀୟ ଆମେ ଜନ୍ମ ଦେଇଛେ ଯଦି କନ୍ତୁ କର୍ମ ତ ଦେଇନାହୁଁ ? ଆପଣ ଲକ୍ଷ୍ମଣ କୁମାରକୁ ଦେଖିଲେ ତ ସେ କେଉଁ ଗୁଣରେ ଶଶୀରେଖାର ଉପଯୁକ୍ତ ପାତ୍ର ?

ବଳରାମ—ଶଶୀରେଖା ବଡ଼ କଷ୍ଟରେ ଦେବତା ଯେ ଅଗ୍ନିର ଦେଇଥିବେ ।

ଶ୍ରୀକୃଷ୍ଣ—ବୃଦ୍ଧ, ଦୁଃଖ ନ ଦେବ । ଶଶୀରେଖା ତାର ଉପଯୁକ୍ତ ସ୍ଥାନ ପାଉଛି, ମୋ ଦେବପ୍ରିୟ ମତେ ବିବାହ କାର୍ଯ୍ୟ ସମ୍ପନ୍ନ କରିବାକୁ ହେବ ।

---

## ଷଷ୍ଠ ଦୃଶ୍ୟ

## ପାର୍ଶ୍ୱ

[ ଅଗାଧୁ ପଣ୍ଡିତ ଓ ଛଦ୍ମବେଶୀ ବ୍ରାହ୍ମଣ ଯୁବକ କନ୍ୟାବେଶରେ ]

ଅଗାଧୁ—ମୁଁ ତୁମ୍ଭଙ୍କୁ ପାଇବା ଟିକେ ମାତ୍ର ଆଶା କରି ନ ଥିଲି । ତୁମ ଗ୍ରାମର ଯୁବକ ସବୁ ମୋ ବିରୁଦ୍ଧରେ ଦଳବଳ ଲାଗିଲେ । ବାବୁ ଟଙ୍କା, ସବୁ କରେ ମୁହଁ ବଙ୍କା, ପ୍ରଳୟ ଯେମିତି ଧାଇଁଦେଉଛି ସବୁ ଚୁପ୍‌ଚାପ୍ । ଆସୁନା ମୋ ପାଖକୁ ଆସ । ଏ ଘର ସଂସାର ସବୁ ତୁମର, ନିଅ ଏ ଚାବି ତଲା ସବୁ ରଖ ଦେଖ ! ଏ ସବୁ ଯେ ବାକ୍‌ସ ରଖାଯାଇଛି, ସବୁଥିରେ ଟଙ୍କା ସୁନା ଭର୍ତ୍ତିପୂର । ତୁମର ଯାହା ଇଚ୍ଛା ତା ଖର୍ଚ୍ଚ କରିବ । ଖାଲି ମୋତେ ବ୍ୟବସ୍ଥା ଦେଉଥିବ, ଆସ ମୋ ପାଖକୁ ଆସ ।

ଛଦ୍ମବେଶୀ—ମୋତେ ଛୁଇଁବେ ନାହିଁ ।

ଅଗାଧୁ—କାହିଁକି ? କାହିଁକି ?

ଛଦ୍ମବେଶୀ—ମୋର ଅଙ୍ଗ ଅଶୁଦ୍ଧ ହୋଇଛି ।

ଅଗାଧୁ—ମଲି ! ମଲି ! ତୁମେ ସେଇଠି ଅଲଗା ବିଛଣା କରି ଶୁଅ, ମୁଁ ଏଇ ଖଟିଆରେ ପଡ଼ୁଛି ।

ଛଦ୍ମବେଶୀ—ଗୋଟିଏ ଘରେ ଶୋଇବା ଅବିଧି ।

ଅଗାଧୁ—କିଛି ଚିନ୍ତା ନାହିଁ । ମୁଁ ବାହାର ମେଲାରେ ଶୋଉଛି, ତୁମେ କବାଟ ବନ୍ଦକରି ଏ ଘରେ ଶୁଅ । ମୋର ଧନ ରତ୍ନ ସବୁ ଏ ଘରେ ଜୁହିଥାଉ । ବାହାରକୁ ଉଠିଲେ ମୋତେ ଡାକିବ, ନଚେତ୍ କୁଣ୍ଡ ଶୁଣାଇବ । ( ପ୍ରସ୍ଥାନୋଦ୍ୟତ ପୁଣି ଫେରିଆସି ) ହଁ, ଉପୃତ କହିବ ନାହିଁ ।

ଛଦ୍ମବେଶୀ—ନାଁ, ନାଁ, ଉପ୍ କଣ ?

ଅଗାଧୁ—ଯାହା ହେଉ ମନ ଜାଣି ପିଲାଟିଏ ଏଥର ପାଇଲି । ଏ ଶାସନଟାଯାକ ମୋତେ ଠଟ୍ଟାଟା କଲେଣି ? ଆରେ ଧନଥିଲେ ବଳେ ବଳେ କନ୍ୟା ଖୁଞ୍ଜି ଦେଇ ଯିବେ । ଯାଏଁ ରାତ ବ ବେଶି ହୋଇଗଲାଣି । (ପ୍ରସ୍ଥାନ)

ଛଦ୍ମବେଶୀ—(ଗାଡ଼ୀ ଖୋଲି) ଯେଉଁ ଧନ ବଳରେ ତୁ ଧରାକୁ ଶରା ମନେ କରୁଛୁ ଯେଉଁ ଦୁଃଖି ଦରିଦ୍ରଙ୍କ ରକ୍ତ ଶୋଷା ଧନରେ ବଳୀୟାନ ହୋଇଛୁ, ତାର ସଦ୍‌ବ୍ୟବହାର ଏଣିକି ଯୁବକମାନଙ୍କ ହସ୍ତରେ। ଦେଖେଁ କେଉଁଠାରେ କେତେ ଧନରତ୍ନ ଅଛି।

(ସବୁ ବାକ୍‌ସ ଖୋଲି ଟଙ୍କାପଇସା ଧନରତ୍ନ ନେଇ ଚମ୍ପଟ ଦେଲେ)

ଅଗାଧୁ—(ଧୀରେ ଧୀରେ ପ୍ରବେଶି) ଭୁଆସୁଣୀ ବୋହୂଟା, ଏକୁଟିଆ ଶୋଇଛି, ଭୟ କରୁଥିବ। କେତେବେ ଧନ୍ୟ ତା ସାହସ। ଯଦି ଶାଇ କରି ରହେ, ଏଇ ଏକା ଘରକରଣୀ କରିବ। (ଦୂରରୁ ଦେଖି) ମଲି ମଲି କବାଟଟା କଣ ଠିଆ ମେଲା? କଣ ବାହାରକୁ ଯାଇଛି? ମୋତେ ନ ଡାକି ତୁମେ ଭୁଆସୁଣୀ ନୂଆବୋହୂ ଲୋକ ଏକୁଟିଆ ପଦାକୁ ବାହାରୁଥିଲ କାହିଁକି? ନଇହେ! ଆସୁଛ? (ଟିକିଏ ଦୂରକୁ ଯାଇ) ଏ କଣ? ସର୍ବନାଶ ଧାନ ଘରଟାରେ କଣ ନିଆଁ ଲାଗିଯାଇଛି ଗଲି ଗଲି ସବୁତ ଗଲା, ଆରେ ନିଆଁ ତ ଅଇଛକା ମାଡ଼ ଆସିବ। ତୁମେ ଗଲ କୁଆଡ଼େ? ଏ ଘରୁ ବାକ୍‌ସ ପୀଲ୍‌ସଗୁଡ଼ାକ ବାହାରକୁ ନେଇଆସ (ଯାଇ ଦେଖିଲା) ବାକ୍‌ସ କଣ ସବୁ ମେଲା, ସବୁ ଭଙ୍ଗା ହୋଇଛି। କରେ ଇଆ ମୋତେ ଠକିଲା? ଧନଦରବ ଟଙ୍କା ସୁନା ସବୁ ବୋହିନେଲା। ଧାନ ଅମାରରେ ନିଆଁ ଲଗାଇ ମୋତେ ହାଣ୍ଡିର ଫକିର କରି ଛାଡ଼ିଦେଲା। ଯାଉଛି, ସେଇ ନିଆଁକୁ ଡେଇଁ ପଡ଼ିବି। (ପ୍ରସ୍ଥାନ)

ନେପଥ୍ୟ— ଗୀତ

ବାବୁ ଅସତ ଧନ ପକେ ବଢ଼ୁଛ
ଗଲାବେଳେ ଯାଏ ମୂଳ ସହିତ। ଘୋ।
କେତେ ଦୁଃଖୀ ଦରିଦ୍ରଙ୍କ ରକ୍ତ
ଶୋଷି ଧନ କରିଥିଲ୍ ପାଣ୍ଠି।
ଆଶା କରିଥିଲ୍ ନିଜେ ଭୋଗିବାକୁ
କ୍ଷଣକରେ ସବୁ ହେଲା ପାତତ। ୧।

ଧନ ଦଉଲତ ଲୁଟେଇଁ ଚିର
ଚିର ନୁହେଁ ଏ ଯେ ଜୀବନ ତୋର।
ପାଣି ଫୋଟକାଟି ତୋ ଜୀବନ ନାଟୀ।
ମାଟିକି ଯିବ ଏ ମାଟିର ଘଟ।

---

## ସପ୍ତମ ଦୃଶ୍ୟ
## ବିବାହ ବେଦୀ

(ଅଭିମନ୍ୟୁ ଓ ଶଶୀରେଖାଙ୍କୁ ବସାଇଲେ, ବାଦ୍ୟନାଦ୍ୟ ହୁଳହୁଳି ପଡ଼ିଲା)

ସୁଭଦ୍ରା—(ବଳରାମଙ୍କୁ ଧରିଆଣି) ଭାଇ! ତୁମେ କ୍ଷମାର ସାଗର, ମୁଁ ଭଉଣୀଟାଏ ତ! ସେ ସବୁ ଅପରାଧ ମୋର।

ଶ୍ରୀକୃଷ୍ଣ—(ପ୍ରବେଶ) (ଶଶୀରେଖା ଓ ଅଭିମନ୍ୟୁ ପଦବନ୍ଦନ କରିବା) (ଘଟୋତ୍କଚକୁ ଦେଖାଇ) ଭାଇ! ଏ ଯେ ଘଟୋତ୍କଚ, ଭୀମଙ୍କ ପୁତ୍ର। ବୀର! ଧନ୍ୟ ତୋର ସାହସ। ଆଶୀର୍ବାଦ କରେ ସର୍ବଦା ଜୟଯୁକ୍ତ ହୁଅ।

ନାରଦ—(ପ୍ରବେଶି) ହରିବୋଲ! ହରିବୋଲ! ବଢ଼ିଆ ବର ଏଠି, ଆମେ ଦ୍ୱାରକା ରାଜଭବନ ଯାକ ଉଣ୍ଡିବୁଲୁଛୁ। ସେଇ କଥା ହେଲା, ପ୍ରଥମେ ଆମ କଥାଟା ବଡ଼ବାପା ଉଡ଼େଇ ଦେଲେ।

ବଳରାମ—ଦେବର୍ଷେ! ଏସବୁ ନଟବରଙ୍କ ସବୁ ଷଡ଼ଯନ୍ତ୍ର ତୁମରି ହାତ।

ନାରଦ—ଦୋଷୀ ପଛେ ହେଉ। ତେବେ ଆମ ଶଶୀରେଖାର ଉପଯୁକ୍ତ ବର ଲାଭ ହୋଇଛି ଏଥିରେ ଆମେ ବହୁତ ଖୁସି।

(କୁଳାଙ୍ଗନାମାନଙ୍କ ଗୀତ)

ଘଟିଛି ଏ ଶୁଭ ମିଳନ, ଦେଇ ହୁଳହୁଳି ଆସି
ବନାଅ ଗୋ ଜଣେ ଜଣ। ପଦ।
କେମା ଲାଗି ଏ ଯୋଗ୍ୟ ବର
ବନ୍ଧ କାହିଁ ଗଢ଼ି ରଖିଥିଲ ସୁନ୍ଦର।
ଇନ୍ଦ୍ରପାଶେ ଇନ୍ଦ୍ରାଣୀ ସ୍ୱର୍ଗୀୟ ସୁଷମା ଭରି
ଧନ୍ୟ ବିଶ୍ୱସ୍ରଷ୍ଟା ତୁମ୍ଭ ମହିମା ଧନ୍ୟ। ୧।



# ଖାଣ୍ଡବ ଦହନ

## ବା

## ନବଗୁଞ୍ଜର ଓବେଶ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

### ସଭାଗୃହ

(ଅଗ୍ନି ଓ ଦେବତାଗଣ)

ଅଗ୍ନି—ଦେବବୃନ୍ଦ ! କେହ ମୋର ଦୁଃଖ ନ ଶୁଣିଲ ଏବେ ନିଶ୍ଚିନ୍ତେ ବସିଲ ସର୍ବେ ବାଦବାଦ କରି ଜଣାଗଲା ବଞ୍ଚିବାରେ ନାହିଁ ଉବ ପ୍ରୟୋଜନ କିଛି । ତେବେ ଯାଉଛି ମୁଁ ଏ ମୁହୂର୍ତ୍ତେ ଆତ୍ମହତ୍ୟା କରିବା ନିଶ୍ଚୟ । ଶେଷ ଦେଖା ଏହି ମାତ୍ର ମୋର ।

ଦେବଗଣ—ଶାନ୍ତହୁଅ ବୈଶ୍ୱାନର ! ଏ ଅନ୍ୟାୟ କାର୍ଯ୍ୟ କରିବାକୁ ବଳାଉଛ ମନ । ତୁମର କି ଦୁଃଖ, ପ୍ରକାଶ କର । ଆମ୍ଭେ ସବୁ ପରେନାସ୍ତି ଚେଷ୍ଟା କରିବୁ ।

ଅଗ୍ନି— ଗୀତ

(ମୃଗନେ ଯା ଦେଖିଛ—ତୁଚ୍ଛେ)

ହେ ଦେବବୃନ୍ଦ !

ଜଳୁ ଏନ ଅଜସ୍ର ମୋ ହୃଦ ।

ବୁଡ଼ିଲା ମୋ ଆଶା କିର୍ତ୍ତୀ ଗଲା ଅମର ସମ୍ପଦ

। ଘୋଷା ।

ଦେବବୃନ୍ଦ ! ମୋର ଯେତେକ ଧନ ପୂର୍ବ ତେଜ କରିବାକୁ ଥିଲା ସେତେକେ ଦୋଷଗଲାଣି । ଏଣିକି ତୁମମାନଙ୍କ ହୃଦକୁ ତୁମ୍ଭେମାନେ ବିଚାର କର ।

ଦେବଗଣ—କଅଣ ?

ଅଗ୍ନି— ଗୀତ

ଦେବେ କହିଲ ନିର୍ଦ୍ଦୟା ଉଡ଼ିଯାଉଛି ମୋ ସାଥା

କାହା ଆଗେ କହିବି ମୋ ଖେଦ । ୧ ।

ତୁମ୍ଭେମାନେ ତ ମୋର ଦୁଃଖ ଶୁଣିଲ ନାହିଁ, ଆଉ କଣ ତେବେ ମର୍ତ୍ତ୍ୟବାସୀଙ୍କଦ୍ୱାରା ଦୁର୍ଦ୍ଦଶା ମୋଚନ ହେବ ?

ଦେବଗଣ—ଅଗ୍ନି ! ତୁମକୁ କୌଣସି ବ୍ୟାଧି ଆକର୍ଷିଛି ପରି ତୁମ ରୂପରୁ ଅନୁମାନ । ତେବେ କି ବ୍ୟାଧି, ତାହା ପୁଣି କି ଦୋଷରୁ ହେଲା ତାହା ତ ଜାଣୁ ନାହିଁ ।

ଅଗ୍ନି— ଗୀତ

ଶ୍ୱେତକୀର ଯଜ୍ଞ କାଳେ ଦଶ ବର୍ଷ ଅବହେଳେ

ଏବେ ବ୍ୟାଧି ବଳାଇଲା ସଧ । ୨ ।

ଅମରଗଣ ! ଶ୍ୱେତକୀ ଯଜ୍ଞରେ ଦଶ ବର୍ଷ ପ୍ରମାଣେ ଘୃତ ଆହୁତି ଦେଲା । ମୁଁ କେବଳରେ ଦଶବର୍ଷ ସ୍ୱଚ୍ଛଏ ଗ୍ରାସ କରିବାରୁ ଏ ଦଶା ଲଭିଛି ।

ଗୀତ

କହ କି କରି ଉପାୟ ତୁଟିବ ଏ ବ୍ୟାଧି ଭୟ

କାଳବୃଷ୍ଟ ଭଲେ ଏ ହଦ । ୩ ।

କହ ଦେବେ ! ନାହିଁ ଆଉ ଅବସର ମୋତେ, ଜଣାଯାଏ ପ୍ରାଣ ବାୟୁ ଉଡ଼ିଗଲା ପରି । ନ ସହେ ଏ କଠୋର ଯନ୍ତ୍ରଣା, ମୃତ୍ୟୁଙ୍କର ଅଟେ ଶ୍ରେୟସ୍କର ।

ଦେବଗଣ—ଧନଞ୍ଜୟ ! କହନ୍ତୁ, ଜାଣନ୍ତୁ ଯଦ କିଛି ଏହି ପ୍ରତୀକାର ।

ଧନ୍ୱନ୍ତରି — ଅମରବୃନ୍ଦ ! କି କହିବି ଏ ବ୍ୟାଧିର ଗୁଣ । ନାମ ଏହାର ଲୁଦୁବୁଦୁ ବ୍ୟାଧି । ନ କ୍ଷମିବ ଏହା ଅମର ଔଷଧି ବିନୁ; କିନ୍ତୁ ଅଛି ତାହା ଇନ୍ଦ୍ର ଅକ୍ତିଆରେ ।

ଅଗ୍ନି — ତେବେ ଯାଉଛି ମାଗିବି ମୁଁ ଇନ୍ଦ୍ରେ ?

ଧନ୍ୱନ୍ତରି — ନା, ସେ ଔଷଧି ଅଛି ଗୁପ୍ତ ଭାବେ । ଯଦି କୋନପାୟେ ଦହିବ ଖାଣ୍ଡବ, ତେବେ ତବ ବ୍ୟାଧି ନଷ୍ଟ ହୋଇନ ଆରୋଗ୍ୟ ।

ଦେବଗଣ — ଅସମ୍ଭବ ! ଶୁଣୁଛ କପରି, ଅଗ୍ନି ପକ୍ଷେ ଦହିବା ଖାଣ୍ଡବ ନୁହଇ ସମ୍ଭବ ।

ଅଗ୍ନି — କେ ତେବେ ହେବ ସାହାଯ୍ୟ ଏ ଦୁରୂହ କାର୍ଯ୍ୟେ ମମ, କରନ୍ତୁ ପ୍ରକାଶ ।

ଦେବଗଣ — ଯାଅ ଏବେ ଦ୍ୱିଜବେଶେ ଅର୍ଜୁନ ସମୀପେ ।

ଗୀତ—( ତାଳ କର୍ତ୍ତାଳି )

ବହ୍ନି ଯାଅ ବାରୁଣାନଗର ହେ ।
ଭ୍ରାନ୍ତ ହରିବ ଇନ୍ଦ୍ର କୁମର ହେ । ଘୋଷା ।

ତୁମ୍ଭେ ବର୍ତ୍ତମାନ ବାରୁଣାକୁ ଯାଅ, ଅର୍ଜୁନ ଦ୍ୱାରା ତୁମ୍ଭ ଅଭିଳାଷ ପୂର୍ଣ୍ଣ ହେବ ।

ଅଗ୍ନି — କପରି ?

ଦେବଗଣ — ଗୀତ

ଖାଣ୍ଡବ ଯେବେ ଦାହ, କରିବ ଧନଞ୍ଜୟ
( ତବ ) ଭୟ ହେବଟି ମନୁ ଦୂର ହେ । ୧ ।

ଖଳପାଣ୍ଡୁ ଅର୍ଜୁନରେ ବନବାସେ ନେଇ, ପଥେ ସାଧିବଟି ଯାହା ମାନସ ତୁମ୍ଭର ।

ଅଗ୍ନି — କପରି ତାହାର ହେବେ ବୃଦ ମଧ୍ୟ ପାର୍ଥ ? ସବିଶେଷ କହ ବସ୍ତାରିଣ ।

ଦେବଗଣ — ଗୀତ

ଦ୍ରୌପଦୀ ସଙ୍ଗେ ଭୀମ; ରମିଲ ନିଶି ଦିନ
ଭ୍ରାତରେ କଲ ଅବସର ହେ । ୨ ।

ଦ୍ରୌପଦୀଙ୍କ ସଙ୍ଗରେ ଭୀମ ସଦାବେଳେ ରତ ହୋଇ ଅନ୍ୟ ଭ୍ରାତାମାନଙ୍କୁ ତାଙ୍କ ନିକଟେ ନ ଛାଡ଼ିବାରୁ ଗୋଟିଏ ପଣ ହୋଇଛି ।

ଅଗ୍ନି — ଅଚ୍ଛା, କଣ ପଣ କରିଛନ୍ତି ।

ଦେବଗଣ — ଗୀତ

ସେ ଯୋଗୁ ପଣ୍ଡୁସୁତ, କରିଲେ ଦୃଢ଼ବ୍ରତ
ଜଣକୁ ଦିନେ ଏ ଅବସର ହେ । ୩ ।

ସେହି ଦିନଠାରୁ ପାଣ୍ଡୁପୁତ୍ରମାନେ ନିୟମ କଲେ ଜଣକେ ମାସକୁ ଛ ଦିନ । ଅର୍ଥାତ୍ ଜଣେ ଦିନେ ରହିବ ଅନ୍ୟ ଦିନେ ଅନ୍ୟ ଜଣେ ଯିବ ।

ଅଗ୍ନି — କେ ଆଇନ କଲେ କି ଶାସ୍ତି ପାଇବ ।

ଦେବଗଣ — ଗୀତ

ଯେବା ବହିବ ଆଣ, ପ୍ରତିଜ୍ଞା ହେବ ନଷ୍ଟ
ବନବାସ ତା ପ୍ରତିକାର ହେ । ୪ ।

ଯଦି କେହି ନିୟମ ଭ୍ରଷ୍ଟ ହୁଏ ତେବେ ବାରବର୍ଷ ବନବାସ କରିବ ।

ଗୀତ

କରି କପଟ ବୃତ୍ତି ବନେ ପଠାଅ ପାର୍ଥ
ବାଳକୃଷ୍ଣର ଈଶ୍ୱର ହେ । ୫ ।

ବୈଶ୍ୱାନର ! ଯାଅ ତେବେ ବାରୁଣାକୁ ଧରି ଛଦ୍ମବେଶେ, ଥିବେ ଯଦି ଧର୍ମରାଜ କିମ୍ବା ଅନ୍ୟ ଭ୍ରାତା କେହି ପାଞ୍ଚାଳ ଝିଅସେ ସେ ସମୟେ କେନୋପାୟେ ପଠାଅ ସବ୍ୟସାଚରେ ସେ ସ୍ଥାନେ । ତେବେ ଯାଇଁ ପୂର୍ଣ୍ଣ ହେବ ମନୋରଥ ତବ ।

ଅଗ୍ନି — ଦେବବୃନ୍ଦ ! ଥାଆନ୍ତୁ କୁଶଳେ, ଯାଉଛି ମୁଁ ମର୍ତ୍ତ୍ୟଧାମେ ତବ ଆଜ୍ଞା ପାଳି । ( ପ୍ରସ୍ଥାନ )

—*—

## ଦ୍ୱିତୀୟ ଦୃଶ୍ୟ

### ( ବାରୁଣା କଟକ )

ଦୂତର ପ୍ରବେଶ

ଗୀତ

ଆସ ଜଏ ରସିକ, ମଞ୍ଜି ଚନ୍ଦନ
ମଳୟ ସମୀରଲରେ । ପଦ ।
ଗନ୍ଧ ପୂଲଦାର, କାମିନୀ ଅଧର
ପିନ୍ଧ ମଲ ମଲ ଧଳ ବାଲରେ ।
କାମିନୀ କୁନ୍ତଳା, ଇନ୍ଦ୍ରିଙ୍କ ଛଟା
ଦେଖାଇ ହୋଇବା ତୁଆ ପିଲ୍ଲରେ । ୧ ।

ଗନ୍ଧର୍ବ ଗୁରୁବା,        ପିନ୍ଧ ମେ.ଟା ଲୁଗା
ଗରବକୁ ମନୁ ତେଜ ଭକ୍ତରେ !
ଭକ୍ତରେ ଯା ମନ,   କି ଲୋଡ଼ା ଯେସନ ?
ଏସନ କଥାକୁ ମନ ଗଳାଏ । ୨ ।
ଏ ଯେ ଅବକାଳ       ପାଉନାହିଁ ବଳ,
ବେଳକୁ ବେଳ ଏ ଝଳ ଡେଲ୍ଟରେ ॥
କହେ ବାଳକୃଷ୍ଣ        ଭୁଞ୍ଜ ଗୀତ ଯାଚ
ଥାଅ ସଦା ରତ କୃଷ୍ଣଲୀଳାରେ । ୩ ।

( ସ୍ୱଗତ ) ଆଚ୍ଛା, ଏଠାରେ ଜଣେ କିଏ ଡାକୁଥିଲ ପରି ଶୁଭିଲା, ବୋଧହୁଏ କେହି ଅଭ୍ୟାଗତ ଦ୍ୱାର ଦେଶରେ ଉପଗତ । ବିଳମ୍ବରେ ପ୍ରୟୋଜନ ନାହିଁ । ଯାଏଁ ତେବେ, ( ପ୍ରକାଶ୍ୟେ ) କିଏ କେଉଁ କାର୍ଯ୍ୟରେ ଡାକୁଥିଲେ ?

ଅଗ୍ନି ( ପ୍ରବେଶ ପୂର୍ବକ )—ଆମ୍ଭେ ଜଣେ ଗରିବ ଦ୍ୱିଜ ।

ଦୂତ—ଦ୍ୱିଜଟିଏ କୁଆଡ଼ୁ ବାହାରି ପଡ଼ିଲ । ବର୍ତ୍ତମାନ ଦାନର ସମୟ ହୋଇନାହିଁ । ପରେ ଆସିବ ଯାଅ ।

ଅଗ୍ନି—ଦୂତ ! ମୁଁ ଦାନାର୍ଥୀ ନୁହେ, ବା ଦାନ ଆଶାରେ ଆସିନାହିଁ ଏଥି ।

ଦୂତ—ତେବେ ଆଗମନର କାରଣ ?

ଅଗ୍ନି—ବର୍ତ୍ତମାନ ଧର୍ମରାଜ କେଉଁଠାରେ ?

ଦୂତ—ମହାବାହୁ ବର୍ତ୍ତମାନ ଅନ୍ତଃପୁରରେ ।

ଅଗ୍ନି—( ସ୍ୱଗତ ) ତେବେ ଏହି ଠିକ୍ ସମୟ ଏହି ସମୟରେ ଉପସ୍ଥିତ ନ ହେଲେ, ବ୍ୟାଧିମୁକ୍ତ ହୋଇ ପାରିବି ନାହିଁ ।

( ପ୍ରକାଶ୍ୟେ ) ଦୂତ ! ମୋର ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ସହିତ କିଛି କାର୍ଯ୍ୟ ଅଛି, ତାଙ୍କ ଖବର ଦିଅ ।

ଦୂତ—ତେବେ ବସନ୍ତୁ ଖବର ଦେଉଛି ।

(ଅର୍ଜୁନର ପ୍ରବେଶ)

ଅର୍ଜୁନ—ଦୂତ ! ଖବର କ'ଣ ? ଏତେ ବ୍ୟସ୍ତ କେଉଁଥିପାଇଁ ।

ଦୂତ—ମହାବାହୁ ! ଜଣେ ଦ୍ୱିଜବର ଆପଣଙ୍କ ଦର୍ଶନ ଅପେକ୍ଷାରେ ଦ୍ୱାର ଦେଶରେ ଛିଡ଼ା ହୋଇଛନ୍ତି ।

ଅର୍ଜୁନ—ଜାଣେ ବ୍ରାହ୍ମଣ ? କି ଅଭିଳାଷରେ ଆସିଛନ୍ତି, କାରଣ କଣ ଜାଣୁ ?

ଦୂତ—ମହାବାହୁ ! ବ୍ରାହ୍ମଣ ଭାରି କଡ଼ା ମିଜାସର ଲୋକ । କଥା କହୁ କହୁ ଲାଲ ହୋଇ ଯାଉଛନ୍ତି ! ହୁକୁମ ହେଲେ ଡାକି ଆଣନ୍ତି ।

ଅର୍ଜୁନ—ଶୀଘ୍ର ଡାକ ଦେ, (ସ୍ୱଗତ) ଏ କଣ, ଏକମାତ୍ରେ ମୋର ବାମବାହୁ ଘନ ଘନ ସ୍ପନ୍ଦୁଛି କାହିଁକି ? ଏ ତ ସବୁ ଅମଙ୍ଗଳ ଲକ୍ଷଣ ଦେଖାଯାଉ ଅଛି ।

(ଅଗ୍ନିର ପ୍ରବେଶ ଓ ଅର୍ଜୁନର ପ୍ରଣାମ କରଣ)

ଅର୍ଜୁନ—ଦ୍ୱିଜବର ! ବଡ଼ ଭାଗ୍ୟବାନ ମଣୁଛି ମୁଁ ଆଜ । କହ ବାରେ କିବା ଅଭିଳାଷେ ଆସିଛନ୍ତି ଏଥି ।

ଗୀତ

(ଖେମଟା)

(ଅଳାପୂକ ଦ୍ୱିଜ—କୁରଙ୍ଗେ)

କହ କହ ଦ୍ୱିଜ        ଅଛି କିବା କାର୍ଯ୍ୟ
ଆସିଲ ମୋ ପୁର ହେ । ଘୋଷା ।
ନେତ୍ରେ ଦେଖି ତବ ପଦରଜ,
ଜନ୍ମ ସଫଳ ହୋଇଲା ଆଜ
ଶଙ୍କା ମନୁ ତେଜ;        ଯେବା ମନରଜ,
ହେଲ କହ ଗୀର ହେ । ୧ ।

ଦ୍ୱିଜବର ! ସାର୍ଥକ ହୋଇଲା ପୁଣ୍ୟ ତବ ପଦଲାଗି କିବା ତବ ମନୋରଥ ପ୍ରକାଶନ୍ତୁ ନିର୍ଭୟ ଅନ୍ତରେ ।

ଅଗ୍ନି—କି କହିବ ଫାଲଗୁନ ! ବଡ଼ ଦୁଃଖତର କଥା ।

ଅର୍ଜୁନ—          ଗୀତ

କେବା ହୋଇଅଛି ତବ ଅରି
(ଆଜ) ପାଣ୍ଡବେ କର ଗୁହାରି,
କହ ବପ୍ରାବର        ସଂଶୟ ମୋ ହର
ଚନ୍ଦ୍ରାକର ଦୂର ହେ ॥

ଦ୍ୱିଜବର ! ତୁମଙ୍କୁ କଣ ଶତ୍ରୁ ଭୟ ହୋଇଛି କି ? କହ, ଏହିକ୍ଷଣି ତାର ପ୍ରତିକାର କରିବି ।

ଅଗ୍ନି—ଅର୍ଜୁନ ! ମୋର ଆସିବାଟା ନିଷ୍ଫଳ ହେଲାପରି ଜଣାଯାଉଛି ।

ଅର୍ଜ୍ଜୁନ ଗୀତ

ଯେବା ଆଶ କର ହେ ପ୍ରକାଶ
ଶକ୍ତିଥିଲେ କରିପାରେ ତୋଷ
ବାଳକୃଷ୍ଣ ରସ ଜାଣ ଏ ରହସ୍ୟ
ଦେଖାଦୋଷ ହର ହେ । ୩ ।

ଦ୍ୱିଜବର ! ଯେ କୌଣସି କଥା ମନରେ ଅଛି ପ୍ରକାଶ କରନ୍ତୁ, ମୁଁ ନିଶ୍ଚୟ ଚେଷ୍ଟା କରିବି ।

ଅଗ୍ନି—ଅର୍ଜ୍ଜୁନ ! ତୋହଠାରେ ପ୍ରୟୋଜନ ନାହିଁଟି ମୋହର । କିନ୍ତୁ ସନ୍ତୁଷ୍ଟ ମୁଁ ହେଲି ଆଜ ତୋହର ସମ୍ମାନେ । ଯଶସ୍ୱୀ ହୋଇବୁ ବାବୁ ଯୁଗେ ଯୁଗେ ଭୁଇଁ । କହବାରେ ଧର୍ମସୁତ ଛନ୍ତି ଯହିଁ । ତାଙ୍କୁ ଦିଅ ଏ ବାରତା, ଏ ମୁହୂର୍ତ୍ତେ ଦେବେ ସେ ଦେଖା ।

ଅର୍ଜ୍ଜୁନ (ସ୍ୱଗତ) ଭାଇ ତ ବର୍ତ୍ତମାନ ଦ୍ରୌପଦୀଙ୍କ ନିକଟରେ ଅଛନ୍ତି । ଏ ଖବର ତାଙ୍କୁ ଦେବ କିଏ ।

ଦୂତ ଆଜ୍ଞା, ଏ ଜଣ ଚମତ୍କାର ହୋଇଛନ୍ତି । ଫେରାଇ ଦିଅନ୍ତୁ ।

ଅଗ୍ନି—ଅର୍ଜ୍ଜୁନ ନୀରବ ହେଲେ କିଆଁ, ସମସ୍ତ ଚିନ୍ତିତ ହେଉଛି ।

ଗୀତ

(ଏବେ ନ ଧର ଦୋଷ ମୋହର ଚଳେ—ବୃନ୍ଦେ)

ପାର୍ଥ ଜଣାଅ ମୋ ଭ୍ରାତରେ
ତ୍ୱରାନ୍ୱିତେ ଆସିଛି ମୁଁ ଖାତକୃତ ବ୍ୟର୍ଥରେ । ଘୋଷା ।

ଅର୍ଜ୍ଜୁନ ! ମୁଁ ତୁମ୍ଭମାନଙ୍କର ହିତରେ ଆସିଛି । ଭୟର କାରଣ କିଛି ନାହିଁ ।

ଗୀତ

ଯମରେ ପେଷିଲେ ମୋତେ
ଗୁପତେ ଆସିଛି ଏଥେ
କହି ମନ୍ତ୍ର ସାକ୍ଷାତେ
ଜାଣିଥା ତୋ ସ୍ୱାର୍ଥରେ । ୧ ।

ଅର୍ଜ୍ଜୁନ ! ମୁଁ ଯେଉଁ ଖବରଟି ଦେବତାମାନଙ୍କ ପାଖୁ ଆଣିଛି, ତାହା ଯୁଧିଷ୍ଠିରଙ୍କ ବ୍ୟତୀତ ଅନ୍ୟ କାହା ଆଗରେ ପ୍ରକାଶ କରିବି ନାହିଁ । ଯେବେ ଏହି ମୁହୂର୍ତ୍ତରେ ଯୁଧିଷ୍ଠିରଙ୍କ ସାକ୍ଷାତ ନ ପାଏ; ତେବେ ଆଉ ତୁମକୁ ଫେରିବି ନାହିଁ ।

ଅର୍ଜ୍ଜୁନ—ଦ୍ୱିଜବର ! କିଛି ସମୟ ଅପେକ୍ଷା କରନ୍ତୁ, ମୁଁ ବର୍ତ୍ତମାନ ଭାଇଙ୍କ ନିକଟକୁ କୌଣସିମତେ ଯାଇପାରିବି ନାହିଁ ।

ଅଗ୍ନି— ଗୀତ

ଅରକ୍ଷ ପାପେ୍ୱକ ମୂର୍ଖ, ଥିବ ତୋ ଦ୍ୱାରେ ଅନାଇ
ଏକ୍ଷଣି ଜଣାଅ ଯାଇଁ ନ କର ଅନର୍ଥରେ । ୨ ।

ଅର୍ଜ୍ଜୁନ ! ମୁଁ କଳି ଭକ୍ଷକ ନୁହେ, ଯେ ମୃତାନ୍ନ ପାଇଁ ତୋ ଦୁଆରେ ଅନାଇ ବସିଥିବି । ଯଦି ତୋତେ ଭଲ ଗତି ଅଛି ତ ମୋତେ ଯୁଧିଷ୍ଠିରଙ୍କ ସାକ୍ଷାତ କରାଇ ଦେ ।

ଅର୍ଜ୍ଜୁନ—ତା କେବେ ହୋଇ ପାରିବ ନାହିଁ ।

ଦୂତ—ଏବେ ଜଗର କାହିଁକି ? ଆମ ଖୁସି ନା ତମ କଥାକୁ ଖାଲି ଅନାଇ ବସିଛୁ ।

ଅଗ୍ନି— ଗୀତ

ଜାଣୁ ଏ ବ୍ରହ୍ମ ପ୍ରାକର୍ମ ଦହିବ ବାଳୁଣାଧାମ
ଚହିଁ କ କର ତୋ କାମ ବାଳକୃଷ୍ଣ କୃତ୍ୟରେ । ୩ ।

(ସକ୍ରୋଧେ) ମୂର୍ଖ ! ବ୍ରହ୍ମଶାପେ ଦହିବ ତୋ ବଂଶ । ଶତ୍ରୁ ! ନିଜ ପ୍ରାଣଲାଗି ବ୍ରାହ୍ମଣର ପ୍ରାଣ ନେଲୁ । ଏହିପରି କ୍ଷତ୍ରିୟୋଚିତ ଧର୍ମ, ଅଭିଶାପ ଘେନ ମୋର, ମୂର୍ଖ ଯାଉଛି ମୁଁ ଚଳ ଏ ମୁହୂର୍ତ୍ତେ ।

ଦୂତ—ବାଃ ବାଃ, ବାଃରେ ବାଃ, ଏତ ଭୟାନକ ଚରିତ ।

ଅର୍ଜ୍ଜୁନ— ଗୀତ

ତାଳ—ଖେମଟା

(ଯାଅ ଯାଅ ଗଙ୍ଗା-ବୃନ୍ଦେ)

ଆଉ ଦଣ୍ଡେ ରହ ରହ ହେ
ଦେବ ଦେବ ମୁଁ ବାରତା ଆଣି
ପାଞ୍ଚାଳି ମଧ୍ୟରେ ଭ୍ରାତା
ଅଛନ୍ତି ମୁଁ ଭଲେ ଜାଣି । ଘୋଷା ।

ଦ୍ୱିଜବର ! ଆଉ କ୍ଷଣେ ଅପେକ୍ଷା କରନ୍ତୁ, ମୁଁ ନିଶ୍ଚୟ ଆଣି ବାରତା ଦେବି । ଭାଇ ଅନ୍ତଃପୁରରେ ନ ଥିଲେ ଆପଣଙ୍କୁ ଏତେ ସମୟ ଅପେକ୍ଷା କରିବାକୁ ହୁଅନ୍ତା ନାହିଁ ।

ଅଗ୍ନି—ଆଚ୍ଛା, ସେ ଅନ୍ତଃପୁରରେ ଥିଲେ ତୁ ନ ଯିବୁ କାହିଁକି ?

ଅର୍ଜୁନ— ଗୀତ

ବୃକୋଦର ଲଗି ପଣ କରିଅଛୁ ପାଞ୍ଚଜଣ
ଯେ ଯାହାର ପାଳଦନ ଯିବୁ ପ୍ରିୟା ପାଶେ ମାନ । ୧ ।

ମଧ୍ୟମ ଭ୍ରାତା ଭୀମ, ଦ୍ରୌପଦୀ ସଙ୍ଗରେ ସର୍ବାବେଳେ ରହିଥାଇ ଅନ୍ୟମାନଙ୍କୁ ତାଙ୍କ ନିକଟକୁ ଯିବାକୁ ନ ଦେବାରୁ ଗୋଟିଏ ପଣ ହୋଇଛି, ଜଣକୁ ଦିନେ ଲେଖାଏଁ ।

ଅଗ୍ନି—ଆଜ୍ଞା, ନିୟମ ଲଙ୍ଘନେ ଦଣ୍ଡ କଣ ?

ଅର୍ଜୁନ— ଗୀତ

ତାହାଙ୍କୁ ହେଲେ ବିରତ ନ ଲଙ୍ଘିବ ମୋହ ବ୍ରତ
ଦେଖୁ ନଷ୍ଟେ ନିବାସିତ ଖାନ୍ତ ହୁଅ ପ୍ରତେ ମଣି ।

ଯଦି ଅମାନ୍ୟ ହୋଇ କେହି ସେ ସ୍ଥାନକୁ ଯାଏ ତ ବାର ବର୍ଷ ବନବାସ ।

ଅଗ୍ନି—ମିଥ୍ୟା କଥା, ବ୍ରାହ୍ମଣଙ୍କୁ ଭଣ୍ଡାଇବାକୁ ବସିଛୁ । ତେବେ ତୋର ନ ଯିବା କଥା । ମୁଁ ଫେରି ଯାଉଛି, ଭଲ ମନ୍ଦ ଘଟିବ ଯା ପଛେ, ନ ଧରିବୁ ଦୋଷ ମୋର, ଯା ମୂର୍ଖ ।

ଅର୍ଜୁନ—ଦେବ ! ଯାଉଛି ମୁଁ ତବ ବାକ୍ୟ ପାଳିବ ଏକ୍ଷଣି । (ସ୍ୱଗତ) ଭଗବାନ ! କିମ୍ପା ମେଦେ କର୍ମା ଏ ବଜ୍ରର ପତନ ।

ଗୀତ

ଦଇବ ଦୁର୍ଯୋଗ ଏ ତ,
ଓହରିବ ନଷ୍ଟେ ବ୍ୟସ୍ତ
ଦେବ କ୍ଷଣେ ଦୂର ଶ୍ରାନ୍ତ
ନାହିଁ ବିପଦେ ଲକ୍ଷଣି ।

ଦ୍ୱିଜବର ! ମୁଁ କେବେ ଆପଣଙ୍କର କ ଦୋଷ କରିଥିଲି ଯେ ମୋତେ ଏ ଦହରେ ପକାଇଲ୍ ।

ଅଗ୍ନି—ଯିବୁ ତ ଶୀଘ୍ର ଯା, ନଚେତ୍ ଦଇନ୍ଦ୍ରରେ ଘଟିପାରେ ବାଧା ।

ଅର୍ଜୁନ— ଗୀତ

ବଜ୍ର ଯା ନ ଭେଦ ମୁଣ୍ଡେ
ବର୍ଜିଲେ ବଚନ ଖାଣ୍ଡେ,
ଅର୍ଜିଲ କର୍ମ ମୁଁ ନଚେ
ବାଳବୃଦ୍ଧ ରସେ ଭଣି । ୩ ।

ଦ୍ୱିଜବର ! ଥାଅ ତେବେ ଯାଉଅଛି ମୁହିଁ ।

---

## ତୃତୀୟ ଦୃଶ୍ୟ

### ଅନ୍ତଃପୁର

ସଖୀଗଣ— ଗୀତ

( ଦେଶ ବସନ୍ତ—ରୂପକ )

କିଏ ହେବେ ଗୋ ଧର୍ମସୁତ ଅଙ୍କ ସଙ୍ଗାତ । ପଦ ।
ତୋଳ ନାନା ସୁମନ ଗୁନ୍ଥିବା କରି ଯତ୍ନ,
ସଜାଇ ଦେବା ରତ୍ନ ଖଟ । ୧ ।
ବାସ ଚନ୍ଦନ ଚୂଆ ଅତର ଦେନା ଢଳା,
ଶେଯେ ସିଞ୍ଚିବା କରି ଯତ୍ନ । ୨ ।

୧ମା ସଖି—ହଇ ଗୋ କଳ୍ପଳ ! ତମେ ପାନ ଭାଙ୍ଗି ସାରିଛ ।

୨ୟା ସଖି—ମଲ୍, ତମେ ଫୁଲ ଗୁନ୍ଥା କାମଟି ସାରି ଦେଇଛ, ମୁଁ କ ମୋ ପାଇଁଟି ବାଳ ରଖିବି ।

୧ମା ସଖି କଳ୍ପଳ ! ମୋ ଫୁଲରୁ ଗୋଟିଏ ହାର ପ୍ରେମିକ ଗଳାରେ ନାଇଲେ, ପ୍ରେମ ସମ୍ଭାଳି ପାରିବେ ନାହିଁ ।

୨ୟା ସଖି—ମଲ୍, ମୋ ପାନରେ ଏମିତ ମଜାଅଛି ଯେ ଅରସିକଟାଏ ହେଲେ ସୁଦ୍ଧା ରସିକ ପଣ ବାହାରି ପଡ଼ିବ ।

୩ୟା ସଖି—ହେଇତମ ସାଆନ୍ତାଣି ଆସୁଛନ୍ତି ଭାଇଟିତ ସଇଲ । ଚାଲ ଅନ୍ୟ ଧନ୍ଦାକୁ ଯିବା ।

( ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ

### କକ୍ଷ

ଦ୍ରୌପଦୀ—(ସ୍ୱଗତ) ଉଦୋ, ମନଟା ଏତେ ଗୋଳେଇ ଯାଉଛି କାହିଁକ ? ଜନ୍ତୁ ସ୍ତ୍ରୀମାନଙ୍କର ଦକ୍ଷିଣ ଚକ୍ଷୁ ସ୍ପନ୍ଦନ ହେଲେ ବଡ଼ ମନ୍ଦ । ଏ କଥା ଲାଗା ଆଖିଟା ଆଜ ଡେଇଁଛି କାହିଁକ ମ ? ମୁଁ ତ କିଛି ବୁଝି ପାରୁନାହିଁ । ଭଗବାନ ! ମୋତେ କଣ ଶାନ୍ତି ଦେଇନାହଁ, ପୁଣି ଆଜି କ ଶାନ୍ତି ଦେବାକୁ ଇଚ୍ଛା କରିଛ ।

ଯୁଧିଷ୍ଠିର—(ପ୍ରବେଶ ପୂର୍ବକ) ପ୍ରିୟେ ! ନିତ୍ୟକର୍ମ ସାରି ଆସୁ ଆସୁ ଟିକିଏ ବିଳମ୍ବ ହୋଇଗଲା । ମନଟା ଏପରି ବିରସ ଦେଖାଯାଉଛି କାହିଁକି ? କିଣ, କଥା କିଣ, ଆସ ପଲଙ୍କକୁ ଆସ ।

ଗୀତ (କର୍ଓ୍ୟାଲି)

ବସି ଆସ ଶଶୀ ହାସୀ ନବ ଛବିଳା ।
ବସି ନାଶ ଗୀରଣ୍ଡଶ ଅନ୍ତରର ଜ୍ୱାଳା । ପଦ ।

ପ୍ରିୟେ ! ଆସ, ବର୍ତ୍ତମାନ ଭାବନାର ସମୟ ନୁହେଁ ।

ଗୀତ

ଯବା ଅଧରୁ ଧିରି ପିଆଅ ସୁଧାଧର
ଭୁଞ୍ଜ ରତି ରୂପ ସ୍ନେହ ଭଜ ମଞ୍ଜୁଳା । ୧ ।

ପ୍ରିୟେ ! ତୁମ୍ଭ ସୁଧା ଅଧରରୁ ଟିକିଏ ମଧୁ ଚୁମ୍ବିବାକୁ ଏ ମନ ଭ୍ରମର ଅଥୟ ହୋଇ ପଡ଼ୁଲାଣି । କିଣ କହୁ କହୁବ ନାହିଁ ।

ଗୀତ

ମାରେ ମଦନ ବାଣ ବାରେ କର ତୁ ତ୍ରାଣ
ତୋଷ ଏ ପଞ୍ଚପରାଣ ନ କରି ହେଳା । ୨ ।

ସଖି ! ବିରହ ଜ୍ୱାଳାରେ ମୁଁ ଅଥୟ ହୋଇ ପଡ଼ୁଲାଣି, ମୋ ପ୍ରତି ଦୟାବନ୍ତ ଶୀଘ୍ର ତାର ପ୍ରତିକାର କର ।

ଗୀତ

ମତ୍ତ ମୋହନା ମତ୍ତ ଝଟଳନ୍ତ ମୋ ଅନ୍ତ
ଶୁଣାଅ ତୋର ସ୍ୱରସ୍ତି ମାନସ ବଳା । ୩ ।

ପ୍ରିୟେ ! ଯଦି କିଛି କଥା ମନରେ ଅଛି ପ୍ରକାଶ କର, ବୃଥାରେ କାହିଁକି ଏପରି ହଟହଟା କରୁଛ ?

ଦ୍ରୌପଦୀ—ନାଥ ! ତୁମ୍ଭଠାରେ ମୋର ଅଭିମାନ ନାହିଁ । କାହିଁକି ମନଟା ଭାରି ବ୍ୟସ୍ତ ହେଉଛି । ମୁଁ କିଛି ବୁଝି ପାରୁନାହିଁ ।

ଯୁଧିଷ୍ଠିର —ପ୍ରିୟେ ! ଶରୀର କିଣ ଅସୁସ୍ଥ ଅଛି ?

ଦ୍ରୌପଦୀ—ନା ନାଥ ! ଦକ୍ଷିଣ ଚକ୍ଷୁଟା ବାରମ୍ବାର ନେଉଛି । ସେଥିଯୋଗୁ ମନ କେତେ ଆଡ଼କୁ କେତେ ପାପ ଚୁଳୁଛି ।

ଯୁଧିଷ୍ଠିର—ନା, ସଖି ! ସେ କିଛି ନୁହେଁ, ଆସ ପଲଙ୍କକୁ ଆସ । ଯଦି ଦୁର୍ଯୋଗ ଘଟିବାର ଥିବ ତ ଘଟିବ । ତାକୁ ଖଣ୍ଡିବାକୁ କିଣ ମନୁଷ୍ୟର ସାଧ୍ୟ ।

( ଅର୍ଜ୍ଜୁନର ପ୍ରବେଶ )

( ସ୍ୱଗତ ) ଭଗବାନ ! ମୋତେ କି ବିପଦରେ ପକାଇଲେ ? ଏପରି ସମୟରେ ଭାଇଙ୍କ ନିକଟକୁ କିପରି ଯିବି, ଆଉ ତ ପଦ ଚଳୁନାହିଁ ।

ଗୀତ

( କର୍ମ ମୋର ଏଡ଼େ ଦାଉଖାର—ବୃନ୍ଦେ )

କରୁଣା ସିନ୍ଧୁ କରୁଣା, କଲକି ମୋଠାରେ ଊଣା
ଏ ଦାରୁଣା ସୁଖ ଆଜ, ହୋଇଯିବ ପରା ଊଣା । ଘୋଷା

ଭଗବାନ ! ଆଜ କିଣ ଏ ଦାରୁଣାର ସୁଖରୁ ମୋତେ ବଞ୍ଚିତ କରାଇବ, କିଣ କରିବ ।

ଗୀତ

ମୁଁ କାରେ ପାଞ୍ଚିଲି ମନ୍ଦ, ଧାତା ମୋତେ କଲୁ ଛନ୍ଦ
ଅରଜ ଯାଉଛି ହନ୍ଦ ଜାଣି ହୋଇ ତ ଅଜଣା ।୧।

ହେ ବିଧାତା ! ମୁଁ କାହାକୁ କେଉଁ ଦୁର୍ଦ୍ଦଶାରେ ପକାଇଥିଲି ଯେ ବର୍ତ୍ତମାନ ତାର ଫଳ ଭୋଗ କରିବାକୁ ଯାଉଛି ।

ଗୀତ

ଆଜ ଏ ବିପଦ ଗାଢ଼, ମସ୍ତକେ ହେଲି ସମ୍ପାତ
ବଢ଼ିଲି ବିପଦ ନଦୀ ବାଳକୃଷ୍ଣର ରଚନା ।୨।

ମେର ପରେ ଯଶା ଯାହା ହେଉ, କେବେ ବ୍ରହ୍ମ ଶାପରେ ବଂଶଟା ସାରି ଧ୍ୱଂସ କରାଇବି ନାହିଁ ।

( ଅର୍ଜ୍ଜୁନର ଅନ୍ତଃପୁରରେ ପ୍ରବେଶ ଓ ଯୁଧିଷ୍ଠିରଙ୍କୁ ପ୍ରଣିପାତ, ଦ୍ରୌପଦୀ ଲଜ୍ଜାରେ ସଙ୍କୁଚିତ )

ଯୁଧିଷ୍ଠିର—କିଏ, ଅର୍ଜ୍ଜୁନ ! ମୂର୍ଖ ! କି ସାହସେ କଲୁ ଏଡ଼େ କର୍ମ । ନରାଧମ ! ଏଣିକି ତୋର ବିବେକ, ଜଡ଼ ମୂର୍ଖ, ଏଡ଼େ ଲଜ୍ଜା ଦେଲୁ କିମ୍ପା ମୋତେ ।

ଗୀତ

( ହେ ଗୁରୁଦେବ—ବୃନ୍ଦେ )

କିମ୍ପାଇ କଲୁ ଏ ଅନର୍ଥରେ ଆରେ ପାର୍ଥ
ବୁଡ଼ିଲା କି ବୁଦ୍ଧି ତୋର ତୁଟିଗଲୁ ବ୍ରତ । ପଦ ।

ମୂର୍ଖ ! ତୋର ଏଡ଼େ ସାହାସ ! ଏଡ଼େ ଦର୍ପ ! କେ କହେ ତୋତେ ଧର୍ମସାର, ଅଧାର୍ମିକ ଅଟୁ ନିଶ୍ଚେ ମୂଢ଼ ।

ଗୀତ

ଘୁଞ୍ଚିଲା କି ତୋତେ ଧର୍ମ ଦେଲୁ ମୋତେ ଏଡ଼େ ସର୍ମ
କାହିଁ ଶିଖିଲୁ ଏ କର୍ମ ଲେଉଟିଲୁ ତୋ ସ୍ୱାର୍ଥ । ୧ ।

କହ, କାହା ପରାମର୍ଶରେ ମୋତେ ଏ ଘୋର ଅପମାନ ଦେଲୁ ? ଜ୍ୟେଷ୍ଠଭାଇ ବୋଲି ଏତେ ଭକ୍ତି ଦେଖାଉ, ତାର ଶାସ୍ତି କଣ ଏହି ?

ଗୀତ

ଦ୍ରୌପଦୀ ଯେବେ ତୋ ଜଣା
ନ ଥିଲା କ ଆଗୁ ଜଣା
ଆଜ ଏ କ ବବେଚନା କରିଲୁ ତୁ ଦୁଷ୍ଟ ।

ଅର୍ଜୁନ ! ଦ୍ରୌପଦୀ ତୋର ଜଣା ଥିଲା; କିନ୍ତୁ ତୁ ବାଧକର ସମସ୍ତଙ୍କୁ ସେଥିରେ ପକାଇ ଆଜ ଏ ଶାସ୍ତି ଦେବା ତୋର କଣ ଉଚିତ ହେଲା ? ଧିକ୍ ତୋର ପ୍ରତିଜ୍ଞା ।

(ଗୀତ)

ଜାଣି ଏ ପାପର ଶାସ୍ତି
କ ସାହସେ ହେଲୁ ମତ
ରହିଲା ଏ ଅପଖ୍ୟାତ କହେ କାଳକୃଷ୍ଣ ।
ମୂର୍ଖ ! ଏ ପାପର ଶାସ୍ତି କଣ ଜାଣୁ ତ ।

ଅର୍ଜୁନ— ଗୀତ

(ତାଳ-ଝାମ୍ପ)

ହାଇ ରେ ଦୁର୍ଲଙ୍ଘ୍ୟ ଦଣ୍ଡ କ ଦଣ୍ଡ ଦେଲୁ ସମ୍ରାଟ
ବଜ୍ର ଯା ନ ଦେଇ ମୁଣ୍ଡେ କଲୁ ଭ୍ରାତେ ଅପରାଧୀ ।
ଭଗବାନ୍ ! ମୋର ମସ୍ତକରେ ବଜ୍ରାଘାତ ନ କରି ମୋର ପୂଜ୍ୟାଗ୍ରଜ ଭାଇଙ୍କଠାରୁ ଏ କଟୂକ୍ତି ଶୁଣାଇଲ ।
ହୃଦୟ, ତୁ ଫାଟି ନ ଯାଇ ରହିଛୁ କମିଥାଇ !

ଯୁଧିଷ୍ଠିର—ଅର୍ଜୁନ ! ଧୈର୍ଯ୍ୟଧର, ଯାହା ହେବାର ହେଲାଣି, ତୋର ତ ମନେ ଏପରି ଭାବ ଦେଖି ନ ଥିଲି, କାହା ଫାନ୍ଦରେ ପଡ଼ିକ ସତ କହିଲୁ ?

ଅର୍ଜୁନ— ଗୀତ

ଏ ମୋହର ଗୋଚାକର୍ମ ଅର୍ଜୁନ ହୋଇଲାଣି ବାମ
ଚପଳ ହେଲାଣି ଧର୍ମ, କେବା ହେବ ପ୍ରତିବାଦୀ ।
ଭାଇ ! ସେ ମୋର କର୍ମ ଦୋଷ । ଧର୍ମାଧର୍ମ ନାହିଁ ମୋର ଜ୍ଞାନ ।

ଯୁଧିଷ୍ଠିର—ତେବେ ତୋତେ କଣ କିଏ ଏଠାକୁ ପଠାଇଲା ?

ଅର୍ଜୁନ— ଗୀତ

କ୍ଷମାକର ସହୋଦର, ପେଶିଲେକ ଦ୍ୱିଜବର
କାଳକୃଷ୍ଣ ବୋଲେ ମୋର, କରିଛି କପଟ କଥା ।

ଯାଅ ଭାଇ ! ଦ୍ୱାରଦେଶେ ଅପେକ୍ଷା କରୁଛନ୍ତି ଦ୍ୱିଜବର ଏକ । ତାଙ୍କ ବାକ୍ୟେ ବାଧ୍ୟ ହୋଇ ଅର୍ଜିଛି ଏ ଦୋଷ । ଯେ ପ୍ରତିଜ୍ଞା କରିଅଛି ପୂର୍ବେ, ଲଘନ ମୁଁ ନ କରିବ କେବେ । ଯାଉଛି ମୁଁ ଏ ମୁହୂର୍ତ୍ତେ ବନବାସେ ଚଳି ।

ଯୁଧିଷ୍ଠିର - ଶ୍ରେଷ୍ଠ ତୃତୀୟ ପାର୍ଥ, ଚାଲ ତେବେ ବ୍ରାହ୍ମଣ ସମୀପେ । (ପ୍ରସ୍ଥାନ)

---

## ପଞ୍ଚମ ଦୃଶ୍ୟ

## ଦ୍ୱାରଦେଶ

ଅଗ୍ନି—ବେଶ୍ ହୋଇଛି, ଏଥର ମନକାମନା ହାସଲ ହେଲା । ଅର୍ଜୁନ ଯୁଧିଷ୍ଠିରଙ୍କୁ ମୋ ସହିତ ସାକ୍ଷାତ କରାଇବାକୁ ଆସୁଛି, ଏତକବେଳେ ଏଠାରୁ ଅନ୍ତର ହେବା ଦରକାର । ( ପ୍ରସ୍ଥାନୋଦ୍ୟତ )

ଦୂତ—କହେ ଗୋସାଇଁ, ପଳାଉଛ କୁଆଡ଼େ ? ଆଉ ଟିକଏ ରହ ହୋ !

ଅଗ୍ନି—ଆରେ, ମୁଁ ଏଇକ୍ଷଣେ ଆସୁଛି ।

ଦୂତ—କ ଗୋଲମାଲ ତଲବ ହେଲା କ ? ହଉ ଯାଅ ଯାଅ ।

ଯୁଧିଷ୍ଠିର—କାହାନ୍ତି ସେ ଦ୍ୱିଜ ?

ଅର୍ଜୁନ—ଭାଇ, ସେ ତ ଏଇଠି ଥିଲେ । (ଦୂତପ୍ରତି) ଦୂତ ! ସେ ଦ୍ୱିଜ କେଉଁଆଡ଼େ ଗଲେ ।

ଦୂତ—ପ୍ରଭୁ ! ଏଇଠି ବସି ପାନବଟୁଆ ଖୋଲି ପାନ ଖାଉଥିଲେ । କେଜାଣି କାହିଁକି ଏଇକ୍ଷଣେ ବାହାରକୁ ଗଲେ । ମୁଁ ଯେତେ ଅଟକାଇଲି ଜମା ଶୁଣିଲେ ନାହିଁ ।

ଯୁଧିଷ୍ଠିର—ଅର୍ଜୁନ ! ଆଉ ସନ୍ଦେହର କାରଣ କିଛି ନାହିଁ, ନିଶ୍ଚେ ଜାଣିଲଣି କେହି ଦେବ ଦ୍ୱିଜ ରୂପ ଧରି ଛଳିଅଛି ତୋତେ । ନାହିଁ ଏଥି ତୋର ତିଳେମାତ୍ର ଦୋଷ ।

ଅର୍ଜୁନ—ଭାଇ ! ଆଜ୍ଞାକର ପାଳିବି ମୁଁ ପୂର୍ବର ପ୍ରତିଜ୍ଞା ।

ଯୁଧିଷ୍ଠିର—ପାଗଳ ହେଲୁ କି ଅର୍ଜୁନ ! ମୁଁ ବେଶକର ବୁଝିଲିଣି ତୁ ନିର୍ଦୋଷ ।

ଅର୍ଜୁନ—ଭାଇ ! ଫେରିଯିବ କି କେବେ ସିନ୍ଧୁଗାମୀ ସ୍ରୋତ ଅବା ତୂଣୀର ଶର ? ମୁଁ କ୍ଷତ୍ରିୟ ସନ୍ତାନ, ନ ଲଂଘିବି କେବେ ମୋ ନିୟମ । ଦିଅନ୍ତୁ ଶ୍ରୀଚରଣରୁ ଅବ୍ୟାହତି ମୋତେ ।

ଗୀତ

(ତାଳ ମଧ୍ୟମାନ)

ଦିଅ ଦେବ ଆଶୀର୍ବାଦ        ପଦପଦ୍ମ ସେବୁଛି ତବ
ଛଳ ମୋତେ କଲାଣି ଦଇବ ।
ଏ ବାହୁଣା ସୁଖ ଭୋଗ        ଆଜି ହେଲାଟି ଅଭାବ
ଜାଣିଲି ମୁଁ କର୍ମ ହତଭାଗ୍ୟ ।୧।

ଭାଇ ! ବିଧାତା ମୋତେ ଆପଣମାନଙ୍କ ସଙ୍ଗ ସୁଖରୁ ବଞ୍ଚିତ କଲାଣି, ଆଉ ବାହୁଣା ମୋ ଭାଗ୍ୟରେ ନାହିଁ ।

ଯୁଧିଷ୍ଠିର—(ସ୍ୱଗତ) ମୁଁ ମୂର୍ଖ କଣ କଲି, କାହିଁକି ନ ବୁଝି ନ ସୁଝି ଗାଳି ଗୁଲଜ କଲି ?

ଅର୍ଜୁନ—        ଗୀତ

ପୂର୍ବ ଯା ହୋଇଛି ପଣ        ପାଳିବି ଆଜ ବଚନ
ବାହୁଣାର ନୁହେଁ ମୁହିଁ ଯୋଗ୍ୟ ।
ଦ୍ୱାଦଶ ବରଷ ପୂର୍ଣ୍ଣ        କରି ଫେରିବି ସଦନ
ବାଳକୃଷ୍ଣ ଭଣିଲା ଏ ପଦ ।୨।

ଭାଇ, ଯଦି ପ୍ରାଣରେ ଥାଏ ତ ବାରବର୍ଷ ଅତିବାହିତ କରି ଫେରିଲେ ଶ୍ରୀଚରଣ ବନ୍ଦନା କରିବି, ମେଲାଣି ଦିଅନ୍ତୁ ।

ଯୁଧିଷ୍ଠିର—ଏତ ଅଛା ମୁସ୍କିଲ କଥା ହେଲା । (ଦୂତପ୍ରତି) ଦୂତ ! ତୁ ଶୀଘ୍ର ଦ୍ରୌପଦୀଙ୍କୁ ଖବର ଦେ, ସେ ଆସି ଅର୍ଜୁନଙ୍କୁ ବୁଝାସୁଝା କରନ୍ତୁ । ଅର୍ଜୁନ ! ମୋତେ ଏ ଅପବାଦରୁ ରକ୍ଷାକର । ମୁଁ ଆଉ ବାହୁଣାରେ ମୁଣ୍ଡଟେକି ବାଟ ଚାଲିବିଟି ! ଲୋକେ ମୋତେ କଣ କହିବେ ?

ଅର୍ଜୁନ—ଭାଇ ! ମୋ କର୍ମ ଦୋଷରୁ ମୁଁ ଏ ଦଶା ଲଭିଲି ଆପଣଙ୍କର ସେଥିରେ କି ଦୋଷ ?

ଯୁଧିଷ୍ଠିର—(ଦ୍ରୌପଦୀ ପ୍ରତି) ପ୍ରିୟେ ! ଅର୍ଜୁନ ବର୍ତ୍ତମାନ ପୂର୍ବପଣ ଅନୁଯାୟୀ ବନବାସ ଯିବାକୁ ତତ୍ପର, ଯାଅ ତୁମେ ବୁଝାଇ କହିବ ।

ଅର୍ଜୁନ—ପ୍ରିୟେ ! ତୁମ୍ଭ ଆମ୍ଭ ଦେଖା ଏତିକି ।

ଦ୍ରୌପଦୀ—ନାଥ ! ଏ କି କଥା ? ଏ ଅଧୀନାକୁ ଛାଡ଼ି କୁଆଡ଼େ ଯାଉଛନ୍ତି ? ମୁଁ କଣ ଆପଣଙ୍କ ଯୋଗ୍ୟା ହେଲିନାହିଁ ?

ଅର୍ଜୁନ—ନା ସଖି, ମୁଁ ଅଯୋଗ୍ୟ ।

ଦ୍ରୌପଦୀ—        ଗୀତ

(ଆହା କି ମୋ ସାରଦିଆ-ବୃତ୍ତେ)

ମୋ ରାଣ ଚରଣ ଧନ ନ ଯାଅ ବନ
ହରାଇ ବଞ୍ଚିବି କେମନ୍ତେ ତବ ବଦନ । ଘୋଷା ।

ନାଥ ! ଅଧୀନା ଏ ପାଦଯୁଗଳ ହରାଇ ସତେ କଣ ପ୍ରାଣରେ ବଞ୍ଚିରହିବ !

ଅର୍ଜୁନ—ପ୍ରିୟେ, ନିୟତିର ଗତିରୋଧ କରିବାକୁ ଶକ୍ତି କାହାର ?

ଦ୍ରୌପଦୀ—        ଗୀତ

ଭବକଣା ମୁଖଚନ୍ଦ୍ର ହରାଇ ସତେ ବଞ୍ଚିବ
ଦିବା ନିଶି ଭାବି ଭାବି ଯିବ ଜୀବନ ।୧।

ନାଥ ! ଏ ଚନ୍ଦ୍ର ବଦନକୁ ହରାଇ ଆଉ କଣ ଜୀବନରେ ସୁଖ ଅଛି ? ମୋ କଥା ରଖି କେବେହେଁ ବନକୁ ଯାଆନ୍ତୁ ନାହିଁ ।

ଅର୍ଜୁନ—ନିୟମ ଲଙ୍ଘନ ମହାପାପ, ପୁଣି ଭାବି ଦେଖ । ରାଜାନୁଗତ ଧର୍ମ । ରାଜା ଯେପରି ନିୟମରେ ଚାଲିବେ, ପ୍ରଜାମାନେ ମଧ୍ୟ ସେହି ପନ୍ଥା ଅବଲମ୍ବନ କରିବେ । କାରଣ ତାଙ୍କର ଆଦର୍ଶ ରହିବ, "ମହାଜନୋ ଯେନ ଗତଃ ସ ପନ୍ଥା ।" ଆହୁରି ମଧ୍ୟ ନଦୀ ଯଦି ଉଦ୍‌ବେଳିତ ହୁଏ, ସେତେ କ୍ଷତି ନାହିଁ, ମାତ୍ର ସାଗରୋଦ୍‌ବେଳିତ ହେଲେ ସଚରାଚର ସମସ୍ତ ଜନଙ୍କୁ ହେବାର ଆଶଙ୍କା । ତେବେ ବୃଥାରେ ବଳାଅନା ସଖି ।

ଦ୍ରୌପଦୀ—        ଗୀତ

ଦାସୀରେ ହୁଅ ନିର୍ଦ୍ଦୟା        ଉଡ଼ିଯାଉଛି ମୋ ସାହା
ପ୍ରାଣ ରଖ ପ୍ରାଣନାଥ ବାଳୀ ଭଣନ । ୨ ।

ନାଥ ! ଯେବେ ଦାସୀକୁ ଅନ୍ତର କରୁଛନ୍ତି, ତେବେ ମୋ ପ୍ରାଣଟା ଆପଣଙ୍କ ହସ୍ତରେ ନେଇ ଯାଆନ୍ତୁ । ଏ ଅଲୋଡ଼ା ଜୀବନ ଥାଇ କି ପ୍ରୟୋଜନ ?

ଅର୍ଜ୍ଜୁନ—ପ୍ରିୟେ ! ବୃଥା ଭାବନା ତବ । ତୁମ୍ଭେ କ୍ଷତ୍ରିୟ ରମଣୀ ହୋଇ ନ ଜାଣ କି କ୍ଷତ୍ରିୟ ହୃଦୟ । ଯାହା କର୍ମରେ ଲେଖା ଅଛି, ତା କିଏ ଅନ୍ୟଥା କରିବ ?

ଗୀତ

( ରାଗ କର୍ଣ୍ଣାଟ )

ଥାଉ ଥିଲେ ଭବାଧବା ହେବ ଦେଖା ରେ
ଭବ ସୁଖ ଭୋଗିବାକୁ ଦୈବ ଲେଖା ରେ । ଘୋଷା ।

ସଖି ! ଯଦି ପ୍ରାଣରେ ଥାଏ ତ ନିଶ୍ଚୟ ଦେଖା ସାକ୍ଷାତ ହେବ । ମୋର ଯଶ ମୁଁ ଭୋଗ ନ କରିବି ତ ଆଉ କିଏ ଭୋଗ କରିବ ?

ଦ୍ରୌପଦୀ—ନାଥ ! ତୁମ୍ଭେ ବନବାସ କରିଯିବା କଥା ଶୁଣି ସମସ୍ତେ ଅଧୈର୍ଯ୍ୟ ହେଉଛନ୍ତି ।

ଅର୍ଜ୍ଜୁନ— ଗୀତ

ଜାଣି କରିଛି ଦୋଷ ଦେବ' କରିବ ହ୍ରାସ
ବାସ ହେଲିଣି ବଶ ନାହିଁ ରକ୍ଷା ରେ । ୧ ।

ପ୍ରିୟେ ! ମୁଁ ଜାଣୁ ଜାଣୁ କୁକର୍ମ ଅନେକରେ ହସ୍ତକ୍ଷେପ କରିଛି, ନିଶ୍ଚେ ତାର ପ୍ରତିଫଳ ଭୋଗ କରିବି । ଏହା ଜାଣି ଶୁଣି ପାପଠାରୁ ନିବୃତ୍ତ ହୋଇ ନାହିଁ କି ।

ଦ୍ରୌପଦୀ—ତେବେ ଏ ଅଧୀନାର କଥା କଣ ରହିବ ନାହିଁ ।

ଅର୍ଜ୍ଜୁନ— ଗୀତ

ଥାଉ ଧର୍ମ ଆଦର ମର୍ମେ ନ ହୁଅ ପାର
ମୁଁ ଆସିବି ନିଶ୍ଚେ ଫେରି ତେଜ ଶଙ୍କା ରେ । ୨ ।

ପ୍ରିୟେ ! ବାରବର୍ଷ ପରେ ନିଶ୍ଚୟ ତୁମର ସାକ୍ଷାତ କରିବି, ମୋର ଗୋଟିଏ ନିବେଦନ ଦୟା କର ।

ଗୀତ

ଭ୍ରାତେ କରଅ ଶାନ୍ତ ତେଜ ତୋ ମନୁ ଭ୍ରାନ୍ତ
ପାନ ବାଳକୃଷ୍ଣ ଶାନ୍ତ ଏହି ଭିକ୍ଷା ରେ । ୩ ।

ପ୍ରିୟେ ! ଭାଇ ଅଧୈର୍ଯ୍ୟ ହେଉଛନ୍ତି, ତାଙ୍କୁ ପ୍ରବୋଧ କର । ମୁଁ ନିଶ୍ଚୟ ପ୍ରତିଜ୍ଞା ପାଳନ କରିବି, ମୋତେ ମେଲାଣି ଦିଅ ?

ଦ୍ରୌପଦୀ— ଗୀତ

( ଜୟ ହେ ବଦେଶୀ—ବୃନ୍ଦେ )

ଏହା ଥିଲା ତୁମ୍ଭ ମନେ ଆଉ କାହା ଆଗେ କହିବି ।
ପ୍ରାଣନାଥ ଛାଡ଼ିଗଲେ ପ୍ରାଣେ ମରେ ରହିବି । ଘୋଷା ।

ନାଥ ! ଆପଣଙ୍କ ମନରେ ଏତେ କଥା ଥିଲା ବୋଲି ମୁଁ ଜାଣି ନ ଥିଲି, ଯଦି ବନକୁ ଯାଅ, ଏ ଅଧୀନାକୁ ସଙ୍ଗରେ ନେଇ ଯାଅ ।

ଅର୍ଜ୍ଜୁନ—ପ୍ରିୟେ ! ତୁମ୍ଭେ ଧୈର୍ଯ୍ୟଧର । କଥାରେ ଅଛି, "ସମ୍ପଦେ ନ ହେବ ଗ୍ଭତର, ବିପଦେ ନୋହିବ କାତର ।"

ଦ୍ରୌପଦୀ – ଗୀତ

ଗ୍ରୀଷ୍ମ ବର୍ଷା ଶରତ୍, ହେମନ୍ତ ଶୀତ ବସନ୍ତ
ଏକାକେ କୋକେ କାନ୍ତ ବସି କିଶି ପାରିବ । ୧ ।

ନାଥ ! ତୁମ୍ଭପରି ମୋର ମନ ଜାଣି ଋତୁ ଅନୁଯାୟୀ କିଏ ଶାନ୍ତି ବିଧାନ କରିବ ?

ଅର୍ଜ୍ଜୁନ—ପ୍ରିୟେ ! ତୁମ୍ଭେ ମୋତେ ଯେଉଁ ଦୃଷ୍ଟିରେ ଦେଖୁଥିଲ, ସେହିପରି ଅନ୍ୟମାନଙ୍କ ମନ କିଅ । ମୋ ସଙ୍ଗେ ଲାଗିବା ବୃଥା ।

ଦ୍ରୌପଦୀ— ଗୀତ

ବନେ ଗଲେ ସାବଧାନ ନିଅ ଏ ଅଧୀନା ପ୍ରାଣ
ବାଳର ଯିବ କଷଣ ଶୁଣ ତବ ଗାଇବ ।।

ନାଥ ! ମୋତେ ସଙ୍ଗରେ ନିଅ, ନୋହିଲେ ପ୍ରାଣ ରହିବ ନାହିଁ ।

ଅର୍ଜ୍ଜୁନ—କି ଆଶ୍ଚର୍ଯ୍ୟ, ତୁମ୍ଭେ ମୋ ବିଚ୍ଛେଦରେ ଯେତେ ଅଧୈର୍ଯ୍ୟ ହେଉଛ, ଏ ହୃଦୟ ତୁମ୍ଭ ବିଚ୍ଛେଦରେ କାନ୍ଦୁଛି କି ନା ତା ପରମେଶ୍ୱରଙ୍କୁ ଗୋଚର ।

ଦ୍ରୌପଦୀ - ନାଥ ! ତେବେ କଣ ନିଶ୍ଚୟ ଯିବ ?

ଅର୍ଜ୍ଜୁନ— ଗୀତ

(ଭୈରବୀ)

ତୁ କମା ହେଉ ଭବ ରେ ବାନ୍ଧବୀ, କମା ହେଉ ଭବ
ଭୋଗିବାକୁ ଅଛି ଦୁଃଖ କାହା ଆଗେ କହିବି । ଘୋଷା ।

ପ୍ରିୟେ ! ମୋ ଅଦୃଷ୍ଟରେ ଭୋଗାଭୋଗ ଶେଷ ନ ହେବା ପର୍ଯ୍ୟନ୍ତ ତାହା ଖଣ୍ଡନ କରିବ କିଏ ?

ଗୀତ

ଗାଡ଼ି ଚଳେଇ ଯିବ ମନୁ ନ ଯିବ ତୋ ଭବ
ଛନ୍ଦ କଲିଣି ଦଇବ ମନେ ଦିଶୀ ପ୍ରହାଇବ ।

ସଖି ! ତୁମ୍ଭର ଭାବ ମୁଁ ମନେ ବା ପାଶୋରି ପାରିବି ଆଉ ମୋତେ ବୃଥା ବାକ୍ୟ ଶିଳାଘାତ କରନା,
ଏ ପ୍ରାଣ ଅସ୍ଥିର ହେଉଛି ।

(ଗୀତ)

ତୋ ମଧୁର ହାସ୍ୟରେଖା  କାହିଁ ପାଇବି ମୁଁ ଦେଖା
ଏ ମୋର ଅଦୃଷ୍ଟ ଲେଖା ବାଳାମଣି ସତ୍ୟବ ॥

ସଙ୍ଗି, ତୁମ୍ଭର ଏ ମାଧୁର୍ଯ୍ୟରୂପକୁ ଦେଖିଲେ ଆଉ କଣ ଜୀବନରେ ଦୁଃଖ ଅଛି । ସ୍ୱୀୟ ଉକ୍ତିମାନଙ୍କୁ ପ୍ରବୋଧ କର, ମୋତେ ବିଳମ୍ବ ହେଉଛି ।

ଦ୍ରୌପଦୀ—ହଉ, ତୁମ୍ଭର ଇଚ୍ଛା ।

—*—

## ଷଷ୍ଠ ଦୃଶ୍ୟ

### ପଥ

ସୂତ୍ରଧର—ଆ ଆ ଡମ୍ଫାବୋଲ ଆରେ,
ସ୍ତ୍ରୀ—ଭରେ କଅଣ ଚନ୍ଦ୍ରିଆ କଡ ରେ ॥ ଘୋଷା ॥
ସୂ—ଆମ୍ଭ ବାହୁଣୀର ଶୀତ ଘର ରେ
ସ୍ତ୍ରୀ—ଖେଣ୍ଡା କାହାର କଣ ହେଲା ରେ,
ସୂ—ବହଳ ମୂର୍ଖ ତୁ ସହଜେ ଖାଇ ବସିଚୁ ଜାଣିବୁ
କଣ ରେ ।
ସୂ—ପାର୍ଥ ଗଲେ ବନବାସ ରେ,
ସ୍ତ୍ରୀ—ତୋ କଥାକୁ ମାଡ଼େ ହସ ରେ,
ସୂ—ନ ବୁଝି ତୁ ଖ୍ୟାସ ମନ ଭଙ୍ଗା
ଭଙ୍ଗିବାଟି ଆଉ କାହାରେ ।
ସ୍ତ୍ରୀ—ପ୍ରେମ ଲାଗି ଯେଉଁ ପଣରେ
ସୂ—ତାକୁ ଏଡ଼ିଲା କି ଅର୍ଜୁନ ରେ
ସ୍ତ୍ରୀ—ଦଇବ ଘଟଣ ଦେଲାକ ଭଣ୍ଡଣି
ଯା କରମେ ଅଛି ସାହା ରେ ।

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

### କାନନ

ଅର୍ଜୁନ—ଆହା, ଏ ଜଙ୍ଗଲଟି କାହାର ! ସୁସଜ୍ଜିତ ପ୍ରମୋଦୋଦ୍ୟାନ ପରି ଦେଖା ଯାଉଛି । ମୁଁ ତ ଏତେ ପଥ ଆସିଲି, କାହିଁ ଏପରି ସୁରମ୍ୟ ମନୋହର ସ୍ଥାନ ଦେଖି ନ ଥିଲି । ଏହାର ଶୋଭା ସନ୍ଦର୍ଶନେ ମୋର ଦୁଃଖ, କ୍ଳାନ୍ତି ଅପସାରିତ ହୋଇଅଛି । ଏଇଠାରେ ଟିକିଏ ବିଶ୍ରାମ ନେବି । (ବସିବାକୁ ଯାଉଁ ଯାଉଁ) ଏ କଣ, କେହି ହିଂସ୍ରଜନ୍ତୁ ଆସିଲାପରି ଜଣାଯାଉଛି । ଦେଖେ (ଇତସ୍ତତଃ ଦୃଷ୍ଟି) ହଁ, ବଡ଼ ଭାଗ୍ୟର ବିଷୟ, କର୍ମକୁ ଗଣ୍ଡାଟାଏ ଜୁଟିଛି, ଯାକୁ ଏଇଠାରେ ଶିକାର କରିବି । (ଶର ସନ୍ଧାନ କରି ପଶ୍ଚାଦ୍ଧାବନ, ବାଣ ନିକ୍ଷେପ, ଗଣ୍ଡାର ମୃତ୍ୟୁ । )

---

## ଦ୍ୱିତୀୟ ଦୃଶ୍ୟ

### କୈଳାଶ

(ହରଗୌରୀ)

ଶିବ—ଦେବି, ତୁମ୍ଭଙ୍କୁ ଅନ୍ୟମନସ୍କ ଦେଖୁଛି କାହିଁକି ? କଣ କହୁ ଭାବୁଛ, ପ୍ରକାଶ କର ।

ପାର୍ବତୀ—ନାଥ ! ମନଟା କାହିଁକି ଟୋକେଇ ପାଣି ହେଉଛି ! ମିଜାଜ ଠିକ ରହୁନାହିଁ, କାରଣ କଣ କହୁ ଜାଣି ପାରୁନାହିଁ ।

ନନ୍ଦୀ—କି ଆଶ୍ଚର୍ଯ୍ୟ, ଭ୍ରମିଲି ମୁଁ ଏ କାନନ ଗୋଟା, କାହିଁ ନ ପାଇଲି ଦେବଙ୍କ ଗଣ୍ଡାଟି । ଗଲା କେଉଁ-ଆଡ଼େ, ଯାଏ ତେବେ ଦେଖେ ଯେଉଁସ୍ଥାନେ ନଦୀତଟେ ଜଳ ପିଇ ଚରେ ସେ ଶୃଙ୍ଗନ, ଜାଣେ ଥିବ ସେହିସ୍ଥାନେ ଖୋଜି । (ଗଣ୍ଡାକୁ ଦେଖି) ଏକି ଅଦ୍ଭୁତ କାଣ୍ଡ ! କିଏ ସେ ପାଷଣ୍ଡ ଚଣ୍ଡପଣେ ବନ୍ଧୁ ତଳେ କଲା ଏଡ଼େ କାଣ୍ଡ, ବଧିଲା କେ ମୋର ଗଣ୍ଡାଟୋଟି ଦଣ୍ଡୁ ତେବେ ଦବେ ଶର ଛଡ଼ି ।

କେଉଁ ବର୍ବର ଏହାକୁ କରୁଛି ବିନାଶ ।
କାହାର ମୃତ୍ୟୁ ନିକଟ ହୋଇଛି ? କାହାର ପୃଷ୍ଠି କୃତାନ୍ତ ଘାଣ୍ଟି ହୋଇଛି । (ଆର୍ତ୍ତନାଦ) ସର୍ବନାଶ ।

ଶିବ—କେ କେଉଁଠାରେ ଆର୍ତ୍ତନାଦ କରୁଛି ?

ପାର୍ବତୀ—ଏଇ ନିକଟରେ ତ ଆମ ପିଲାଙ୍କ ପାଟିସ୍ୱର ଶୁଣାଯାଉଛି ।

ନନ୍ଦୀ—ବାପା ! ଆମ ଷଣ୍ଢାଟିକୁ କିଏ ମାରିଦେଲା ।

ଶିବ—ତୁମେ ସେତେବେଳେ କୁଆଡ଼େ ଥିଲ ?

ନନ୍ଦୀ, ଭୃଙ୍ଗୀ—ସେତେବେଳେ ଆପଣଙ୍କ ପ୍ରସାଦ ପାଇବା ନିମିତ୍ତ ମଠକୁ ଆସିଥିଲୁ ।

ଶିବ—କଣ ହେଲା, ଆରେ କେଉଁ ମୂର୍ଖ ଜାଣି ଏଡ଼େ କର୍ମ ଜାଣୁ ଜାଣୁ କିପରି ସେ ସର୍ପ ବିଳେ ପୂରାଇଲା ହସ୍ତ ?

ପାର୍ବତୀ—ନାଥ ! ମୋର ସବୁ ସରିଲା, କିଏ ମୋ ସନ୍ତାନକୁ ମାରିଲା ? ହାରେ କପାଳ ! (ମୂର୍ଚ୍ଛା)

ଶିବ—ନନ୍ଦୀ ! ମାଙ୍କୁ ଧର, ଷଣ୍ଢାଟ ମଲା ସେଥିଲାଗି ପ୍ରାଣ ଦେଇ ଦେବ କି ? ଦେବି, ତୁମ୍ଭେ କଣ ପାଗଳିନୀ ହେଲ ! ମଲାବସ୍ତୁ କି ଫେରି ଆସିବ, ଧୈର୍ଯ୍ୟ ଧର ।

ପାର୍ବତୀ—ନାଥ ! କାହିଁ ଏଡ଼େ ସାହସ, ମୋର ଷଣ୍ଢାକୁ ସେ ବିନାଶ କଲା । ତେବେ ମୋତେ ବିନାଶ କରିବାକୁ କେତେ ମାତ୍ର । ମୁଁ ଏ ପ୍ରାଣ ରଖିବି ନାହିଁ ।

ଶିବ—ଦେବୀ ତୁମ୍ଭେ ଧୈର୍ଯ୍ୟଧର, ସେ କଥା ବୁଝିବା, ଆମର ଷଣ୍ଢାକୁ ଯେ ମାରିଛି, ଆମେ କଣ ତାକୁ ଛାଡ଼ିଦେବା ? ନନ୍ଦୀ, ତେବେ ଷଣ୍ଢା କେଉଁଠି ଚରୁଥିଲା ?

ପାର୍ବତୀ— ଗୀତ

(ନାଗର ହେ ଶ୍ରବନା—ଝୁଲେ)

ହେ ଗୌରବଧନ, କେ ମୂଢ଼ କଲା ଏଡ଼େ କର୍ମ
ମୋତେ ନ ମାର ପ୍ରାଣେ ମାରିଲା ମୋ ସନ୍ତାନେ
ଧିକ ଧିକ ଏ ପୋଡ଼ା ପ୍ରାଣ । ୧ ।

ନାଥ ! କେତେ ସ୍ନେହରେ ସେ ଷଣ୍ଢାଟିକୁ ମୁଁ ପାଳିଥିଲି, ତାର ମୃତ୍ୟୁ ଦେଖି ଧୈର୍ଯ୍ୟ ଧରି ପାରୁନାହିଁ ।

ଶିବ—ଦେବି ! ଅଧୈର୍ଯ୍ୟ ହେଲେ କଣ ହେବ, ଯାହା ହେବାର ତ ହୋଇଗଲାଣି ।

ପାର୍ବତୀ— (ଗୀତ)

ଶୁଣତ ପ୍ରଭୁ ନାଥ ପ୍ରାଣେ ମୁଁ ହେବି ହତ
ଅଧୈର୍ଯ୍ୟ ହେଲାଣି ମୋ ମନ ହେ । ୧ ।

ନାଥ ! ମୋର କାନ ଛୁଅଁ, ମୁଁ ଏ ପ୍ରାଣ ତ୍ୟଜି ଦେବି ।

ଶିବ—ନନ୍ଦୀ, ଏତ ବଡ଼ ମୁସ୍କିଲ ହେଲା ! ଦେବି ! ତୁମ୍ଭେ ଶେଷ ଦେଖ ମୁଁ ତାର ପ୍ରତିକାର କରିବି ।

ପାର୍ବତୀ— ଗୀତ

ଯେବଣ ପ୍ରତିକାର, କରିବ ପ୍ରାଣେଶ୍ୱର
ବାକାମଣିର ଯିବ ମାନ ହେ । ୩ ।

ନାଥ ! ସେ ଦୋଷୀକୁ ଯଦି ମାରି ମୋ ନିକଟରେ ପକାଇବ ତ ମୋର ସନ୍ତାନକଷ୍ଟ ମନରୁ ପାଶୋରି ଯିବ ।

ଶିବ— ଗୀତ

( ୯ମ ମତ )

ଯୋଷାମଣି ଚିନ୍ତୁ କମା' ନାଶିବ ସେ ଦୋଷୀକି ରେ
ବାନ୍ଧବ ବସିଥା ବାସେ ନ ଗ୍ରସ ତୁ ବେଶିକରେ । ପଦ ।

ଦେବି ! ସେ ମୂର୍ଖକୁ ବର୍ତ୍ତମାନ ବିନାଶ କରିବି । ଯଦି ସେଥିରେ ଉଚ୍ଛୃଙ୍ଖଳ ହୁଏ ତ ଏ ନିର୍ଲଜ ମୁଖ ତୋତେ ଦେଖାଇବାକୁ ଆସିବି ନାହିଁ ।

ଗୀତ

ସ୍ୱୀୟ ବଳେ ମୃତ୍ୟୁ ନିମନ୍ତ୍ରଣ କରିଛି ମୂଢ଼ ଅଜ୍ଞାନ
ଜାଣିଲି ତା କର୍ମବାମ ପଡ଼ିଲାଣି ଆସି କରେ ।

ଦେବୀ ! ସେ ମୂର୍ଖ ବଳେ ବଳେ ମୃତ୍ୟୁକୁ ନିମନ୍ତ୍ରଣ କରିଛି । ତାକୁ ତ୍ରିଭୁବନରେ ଆଉ ରକ୍ଷା ନାହିଁ ।

ଗୀତ

ଷଣ୍ଢାଟା ପାଇଁଣ ଖଣ୍ଡା କାଟି; ମୁଁ କରିବ ଖଣ୍ଡା
ସତି ତୁ ନ କର ନିନ୍ଦା ଦେବି ମନ ତୋଷିବରେ ।

ଦେବି ! ତୁମର ଷଣ୍ଢା ଲାଗି ସେ ଜଣର ଗଣ୍ଡିକୁ ନିଶ୍ଚୟ ମୋଡ଼ିଦେବି । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଗୀତ

ହେଲେ ଦେବ ବ୍ରହ୍ମା ହରି ନାଶିବଟି ସୁଖଶୀଘ୍ର
ମୋ ସଙ୍ଗେ ହେଲେ ଲଗାଇ ବାଳକୃଷ୍ଣ ଭକ୍ଷିବ ରେ ।

ପ୍ରେୟସି ! ନ ହୁଅ ଶଙ୍କିତ ତୁମ୍ଭେ ଏ ମୁହୂର୍ତ୍ତେ, ମାଧବ ପାଣ୍ଡବେ ସ୍ୱର୍ଗ ମର୍ତ୍ତ୍ୟ ରସାତଳେ ଯେଉଁଠି ସେ ଲୁଚନ୍ତୁ, ପାଷଣ୍ଡକୁ ତେବେ ଖୋଜି କରିବ ବିନାଶ । ସ୍ୱୟଂ ଗୋଲକାଧିପତି ନାରାୟଣ ଯଦି ତା ସପକ୍ଷରେ ଚକ୍ର ଧାରଣ କରନ୍ତି ତ ମୁଁ ବିଚାର ସତ୍ୟ କରି କହୁଛି, ସେ କେବେ ମୋ ଠାରୁ ପରିତ୍ରାଣ ପାଇବ ନାହିଁ । ନନ୍ଦି, ଦେଖ ଦେଖ ଶୀଘ୍ର, କେ ମୂର୍ଖ କରିଛି ଏ କାଣ୍ଡ ।

ପାର୍ବତୀ—ନାଥ ମୁଁ ! ତେବେ ତୁମ୍ଭ ସଙ୍ଗରେ ଯିବି ।

ଶିବ—ଭଲ, ଚାଲ ତେବେ ।

———

## ତୃତୀୟ ଦୃଶ୍ୟ

## କାନନ

ଅର୍ଜୁନ – ମୋର ଲକ୍ଷ୍ୟ କିଣ ଭ୍ରଷ୍ଟ ହୋଇଗଲା, ତେବେ ଶରଟା ତ ଏହି ସ୍ଥାନରେ ପଡ଼ିଥାନ୍ତା । କି ଆଶ୍ଚର୍ଯ୍ୟ, ଯଦି ଆଜି ସାମାନ୍ୟ ଗଣ୍ଡାଟା ମୋର ଲକ୍ଷ୍ୟରୁ ବହିର୍ଗତ ହେଲା ତ ଏ ଧନୁଶର ଧରିବା ବୃଥା । ଏ କିଏ ଆସୁଛନ୍ତି, ସ୍ୱାଙ୍ଗ ପଶୁବରେ । ହେ ପିଲାଏ, ଆଡ଼କୁ ଆସିଲ ।

ନନ୍ଦି—କାହିଁକି ଡାକୁଛ ?

ଅର୍ଜୁନ—ଆରେ, ଦେଖିଲ, ଗୋଟାଏ ଗଣ୍ଡା ମୋ ବାଣ ଘାତ ଆଘାତ ପାଇ କେଉଁଠି ପଳାଇଛି । ମୋତେ ଖୋଜିଦେଲେ ପଇସା ଦେବି ।

ନନ୍ଦି – ଆରେ ଏଇଠି ତ ସ୍ୱେର, ଆମେ ବାର ଆଡ଼େ ଖୋଜୁଛୁ କିଣ । ହଇରେ ଦୁର୍ବୁଦ୍ଧି ପାଷଣ୍ଡ, ତୁ କିମ୍ପା ଆମ୍ଭର ପୋଷା ଗଣ୍ଡାଟି ମାରିଲୁ ?

ଅର୍ଜୁନ—ଆରେ କାହାର ଗଣ୍ଡା, ତୁମ୍ଭେମାନେ କିଣ ପିଲ ନାହଁ ?

ଗୀତ

ଛଡ଼କା

ନନ୍ଦି—ମଜା କରିଲୁ ଯିବ ଖୋଜାପଡ଼ୁଛି ତୋତେ ।
ଅର୍ଜୁନ—କେ ଏମନ୍ତ ବଳଶାଳୀ ଅଛି ଜଗତେ । ପଦ ।
ନନ୍ଦି—ସେତ ଜଗତମାତାର ଗଣ୍ଡା,
ତୁ କିମ୍ପା ମାରିଲୁ ଦୁଷ୍ଟା ।
ଅର୍ଜୁନ—ଗଣ୍ଡାଗଡ଼ା ପରି ତୁମ୍ଭେ ମଣିଛ ମୋତେ ।୧।
ନନ୍ଦି—କାଣ୍ଡିଦେବୁ ଚୂଟିଧରି, ବଧିଛୁ ଗଣ୍ଡା ଆମ୍ଭରି ।
ଅର୍ଜୁନ—ରେ ଦୁର୍ଦ୍ଦଣ୍ଡ ବଳସ୍ୱୀ ମୁଁ ଶଙ୍କୁ କାହୁଁତେ ।୨।

ଦୂର ହୁଅ ପାଷଣ୍ଡ, ସ୍ୱପୋଡ଼ା ଗୋଟାକେ ଜନ୍ମଦୁଧ ବାହାରିବ ତୁମ୍ଭ ।

ନନ୍ଦି—ଚାଲ ତେବେ ବାବାଙ୍କୁ କହିବା । ସ୍ୱେର, ଉଲଟି ସିମାକୋର । (ଶିବଙ୍କ ପ୍ରତି) ବାବା ! ଯେ ଗଣ୍ଡାକୁ ମାରିଛି ସେ ଏହି ନିକଟରେ ଭାରି ପ୍ରତାପ ଦେଖାଉଛି ।

ଶିବ—ମୂର୍ଖ, ଏଡ଼େ ତୋର ଆସ୍ପର୍ଦ୍ଧା, ଏଡ଼େ ଦର୍ପ ଲେଖ ହୋଇ ଭୁଜଙ୍ଗ ବଳରେ ପୂଜାଉଛୁ ହାତ । ଦେଖ ! ଆଉ ବିଳମ୍ବ ନାହିଁ, ମୂର୍ଖର ଅନ୍ତିମ କାଳ ନିକଟ ହୋଇଗଲାଣି ।

ନନ୍ଦି—ଚାଲ ଆଗେ ତମାସ ଦେଖିବ, କେଡ଼େ ଗର୍ବ ହୋଇଛି ତାହାର (ଅର୍ଜୁନକୁ ଲକ୍ଷ୍ୟ କରି ଦେଖାଇ ଦେବା) ଏଇ ଆସୁଛି, ବାପା ।

ଶିବ – ଏଇ ମୂର୍ଖ ! (ଅର୍ଜୁନ ପ୍ରତି) ଆରେ ରେ ପାଷଣ୍ଡ କିମ୍ପା ମୋର ଗଣ୍ଡାକୁ ତୁ ବଧିଲୁ ବିନାଶ ।

ଅର୍ଜୁନ – ରେ ବଣବୁଲା ଶବର ! କିଣା ଗଣ୍ଡା ତୋର ତୋର କି ଥିଲା ପ୍ରମାଣ ।

ଶିବ—ଗଣ୍ଡାଟା ପାଇଁ ତୋ ଖଣ୍ଡ ମୋଡ଼ିବ ରେ ଆଜ ।

ଅର୍ଜୁନ ଗଣ୍ଡାଗଡ଼ା ପ୍ରାୟ ମୋତେ ମଣିଛୁ କି ପ୍ରାଣ ।

ଗୀତ

ଶିବ— (ଝୁମଟା)

ଏତେ ତୋର ଗୁଣ ଆରେ ମୂଢ଼ମତି
କେତେ କଥା କହି କହି ରେ ।
ପିବୁକ ରେ କହିଁ ପଡ଼ିଲୁ ଦୁର୍ଗତି
ପ୍ରାଣବାୟୁ ଦେବ ଛାଡ଼ିରେ । ଘୋଷା ।

ମୂର୍ଖ ! ତୋର ଏତେଦୂର ଆସ୍ପର୍ଦ୍ଧା ? ତୋତେ ଦୈବ ବିପକ୍ଷ ହେଲାଣି । ଆଜ କେ ରକ୍ଷାକର୍ତ୍ତା ହେବ ଦେଖିବି ।

ଅର୍ଜୁନ– କିରାତ ! ତୋର ସେହି ପୋଷା ଗଣ୍ଡାଟିର ମୂଲ୍ୟ କେତେ କହ । ଦେବାକୁ ମୁଁ ପ୍ରସ୍ତୁତ ।

ଶିବ—ମୂଲ୍ୟ ଦେବୁ ?

ଗୀତ

ଆରେ କଣ ଓଁଲୁ      ମନ୍ଦ କର୍ମକଲୁ
ଯିବ ପିଠିଗଲୁ ଗ୍ରୀଷ୍ମ ରେ ।
ଗଣ୍ଡାପାଇ ଖଣ୍ଡା      ମୋହର ଦୁର୍ଦ୍ଦଣ୍ଡା
ଦଣ୍ଡାରେ ତୁ ଯିବୁ ଗନ୍ଧ ରେ ।

ମୂର୍ଖ ! ତୋର ବଢ଼ି ବଢ଼ି କଥାବା ଜଣାଇ ଦେଉଛି, କ୍ଷଣେ ରହ ।

ଗୀତ

ଧର୍ମ୍ମଧାମେ ବାସ,      ନାହିଁ ରେ ନୃଶଂସ
ଅଂଶ ବଂଶ ଦେବ ପୋଡ଼ ରେ ।
ବୈରିକୁ ଅକୃଷ୍ଣ      ସୁମର ତୋ ଇଷ୍ଟ
ବାଳକୃଷ୍ଣ ପଦ ଯୋଡ଼ରେ ।

ଆରେ ନରାଧମ ! ତୋର ଇଷ୍ଟ ଚିନ୍ତାକର, ଏକ୍ଷଣି ଯିବୁ ଯମନ ସଦନକୁ ।

ଅର୍ଜ୍ଜୁନ— ଗୀତ
(ଖେମଟା)

ଆଜ ଦଣ୍ଡେ ରହ ରହ ରେ
ଖଣ୍ଡ ଖଣ୍ଡ ହେବ ତୋ ମୁଣ୍ଡ ।
ତୁ ପିଶାଚ କାଣ୍ଡ,      ବର୍ବର ପାଷଣ୍ଡ
ଦେଖିବୁ ରେ ତୋ କାଣ୍ଡ । ଘୋଷା ।

ମୂର୍ଖ ! ତୋର ବୃଥା ବାକ୍ୟାଳାପର ପ୍ରୟୋଜନ କଣ ? ନ ଜାଣେ କେ ଜନ ନାମ ମୋହର ଅର୍ଜ୍ଜୁନ । ଦୁର୍ଜ୍ଜନଦଳନ ବାନା ଉଡ଼େ ଯାର ଏ ତିନ ଭୁବନ ।

ଗୀତ

ଦୁଷ୍ଟଦଣ୍ଡା ତୋ ଖଣ୍ଡା ମୋଡ଼,
ଏ ବ୍ରହ୍ମାଣ୍ଡ ଦେବ ମୁଁ ଛଡ଼ ।
ଆରେ ରେ ବାତୁଳା      ତୁ ଖଣ୍ଡ ଖେଚଡ଼ା
କଲୁଣି ଲଣ୍ଡଭଣ୍ଡ ।

ରହ ମୂର୍ଖ, ବର୍ତ୍ତମାନ ଖଣ୍ଡ ଖଣ୍ଡ କରିବ ତୋ ମୁଣ୍ଡ । ଜଣ୍ଡାଉଳାପର ମୋତେ ନ ଜବ ଜଗତ, ଗର୍ବ ତୋର ଖଣ୍ଡିବାକୁ ଆସିଛି ମୁଁ ଏଥେଁ ।

ଗୀତ

ଦଣ୍ଡାବୁଲ ତୁ ଦ୍ଦଣ୍ଡା ସ୍ୱେର
ଗଣ୍ଡି ମୁଣ୍ଡ ହେବ ତେ ଚୂର
ଜପେ ବାଳକୃଷ୍ଣ      ସୁମରି ତୋ ଇଷ୍ଟ
ହରିବ କଲ ଜ୍ୱର ।

ମୂଢ଼ ! ଧର ଅସ୍ତ୍ର କର ରଣେ ଜଣାଯିବ ପଣ, ବୃଥା ଉଚ୍ଚବାକ୍ୟେ ନାହିଁ କିଛି ପ୍ରୟୋଜନ ।

ଶିବ—ନରାଧମ ! ହୁଅ ଅଗ୍ରସର । ଦୂରାଇବ ନଷ୍ଟେ ତୋର ଆଜ ରଣସାଧ ।

ଅର୍ଜ୍ଜୁନ ଆରେ ବର୍ବର ! ଏବେ ମରିବୁ ପ୍ରସ୍ତୁତ ହୁଅ ।

ଶିବ—ସେ କମନ୍ତେ ନାହିଁ ମୋର ଭୟ ?

ଅର୍ଜ୍ଜୁନ - ସମ୍ଭାଳ ଏ ଗଲା ମୋର ଜଳଧାର ଶର ।

ଶିବ – ବାୟୁବାଣଷ୍ଟେ ଉଡ଼ାଇଲି ଦେଖରେ ବର୍ବର ।

ଅର୍ଜ୍ଜୁନ—ବହ୍ନି ଦେଖ ପର୍ବତାସ୍ତ୍ରେ କାଟିଲି ତୋ ମୁଣ୍ଡ ।

ଶିବ—ଏହି ଦେଖ ଇଚ୍ଛିତରେ ବଜ୍ରବାଣେ ହେଲା ଖଣ୍ଡ ଖଣ୍ଡ ।

ଅର୍ଜ୍ଜୁନ—ପୁଣି କୁଣ୍ଡଳ ବାଣଗଲା ସମ୍ଭାଳ ଶବର ।

ଶିବ - ଛେଦି ପକାଇଲି ଦେଖ ମୋର ଏହି ଅର୍ଦ୍ଧଚନ୍ଦ୍ର ଶର ।

ଅର୍ଜ୍ଜୁନ ସମ୍ଭାଳ ଏ ଗରୁଡ଼ ଶର ରେ ମୂଢ଼ ପାଷଣ୍ଡ ।

ଶିବ—ଏହି ନାଗବାଣାସ୍ତ୍ରେ ତୁମ୍ଭ ନଷ୍ଟେ ମରିବୁ ଦୁର୍ଦ୍ଦଣ୍ଡ ।

(ଉଭୟଙ୍କ ଯୁଦ୍ଧ ଓ ଶିବଙ୍କର ଶରବ୍ୟର୍ଥ ହେବା ଦେଖି)

ଶିବ—କ୍ଷାନ୍ତ ହୁଅ ବୀର ପାର୍ଥ, ଚହ୍ନିଲି ମୁଁ ତୋତେ । ତୁମ୍ଭ ମହାଶକ୍ତିବାନ । ଅହଙ୍କାରେ କଲୁ ତୋରେ ଦ୍ରୋହ, ଏ ଉପଯୁକ୍ତ ଶାସ୍ତି ପାଇଛୁ ମୁଁ ଅଜେ ।

ଅର୍ଜ୍ଜୁନ—କିଏ ତୁମ୍ଭେ ମହାତ୍ମା, ଅଲକ୍ଷିତେ ଯୁଦ୍ଧ କଲ ମୋହର ସଙ୍ଗତେ, ନ ଜାଣି ମୁଁ କରିଛି ଅପାର, ଦୋଷାଦୋଷ କ୍ଷମାକରି କହିବେ କି ପରିଚୟ ଗୀର ?

ଶିବ—ବତ୍ସ ! ମୁହିଁ ଏହି ଉଦ୍ୟାନ,ଧାତାର ବୈଳାସପତି ହର । କହୁଥିଲି ଶକ୍ତି ମୁଁ ତୁମ୍ଭର ।

ଅର୍ଜ୍ଜୁନ— (ସ୍ୱଗତ) କଣ ଶୁଣିଲି, କି କର୍ମ କଲି ମୁଁ ମୂଢ଼ । ଅଜ୍ଞାନ ପଣରେ ଦର୍ପର ବଶବର୍ତ୍ତୀ ହୋଇ ଦେବ ଦେବ ମହାଦେବଙ୍କୁ କି ପୀଡ଼ା ନ ଦେଲି । ରେ କୁଳଶ, ତୁ ମୋର ମସ୍ତକ ଚୂର୍ଣ୍ଣ ନ କରି ରହିଛୁ କାହିଁକି ? (ପ୍ରକାଶ୍ୟେ) ହେ ଦେବ ଦେବ ! ତ୍ରିଲୋଚନ ଉମାପତି ! କ୍ଷମାକର ଦାସ ଦୋଷ, ଅଜ୍ଞାନ ମୁଁ ନ ଜାଣି କିଛି ।

(ସାଷ୍ଟାଙ୍ଗ ପ୍ରଣିପାତ ଓ ପ୍ରାର୍ଥନା)

ଗୀତ

(ବିଶ୍ଵ ହେ — ତ୍ରିପୁଟ)

ହର ହେ ଅପରାଧ ମୋହର

ନ ଜାଣି ମୁଁ ଦୋଷ କଲି କ୍ଷମାଈଶ

କର୍ମ ବାମ ମୋହର । ୧ ।

ତୁମ୍ଭ ଦେବ ଦେବ ପାର୍ବତୀପତି ଗଙ୍ଗାଧର

ଭସ୍ମ ନୟନ ପଞ୍ଚାନନ

ଅଧୀନ ଦୁର୍ଗତି ହର । ୨ ।

ପ୍ରଭୁ ! କ୍ଷମାକର । ଅଜଣାରେ କରିଅଛି ଦ୍ରୋହ ଆଚରଣ ।

ଶିବ—ଧନ୍ୟ, ଧନ୍ୟ ଅର୍ଜ୍ଜୁନ ! ତୁ ପରାଜିତ କଲୁ ମୋତେ । ତୋର ବାହୁବଳେ ତୁଷ୍ଟ ହୋଇ ଇଚ୍ଛେ ବର ଦେବାକୁ ତୋହରେ (ପାର୍ବତୀଙ୍କ ପ୍ରବେଶ) ଦେବି, ଚହ୍ନିଲଣି କଏ ଏହୁ ।

ଅର୍ଜ୍ଜୁନ—( ପାର୍ବତୀଙ୍କୁ ପ୍ରଣିପାତ ) ମା ! ଜଗତ୍‌ଜନନୀ ଅଧମ ତାରିଣି ! ଏ ଦୀନ ଦୋଷ କ୍ଷମାକର ।

ଶିବ—ଦେବି ! ଅର୍ଜ୍ଜୁନ ଏ ମହାବଳଶାଳୀ ଶ୍ରୀକୃଷ୍ଣଙ୍କ ସଖା, ଆଜ ମୋତେ ଯୁଦ୍ଧରେ ପରାସ୍ତ କରିବାରୁ ମୁଁ ତାଠାରେ ସନ୍ତୁଷ୍ଟ ହୋଇ ଗୋଟିଏ ବର ଦେବାକୁ ଇଚ୍ଛା କରିଛି ।

ପାର୍ବତୀ—ଆପଣଙ୍କ ଇଚ୍ଛା ।

ଶିବ— ଗୀତ (କର୍ଣ୍ଣାଲି)

ମାଗିନିଅ ବର ତୁମର ଯେ ଇଚ୍ଛା ତୋର ।

ପରାକ୍ରମ ଦେଖି ଦୟା ହେଲା ମୋହର । ଘୋଷା ।

ଅର୍ଜ୍ଜୁନ ! ତୋ ସହିତ ମୋର ସାକ୍ଷାତ ହେଲା ଏ ବଡ଼ ଭାଗ୍ୟର ବିଷୟ ?

ଗୀତ

ବାସବ ତୋହର ତାତ କେଶବ ତୋ ପ୍ରିୟସାଥ

ତୋତେ ଜେତା ସମରେ ଏ ଜଗତର । ୧ ।

ବତ୍ସ, ଯେବେ ବର ମାଗିବୁ, ମୁଁ ଦେବାକୁ ପ୍ରସ୍ତୁତ । ଇଚ୍ଛା ସୁଖେ ମାଗି ନେଇ ବର ।

ଅର୍ଜ୍ଜୁନ— ଗୀତ

ଯେବେ ଦୟା ପଞ୍ଚାନନ ପ୍ରକାଶେ ମିଳିବ ଅନ୍ନ

ଶିବ— ଗୀତ

ଅସ୍ତ୍ର ଦେଉଛ ରେ ଅର୍ଜ୍ଜୁନ କାମନା ତୋର ।

ପାର୍ବତୀ—ଏ କଣ ନାଥ, ଏ କି ଦଗାବାଜି ।

ଶିବ—କଣ ଦଗାବାଜି ?

ପାର୍ବତୀ—ଅଙ୍ଗ ଶୁଦ୍ଧ ନାହିଁ, ଏ ବରର ଫଳ କଣ ହେବ ?

ଶିବ—ଠିକ୍ କହିଲ ଦେବି ! ମୁଁ ଯାଉଛି ସ୍ନାନ ମାର୍ଜ୍ଜନା କରି ଆସେ । ( ପ୍ରସ୍ଥାନ )

ପାର୍ବତୀ—ଅର୍ଜ୍ଜୁନ ! ଏପରି ନିର୍ବୋଧ ତୁମ୍ଭ ଅଳ୍ପ ଭିକ୍ଷା ମାଗୁ କମା ହରେ ? ଯଦି ଶିଶୁ ତୁମ୍ଭ, ମାଗ ବର ଯଦ୍ଵାରେ ଲଭିବୁ ପୌରୁଷ ।

ଅର୍ଜ୍ଜୁନ—ମା ଅଜ୍ଞାନ ମୁଁ ନ ଜାଣେଇ କହୁଛି, ଦୟାକରି କହିଦିଅ ଅଧମ ସନ୍ତାନେ ।

ପାର୍ବତୀ ମାଗ, ଚେତେବ ପାଶୁପତ ଅସ୍ତ୍ର ।

ଅର୍ଜ୍ଜୁନ—ହଉ ମା ।

ଶିବ—( ପ୍ରବେଶି ) ବତ୍ସ ! ଇଚ୍ଛା ସୁଖେ ମାଗି ନେଇ-ବର, ଯେ ଇଚ୍ଛା ତୋହର ।

ଅର୍ଜ୍ଜୁନ—ପଶୁପତି ! ପାଶୁପତ ଅସ୍ତ୍ର ଅସ୍ତୁ ଦେଉ ମୋତେ ।

ଶିବ—( ସ୍ଵଗତ ) କାହିଁ ଜାଣନ୍ତା ଏ ଗୂଢ଼ ରହସ୍ୟ, ନିଶ୍ଚୟ ଏହା ପାର୍ବତୀ ଫିକର ( ପ୍ରକାଶ୍ୟ ) ପ୍ରିୟେ ! ଦେଲି ମୁହିଁ ପାଶୁପତ ଅସ୍ତ୍ର ମାଗିଦଅ କହୁ ବର ତୁମ୍ଭେ ପାର୍ଥ ସଂଭବରେ ।

ପାର୍ବତୀ ଇଚ୍ଛା ତବ, ଦେଉ ନିଶ୍ଚେ ବର ।

ଶିବ—ଦେବି ! ଅଙ୍ଗ ଶୌଚକରି ଆସେ ଦଣ୍ଡ ପରେ ବର ।

ପାର୍ବତୀ—( ଅଙ୍ଗ ଶୌଚ ନିମିତ୍ତ ପ୍ରସ୍ଥାନ )

ଶିବ—ବତ୍ସ ! ଜାଣୁ କି ତୁ ମାଗିବୁ କି ବର ?

ଅର୍ଜ୍ଜୁନ—କି ଜାଣେ ମୁଁ, ଯାହା ଆଜ୍ଞା ହେବ ତବ ଅନୁଗ୍ରହେ ।

ଶିବ—ମନେଭଣ ପାର୍ଥ ? ମାଗିନେବୁ ଦେଖଠାରୁ ଅଭୟ ଭୂଷିର । ଯେଉଁ ଶରେ ମହିଷାସୁର ହୋଇଛି ନିଧନ, ମାତ ବାରୁ ନ ସନ୍ଧାନିବୁ ଏହା ଇତର ପ୍ରାଣୀରେ । କାର୍ଯ୍ୟକାଳ ହେବ ଏହା ତୋର ଭାରତ ସଂଗ୍ରାମେ ।

ପାର୍ବତୀ—( ପ୍ରବେଶ ) ବତ୍ସ ! କି ମାଗୁଛ ମାଗ ।

ଅର୍ଜ୍ଜୁନ—ଦେବ ! ହୋଇଛନ୍ତି ସନ୍ତୁଷ୍ଟ ଯେବେ ଅଧମ ଭକ୍ତରେ । ତଅନ୍ତୁ ତେବେ ଅପୂର୍ବ ତୁଣୀର, ଏହି ଭିକ୍ଷା ଶ୍ରୀପଦ ଯୁଗଳେ ।

ପାର୍ବତୀ—ତଥାସ୍ତୁ, ( ଶିବଙ୍କ ପ୍ରତି ) ଭୋଳାନାଥ । ଜାଣିଲ କେମନ୍ତେ ପାର୍ଥ ଏ ଗୂଢ଼ ଅଭୁସନ୍ଧ କଥା ।

ଶିବ—ଦେବି ! ଜାଣିଲ ଯେମନ୍ତ ମମ ବର ବାର୍ତ୍ତା, ଜାଣିଲ ସେପରି । ( ଅର୍ଜ୍ଜୁନ ପ୍ରତି ) ବତ୍ସ ରେ ଅର୍ଜ୍ଜୁନ ! ଘେନ ଆଜ ଆତିଥ୍ୟ ଗ୍ରହଣ କରିବୁ ଆମ୍ଭର । ମନେରଖ ନ ପ୍ରକାଶିବୁ ଏହା କେବେହେ ରୁକ୍ମିଣୀ ନାହାରେ ।

ଅର୍ଜ୍ଜୁନ—ନା ଦେବ ! ମୁଁ ବର୍ତ୍ତମାନ ଗୋଟିଏ ପ୍ରତିଜ୍ଞା ଲଙ୍ଘନ କରିବାରୁ ବାରବର୍ଷ ବନବାସ କରି ଆସିଛି । ଏ ଅଧମ ଦାସଠାରେ ରଖିଥିବେ ଦୟା ।

—*—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ଶ୍ରୀକୃଷ୍ଣ— ଗୀତ

(ଥିଏଟର-ବୃତ୍ତେ)

ମୁଁ ସ୍ଵଭେ ବନ୍ଧା ଜଗତେ
ଥାଏ ଭକତ ହୃତେ ମରତେ ।
ଭକତ ସୁଖରେ ଥାଏ ମୁଁ ସୁଖୀ
ଭକତ ଦୁଃଖରେ ମୁଁ ସଦା ଦୁଃଖୀ
ଭକ୍ତମାନ ରଖି
ମୋ ମାନ ଉପେକ୍ଷି ଭକତପଛେ ଧାଏଁ ନିରତେ ।

ଆହା ! ଭକ୍ତ ମୋର ପ୍ରାଣର ବାନ୍ଧବ । ଜୀବନରେ ସୁଖ ଦେଖି ସେ ଆଜ ଦେବତାମାନଙ୍କ କୁଟିଳ ଚକ୍ରାନ୍ତରେ ପଡ଼ି କେତେ କଷ୍ଟ ସହ୍ୟ କରି ଜଙ୍ଗଲରେ ଅରକ୍ଷ ହୋଇ ବୁଲୁଛି । ଦ୍ଵାରକାରେ ଅର୍ଜ୍ଜୁନ ବିଚ୍ଛେଦରେ ଯୁଧିଷ୍ଠିରାଦି ଅନ୍ୟ ଭ୍ରାତାମାନେ କିପରି ଅଛନ୍ତି ଦେଖିବି ( ଦ୍ଵାରକାରେ ପ୍ରବେଶି ପାଣ୍ଡବଙ୍କ ପ୍ରତି ) ତୁମ୍ଭମାନଙ୍କ ମନଟା ଏପରି ବିରସ ଦେଖାଯାଉଛି କାହିଁକି ? ମୁଁ ତ କିଛି ବୁଝି ପାରୁ ନାହିଁ ।

ଗୀତ— ( ହେ ଗୁରୁ ଦେବ-ବୃତ୍ତେ )

ଦେଖୁଛି ଆଜ ବିପରୀତ ହେ ଧର୍ମ ସୁତ । ପଦ ।
କଲି ମୁଁ କିବା ଦୋଷ, ମନେ ବହିଛ ରୋଷ ।
ପ୍ରକାଶି ହର ମୋ ସନ୍ତାପ । ୧ ।

ଦର୍ଶି କମ୍ପା ନ କହୁଛ କଥା, କିବା ଦୋଷ ଜାଣିକି ତୁମ୍ଭରେ, ସନ୍ଦେହ ଜନ୍ମୁଛି ବଡ଼ ।

ଗୀତ

କାହିଁ ମୋ ପ୍ରାଣ ସଖା ଅର୍ଜ୍ଜୁନ ନାହିଁ ଦେଖା
ତା ପାଶେ ଦୋଷୀ ନାହିଁ ମୁଁ ତ । ୨ ।

ଅର୍ଜ୍ଜୁନ ତ ମୋର ପ୍ରାଣର ବନ୍ଧୁ । ସେ କାହିଁକି ମୋର କୁଣ୍ଡ ଶୁଣି ଦଉଡ଼ି ଆସୁ ନାହିଁ । ମୁଁ କିଛି ଦୋଷ କରିଛି, ସେଥି ଯୋଗୁ ମୋର ମୁଖାବଲୋକନ କରୁନାହିଁ ? ଯଦି ସେ କଥା ହୋଇଥାଏ, ତେବେ ମୋତେ କ୍ଷମା ଦିଅନ୍ତୁ । ମୁଁ ତୁମ୍ଭମାନଙ୍କୁ ଘୁଡ଼ି ଦଣ୍ଡେ ରହିପାରିବି ନାହିଁ ।

ଯୁଧିଷ୍ଠିର—ଭଗବାନ ! ସେତ ଆମ୍ଭ କର୍ମଦୋଷ ।

ଶ୍ରୀକୃଷ୍ଣ—କଣ, କଥା କଣ ? ମୁ ତ କିଛି ବୁଝିପାରୁ ନାହିଁ ।

ଯୁଧିଷ୍ଠିର - ଅର୍ଜ୍ଜୁନ ଗୋଟିଏ ନିୟମ ଲଙ୍ଘନ କରିବାରୁ ବାରବର୍ଷ ନିର୍ବାସିତ ହେଲା ।

ଶ୍ରୀକୃଷ୍ଣ—କଣ ହେଲା, ଅର୍ଜ୍ଜୁନ ନାହିଁ ? ତୁମ୍ଭମାନଙ୍କ ମନରେ କଣ ଏଇଆ ଥିଲା ।

ଗୀତ

ଅଦନ୍ତା କରି ପାର୍ଥେ ତେଜିଲ ନିର୍ବାସିତେ
ହେଜିଲ ନାହିଁ ସ୍ନେହଭ୍ରାତ ।

ମୁଁ ନିଶ୍ଚୟ ଜାଣି ପାରୁଛି ତୁମ୍ଭେମାନେ ଅଦନ୍ତା କରି କପଟରେ ଅର୍ଜ୍ଜୁନଙ୍କୁ ବନବାସ ପଠାଇଦେଲ ।

ଯୁଧିଷ୍ଠିର—ନା, ପ୍ରଭୁ ଏହା କେବେହେ ନୁହେଁ ।

ଶ୍ରୀକୃଷ୍ଣ— ଗୀତ

ଧିକ ତୁମ୍ଭର ପଣ, ଧିକ ତୁମ୍ଭ ଜୀବନ
ବାଳକୃଷ୍ଣର ଏ ଭଣିତ । ୪ ।

ଧିକ୍ ତୁମ୍ଭର ପଣ୍ଡିତି, ଧିକ୍ ତୁମ୍ଭର ଜୀବନ, ଅର୍ଜ୍ଜୁନ ଭାଇକୁ ଘରକୁ ସା ହଜାଇ ବସିଲ ନ ତାହାର ଆଗପଛ କଲ (ପ୍ରକଟ) ତେବେ ଯିବ ନିଶ୍ଚେ ଅର୍ଜ୍ଜୁନ

ସମୀପେ । ଅଦ୍ଭୁତ ରୂପ ଏକ ଦେଖାଇବ ଆଜ । ଶତ୍ରୁତ ଜନା ମୋର ପ୍ରାଣର ବାନ୍ଧବ । (ପ୍ରକାଶ୍ୟ) ଥାଅ ତେବେ ତୁମ୍ଭ ଆମ୍ଭ ଦେଖା ଏତେକ ।

—*—

## ଦ୍ୱିତୀୟ ଦୃଶ୍ୟ

ଅର୍ଜୁନ—କି ଆଶ୍ଚର୍ଯ୍ୟ ! ଶ୍ରୀକୃଷ୍ଣଙ୍କ କଥା ଯେମ୍। ମନେ ପଡ଼େ ସଦା ଯେପଣେ ଚାହେଁ କୃଷ୍ଣ ପ୍ରାୟ ଦିଶିଯାଏ ମୋତେ, ନା, ନା, ବାତୁଳ ମନ, ଆଜି କିଣି ତୋ ଭାଗ୍ୟରେ ସେ ଲାବଣ୍ୟ ମାଧୁରୀ ରୂପ ଅଛି । ଏ କିଣ ? ଏ କି ଶବ୍ଦ ? ହିଂସ୍ର, ଜନ୍ତୁ କେହି ଆସିଲ ପରି (ନବ ଗୁଞ୍ଜର ବେଶେ ଶ୍ରୀକୃଷ୍ଣଙ୍କ ପ୍ରବେଶ) ।

ଗୀତ

ତାଳ ରୂପକ

ଏ କେଉଁ ଅଦ୍ଭୁତ (ରୂପ) କାହିଁ ଆସିଲ ରେ ।
ମୋ କଳ ବଳ କୌଶଳ ଧ୍ୱଂସିଲ ରେ । ଘୋଷା ।

ଏ କି ଅଦ୍ଭୁତ ମୂର୍ତ୍ତି ! ଯାକୁ ଦେଖି ମୋର ବୁଦ୍ଧି ବିବେକ ସମସ୍ତ ଚୂନା ହୋଇଗଲଣି ।

ଗୀତ

ମାଥେ କୁକୁଟ ମୁକୁଟ ମୟୂର ପାପ୍ୟେକ ବଣ
କୁଞ୍ଜର ପ୍ରାପ୍ୟେକ ପୃଷ୍ଠ ବସିଲ ରେ । ୧ ।
ବ୍ୟାଘ୍ର, ଅଶ୍ୱ, ହସ୍ତୀ ପଦ ସିଂହକଟୀ ସର୍ପ ଲାଞ୍ଜ
ମନୁଷ୍ୟର କର ଏକ ମିଶିଲ ରେ । ୨ ।

ଆହା ! ଏ ଅଦ୍ଭୁତ ଭାବ ମୁଁ ତ କେବେ ଦେଖି ନାହିଁ । ଯାକୁ ଦେଖିଲ ବେଳୁ ମୋ ମନର ଆନନ୍ଦ ଦ୍ୱିଗୁଣିତ ହେଉଛି, ନିଶ୍ଚୟ ଏ ମାୟା ।

ଗୀତ

ଜବା ବ୍ରହ୍ମା ହରହରେ କପଟ କଲେ ମୋଠାରେ
ବାଳକୃଷ୍ଣ ବୋଲେ ନିଶ୍ଚେ ଜାଣିଲ ରେ । ୩ ।

ନିଶ୍ଚୟ ଜାଣିଲଣି, ନିଶ୍ଚୟ ବୁଝିଲଣି, ତୁହେଁ କେବେ ବନଚର ନୁହ । ନବରଙ୍ଗିଆ ଭଏ ତୁହି କହ କପ ବାଞ୍ଛା । ମାଗୁ ଯେବେ ମୋର ପ୍ରାଣ ଅବିଳମ୍ବେ ସମର୍ପିବି ତୋତେ ।

ଶ୍ରୀକୃଷ୍ଣ—ପ୍ରାଣସଖା ତୋ ବଚନେ ଶୂନ୍ୟ ମୋତେ ବସିଲ ଟୋଳେକ, ତେଣୁକରି ଖେଳିଲ ତୋ ଏଥେ

ଅର୍ଜୁନ—ଭଗବାନ ! ଏ ଅଭାଗା ସତେ ଆପଣଙ୍କ ମନରେ ପଡ଼ିବ ବୋଲି ମୁଁ ବିଶ୍ୱାସ କରି ନ ଥିଲି । (ଅଗ୍ନି ପ୍ରତି) କିଏ ଏହି ଜୀର୍ଣ୍ଣ ଶୀର୍ଣ୍ଣ ଜରାଗ୍ରସ୍ତ ଲୋକ କିବା ବ୍ୟାଧି ଆକର୍ଷିଛି ତାଙ୍କୁ ତାକ ପୁଚ୍ଛିବା କାରଣ ।

ଅଗ୍ନି—(ସ୍ୱଗତ) ଏଇଠି ଅର୍ଜୁନ ସଙ୍ଗରେ ଶ୍ରୀକୃଷ୍ଣ ଏତେକିବେଳେ ମନୋରଥଟା ନିଶ୍ଚୟ ପୂର୍ଣ୍ଣ ହେବ ।

ଅର୍ଜୁନ—ବିପ୍ରବର ! କିବା ତବ ଅଭିଳାଷ, କହ ଶକ୍ତି ଥିଲେ ମେଣ୍ଟାଇବି ଦୁର୍ଦ୍ଦଶା ତୁମ୍ଭର ।

ଅଗ୍ନି—ବାପ, କର ତେବେ ସତ୍ୟ ?

ଅର୍ଜୁନ—ସତ୍ୟ ବମ୍। କରିବି ବ୍ରାହ୍ମଣ, ମୋ ନିଜ ପ୍ରାଣ ଭ୍ରାତୃଦ୍ରୋହୀ, କୃଷ୍ଣ ଦ୍ରୋହୀ, ଏହା ଛଡ଼ା ଯା ମାଗିବ ଦେବି ସତ୍ୟ ସତ୍ୟ ।

ଅଗ୍ନି—ମୁହିଁ ଅଗ୍ନି ! ଲାଗିଛି ଲୁହୁବୁହୁ ବ୍ୟାଧି ମୋହର ଶରୀରେ । ଆସିଛି ମୁଁ ଅଶ୍ୱୀକର ତୋତେ ଏହି- ସ୍ଥାନେ, ଦହିଣ ଖାଣ୍ଡବ ମୋତେ କରାଇବୁ ରୋଗମୁକ୍ତ ଯେବେ ଉପଯୁକ୍ତ, ଧର୍ମ କମାଇବୁ ବାବୁ ! ଜନ୍ତୁ ନ ଯିବକୁ କାଟହିଁ ପଳାଇଯାଏ ଏକ ସେ କାନନ ମଧ୍ୟୁ ।

ଅର୍ଜୁନ—ଦେବ ! ଆପଣଙ୍କ କୃପାରୁ ଓ ଭଗବାନଙ୍କ ଦୟାରୁ ମୁଁ ନିଶ୍ଚୟ ଏ ମୁହୂର୍ତ୍ତେ ଖାଣ୍ଡବ ଦହନେ ଆପଣଙ୍କୁ ଯଥାଶକ୍ତି ସାହାଯ୍ୟ କରିବି ।

ଗୀତ

( କୁହି ନରାଧମ—ବୃତ୍ତେ )

ଦୁଃଖ ବହ୍ନି ଶାନ୍ତ ତୁମ୍ଭ
ମନୋରଥ ପୂର୍ଣ୍ଣ କରିବି ଟି ମୁହିଁ ।
ଦୟାକର ଦେବ ଦହିବ ଖାଣ୍ଡବ
ରକ୍ଷିବ ନିଶ୍ଚିନ୍ତ ହୋଇ ।
କେତେ ବଢ଼ାଅ ପଥ ।
ପାର୍ଥ ପାଳିବଟି ଆଜ ଦୃଢ଼ବ୍ରତ । ୧ ।

ଦେବ ! ଚାଲନ୍ତୁ ତେବେ, ବିଳମ୍ବରେ ନାହିଁ ଆଉ ପ୍ରୟୋଜନ କିଛି ।

( ଅର୍ଜୁନ ସାହାଯ୍ୟେ ଅଗ୍ନି ଖାଣ୍ଡବବନେ ପ୍ରବେଶ )

ଇନ୍ଦ୍ର—ବଜ୍ରରେ ମୂର୍ଖ କି ସାହସେ କଲୁ ଏହି କର୍ମ ।

୧ମ ଗନ୍ଧର୍ବ—ଭାଇ ସର୍ବନାଶ ହେଲା ।

୨ୟ ଗନ୍ଧର୍ବ—ହଁ, ଅଗ୍ନିର ପ୍ରବଳ ଜ୍ୱାଳାରେ ଜଳି ଗଲେଣି ଜୀବ ଏପରି କାଣ୍ଡ କଲା ।

୧ମ—ଆରେ ମଧ୍ୟମ ପାଣ୍ଡବ ଅର୍ଜୁନ ଅଗ୍ନିର ଦୁର୍ଦ୍ଦଶା ହରିବାକୁ ଅଗ୍ନିକୁ ସଙ୍ଗରେ ଆଣି ସବୁ ଭସ୍ମ କରି ଦେଉଛି ।

୨ୟ– ଆମ ଧନୁଶର ଧରିବା କଣ ବୃଥା ହୋଇଯିବ ।

୧ମ—ଚାଲ ସର୍ବେ ଭାଇ କଣ । ରେ ମୂର୍ଖ, କ ସାହସେ କରୁ ଏତେ କର୍ମ ।

ଗୀତ

( କଓ୍ୱାଲି )

ରହ ରହ ପାର୍ଥ ତୁ ରହ ରହ ରେ

କମ୍ପା ଖାଣ୍ଡବ ବନ କରୁ ଦାହ ରେ । ପଦ ।

ମୂର୍ଖ, କାହା ବଳରେ ସ୍ୱର୍ଗରେ ପଶି ଏତେକାଣ୍ଡ କରୁଛୁ, ତାହାର ସମୁଚିତ ଶାସ୍ତି ବର୍ତ୍ତମାନ ଭୋଗ କରିବୁ ।

ଗୀତ

ସିଂହ ମେଳରେ ଶଶ, ପଶି ଏତେ ଭରସା

ବଣା ହେଲୁ କି ପଶୁ ଜଡ ରେ । ୧ ।

ମୂର୍ଖ ! ବର୍ତ୍ତମାନ ତୋର ମହାନିଦ୍ରାର ସମୟ ଉପଗତ, ଇଷ୍ଟ ସ୍ମରଣା କର ।

ଅର୍ଜୁନ—ପାଷାଣ୍ଡ, ପ୍ରାଣ ନେଇ ପଳାଅ ଏଠାରୁ, ନଚେତ୍ ଖଣ୍ଡ, ଖଣ୍ଡ କରିଦେବି ତୁମ୍ଭ ଗଣ୍ଡି ମୁଣ୍ଡ ।

ଗନ୍ଧର୍ବ— ଗୀତ

ଯମ କି ନନ୍ଦନ, କରନ୍ତି ଅଞ୍ଜନ

ତଣ ନାହିଁ ସୁଞ୍ଜନ ଦେହରେ । ୨ ।

ପ୍ରାଣେ ଯେବେ ତୋ ଆଶ, ପଳା ଏଥୁଁ ନୃଶଂସ

ବାଳକୃଷ୍ଣର ଆଶ ରହରେ । ୩ ।

କେତ୍ରିମାର ଗନ୍ଧର୍ବେ ସମସ୍ତେ ଦୁରାତ୍ମାର ଗ୍ରାସଖାର ଜଳ ଏ ଖାଣ୍ଡବ ।

ଅର୍ଜୁନ—ଆସ ତେବେ ଧର ଅସ୍ତ୍ର କର ରଣ, ଦେଖାଯିବ କାହା ପଥ ପରିଷ୍କାର କଲାଣି ଶମନ, ଭୁଲି ରେ ବର୍ବରେ, ଏତେ ସ୍ପର୍ଦ୍ଧେ ଭୁଲିଗଲଣିକି ସେ ସୁଦର୍ଶନ କାହାଣୀ ।

( ଯୁଦ୍ଧ କରୁଁ କରୁ ଗନ୍ଧର୍ବଙ୍କ ପଳାୟନ )

ଅର୍ଜୁନ –ପଳାଅ କେଣିକି ଦୁଷ୍ଟେ, ପଳାଅ କେଣିକି ? ତୁଚ୍ଛଦର ବଧ୍ୟ ହସ୍ତର ମର୍ଯ୍ୟାଦା ନଷ୍ଟ କରିବ କେବେ, ଯାଅ ଯାଅ ନିଜ ପ୍ରାଣ ନେଇ; ତୁମ୍ଭର ଏ କାର୍ଯ୍ୟର ପୁରସ୍କାର ଯାହା ଯାହା ଶୁଣି ମୋହଠାରୁ । ଯଦି ଯେବେ ନିଜ ନିଜ ଭଲ, ଅପରାଧ ନିମନ୍ତେ ମାଗ କ୍ଷମାଭିକ୍ଷା ।

—*—

ଦୃଶ୍ୟ ଦୃଶ୍ୟ

ନାରଦ— ଗୀତ

( ଥିଏଟର-ଭୃଙ୍ଗ )

ହରିନାମେ ଆଜି ବାଜ ରେ ବୀଣା ।

ହରି ହରି ବୋଲ ନାଚ ବାଦ୍ୟ ଢୋଲ

ହରିନାମ ସ୍ୱାଦୁ ପାଇ ରସନା

ହରି ନାମ ଅମୂଲ୍ୟ ଧନ ଶଙ୍କା ବାରେ ପାଗଳ ମନ

ଆଉ ଧନ ଚୋର, ନୂହଇଟି ତର

ଅନ୍ତିମ କାଳକୁ କରିବ କଣା । ୧ ।

ହରିମୟ ଏହୁ ଜଗତ ପଶୁପକ୍ଷୀ ପତଙ୍ଗ କୀଟ

ଜଳେ ଦେଖ ହରି; ସ୍ଥଳେ ଦେଖ ହରି

ସର୍ବଘଟେ ପୂରି ଅଛନ୍ତି ସିନା । ୨ ।

ହରିନାମେ ବାଛରେ ଭେଳା

ହରିନାମେ ଖେଳରେ ଖେଳା

ଆଉ ନାମ ହେଳା, ନ କରରେ ହେଳା

ବାଳକୃଷ୍ଣେ ଭୃତ୍ୟ କର କରୁଣା । ୩ ।

ହରିବୋଲ, ହରିବୋଲ ! ( ସ୍ୱଗତ ) ଇନ୍ଦ୍ର ତ ବର୍ତ୍ତମାନ ନିଜାର୍ଥୀରେ ବନ୍ଦୀକୃତ ହୋଇଛି, ଏଣେ ଅର୍ଜୁନ ସାହାଯ୍ୟରେ ଅଗ୍ନି ତାର ପ୍ରାଣରୁ ଅଧିକ ସୁରକ୍ଷିତ ଖାଣ୍ଡବ ବନ ଦହନ କରିବ ତୁ ଗନ୍ଧର୍ବଗଣ ସର୍ବପ୍ରଯତ୍ନେ ଚେଷ୍ଟାକରି ମଧ୍ୟ କୌଣସିମତେ ରକ୍ଷାକରି ନ ପାରି ନିଜ ନିଜ ପ୍ରାଣ ବଞ୍ଚାଇବା ନିମନ୍ତେ ପଳାୟନ କରିଛନ୍ତି । ଯାଏ, ଏ ବିଷୟ ଇନ୍ଦ୍ରଙ୍କୁ କହିଦେଇ ଚେତାଇ ନ ଦେଲେ ହେବନାହିଁ । ପୁଣି ଅର୍ଜୁନ ଦେବଦୂତଙ୍କୁ ବାର ବର୍ଷ ବନବାସ ଆସି ଅନେକାନେକ ଦେବ କାର୍ଯ୍ୟ ସାଧନ କରି ଦେବତାମାନଙ୍କ ଠାରୁ ମହା ମହା

ଶକ୍ତିଶାଳୀ ଅସ୍ତ୍ର ଶସ୍ତ୍ରମାନ ପାଇ ସାରିଲେଣି, ମାତ୍ର ତାଙ୍କ ଅଛି ଅଗ୍ନିଠାରୁ ଗାଣ୍ଡିବ କାର୍ମୁକ ଓ ଇନ୍ଦ୍ରଠାରୁ କିରୀଟ ଭୂଷଣ । ଦେଖିବ ଏମା ତ୍ରିପୁର ବିଜୟୀ କରିଷ୍ଣୁ ହେବ ଧନଞ୍ଜୟ, ଯାଏ ଚେତିବେ ।

— * —

## ଚତୁର୍ଥ ଦୃଶ୍ୟ

( ଇନ୍ଦ୍ରସଭା )

( ଦେବାଙ୍ଗନା ସହ ଇନ୍ଦ୍ର ନୃତ୍ୟ ଗୀତରେ ମତ୍ତ )

ଇନ୍ଦ୍ର—ବରାଙ୍ଗନେ ବନ୍ଦ କଲ କାହିଁକି ? ଗାଅ ପ୍ରେମର ସଙ୍ଗୀତ ।

ନାରଦ—( ପ୍ରବେଶ ସ୍ୱଗତ ) ଏହି ତ ଉଚିତ ସମୟ ମିଳିଛି । ( ପ୍ରକାଶ୍ୟେ ) ହରିବୋଲ, ହରିବୋଲ, ହରିବୋଲ !

ଇନ୍ଦ୍ର—ପ୍ରଣତି ଶ୍ରୀପଦେ ଦେବ ବିଧିର ନନ୍ଦନ ! ଦେବର୍ଷେ, କିବା ଅଭିଳାଷେ ଅସମୟେ ସମାଗତ ଏଥି, ଉପବିଷ୍ଟ ହୁଅନ୍ତୁ ଏ ଆସନେ ।

ନାରଦ—ଦେବରାଜ ! ସେଥିପାଇଁ ଅସମୟ ହେଲୁ ଆସିଲି ବାହାରି ।

ଗୀତ

(ସ୍ତୁତିଦେବ – ବୃନ୍ଦେ)

ଶଚୀପତି ପଡ଼ିଲା ବଡ଼ ବିପତ୍ତି

ନିଶ୍ଚିନ୍ତେ ବସିଛ ବାସେ କୁଣ୍ଡଳଧର ଗୁଣି । ପଦ ।

ଦେବରାଜ ! ବର୍ତ୍ତମାନ ତୁ ଆନନ୍ଦ ପ୍ରମୋଦରେ ଉନ୍ମତ୍ତ ହୋଇ ନୃତ୍ୟଗୀତରେ ତନ୍ମୟ ରହିଛୁ, ତେଣେ ଯେ ତୋର ସର୍ବନାଶ ଘଟିଲାଣି ସେ ଦୁଃଖ ଗାଥା କିଏ ବଖାଣିବ ।

ଇନ୍ଦ୍ର—ଦେବର୍ଷେ ! କାହାର ସର୍ବନାଶ ?

ନାରଦ— ଗୀତ

ତୋହର ଖାଣ୍ଡବ ବନ, ଅର୍ଜ୍ଜୁନ କଲା ଦହନ

ଅଗ୍ନିରେ ଦେଇଛି ଠାଣ ହୋଇବ ଦୁର୍ଗତି ।୧।

ଦେବରାଜ ! ଅର୍ଜ୍ଜୁନ ନିଜବନ୍ଧୁ ବ୍ୟାଧିରୁ ମୁକ୍ତ କରିବାଲାଗି ତୋହର ଖାଣ୍ଡବ ବନରେ ଅଗ୍ନିକୁ ପ୍ରବେଶ କରାଇଛି ।

ଇନ୍ଦ୍ର—ଦେବର୍ଷେ ! ଖାଣ୍ଡବ ବନ ଅର୍ଜ୍ଜୁନ ପୋଡ଼ାଇ-ଦେଲା ! ସେ ସମୟରେ ଉଦ୍ୟାନ ରକ୍ଷକ ଗନ୍ଧର୍ବମାନେ କାହିଁଥିଲେ ?

ନାରଦ— ଗୀତ

ପଳାୟେ ଗନ୍ଧର୍ବଗଣ, ଛାଡ଼ିଗଲେ ନିଜ ସ୍ଥାନ

ବାମ ହେଲାଣି ତୋ କର୍ମ ବାଳକୃଷ୍ଣ ଚିନ୍ତ ।୨।

ଦେବରାଜ ! ସେ ଏପରିଭାବେ ଗନ୍ଧର୍ବଗଣଙ୍କୁ ଆକ୍ରମଣ କରିଛି ଯେ, ସେମାନେ ନିଜ ନିଜ ପ୍ରାଣ ଭୟରେ ଛାଡ଼ି ଇତସ୍ତତଃ ପଳାଇଲେଣି, ପୁଣି ମଧ୍ୟ ଅଗ୍ନିର ଅନୁରୋଧ ମତେ କରିଛି ଆକଟ ଯେ, ତହୁଁ ବର୍ତ୍ତିବାକୁ ନାହିଁ ଜନେ କୀଟ ପକ୍ଷୀ, ପତଙ୍ଗାଦିଙ୍କୁ ବାଟ । ମଲେଣି ସମସ୍ତେ, ଯେ ଥିଲେ ଯେଉଁସ୍ଥାନେ ପଡ଼ି ଅଗ୍ନିର କବଳେ, ନ ପାଇଣ ପଥ ।

ଇନ୍ଦ୍ର—ଦେବର୍ଷେ ! ସତ୍ୟ ଏ ଘଟଣା ? ଯାଉଛି ମୁଁ ଏହି ମୁହୂର୍ତ୍ତରେ । ବାର୍ତ୍ତାବହ ! ଜଣାଅ ଯାଇଣ ଶୀଘ୍ର ସେନାପତିରେ ମୋ ଆଦେଶ । ଆସନ୍ତୁ ସସୈନ୍ୟେ ସେନାଗଣେ କରି ସାଜ, ଯାଉଛି ମୁଁ ରଙ୍ଗମହଲକୁ, ଫେରିବି ଏକ୍ଷଣି ।

—*—

## ପଞ୍ଚମ ଦୃଶ୍ୟ

### ଅନ୍ତଃପୁର

ଶଚୀଦେବୀ—ଆଜ ଦେବରାଜଙ୍କର ଆସିବାର ଏତେ ବିଳମ୍ବ କାହିଁକି ? ଆଜ ଏମନ୍ତ କି ସମସ୍ୟା ହେଉଛି ଯେ ସୂର୍ଯ୍ୟ ଦେବ ଅସ୍ତାଚଳ ଚୂଡ଼ି ଜନନୀ କୋଡ଼ରେ ଆଶ୍ରୟ ନେଲେଣି, କାହିଁ ଏପର୍ଯ୍ୟନ୍ତ ଆସିଲେ ନାହିଁ ! ଏ କାହାର ପଦ ଶବ୍ଦ ? ବୋଧହୁଏ ଜୀବିତେଶ ଆସୁଛନ୍ତି ପରା ।

ଇନ୍ଦ୍ର—( ପ୍ରବେଶି ) କି ପ୍ରିୟେ ! କାହିଁକି ବସିଲ ଏତେ, କି ବସି ଭାବୁଥିଲ ଏକାକୀ ଏଠାରେ ?

ଶଚୀ—ନାଥ ! ଆପଣଙ୍କର ଆଜ ଏତେ ବିଳମ୍ବର କାରଣ କଣ ? ପୁଣି କିମ୍ପା ବ୍ୟସ୍ତ ଏତେ । ଆସ, କ୍ଷଣେ ବସି ଆଶ୍ୱସ୍ତ ହୁଅନ୍ତୁ ।

ଇନ୍ଦ୍ର—ନା ପ୍ରିୟେ, ନା, ମୋ ସ୍ୱର୍ଗରେ ଆଉ ଏ ସୁଖ ସମ୍ଭୋଗ ନାହିଁ । ତୁମ୍ଭ ପ୍ରେମ ରଜ୍ଜୁରେ ବନ୍ଧା ହୋଇ କେଉଁ କାରାଗାରେ ବନ୍ଦ ହେବି, ସେ ସୁଖ ସ୍ୱପ୍ନ ଉଚ୍ଛନ୍ନ ନିମିତ୍ତ ଚାପୋଡି ପକାଅ ସଖି ! କି କହିବ ସେ ଗ୍ଳାନି ବାର୍ତ୍ତା ! ଶୁଣ, ଆଜ ବଳମ୍ବ କାରଣ ।

ଶଚୀ—କି କଥା ନାଥ ?

ଇନ୍ଦ୍ର—ପ୍ରିୟମ୍ବଦେ ! ଅଗ୍ନିର ଆଦେଶେ ମଧ୍ୟମ ପାଣ୍ଡବ ଅର୍ଜୁନ ଆସି ସୁରପୁରେ, ସେବୁଁ ମୁକ୍ତ କରିବାକୁ ତାଙ୍କୁ ପ୍ରବେଶ କରାଇ ଅଛି ମୋର ଖାଣ୍ଡବ କାନନେ । ଶୁଣି ସେ ଭୀଷଣ ବାର୍ତ୍ତା, ଶତଧା ବିଦୀର୍ଣ୍ଣ ହୁଏ ଅନ୍ତର ମୋହର । ଅଶନେ ବ୍ୟସନେ ମୋ ନାହିଁ ସୁଖ ଶାନ୍ତି ଲବେ । ମେଲାଣି କର ଦହନ ଯିବି ମୁଁ ସେଠାକୁ ।

ଶଚୀ—ପ୍ରାଣେଶ୍ୱର ! ଯେଉଁ ରଣରେ ପ୍ରାଣୀର ପ୍ରାଣ ଆଶଙ୍କା ଅନିବାର୍ଯ୍ୟ; ପୁଣି ସେ ସେହି ନଟ-ଲୁଟିଆ ନନ୍ଦ ଲାଲର ଅନ୍ତରଙ୍ଗ ସଖା, ତହିଁରେ ଏତେ ଆନନ୍ଦ କାହିଁକି ? ନ ଯାଆନ୍ତୁ କେବେହେ ରଣେ ମାନବ ସହିତ, ଶୁଣି ସେ ବାରତା ପ୍ରାଣ କମ୍ପେ ହୃଦୟ ମୋହର ।

ଇନ୍ଦ୍ର—ପ୍ରାଣେଶ୍ୱରି ! ସ୍ୱର୍ଗଲଳନା ହୋଇ ତୁମ୍ଭେ ନ ଜାଣ କି ସାର ହୃଦଭାବ ।

ଶଚୀ—ନାଥ ! ବେଶ୍ ଜାଣିଛୁ, "ମନେ ନ ପଡ଼େ କି ତବ ଅତୀତ କାହାଣୀ, ତଥାପି ପତି ଅନୁଗତା ପତ୍ନୀ ଅଟେ ସଦାକାଳେ । ପତିବାକ୍ୟ ରକ୍ଷା-କରିବା ସତୀର କର୍ତ୍ତବ୍ୟ । ଆସ ନାଥ, ସାଜ ସାଜେ ସଜାଇ ଦେଉଛି ତବ (ସଜାଇ ଦେଇ) ନାଥ କର୍ତ୍ତବ୍ୟ ପାଳନେ ।

ଇନ୍ଦ୍ର—ଧନ୍ୟ ଧନ୍ୟ ପତିପରାୟଣା ଗୁଣବତୀ, ନ ଭୁଲିବି ଏହି ଋଣ ତବ କାଳେ କାଳେ । ଯାଏ ତେଣେ ସେନାପତି ସାଜ ସେନାଗଣେ କରିଥିବେ ଅପେକ୍ଷା ମୋହର ।

—*—

## ଷଷ୍ଠ ଦୃଶ୍ୟ

ଅଗ୍ନି—(ସ୍ୱଗତ) ଆଶ୍ୱସ୍ତ ହୋଇଲି ପ୍ରାଣ ଖାଣ୍ଡବ ଦହନେ, ନାହିଁ ମୋର ଲେଶ ମାତ୍ର ବ୍ୟାଧିର ଲକ୍ଷଣ, (ପ୍ରକାଶ୍ୟେ) ଧନ୍ୟ ଧନଞ୍ଜୟ, ତବ ବଳ-ବୀର୍ଯ୍ୟ ଓ ସାହସେ ହେଲି ମୁହିଁ ଏ ରୋଗରୁ ମୁକ୍ତ । ସେଥିଯୋଗୁଁ ପ୍ରୀତ ତୁମ୍ଭଠାରେ । ଇଚ୍ଛା ସୁଖେ ମାଗି ନେଇ ବର ।

ଅର୍ଜୁନ—କି ବର ମାଗିବି ଦେବ, ନ ଜାଣେ ମୁଁ କିଛି, ପ୍ରୀତ ଯଦି ଅଧମ ଉପରେ ଅସ୍ତ୍ର ଦେଉ ଗାଣ୍ଡିବ କାର୍ମୁକ ।

ଅଗ୍ନି—ତଥାସ୍ତୁ ( ଅନ୍ତର୍ଦ୍ଧାନ )

ଇନ୍ଦ୍ର—( ପ୍ରବେଶି ) ଆରେରେ ପାଷଣ୍ଡ, ଏତେକ ଆସ୍ପର୍ଦ୍ଧା, ଦେଖିବି ରେ ମୂଢ଼ କେତେ ତୋ କ୍ଷମତା ।

ଗୀତ—( ତାଳ—ରୂପକ )

ପାଣ୍ଡବା ଜାରଜାତକା, କଲୁ ଏତେ କାଣ୍ଡ ରେ
ଖାଣ୍ଡବ ଦହିଲୁ ମୂର୍ଖ ସମ୍ଭାଳ ତୋ ମୁଣ୍ଡ ରେ । ପଦ ।

ମୂର୍ଖ ! ଜାରଜାତକା ମୋର ଖାଣ୍ଡବ ବନ ଧ୍ୱଂସ କଲୁ, ଏକ୍ଷଣି ତୋର ମୁଣ୍ଡକେ ରଖିବ ଦେଖିବି ।

ଗୀତ

ଭଣ୍ଡ ପିଶାଚ ଅଜ୍ଞାନ ନାହିଁ ତୋର କାଣ୍ଡ ଜ୍ଞାନ ।
ଦଣ୍ଡକେ ନେବି ତୋ ପ୍ରାଣ କରି ଖଣ୍ଡଖଣ୍ଡ ରେ । ୧ ।
ଜୁହି ରେ ପତଙ୍ଗ ପ୍ରାୟ ମାତଙ୍ଗେ କରୁ ସମର,
ବାଳବୃନ୍ଦର ବିଶ୍ୱାସ ହେବୁ ଲଣ୍ଡ ଭଣ୍ଡ ରେ । ୨ ।

ନରାଧମ ! ଏତେକ ଆସ୍ପର୍ଦ୍ଧା ତୋର, ଯଦି ଚାହେଁ ମୁଖ ଦେଇ ତୁ ଶ୍ୱାନ ଶୃଗାଳ, ରକ୍ଷା ଆଉ ନାହିଁ ତୋତେ ।

ଅର୍ଜୁନ— ଗୀତ

(ତାଳ—ଖେମଟା)

କେତେ କହିବି ଜହ୍ନ ରେ ମୂଢ଼
ପାଷଣ୍ଡ ଭୁଲିଲୁଣି ତୋତେ ଧର୍ମ ରେ
କାହୁଁଅ ପଣ ତୋ ଦେଖାଇବି ଆଜ
ପାଇ କଲୁ ମନ୍ଦ କର୍ମ ରେ । ପଦ ।

ରେ ମୂଢ଼ ! ଆତ୍ମଧର୍ମେ ରତ ଦେଖିବ ତୋ ଦମ୍ଭ କେଯାଏ ।

ଗୀତ

ଦଳ ବଳ ତୋର ହେଲେଣି ନିର୍ମୂଳ
ଏ ସାହସେ ଆଜ ଲଗାଉଛୁ ଗୋଳ,
ଡାକଲାଣି କାଳ ତୋ ମଥା ସମ୍ଭାଳ
ଜଳଜଳା ନାହିଁ ମର୍ମ ରେ । ୧ ।
ପୁଞ୍ଜା ପୁଞ୍ଜା ଶରଙ୍କର ନ ଦେଖୁ ନାହୁଁ ଯଶା,
ଆଉ ରେ ଅଜ୍ଞାନ ଧଣେ ବଳାଉଛୁ ଆଶା ।

ଗୀତ

ହର ଶୂଳପାଣି ଅର୍ଜିଲୁ ଅକୀର୍ତ୍ତି,
ନାଶ୍ଚ ଶ୍ରେଷ୍ଠ ବୋଲି ରଟିଛୁ ଏ କ୍ଷିତି
ତୁମ୍ଭେ ଦେବଜାତି ଅଟରେ ଭୂଜାନ
ବାଳକୃଷ୍ଣ ହୁଏ ଭ୍ରମ ରେ । ୨ ।

ବୃଥା ଆସ୍ଫାଳନେ ପ୍ରୟୋଜନ କିସ, ଧର ଶସ୍ତ୍ର କର ରଣ ଆରେ ଷଣ୍ଡପୁଷର ।

ଇନ୍ଦ୍ର— (ବଜ୍ର, ହସ୍ତେ ଯୁଦ୍ଧେ ଉଦ୍ୟତ)

ଶ୍ରୀକୃଷ୍ଣ—( ପ୍ରବେଶ ) କ୍ଷାନ୍ତହୁଅ ଶଚୀପତି ! ବୃଥା ରଣେ ନାହିଁ ପ୍ରୟୋଜନ । ପୁଣି ପିତା ପୁତ୍ରେ ଯୁଦ୍ଧ ନ ଶୋଭେ ପାଣ୍ଡବକୁ । ଦେବତ୍ୱରେ ପାର୍ଥ-ସାର କରଅଛି ଏହା । ନୁହଇ ବିଧେୟ ତବ ବଧିବା ତାହାକୁ ।

ଇନ୍ଦ୍ର—( ଶ୍ରୀକୃଷ୍ଣଙ୍କୁ ପ୍ରଣାମକରଣ )

ଅଗ୍ନି—( ପ୍ରବେଶି ) ହେ ସୁରେଶ ! କ୍ଷମାକର ପାର୍ଥନାରେ । ମମ ମୁଖେ ଶୁଣି ନୁହେ ସେଭ୍ଭ ଦୋଷୀ ସର୍ବତୋ-ଭାବେ ଦୋଷୀ ମୁଁ ଏଥିରେ ।

ଇନ୍ଦ୍ର—ଧନ୍ୟ, ଧନ୍ୟ ଧନ୍ୟ ରେ ଅର୍ଜୁନ । ସନ୍ତୁଷ୍ଟ ହୋଇଲି ମୁହିଁ ତବ ବଳବୀର୍ଯ୍ୟ ଦେଖି, ଆନନ୍ଦରେ ଯାଚୁଅଛି ଏକବର । ଇଚ୍ଛା ସୁଖେ ମାଗି ନେନ ବର ।

ଅର୍ଜୁନ—କି ବର ମାଗିବି ପିତଃ, ଅଧମ ମୁଁ ଅକିଞ୍ଚନ ନର, କ୍ଷମା କରି ମମ ଦୋଷ ଅନୁଗ୍ରହ ନେନ । ମୋତେ କରୀଟ ଭୂଷଣ ।

ଇନ୍ଦ୍ର—ନିଅ ବତ୍ସ ! ନେନ ଏହା ଶିରଭୂଷା ତୁମ୍ଭେ, ଆଜଠାରୁ କିରୀଟୀ ନାମ ବହ୍ୟମାନ ରହିଲା ତୋ ଭବେ । ଯଶସ୍ୱୀ ହୋଇବୁ ତୁହି ଯୁଗେ ଯୁଗେ ବାବୁ ।



# ଶ୍ରୀରାମ ବନଗମନ

## ଗୀତାଭିନୟ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

### ରାଜସଭା

( ରାଜା ଦଶରଥ, ବଶିଷ୍ଠ, ସୁମନ୍ତ୍ର ଓ ସଭାସଦ୍ ବୃନ୍ଦ )

ଦଶରଥ — ଗୀତ

( କନ୍ଦ ମଞ୍ଜୀରର ବୃତ୍ତେ )

ମନ ଆନନ୍ଦେ ମାତିଅଛି
ଏ ପୁଣ୍ୟ ଅଯୋଧ୍ୟା ଧାମ ରେ ।
ଯୌବରାଜ୍ୟେ ଅଭିଷିକ୍ତ ହେବ
ମୋ ଅନ୍ଧର ରାମ ରେ । ଘୋଷା ।
ସଚରାଚର ବ୍ରହ୍ମାଣ୍ଡ ମହାପୂତ ହେବେ ଝୁଣ୍ଡ
ଜୟରାମ ଗାଇ ଭୁବନେ କରିବେ ଯଶ ଘୋଷଣ । ୧ ।
ବାଳ ବୃଦ୍ଧ ଯୁବା ନାରୀ ନାଚନ୍ତୁ ରାମ ସୁମରି
ରାଷ୍ଟ୍ର କେବଳ ଉଲ୍ଲାସ ସରବେ ହୋନ୍ତୁ ନିପୁଣ । ୨ ।
ବ୍ରହ୍ମାଣ୍ଡ ବିଜୟୀ ପୁତ୍ର ହେଉ ରାଜ୍ୟେ ଅଭିଷିକ୍ତ
ହେବ ଏ ଜେବ ସଫଳ ବାଳକୃଷ୍ଣର ବଚନ । ୩ ।

ତବ ଆଶୀର୍ବାଦୁ ଗୁରୋ ସର୍ବସ୍ଥାନେ ସର୍ବଦରେ ଲଭିଅଛି ବିଜୟ କେତନ, ଶ୍ୱେତ ଶ୍ୱେତ ଅଶୀତ ହୋଇଅଛି କେଶ ଜାଲ । ନାହିଁ ମୋ ବଳ ଆଉ ଚଳାଇବ ରାଜ ସିଂହାସନ । ଭାବୁଛି ମୁଁ ଅବସର ନେବାକୁ ମନରେ । ବଡ ଭାଗ୍ୟବାନ ମଣୁଛି ମୁଁ ଆଜ । କୁଳର ପ୍ରଦୀପ ମୋର ରାମଚନ୍ଦ୍ର ହସ୍ତେ ରାଜ୍ୟଭାର କରିଣ ଅର୍ପଣ, ନିଶ୍ଚିନ୍ତ ହୋଇବ ମୁହିଁ ଏ ବୃଦ୍ଧ ବୟସେ । ନ ଲଭିବ ପ୍ରଜାଗଣ ମୋତେ ସଫଳ ହୋଇବ ମୋର ଅଯୋଧ୍ୟା ଭୂଖଣ୍ଡ । ନିଜେ ମଧ୍ୟ ଧନ୍ୟ ହେବି, ହେବେ ସର୍ବପ୍ରଜା ବୃନ୍ଦ ଆବାଳବୃଦ୍ଧବନିତା । ପ୍ରଶଂସନ୍ତି ରାମେ ଶୁଣେ ଅଦ୍ଭୁତ ରୂପେ, ଗୁଣେ, ବିଦ୍ୟାରେ, ବୁଦ୍ଧିରେ ଯୋଗ୍ୟ ସେହୁ ରାଜ ପଦବୀରେ । ଆପଣଙ୍କ ମନୋଗତ ଭାବ ନ କଲେ ପ୍ରକାଶ, ବୃଥା ହେବ ମୋ କଳ୍ପନା ସବୁ ।

ବଶିଷ୍ଠ—ମହାରାଜ ! ରାମଚନ୍ଦ୍ର ଅଯୋଧ୍ୟାର ଯୌବରାଜ୍ୟେ ହେଲେ ଅଭିଷିକ୍ତ ଝରିବ ନନ୍ଦନବନୁଁ ଦିବ୍ୟ ପାରିଜାତ । ବଢ଼ିବ ଦ୍ୱିଗୁଣିତ ହୋଇ ତବ ସୁଖଠାରୁ ଆମ୍ଭ ସୁଖରାଶି ।

ସଭାସଦ୍—ଉଚିତ ପ୍ରସ୍ତାବ । ଏ ପ୍ରସ୍ତାବ ଆମ୍ଭମାନଙ୍କ ମନକୁ ଉତ୍ତମ ବୋଧହେଲା ।

ସୁମନ୍ତ୍ର—ତେବେ ଶୁଭକାର୍ଯ୍ୟ ଶୀଘ୍ର ଆୟୋଜନ କରିବା ଦରକାର ।

ବଶିଷ୍ଠ—ଏବେ ଶୁଣନ୍ତୁ ରାଜନ, କାଲି ଶୁକ୍ଳପକ୍ଷ ଗୁରୁବାର ପୌଷ ପୂର୍ଣ୍ଣିମାରେ ଅଭିଷେକ ଲଭନ୍ତୁ ଶ୍ରୀରାମେ । ପୁଣି ମନ୍ତ୍ରୀରେ ଆଦେଶନ୍ତୁ ନୃପ, ଅଭିଷେକ ସାମଗ୍ରୀ ସକଳ ବିଧିମତେ ଆୟୋଜନ ହେବ ଆଜଠାରୁ । ପରେ ଯାହା ଯାହା ଦ୍ରବ୍ୟ ଲୋଡ଼ା ହେବ କରିବ ସମସ୍ତ ।

ଦଶରଥ—ମନ୍ତ୍ରି ! ଶୁଣିଲ ତ ବଶିଷ୍ଠଙ୍କ କଥା । ସେ ସମ୍ବନ୍ଧେ ଯାହା ଯାହା ଲୋଡ଼ା ବିଧିମତେ କର ଆୟୋଜନ, ପୁଣି ପଠାଇଣ ଦୂତେ ନଗରର ସ୍ଥାନେ ସ୍ଥାନେ ଦିଆଇ ଘୋଷଣା, ଜଣାଇବ ପ୍ରଜାଗଣେ, ମାତନ୍ତୁ ଆନନ୍ଦେ ସର୍ବେ ଅଭିଷେକୋତ୍ସବେ । ନଗେ ନଗେ, କୁଳ ନମରୀ ଆଣିବ ସର୍ବ ରାଜନ୍ୟମଣ୍ଡଳ ।

ସୁମନ୍ତ୍ର—ମହାରାଜ ! ଯାଉଛି ମୁଁ ଅବିଳମ୍ବେ କରିବ ସମସ୍ତ ଯୋଗାଡ଼ ।

ଦଶରଥ—ମହର୍ଷେ ! ମୁଁ ବର୍ତ୍ତମାନ ଅନ୍ତଃପୁରକୁ ଯାଉଛି, ଆପଣ ଏ ଶୁଭ ସମ୍ବାଦ ରାମଙ୍କୁ ଜଣାଇ ଦିଅନ୍ତୁ ।

ବଶିଷ୍ଠ—କିଛି ଚିନ୍ତା ନାହିଁ ମହାରାଜ !

( ସର୍ବେ ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

ଦୂତ— ଗୀତ

ଆସ ଭାଏ ଦେଖିବ ଆସ
ଏ କାଳ ମଉଜ ସବୁଗଲା ରେ ।
ଦୁର୍ଭାଗ୍ୟରୁ ଖସି ଚତୁର୍ଥୀକୁ ଗଲେ
ପଞ୍ଚମ କାଳକୁ ଗଲା ଗଲା ରେ । ପଦ ।
ଆଦ୍ୟେ ମାତ ଗର୍ଭେ ସଞ୍ଚରି
ଜପୁଥିଲୁ ତୁ ହରି ହରି
ସେ ନରକପୁରୀ ହରି କଲେ ପାରି
ପାପ ପଙ୍କେ ଚଢ଼ି ଦେଇ ଗଲା ରେ । ୧ ।
ମାତୃସ୍ତନ କଲୁ ତୁ ପାନ, ଧୂଳି ଖେଳେ କାଟିଲୁ ଦିନ
ସେ କାଳ କଥାକୁ ନ କଲୁ ସ୍ମରଣ
ଦୁଷ୍ଟପଣରେ ବାପ ବାହା କଲା ରେ । ୨ ।
ମୋହମାୟା ଭ୍ରମରେ ପଡ଼ି କର୍ତ୍ତବ୍ୟକୁ ଗଲୁ ତୁ ଛାଡ଼ି
କାମିନୀ କାଞ୍ଚନେ ବଶ ହୋଇ ତୁହି
କୃଷ୍ଣ ନାମ ଟୋପି ନ କଲୁ ମାଳା ରେ । ୩ ।
ନବ ଯୌବନ ର କୋଳେ ମଜ୍ଜିଗଲୁ ତୁ ରସ ଖେଳେ
ଚତୁର୍ଥ ପଞ୍ଚମେ ପଡ଼ି ଜରା ଶେଷେ
ବାଳକୃଷ୍ଣ ବୋଲେ ମଲା ମଲା ରେ । ୪ ।

ମନ୍ତ୍ରୀ—ଦୂତ ! କାର୍ଯ୍ୟଟି ଛାଡ଼ି ଯାଇଥିଲୁ କାହିଁ ? ଶୁଣ ଏବେ ରାଜାଙ୍କ ଆଦେଶ । କାଲି ରାମଚନ୍ଦ୍ର ଯୌବରାଜ୍ୟେ ହେବେ ଅଭିଷିକ୍ତ, ସେ ଲାଗି ରାଜ୍ୟରେ ଦିଅାଅ ଘୋଷଣା । କାଲି ପ୍ରଭାତରୁ ଯେ ଯାହାର କର୍ତ୍ତବ୍ୟ ସାରି ଅଭିଷେକୋତ୍ସବେ ହୁଅନ୍ତୁ ଉଦ୍‌ଯୋଗୀ ।

ଦୂତ—ଅରେ ବାଃ, ବାଃ, ଯାଉଛି ଆଜ୍ଞା ।

( ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

( ବଶିଷ୍ଠ ସହ ଶ୍ରୀରାମଚନ୍ଦ୍ର )

ରାମ—( ନମସ୍କାର କରି ) କିବା କାର୍ଯ୍ୟେ ଡକାଇଲେ ଗୁରେ, କି ଆଦେଶ କରିବ ପାଳନ ଆବେଶରୁ ଅଧମ ସନ୍ତାନେ ।

ବଶିଷ୍ଠ—ବତ୍ସ ରାମ ! କାଲି ପ୍ରାତେ ତୋ ମସ୍ତକେ ଦେଇ ରାଜ୍ୟଭାର ଅବ୍ୟାହତ ନେବେ ରାଜା ଅଯୋଧ୍ୟା କର୍ତ୍ତୃ, ସୀତା ସହ ସିଂହାସନେ ଦେଖି ତୋତେ କାଲି କରିବେ ନେତ୍ର ସଫଳ ସମସ୍ତ ପ୍ରଜାଏ ।

ରାମ—ମହର୍ଷେ ! ଜ୍ୟେଷ୍ଠ ପୁତ୍ର କି କେବେ ସହେ କୁଳଶ ଆଘାତ ! ଶୁଣି ଏ ବାରତା କସ କହିବେ ପ୍ରଜାଏ । ପିତା ଆଗେ ଦଣ୍ଡ ଛତ୍ର ଧରିବ କେମନ୍ତେ ସୁତ, ଏ କଥା ନୁହେଁ ଶୋଭିତ ଜନ ସମାଜରୁ !

ବଶିଷ୍ଠ—ସ୍ଥିତ ନୁହ ବତ୍ସ ! କର ତାତ ଆଦେଶ ପାଳନ, ଅସୁନ୍ଦର ନୋହିବ ଦେଖିବୁ ।

ରାମ—ତବ ଆଶିଷରୁ ଗୁରେ ପ୍ରାପ୍ତି ରାଜପଦ, ରାଜପଦ ନୁହେଁ ଅଟେ ସେ ମହାବିପଦ, ରାଜ୍ୟଭାର ବହିବା ଅସିଧାରରେ ଚାଲିବା, ଉଭୟ କଥାରେ କିଛି ନାହିଁଟି ପ୍ରଭେଦ ।

ବଶିଷ୍ଠ—ପ୍ରୀତ ହେଲି ରାମଚନ୍ଦ୍ର, ବହୁକାଳେ ଫଳ ଫଳିଅଛି ଏତେଦିନେ । ମୋ ଆଶା ପାଦପେ, ଜନ୍ମାନ୍ଧ କି ପାଇଛି ତା ଚକ୍ଷୁ, ତବ ହେତୁ ସିନା ରାମ ! ଏତେ ଦିନେ ପୂରିଲା ମୋ ମନର କାମନା । କାଲି ଗୁରୁପୁଷ୍ୟା ନକ୍ଷତ୍ର ସଂଯୋଗେ ଦେଖିଲେ ତବ ଅଭିଷେକ ସଫଳ ହୋଇବ ଆତ୍ମା, ନିଖିଳ ଅନ୍ତର । ବତ୍ସ ! ଯାଅ ଆଜ ସୀତା ସହ ରହ ଉପବାସେ ।

ରାମ—ଯେ ଆଜ୍ଞା । ( ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ

## ସ୍ୱର୍ଗପୁରୀ

( ଇନ୍ଦ୍ରାଦି ଦେବଗଣଙ୍କ ଉପବେଶନ )

ଇନ୍ଦ୍ର—ଦେବବୃନ୍ଦ ! ଗୋଲୋକ ବିହାରୀ ଶ୍ରୀରାମ ଆମ୍ଭମାନଙ୍କୁ ରାକ୍ଷସ କବଳରୁ ମୁକ୍ତ କରିବା ନିମିତ୍ତ ସ୍ୱୟଂ ମରଲୋକରେ ଅବତୀର୍ଣ୍ଣ ହୋଇଛନ୍ତି । ସେଠାରେ ସେ ରାଜପୁତ୍ର, ରାତି ପାହିଲେ ରାଜ୍ୟରେ ଅଭିଷିକ୍ତ ହେବେ, ତେବେ ଆମ୍ଭମାନଙ୍କ ଦୁଃଖ କଣ ତାଙ୍କୁ ଆଉ ଲାଗିବ ।

ଚନ୍ଦ୍ର—ବାସ୍ତବିକ କଥା, ରାମଚନ୍ଦ୍ର ରାଜା ହେଲେ ଆଉ ଆମ୍ଭମାନଙ୍କର କଥା ତାଙ୍କର ମନେ ପଡ଼ିବ ନାହିଁ ।

ଏଣେ ରାବଣ ସ୍ୱର୍ଗପୁରକୁ ଲୁଟ୍‌ପାଟ କରିବ ।

ବରୁଣ—ଏଥିରେ ତୁନିକରି ରହି କରିବାକୁ ହେବ, ହେଳା କଲେ କଷ୍ଟର ସୀମା ବଢୁଛି ।

କୁବେର—ଚାଲ ତେବେ ବିଧାତାଙ୍କ ପାଶେ, ପ୍ରତିକାର ବିଧାନ କରିଦେବେ ସେହି ।

ନାରଦ—ଜାଣେ ମୁହିଁ ଯୋଗମାୟାଙ୍କ ବ୍ୟତୀତ ନ ହେବେ କେହି ଏ କାର୍ଯ୍ୟେ ସକ୍ଷମ ।

ସମସ୍ତେ—ତେବେ ତାଙ୍କୁ ସ୍ମରଣ କରାଯାଉ ।

( ଯୋଗମାୟାଙ୍କ ଆବିର୍ଭାବ ଓ ଅଭିବାଦନ )

ଯୋଗମାୟା—କହ ଦେବବୃନ୍ଦ ! କି ନିମନ୍ତେ ହେଉଛ କାତର । କେଉଁ କାର୍ଯ୍ୟ ଯେଣୁ ମୋତେ ସ୍ମରିଲେ ଏଥି, କହନ୍ତୁ ତାହା ନିର୍ବିଘ୍ନେ ମୁଁ କରିବି ସାଧନ ।

ଦେବଗଣ—ଜଗତ ଜନନି ! ଅଯୋଧ୍ୟାରେ ଶ୍ରୀରାମଚନ୍ଦ୍ର ଯୌବରାଜ୍ୟେ ଅଭିଷିକ୍ତ ହେବାର ସମସ୍ତ ଆୟୋଜନ ସରିଛି । ରାତି ପାହିଲେ ଅଯୋଧ୍ୟାରେ ରାଜା ହେବେ । ସେ ସେ ନିତ୍ୟ ନିରଞ୍ଜନ ଗୋଲକ ବିହାରୀ, ଦେବତାମାନଙ୍କ କଷ୍ଟ ନିବାରଣାର୍ଥେ ମର୍ତ୍ତ୍ୟେ ଉପଗତ ହୋଇଛନ୍ତି । ସେ ଯେପରି ରାଜ୍ୟର ଗ୍ରହଣରୁ ବଞ୍ଚିତ ହୁଅନ୍ତି ତହିଁର ପ୍ରତିକାର କର ।

ଯୋଗମାୟା—ଏତ ଅତି ସାମାନ୍ୟ; ଏଥିପାଇଁ ନ ହୁଅ ଚିନ୍ତିତ । ଯାଉଛି ମୁଁ ପ୍ରବେଶିବି ସର୍ବାଦୌ ମନ୍ଥରା ହୃଦରେ, ତହିଁ ପରେ କୈକେୟୀଙ୍କ କଣ୍ଠତଟେ ବସି ସ୍ମରଣ କରାଇ ଦେବି ସେହି ଦେବାସୁର ଯୁଦ୍ଧର ଅଙ୍ଗୀକୃତ ଦୁଇଗୋଟି ବର । ପ୍ରଥମ ବରରେ ଭରତ ହେବ ଅଯୋଧ୍ୟାର ରାଜା, ଦ୍ୱିତୀୟେ ଚୌଦବର୍ଷ ବନବାସ ଯିବେ ରାମଚନ୍ଦ୍ର । ତାହାହେଲେ ମନସ୍କାମ ତବ ହୋଇବ ପୂରଣ ? ଯାଉଛି ମୁଁ । ( ଯାଉ ଯାଉ ପଥେ ) ( ସ୍ୱଗତ ) ଏଇ ତ ମନ୍ଥରଦାସୀ ଆସୁଛି, ସ୍ୱାଦିଠାରେ ମୋର କୌଶଳ ପ୍ରୟୋଗ କରେ । ( ପ୍ରସ୍ଥାନ )

—*—

## ପଞ୍ଚମ ଦୃଶ୍ୟ

ମନ୍ଥରା—ମଲି ମୋର, ରାଇଜ ଯାକ କଣ ଚହଳ ପଡ଼ିଛି ଏ ରାଜାଙ୍କ ଘରେ କଣ ମହା ମରିଛି କି ? ଯାହା ମୁହଁରୁ ଶୁଣୁଛି ରାମ ରାମ । ଭରତର ନାମଟା- ଧରିବାକୁ ଜଣଟା ଛୁଣ୍ଡି ପଡ଼ୁଛି । ଯାଏ, ମହାଦେଈ ତେଣେ କଣ କରୁଛନ୍ତି ଦେଖେଁ ।

କୈକେୟୀ—ଆହା; ଆଜ କି ଆନନ୍ଦ ଦିନ, ରାତି ପାହିଲେ କାଲି ରାମଚନ୍ଦ୍ର ଅଯୋଧ୍ୟା କଣ୍ଟକେ- ଦଣ୍ଡଧର ଧରାଇବ ଅଭିଷେକୋତ୍ସବ ଦେଖି ତ ଉତ୍ପନ୍ନ ହୋଇବ ନିଶ୍ଚେ ଏ ପାତକୀ ନୟନ । କେତେ ଆଉ ବିଳମ୍ବ ଅଛି, ଏ କିଏ ମନ୍ଥରା ଆସୁଛି ପରା, ତା ମୁହଁ ଏପରି ଶୁଖିଲା ଦେଖାଯାଉଛି କାହିଁକି ?

ମନ୍ଥରା—( ସ୍ୱଗତ ) ସରିଲା, ସରିଲା, ଏତ କଣ ପ୍ରେମରେ ଉଛୁଳି ହେଉଛି କରେ କଣ ?

କୈକେୟୀ—ମନ୍ଥରେ ! ଆଜ ଏତେ ବଡ଼ ଶୁଭଦିନରେ ତୁମର ମନଟା କାହିଁକି ଶୁଖିଲା ଦେଖାଯାଉଛି, କଥା କଣ ।

ମନ୍ଥରା—ଦେବି ! ତୁମର ଅଶେଷ ସୌଭାଗ୍ୟ ନଷ୍ଟ ହେବାର କାଣ୍ଡ ଜାଣିପାରି ମନଦୁଃଖ ମନରେ ମାରିରହିଛି, କାରଣ ତୁମ ଦୁଃଖରେ ମୋର ଦୁଃଖ, ତୁମ ସୁଖରେ ମୋର ସୁଖ । ତୁମେ ରାଜ୍ୟ କରେ

ଜନ୍ମ ହୋଇ ରାଜଧର୍ମର ଗୁରୁତ୍ୱ ନ ବୁଝିବାର ବୃଥା ପ୍ରଲୋଭନରେ ମାତିଥିବାରୁ ତାହା ଚେତାଇ ଦେବାପାଇଁ ଆସିଛୁ ।

କୈକେୟୀ—ତେବେ ମୋର ଏପରି କ ସମସ୍ୟା ପଡ଼ିଅଛି, ମୁଁ ତ କିଛି ଜାଣି ପାରୁନାହିଁ ।

ମନ୍ଥରା—"ମୁଁ ମରୁଥାଇ ତୋର ପାଇଁ, ତୋ ଚକ୍ଷୁରେ ଦୟା ଟିକିଏ ନାହିଁ ।" ତୁମ୍ଭ ଟେଉଣ୍ଡ ଭରତଙ୍କୁ ମାମୁଁ ଘରକୁ ପଠାଇ ଦେଇ ଏଣେ ରାମକୁ କାଲି ନକ୍ଷତ୍ରଙ୍କ ରାଜ୍ୟରେ ଅଭିଷେକ କରାଇବେ, ଯା ସବୁ କାହିଁକି ବୁଝିବ ?

କୈକେୟୀ—( ସହର୍ଷ ବଦନେ ) ଆହା, କ ସୁନ୍ଦର କଥା ଦାସି ! ରାମଚନ୍ଦ୍ର ଯୁବରାଜ ହୋଇ ଅଯୋଧ୍ୟା ସିଂହାସନରେ ବସିବ । ଭରତ ମୋର ମାମୁଁ ଘରୁ ଆସି ଭାଇଙ୍କୁ ଚାମର ଢାଳିବ । ଲକ୍ଷ୍ମଣ ଛତ୍ର ଧାରଣ କରି ଠିଆ ହୋଇଥିବ, ପୁଣି ଶତ୍ରୁଘ୍ନ ଆଲଟ ଚଳାଇବ । ଏ ତ ବଡ଼ ଗୌରବର କଥା । ଭଗବାନ ତାହାର ମଙ୍ଗଳ କରନ୍ତୁ, ସେ ନିର୍ବିଘ୍ନରେ ରାଜ୍ୟ ସୁଚାରୁରୂପେ ପରିଚାଳନା କରନ୍ତୁ ।

ମନ୍ଥରା—( ସକ୍ରୋଧେ ) ହଁ ଗୋ ମହାଦେଇ ! ଯେତେବେଳେ ବିଧାତା ଦୁନିଆରେ ଦୁଃଖ ସୁଖ ବାଣ୍ଟୁଥିଲା ତୁମର ଭାଗରେ ସୁଖ ଟୋକାଇଟା ଝାଡ଼ିଦେଇ ଯାଇଛି । ସେଥିପାଇଁ ତୁମ ମୁହଁରୁ ଅହେତୁ ହସ ବାହାରୁଛି । ମୁଁ ପୋଡ଼ା ମୁହିଁ ତୁମରି ଚିନ୍ତାରେ ପଡ଼ି ସଢ଼ି ଯାଉଛି ।

ଗୀତ

ମହାଦେଇ ଗୋ ସରିଲା ତୋର ଗରବ ।
ବୁଢ଼ାରଜା ଫାନ୍ଦେ ପଡ଼ି ହରିଲା ସବ । ଘୋଷା ।
ସପତ୍ନୀ ପୁତ୍ର ରଜା,
ଦେଖେଣ ତୁ ପାଇବୁ ଲଜ୍ଜା,
କାଟୁଛି ମୋର କଲିଜା ହେଲାଟି ଦୁର୍ଯୋଗ । ୨ ।

ମହାଦେଇ ! ତେମେ ଏଡ଼ିକ ଅଯୋଗ୍ୟା, ଶୋକ ସାଗରରେ ବୁଡ଼ିବାକୁ ବସିଲଣି ତେବେ ବି ଚେତୁ ନା । ମୁଁ ଦୁଃଖ କରିବି ନା ତମ କଥା ମନେ କରି ମୋତେ ହସ ମାଡ଼ୁଛି । ଆହୋ ! କେଉଁ ବୁଦ୍ଧିମନ୍ତ ନାରୀ ଆଜପରି ସଉତୁଣୀ ପୁଅର ସମୃଦ୍ଧିରେ ସୁଖୀ ହୁଏ ! କହନ୍ତି ପରା, "ବା ମୁଠା କଲ ବା ମୁଠାକଲ ବା କ ମୁଠାରେ ରହିବ; ସାତଥର କରି ବୁଝାଇ କହିଲେ ପରକି ଆପଣା ହୋଇବ ।"

କୈକେୟୀ— ଗୀତ

ଦାସୀ ଏସନ ନ କହ ଲୋ
ନ ପାଇବୁ ପଇତୁଷ
ଏ ସଚରାଚର, ବ୍ରହ୍ମାଣ୍ଡ ଯାହାର
ଗାଉଛନ୍ତି କୀର୍ତ୍ତି ଯଶ । ଘୋଷା ।
ସର୍ବ ଗୁଣାକର ପ୍ରାଣର ରାମ,
ଏ ଐଶ୍ୱର୍ଯ୍ୟ ଭୋଗେ ସିନା ରଜନ,
ତୁ କମା କହିଲୁ ହେଉଲୋ ଅଜ୍ଞାନ,
କରୁଛୁ ମନ୍ଦ ସାହସ । ୧ ।

ମନ୍ଥରେ ! ଜ୍ୟେଷ୍ଠ ରାଜକୁମାର ରାମ କୃତଜ୍ଞ, ଗୁଣବାନ, ଶାନ୍ତ, ସତ୍ୟବାଦୀ, ପବିତ୍ର ସ୍ୱଭାବ ଓ ଧର୍ମଜ୍ଞ । ସେହି ଏକା ଏ ବିଶାଳ ସାମ୍ରାଜ୍ୟର ଅଧିକାରୀ ହେବା ଉପଯୁକ୍ତ । ତା ବ୍ୟତୀତ ଅନ୍ୟ କେହି ନୁହେଁ । ସଚରାଚର ବ୍ରହ୍ମାଣ୍ଡ ଯାହାର ନାମ, ରୂପ ଓ ଗୁଣରେ ବିମୋହିତ ତୁ ତାର ବିପକ୍ଷ କଥା ମୋ ନିକଟରେ କହିବା ମୋତେ ବିଷ ପ୍ରାୟ ଜଣାଯାଉଛି ।

ମନ୍ଥରା—ମଲି ମୋର, ( ସ୍ୱଗତ ) ଘରେ ଗାଣ୍ଡି ଗଣ୍ଠି ଆସିଏ ହେଲଣି, କଣା କହୁଛି ମେଘ ହୁଲୁଛି । ଏ ତ ଭଣ ବେଳକୁ ବେଳ କେଣୀ ଭୋଳ ହେଉଛନ୍ତି, ତାଙ୍କର ଏ ବ୍ୟବହାର ଦେଖି ମୋ ହାଡ଼ ଜଳି ଯାଉଛି ।

ଗୀତ

ତୁମ୍ଭ କପାଳଟା ମନ୍ଦ, ହଇବ ଜାଣି ଜନ
ତୁ କିସ ମଣୁଛୁ ଖଳ କର୍ମ ହତଭାଗ୍ୟ । ୨ ।

ମହାଦେଇ ! ଆଜ ମୋ କଥାଟା କଡ଼ ଖଟା ଲାଗୁଛି, କାଲି ଯେତେବେଳେ ବାଟର ଭିକାରୁଣୀ ହୋଇ ପାତିଆ ଧରି ଦାଣ୍ଡରେ ବୁଲିବ ସେତେବେଳେ ଟିକ୍ ମୋ କଥା ମନେ ପଡ଼ିବ । ଆଜ ପୁଅ ପୁଅ ହୋଇ ଗୋଖାପୁଅ ସୁଖରେ ମାତିଛ ।

କୈକେୟୀ— ଗୀତ

ଏ ଅଯୋଧ୍ୟା ବାସୀ ଯାହାଙ୍କ ନାମେ
ଇକ୍ଷ୍ୱାକୁର ହୋନ୍ତି ଏ ଶୁଭଦନେ
ମୁଁ ଜନ୍ମ ଅଞ୍ଚଳେ, ଯିବ ତାର ବଦ୍ଧେ
ନ ମେଣ୍ଟିବ ମୋର ଆଶା । ଜ ।

ଦାସି ! ଯାହାର ଅଭିଷେକୋତ୍ସବରେ ସମସ୍ତ ଅଯୋଧ୍ୟାବାସୀ ନିମଗ୍ନ, ମୁଁ ସାମାନ୍ୟ ସ୍ତ୍ରୀଟା କାହିଁକି ବିଘ୍ନ ଘଟାଇବି । ଏ ତ ବଡ଼ ଲଜ୍ଜାର କଥା ହେବ । ରାମଚନ୍ଦ୍ର ମୋତେ ମାତାଠାରୁ ଅଧିକ ସ୍ନେହ ଓ ଭକ୍ତି କରେ, ମୁଁ ମଧ୍ୟ ତାକୁ ଭରତଠାରୁ ଅଧିକ ଭଲପାଏ ।

ମନ୍ଥରା— ଗୀତ

ଆଜ ଯାରେ ମଣୁ ଭଲ, କାଲି କାଢ଼ି ଦେବ ଗେଲ
ନ ଜାଣୁଛ ଖଳ ଜାକ ନ ପାଇଲୁ ଠାବ ।

ମହାଦେଇ ! ଆଜ ଯିନା ରାମରେ ଭେଳିଭାଇରି ବସିଛ, କାଲି ଯେତେବେଳେ ସେ ରାଜ ସିଂହାସନରେ ବସିବ, ତେବେ ତମର ଆଉ କି ଦାଗ ରହିଲା ? ସେ ରାଜମାତା ସେ, ତୁମ୍ଭେ ପୋଇଲି, ଖାଲି ଉପର ମନରେ ମା ବୋଲି ଟୋଟାଏ ଶୁଣିଲୁ ତାକୁ ଶୁଣିବ । କଥାରେ ଅଛି, "ଘରେ ନ ମାନ ପଲଣାରେ କି ସୁଆଦ" ମହାଦେଇ ! କାଳିଆ କୁକୁର ଜନ ଆଗେ କରିଥିଲ ରାବନ ଧନ ଏବେ କଲି ଗ୍ରାମମାନ' ମୁଁ ଯାଉଛି ।

କୈକେୟୀ— ଗୀତ

ଜ୍ୟେଷ୍ଠ ଥାଇ କନିଷ୍ଠରେ କେ ରାଜ୍ୟ
ଦେବା ନୁହେଁ ଏହା ଉଚିତ କାର୍ଯ୍ୟ
ଧିକ ସେ ଐଶ୍ୱର୍ଯ୍ୟ, ନ କଲାଅ ଧୈର୍ଯ୍ୟ,
ରଟିବ ନିନ୍ଦା ଅକର୍ମ । ଜ ।

ହଇଲୋ ଦାସି ! ଜ୍ୟେଷ୍ଠ ପୁତ୍ର ଥାଉ କନିଷ୍ଠ କା ରାଜା ହେବ କପରି ? ମୁଁ ନ୍ୟାଯ୍ୟ ଛାଡ଼ ଅନ୍ୟାୟକୁ ଗଲେ ସୁଦ୍ଧା ନିସ୍ତାର । ତୁ ଯା ବୃଥାଟାରେ ଲୋଭ ଜନ୍ମ ଦେବା କିଛି ଦରକାର ନାହିଁ । ସେ କି ପୁଅ, ଏ କି ପୁଅ । ଲୋକ ସଂସାରରୁ କଏବା କଣ ନେଇ ଗଲେଣି ବା ନବ । ରହିବ ଭଲ ମନ୍ଦ ଏଇଟାରୁ ଗୋଟିଏ । ରାଜା ଦଶରଥ ସମ୍ପତ୍ତିରେ ଅଧିକାରୀ ହୋଇ ସେ ପରିମାଣରେ ଶାନ୍ତି ଅନୁଭବ ନ କରେ ମୂଲିଆ ମୂଲ ଲାଗି ତତୋଽଧିକ ଶାନ୍ତି ଅନୁଭବ କରେ । ସେ ତ ଭଲକଥା, ତେବେ ସେ ବୃଥା ସ୍ୱତ୍ୱରେ ଫଳ କଣ ?

ମନ୍ଥରା—"ବଡ଼ାନାଣୀ ନଣନ୍ଦନ, ତବ ସଙ୍ଗେ କସି ଚେଞ୍ଜି ବଢ଼କ ମହାଦେଇ ! ଜଣାଉଛି ମୁଁ ହରଜତ ଜାତକୁକ ।" (ସ୍ୱଗତ) ହିଁ ଟିକଏ ବାଗକୁ ଆଇଲେଣି । "କୁହାଯାଉଥାଏ ଯିନା, କୁହାଇ କୁହାଇ ପୁଟ ଦେଉଥିଲେ ଲୁହାକ ହୋଇବ ସୁନା" ଲୁହାଟା ପାଖ ଆସିଲାଣି ଏଥରକବେଳେ ବେଶ୍ କରି ବ ଯାହାର ଦେଲେ ବାଗେଇଯିବ । (ପ୍ରକାଶ୍ୟେ) ମହାଦେଇ ! "କାହା ମନ କେଉଁଠି କେ ଜାଣି ତମ ମନ ଯିନା ରାତ ହାଣ୍ଡିରେ । ମୋ ମନ ଲାଗିଛି ସେଇଠି । ଆମ୍ବ ଖାଇଗଲ, ଅବାଟେ ପଶିଲ ହଜାଇଲ ଗୋଡ଼ ମୁଣ୍ଡ, ସନ୍ତୁ ସନ୍ତୁ କରି ସୂତା କାଟିଥିବ ଯାଆନ୍ତାଣିଏ ବୁଣିଦେବ ଜଳା ଖଣ୍ଡ" ଲାଗିଲେନ୍ତି କଣ କିଛି ଉପାୟ ନାହିଁ, "ଝୁଟକ ଝୁଟିଆ ବିନା ଖାଉଥିଲୁ କୁଆ ମଇତା ଯିନା ଏବେ ପୁରୁବ କଥାକୁ ଅନା ।"

ଗୀତ

ଦେବାସୁର ରଣେ ଯାହା, ବର ଯାଚିଥିଲେ ନାହା
ସେ ଦୁଇଟି ବର ଏହା କର ମନେ ଦମ୍ଭ ।

ମହାଦେଇ ! "କାଉଆଡ଼େ ମଟ ମଟା, ନ ଖାଇ ନ ପିଇ ପଡ଼ୁକୁ ରହିଲେ ହେବ ଯିନା ହଟହଟା ।"

(ଗୀତ)

ରାଜା ହୋଇବ ଭରତ, ହେବ ରାମ ବନବାସୀତ
ଚଉଦବର୍ଷ ପୂର୍ଣ୍ଣେ ତ ପାଇବ ସମ୍ପଦ ।

କହନ୍ତି ପରା, "ସାହସେ ମରି ସାହସେ ତରି, ସାହସେ ଧର ଦୁଆର କରି ।" ମହାଦେଇ ! ପଦ କୁଳବୁଢ଼ୀଟା ନ ଥାନ୍ତା କଣ କରନ୍ତେ କେ ଜାଣି, ମନେ ପଡ଼ୁ ନାହିଁ, ମୁଁ ତ ତୁମ୍ଭଠୁ ଶୁଣି ମୋର ମନରେ ଟପ ଟପ ହୋଇ ନାଚୁଛି, ତୁମର ପାଶୋରିଗଲାଣି । ଦେଖ ! ଦେବାସୁର ଯୁଦ୍ଧକୁ ଯାଇଥିବା ସମୟରେ ରାଜା ତୁମ ସେବା ଓ ଶୁଶ୍ରୂଷାରେ ତୃପ୍ତ ହୋଇ ପର ତୁମ୍ଭଙ୍କୁ ଦୁଇ ଗୋଟି ବର ଦେବାକୁ ସ୍ୱୀକୃତ ହୋଇଥିଲେ, ତୁମ୍ଭେ ସମୟାନୁଯାୟୀ ମାଗିନେବ ବୋଲି ତାଙ୍କଠାରେ ରଖାଇଛ ।

ମୁଁ ମୋର ନିଜର କର୍ମକୁ ଭାବି ମୋର ହୃଦୟ ଅଧିକା ହେଉଛି ।

ଗୀତ

ଶୀତଳ ବଦନା ତୁ ନ କର ମାନ,
ଭିନ୍ନ ନ କର ରେ ଜୀବନ ଧନ,
ତାପ ବାନ୍ଧି ଘେନି, ହେଲାଣି ଜାଣ,
କଥ କହ ତୋର ଶୋଚନା ।

ପ୍ରିୟେ ! କମା ଏତେ ଛଳ, ଯାହା ତୋର ମନୋବାଞ୍ଛା ପ୍ରକାଶ କର ନିର୍ଭୟ ଅନ୍ତରରେ । ବୃଥା କାଳ୍ୟେ ନ କଟାଅ କାଳ ।

କୈକେୟୀ— ଗୀତ

ଜାଣି ତ ନ ଥିଲି ନାଥ,
ଏଡ଼େ ନିଷ୍ଠୁର ହୃଦୟ ।
ମୁଖରେ ମଧୁର ଭାଷି,
ଅନ୍ତରେ ତୁଅ ନିର୍ଦ୍ଦୟ ।
ତୁମର ଦଶରଥ ଭାବ,
କ୍ଷଣେ କର ସୁଖ ଲାଭ ।
ଅନ୍ତର ହେଲେ ମୋ ଠାବ,
ଆନରେ ହେବ ସଦୟ ।

ନାଥ ! ଏ ଅଧୀନାଠାରେ ଆପଣଙ୍କର ଏତେ ଛଳବୋଲି ଭଲେମାତ୍ର ବିଶ୍ୱାସ କରି ନ ଥିଲି । କିନ୍ତୁ ଆଜ ଫଳରେ ଜାଣି ପାରୁଛି; ଆପଣ ଏକା କାହିଁକି ପୁରୁଷ ମାତ୍ରକେ ସମସ୍ତଙ୍କର ଏହିଭଳି ଭାବ ।

ଦଶରଥ—ପ୍ରିୟେ ! ଅନ୍ୟ ରାଣୀମାନଙ୍କ ଅପେକ୍ଷା, ମୁଁ ତ ତୁମକୁ ଅଧିକ ସ୍ନେହ କରେ, ତେବେ ତୁମର ଆଉ କ ଚିନ୍ତା ପ୍ରକାଶ କର ?

କୈକେୟୀ— ଗୀତ

ଟେକିଲୁ ଏ ଗୋଡ଼ା କପାଳ,
ଲେଖା ନାହିଁଟି ଫଳ ।
ଅବିଶ୍ୱାସୀ ପୁରୁଷଜାତି,
ଭବରେ ଜଣାଥିଲୁ ସତ୍ୟ ।

ଭବଗୀତ କଥାକୁ ଶୁଣିଲେ ଏ ଜଗତରେ କେତେ ଜଣ ଅନୁକୂଳ କରିବାକୁ ଇଚ୍ଛା, ଭାବ ମନରେ କରୁ ବ୍ୟସ୍ତ ହେଉଛି । ତେବେ ଅଧୀନାର ଆପଣଙ୍କ ନିକଟରେ କିଛି ମାଗୁଣି ଅଛି । ଏ ଶୁଭ ସମୟରେ କେତେ ବା ଦାନ ଧ୍ୟାନ ହେଉନାହିଁ । ଆଶାକରେ ଏପରି ସମୟରେ ପ୍ରାପ୍ୟ ମୋର ଅଭୀଷ୍ଟ ନିଶ୍ଚୟ ଫଳବତୀ ହୋଇ ପାରିବ ।

ଦଶରଥ – ପ୍ରକାଶ ନ କଲେ ଜାଣିବି କପରି ?

କୈକେୟୀ— ଗୀତ

ଦେବାସୁର ରଣେ ଯାହା,
ଯାଚ ଥିଲେ ପ୍ରାଣନାଥ,
ମାଗୁଣି ମାତ୍ରକ ତାହା;
ଦୟାକର ଦୟାମୟ ।

ଆପଣ ଦେବାସୁର ଯୁଦ୍ଧ ସମୟରେ ଯେ ଦୁଇଟି ବର ମୋତେ ଦେବା ନିମିତ୍ତ ପ୍ରତିଶ୍ରୁତ ହୋଇଥିଲେ, ତାହା ମୁଁ ନ ନେଇ ଆପଣଙ୍କଠାରେ ଗଚ୍ଛିତ ରଖାଇ ଥିଲି । ମାତ୍ର ସେ ବର ବର୍ତ୍ତମାନ ଗ୍ରହଣ କାଳ ଦେବାର ଆଉ ଶକ୍ତି ନାହିଁ । କାରଣ ଯେତେବେଳେ ଆପଣଙ୍କ ପୁତ୍ର ମସ୍ତକରେ ରାଜମୁକୁଟ ଅର୍ପଣ କରିବେ ସେତେବେଳେ ଆପଣଙ୍କର ଆଉ ଦାନ କଣ ? ତେବେ ଅଧୀନାକୁ ଆଗରୁ ସେ ବିଷୟ ଜୁଟାଇ ଦେବା ଭଲ ।

ଦଶରଥ—ବାସ୍ତବିକ୍ କଥା, ମୁଁ ଭୁଲି ଯାଇଥିଲି । ତୁମେ ମଧ୍ୟ ଯାହା କହିଲ ସତ୍ୟ । ତେବେ ଏଥିଯୋଗୁ ଏତେ ବ୍ୟସ୍ତ କାହିଁକି ? ତୁମ ଲାଗି ଏ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଜନ କରିପାରେ, ତେବେ ପ୍ରକାଶ କର କ ବାଞ୍ଛା ତୁମର ।

କୈକେୟୀ—ନାଥ ! ଯାହା ମୁଁ ମାଗିବି ମୋତେ ଦେବେଟିକି ତାହା ?

ଦଶରଥ—ପ୍ରିୟେ ! କ ଭାବ ସେ କଥା, ମିଥ୍ୟା କ କହିବେ ତେବେ ଇକ୍ଷ୍ୱାକୁବଂଶୀୟ ଦଣ୍ଡଧର । ସତ୍ୟ, ସତ୍ୟ, ସତ୍ୟ ମୋ ବଚନ, ମନୋଗତ ଯାହା ମାଗ ନେଇ ବର ରେ ଜୀବନଧନ ।

କୈକେୟୀ— ଗୀତ

ସତ୍ୟ ଯେବେ ଅଙ୍ଗୀକାର,
ରାମ ହୋନ୍ତୁ ବନେଶ୍ୱର
ଭରତେ ରାଜନ୍ତୁ କର,
ବାସରେ ଦଶ ଅବଧି ।

ମହାରାଜ ! ପ୍ରଥମ ବରରେ ମୋର ପୁତ୍ର ଭରତ ରାମ ପରିବର୍ତ୍ତେ କାଲି ପୁଷ୍ୟା ଯୋଗରେ ଯୌବରାଜ୍ୟେ ଅଭିଷିକ୍ତ ହେଉ ।

ଦଶରଥ—ପ୍ରିୟେ ! ଯଦି ଶୋଭନ ତୁମ୍ଭଙ୍କୁ, ଅସ୍ତୁ ହେଉ ତାହା । କାରଣ ରାମ ଭରତର ନାହିଁ ଭିନ୍ନାଭିନ୍ନ । ରାମ ଯେପରି ସ୍ନେହର ପାତ୍ର ଭରତ ମଧ୍ୟ ତଦ୍ରୂପ । ତେବେ ପ୍ରକାଶ ଆନ ବର ଗୋଟି ।

କୈକେୟୀ— ଗୀତ

ଜଟା ବଳକଳ ବସନ ବନବାସେ ଯାଉ ରାମ ।
ଚତୁର୍ଦ୍ଦଶ ବର୍ଷ ଅନ୍ତେଣ ଫେରିବ ନିଜ ଆଶ୍ରମ ॥

ରାମଚନ୍ଦ୍ର ଜଟା ବଳ୍କଳ ଧାରଣ କରି ଚଉଦବର୍ଷ କାଳ ବନବାସ କରୁ, ଏହାହିଁ ଇଚ୍ଛା ।

ଦଶରଥ—ପ୍ରିୟତମେ ! କିଏ ତୁମ୍ଭଙ୍କୁ ଏ କପଟ ବୁଦ୍ଧିରେ ପ୍ରବର୍ତ୍ତାଇଲା । ରାମ ଜଣ ଏକା ମୋର, ସେ ଜଣ ତୋର ନୁହେ । ଧରୁଅଛି ପଦ ତବ ପଶୁଛି ଶରଣ, ପ୍ରିୟତମେ ରାମେ ମୋର ନ ପଠାଅ ବନେ । ଭରତ ପଛେ ରାଜା ହେଉ ଅଯୋଧ୍ୟା କଟକେ, ନାହିଁ ତହିଁ ମୋହର ଶୋଚନା । ମାତ୍ର ରାମ ବନଯିବା କଥା ନ ଧରିଲେ ତୁମ୍ଭେ । ଏ କଣ ହେଲା, ହା ରାମ !

( ଦୀର୍ଘ ନିଶ୍ୱାସ ତ୍ୟାଗ )

କୈକେୟୀ— ଗୀତ

ସତ୍ୟରେ ନ ହେବ ଆଉ ନ ଗ୍ରହିବ ଏହୁ ଦାଉ
ସଂଚିତ ଏ ଆଶାଦେଇ ବାଳକୃଷ୍ଣ କରେ ଭୟ । ୬ ।

ନାଥ ! ବୃଥା ଜଳ୍ପନା ଏଣୁ ଆବଶ୍ୟକ କଣ ? ମୋର ମନୋବାଞ୍ଛା ପୂର୍ଣ୍ଣ କରିବାକୁ ନିଶ୍ଚୟ ହେବ । ନଚେତ୍ ନାହିଁ କରନ୍ତୁ, ମୁଁ କର୍ମ ଅନ୍ତରେ ରହିବ ।

ଦଶରଥ— ଗୀତ

ଅଲେ ଦୁର୍ବୃତ୍ତ ପାପିଷ୍ଠା ପାମରି
ଏ କି କାଣ୍ଡ ଆଜ କଲୁରେ ।
କାହା ପାଖେ ପଢ଼ି ଥିଲୁ ବୁଦ୍ଧି ଦୁଷ୍ଟ
ଭଣ୍ଡପଣ ଦେଖାଇଲୁ ରେ ।
ଖଣ୍ଡା ଧରି ଜମା ନ କାଟି ମୋ ଖଣ୍ଡା
ଅଣ୍ଟାଠାରେ କି ସାଧିଲୁ ରେ
ଭଣ୍ଡାଭଣ୍ଡି କରି ଦେଲୁ କଣ୍ଟାଟର
ମୋ ଗଣ୍ଡାକ ପୁରାଇଲୁ ରେ । ୧ ।

ପାଷାଣ୍ଡି ! ତୋର ଏତେ ଛନ୍ଦ, ତୁ ବ୍ରହ୍ମାଣ୍ଡବିଜୟୀ ପୁତ୍ରକୁ ଦଣ୍ଡେ ଦେଖି ପାରିଲୁ ନାହିଁ । ନାରୀହତ୍ୟା ମହା-ପାପ, ନଚେତ୍ ତୋର ମୁଣ୍ଡ ମୁଁ କ୍ଷଣକ ମଧ୍ୟରେ ଖଣ୍ଡ ଖଣ୍ଡ କରି ପାରନ୍ତି । ଦୁର୍ଦ୍ଦଣ୍ଡି ! କାହା ଶିକ୍ଷାରେ ପଡ଼ିଛୁ ସତ କହ ?

ମନ୍ଥରା—( ସ୍ୱଗତ ) ମଲା ସିଏ କଣ ଡକାଥିଲା କିଏ ? ସେ କଣ ଅନ୍ତର୍ଯାମୀ ହୋଇଛନ୍ତି କି ! ଏତ ଆଚ୍ଛା କଥା ହେଲା, ଏବେ ଅକଲ ଗୁରୁ ଭୁଇଆ ମାଈକିନିଆ ମୋ ନା କାଳେ କହି ନ ଦିଏତ । ( ପ୍ରକାଶ୍ୟେ ) ମହାରାଜ ! କଣ ହେଲା କି ?

ଦଶରଥ—ଚୁପ୍ କର ପାଷାଣ୍ଡୀ (ଚୁଟିଧରି ଠେଲିଦେବା) ।

ମନ୍ଥରା—ଇଲେ ମୋ ବୋଉଲୋ; ମୁଁ କାହିଁକି ମିଛଟାରେ ଏ ପରିଭବ ପାଉଛି । ମୁଁ ଯାଉଛି, ତୁମ୍ଭେ ଦୁହେଁ ଏଥିର ଗଡ଼ାପଡ଼ା ହୋଇ ମଲେ କେତେ ଗଲେ କେତେ ?

ଦଶରଥ— ଗୀତ

ଯାର ନାମ ସ୍ମରି ନାଚେ ବସୁନ୍ଧରା
ତୁ ଜମା ଭଗାରି ଦେଲୁ ରେ ।
ନାରଖାର କରି ଦେଲୁ ଆଜ ପୁଷ୍ପ
କି ଗୌରବକୁ ଅର୍ଜିଲୁ ରେ । ୨ ।

ନାରକି ! ଯାର ନାମରେ ଏ ଅଯୋଧ୍ୟାପୁରୀ ପୂର୍ଣ୍ଣିମୀ ରଜନୀ ପରି ହସି ଉଠୁଥିବ, ତୁ ପାପିଷ୍ଠୀ ସେହୁ ପ୍ରାପ୍ୟ ତାକୁ ଅମାବାସ୍ୟାରଜନୀରେ ପରିଣତ କଲୁ ।

ଗୀତ

ଛି ମମତ ଛାଡ଼ି ହୃଦକଲୁ
ନିଷ୍ଠୁର ମନପଣ ଦେଖାଇଲୁ ରେ ।
ବାଳକୃଷ୍ଣ କହେ ତାଳକେ ତୁଷ୍ଟ
ଅଣ ମୋର ଜଡ଼ାଇଲୁ ରେ ॥

ଓହୋ, ଧିକ୍ ମୋର ଧନେ, କଣ କରିବି ? ପାଷାଣ୍ଡୀ ଚକରେ ପଡ଼ି ମୋର ହୃଦୟ ରତନକୁ ବନକୁ ତେଉଛି । ପାପିୟସି ! କେମନ୍ତେ ମୁଁ ରାମଚନ୍ଦ୍ରେ ଦେବି ଏ ବାରତା । ସତ ପରାୟଣା ଜନକ ତନୟା ଶୁଣିବ

ସ୍ତ୍ରୀ ଯେବେ କ ବୋଲି ବୋଲିବ । ରକ୍ଷାସି ! ରାମ ବନ ଯିବା ପୂର୍ବରୁ ବିଦୀର୍ଣ୍ଣ କରିବୁ ମୋର ନିର୍ଭୟ ହୃଦୟ ।

କୈକେୟୀ—ବୃଥା ଭାବନା କରା ପ୍ରୟୋଜନ, ରାମ ବନ ଯିବ ନିଶ୍ଚେ ନ କର ବାରଣ। ଇକ୍ଷ୍ୱାକୁବଂଶଜ ପୁଣି ଅଜରାଜ ସୁତ ନାମ ସତ୍ୟସନ୍ଧ ବୋଲି ବିଦିତ ଜଗତେ, ସ୍ତ୍ରୀର ପୁତ୍ର ସ୍ନେହେ ବଶ୍ୟ ତ କିମ୍ବା ହୁଅ, ହୋଇ ଅନ୍ଧ । ଶ୍ରୀମୁଖର ବର ସବୁ ବ୍ୟର୍ଥ ହୋଇବ, ରଘୁ କୁଳରେ କଳଙ୍କର ପତାକା ଉଡ଼ିବ । ପୁଣି ସୂର୍ଯ୍ୟବଂଶୁ ସତ୍ୟସନ୍ଧ ନାମଟି ବୁଡ଼ିବ ।

—*—

### ଦ୍ୱିତୀୟ ଦୃଶ୍ୟ

ସୁମନ୍ତ୍ର—ଏ କଣ ? ମହାରାଜ ଏ ପର୍ଯ୍ୟନ୍ତ ଅନ୍ତଃପୁରରୁ ବାହାରେ ନ ବାହାରିବାର ଅଭିପ୍ରାୟ କଣ ? ଅଭିଷେକ ସମୟ ଅତୀତ ହେବା ପ୍ରାୟ । ବୋଧହୁଏ ମହାରାଜ ସାରା ରାତିଟା ଆନନ୍ଦ ସମୁଦ୍ରରେ ଜାଗ୍ରତ ଥାଇ କ୍ଳାନ୍ତ ଶରୀରେ ନିଦ୍ରାଭିଭୂତ ଅଛନ୍ତି । ଏଣେ ସେ ଦ୍ୱାର ଦେଶରେ ନିମନ୍ତ୍ରିତ ରାଜାଗଣ । ଭଗବାନ ବଶିଷ୍ଠଙ୍କ ସହ ବ୍ରାହ୍ମଣ ଓ ମୁନି ଋଷିଗଣ ଉପସ୍ଥିତ ହେଉଛନ୍ତି, ଯାଏଁ ଅନ୍ତଃପୁର ମଧ୍ୟ ରାଜାଙ୍କୁ ଏ ସନ୍ଦେଶ ଜଣାଏ ।

( ସୁମନ୍ତ୍ରର କୈକେୟୀଙ୍କ ମନ୍ଦିରରେ ପ୍ରବେଶ )

ସୁମନ୍ତ୍ର—ମହାରାଜ ! ରାତି ପାହିଲାଣି, ଅଭିଷେକ ସମୟ ଉପସ୍ଥିତ, ଗାତ୍ରୋତ୍ଥାନ କରନ୍ତୁ । ବିଳମ୍ବେ କାର୍ଯ୍ୟର ଫଳ ଅଶୁଭଦାୟକ ହେବ ।

ସୁମନ୍ତ୍ର—ଶ୍ରୀମୁଖର ଏ ଶୁଷ୍କବଦନରେ ଏପରି ବହୁକାଳ ହେବାର ଅଭିପ୍ରାୟ କଣ, ମୋ ଅଧୀନରେ କୌଣସି ତୋଷାମୋଦ ଥାଏ ତ ମାର୍ଜନା କରି ପ୍ରକାଶ କରନ୍ତୁ ?

କୈକେୟୀ—ତୁମର ସେ କଥା ବିଚାର କରିବାର ଆବଶ୍ୟକ ନାହିଁ, ଯାଅ ଶୀଘ୍ର ରାମକୁ ଏଠାକୁ ଡେକିଆଣ ।

ସୁମନ୍ତ୍ର—ସାମ୍ରାଜ୍ଞି ! ମୁଁ କ୍ଷୁଦ୍ରା ଭୃତ୍ୟ ମାତ୍ର ରାଜକାର୍ଯ୍ୟ ନିମିତ୍ତ, ପାରିବାରିକ ନିମିତ୍ତ ନୁହେଁ । ଏଣୁ ମହାରାଜଙ୍କ ବିନାନୁମତିରେ ଆପଣଙ୍କ ଆଜ୍ଞା ଅବଶ୍ୟ ଯୋଗ୍ୟ ।

କୈକେୟୀ—କ ବାତୁଳ ମନ୍ତ୍ରି ! ମୋର ଆଜ୍ଞା ଅବଶ୍ୟ ଯୋଗ୍ୟ, ସବୁ ସମୟରେ ମୋର ଆଜ୍ଞା ପାଳନ କର ?

ସୁମନ୍ତ୍ର—ଅସମ୍ଭବ, ସମ୍ଭାବ ପାରେ, ସେ ଦିନ ଆପଣ ସିଂହାସନାଧିରୂଢ଼ା ହେବେ ।

କୈକେୟୀ- ତେବେ, ସେଥି ନିମିତ୍ତ ମୁଁ କହୁଛି ରାଜା ବର୍ତ୍ତମାନ ଚିନ୍ତାଗ୍ରସ୍ତ ଓ ଅସୁସ୍ଥ, ରାମକୁ ଏଠାକୁ ଆସିବାକୁ କହ ?

ସୁମନ୍ତ୍ର—ସାମ୍ରାଜ୍ଞି ! ପୁଣି ସେହି କଥା, ଇକ୍ଷ୍ୱାକୁବଂଶୀୟ ମନ୍ତ୍ରି କ ଏପରି ନିଚମନା ଓ ଦୁର୍ବଳ ନୁହେ ଯେ ସେ ରାଜାଙ୍କ ବିଦ୍ୟମାନରେ ସାମାନ୍ୟ ଜଣେ ଅବଳାର ଆଜ୍ଞାକାରୀ ହେବ ।

ଦଶ—(କ୍ଷୀଣସ୍ୱରରେ) ମନ୍ତ୍ରି ! ମୋର ଜୀବନ ଯିବାପରି ପ୍ରାୟ, ରାମକୁ ଥରେ ଦେଖାନ୍ତି ।

ସୁମନ୍ତ୍ର—(ସ୍ୱଗତ) ଏ ବ୍ୟାପାର ପର୍ଯ୍ୟବେକ୍ଷଣ କରି ମୋ କ୍ଷୁଦ୍ର ବୁଦ୍ଧିରେ କିଛି ଭାବନ୍ତେ ସ୍ଥିର କରିପାରୁ ନାହିଁ । ଅକସ୍ମାତ ଏ କ ବିଭ୍ରାଟର ସମ୍ଭାବନା, ବୋଧହୁଏ ଏଥିରେ କିଛି ଗୂଢ଼ କଥା ସନ୍ନିହିତ । ତଥାପି ରାଜାଙ୍କ ଅବଶ୍ୟ ପାଳନୀୟ । (ପ୍ରକାଶ୍ୟେ) ଯଥାଜ୍ଞା ମହାରାଜ ।                                                                    (ପ୍ରସ୍ଥାନ)

———

### ତୃତୀୟ ଦୃଶ୍ୟ

ସୁମନ୍ତ୍ର—ବାବୁ ରାମଚନ୍ଦ୍ର ! ପିତାଙ୍କ ଆଦେଶ ଶୀଘ୍ର ବିଜୟମାନ ହୁଅନ୍ତୁ ।

ରାମ—ମନ୍ତ୍ରୀବର ! ଉଦୟ ସମୟକୁ ଆହ୍ନିକ କାର୍ଯ୍ୟାଦି ସମାପନାନ୍ତେ ଅଭିଷେକୋତ୍ସବରେ ଯୋଗଦେବା ନିମିତ୍ତ ପିତାଙ୍କର ଆଦେଶ ଥିଲା, କିନ୍ତୁ ବର୍ତ୍ତମାନ ତ ସେ ସମୟ ହୋଇନାହିଁ । ତେବେ କଣ ସମସ୍ତ ଆୟୋଜନ ହୋଇଛି କହନ୍ତୁ, ତେବେ ପିତା କେଉଁଠାରେ ?

ମନ୍ତ୍ରୀ—ଯୁବରାଜ ! ପିତା ବର୍ତ୍ତମାନ ମହିଷୀ ମାଆଙ୍କ ଉଆସରେ କାରଣ କଣ ମୁଁ ତାହା ଜାଣେ ନା ।

ରାମ—ଏବ ମନ୍ଦେହର କଥା ଆଜ୍ଞା ଚାଲନ୍ତୁ ।

(ଆସିବା ସମୟେ ସଙ୍ଗେ ଲକ୍ଷ୍ମଣ ମିଳ ଆସିବା)

---

## ଚତୁର୍ଥ ଦୃଶ୍ୟ

ସୁମନ୍ତ—ମହାରାଜ ! ଆଦେଶ ମତେ ରାମଚନ୍ଦ୍ର ବର୍ତ୍ତମାନ ଆପଣଙ୍କ ସମୀପରେ ଉପସ୍ଥିତ ।

ଦଶ—କାହିଁ ମୋ ହୃଦୟ ଚନ୍ଦନ (ପୁନଃ ମୂର୍ଚ୍ଛାଗତ)

(ରାମ କୈକେୟୀଙ୍କ ଚରଣ ବନ୍ଦନା କରି ପିତାଙ୍କୁ କୋଳରେ ଧରି ଅଧୀର କଣ୍ଠରେ)

ରାମ—ମା, ମା, ପିତା ଏପରି ଅଧୀର ହେଉଛନ୍ତି କାହିଁକି ? ମୁଁ କଣ କିଛି ଦୋଷ କରିଛି, ପ୍ରାଣରେ କି ବାଜୁଣ ଆଘାତ, ପିତା ଏପରି ଅଧୀର ହେବାର କାରଣ କଣ ?

ଦଶ—(ସଚେତ ହୋଇ ସ୍ୱେଚ୍ଛାଦ୍ୟମାନ)

ରାମ—ଜନନି ! ତାତ କମା ଧରଣୀପ୍ରୀ, କି କଷ୍ଟରେ ହୁଅନ୍ତି ଅଧୀର । ଦୟାକରି ପ୍ରକାଶି ଅଧୀନେ ସନ୍ଦେହ ମୋ କର ବିମୋଚନ ।

ଗୀତ

କମାଇ ତାତ ମୁର୍ଚ୍ଛିତ,
କହୁରେ ପ୍ରକାଶ ମା । ଶୋଷ ।
କେବୁ ସୁବାସ ବଦନ କମାଇ ହରେ ମଳନ,
ଅଶ୍ରୁପାତ ଅନୁକ୍ଷଣ ନାହିଁଟି ଜକାଣ ମା ।୧।

ନୟନରୁ ଅଶ୍ରୁଧାର ବହି ଅବକାଶ ହେଲାଣି ତ ଅଙ୍ଗ, ତଦ ମାତ କି ଉଦ୍‌ବେଗ ଉଚାଇଲେ ମୋତେ, ତଥି କମା ପିତା ନ କହନ୍ତି କଥା ।

କୈକେୟୀ—ବାପରେ କହିବାକୁ ଲଜ୍ଜା ହୁଏ ମୋତେ ମୁଁ ତ ନୁହେ ବୃଥା ଗଞ୍ଜନା ମାତକ ।

ଲକ୍ଷ୍ମଣ—ଦ୍ରୌପଦୀ ଦ୍ରୌପଦୀ ।

ରାମ— ଗୀତ

ଜବା ବ୍ୟାଧି ଆଗମନେ ସନ୍ତାପିତ ହୋଇଛି ମନେ,
ପ୍ରକାଶକର ଅଧୀନେ ସବୁ କହି କ୍ଳେଶ ମା ।

ମା ! କବା ବ୍ୟାଧି ଆଗମନେ ପାଆନ୍ତି ସେ କ୍ଳେଶ, ବଡ଼ ସନ୍ଦେହ ଜନ୍ମୁଛି ମୋ ମନେ, ଦୟାକରି ପ୍ରକାଶ ସକଳ ବୃତ୍ତାନ୍ତ ।

ଗୀତ

ମୁଁ କି ଚରଣେ ବିବାଦ ହୋଇଅଛି ଅପରାଧୀ
ଯେ ଦଣ୍ଡ ଦେବ ସମ୍ବାଦ କ୍ଷେପିବ ପ୍ରକାଶ ମା ॥

ମା ! ଅଧମ ସନ୍ତାନେ କମା ଦଅ ଏତେ ବ୍ୟଥା ।

କୈକେୟୀ—ଖଙ୍ଗ ନ କୁହିଁବୁ ବାପ, ଦେବାସୁର ଯୁଦ୍ଧେ ତୋର ପିତା ଯାଉଥିଲେ ବର, ମାଗନ୍ତେ ମୁଁ ତାହା ନାଥ ଆଜ ହୁଅନ୍ତି ଅଧୀର ।

ରାମ—କି ବର ପ୍ରକାଶନ୍ତୁ ?

କୈକେୟୀ ବାପ, ପ୍ରଥମ ବରରେ ମୋର ପୁତ୍ର ଭରତ ତୋହ ପରିବର୍ତ୍ତେ ଯୌବରାଜ୍ୟେ ଅଭିଷିକ୍ତ ହେବ ଅଯୋଧ୍ୟା କଟକେ ।

ରାମ— ଗୀତ

ଐଶ୍ୱର୍ଯ୍ୟେ ନାହିଁ ଭାବନା, ସେ ଯୋଗେ କମା ଶୋଚନା
ଅଧୀନେ କର କରୁଣା ଅନ୍ୟ କି ଇଚ୍ଛା ମା ॥

କି ଶୁଭ ସମ୍ବାଦ, ନୁହେଁ ମୁହିଁ ଐଶ୍ୱର୍ଯ୍ୟ ପ୍ରୟାସୀ । ମା, ଦୟାକରି ପ୍ରକାଶ ଅନ୍ୟଟି ।

କୈକେୟୀ—ବଡ଼ ଦୁଃଖର କଥା, କହିବାକୁ ବଡ଼ ଭୟ ଲାଗେ ମୋତେ ।

ରାମ - ଆଉ କମା କହ ?

କୈକେୟୀ—ବାପ ! ଦ୍ୱିତୀୟରେ ମାଗିଅଛି ଦୁଃଖର ବର; ଆଜଠାରୁ ଚଉଦବର୍ଷକାଳ ଜଟା ବଳ୍‌କଳ ସାଜ ଯିବୁ ବନବାସେ ।

ରାମ— ଗୀତ

ଏକଥା ଶୁଣିବୁ କନା, ନ ହୁଅ ମାତ ଉନମନା
ପୂର୍ଣ୍ଣ କରିବ କାମନା ଲଭିବ ଆଶିଷ ମା ॥

ମା ! ଏ ସାମାନ୍ୟ କଥାରେ ଏତେ କମା କଷ୍ଟ ! ଜଣାଅ ମା ଅଙ୍ଗୀକାର କରିଣି ସନ୍ତାନ ।

ଗୀତ

ଧନ୍ୟ ଯା ଲେଖିଛି କର୍ମେ, ସହିବାକୁ ହେବ ଧନେ
ଦୀନ ବାଳକୃଷ୍ଣ ଭଣେ ତେ କରିବ ତ୍ରାସ ମା ।

ମା ! ବିଧାତା ଯା କପାଳେ ଲେଖିଛୁ, ତା ନିଶ୍ଚୟ ଭୋଗ କରିବାକୁ ହେବ । ତେବେ ଚିନ୍ତା କଣ ?

କୈକେୟୀ – ନାଥ ! ଉଠିବେ ନାହିଁ କି ? ଦେଖନ୍ତୁ ପୁତ୍ର ତବ ଆଗେ ଉପସ୍ଥିତ ।

ଦଶ—ହା ଏ-ରାମ-ଓହୋଃ ।

ରାମ—ପିତା, ପିତା—

ଦଶ—କିଏ ପିତା, ନା ଏ ପାତକୀ ତୋର ଜୀବନର ହନ୍ତା । ଏ ପାଷାଣ୍ଡୀ କବଳରେ ପଡ଼ି ତୋତେ— (ମୂର୍ଚ୍ଛା)

ରାମ—(ପୁନଃ ସଚେତ କରି) ଜାଣିଲିଣି ସମସ୍ତ ବୃତ୍ତାନ୍ତ, ଧୈର୍ଯ୍ୟ ଧର ତାତ ! ସତ୍ୟ ତବ ଯାହା ପାଳିବ ନିଶ୍ଚିତ ।

ଦଶ— ଗୀତ

କେମନ୍ତେ ମୂର୍ଚ୍ଛିବ ଧନ ମୋ ପରାଣ ନିଧି ରେ ।
ପାଷାଣ୍ଡୀ କବଳେ ପଡ଼ି ହରାଇଲି ସିଦ୍ଧି ରେ । ଘୋଷା ।
ତୁ ମୋ ଅନ୍ଧର ନୟନ,
କେମନ୍ତେ ତେଜିବ ବନ
ଧିକ ଧିକ ମୋର ପଣ ବାମ ହେଲା ବିଧି ରେ । ୧ ।

ବାପ ! ଏ ପାଷାଣ୍ଡୀ କବଳରେ ପଡ଼ି ତରୁଣ ପାଇଁ ତୋତେ କଣ ହରାଇ ବସିବି ? ବାପ ! ମୁଁ ସତ୍ୟ ଭଙ୍ଗ କରିବାର ପାତକ ସହି ପାରିବ; କିନ୍ତୁ ଏ ଦୁଃଖୀ କଥାରେ ମୁଁ ତୋତେ କେବେ ବନକୁ ପଠାଇବି ନାହିଁ ।

ଗୀତ

ହେଲି ମୁଁ ପ୍ରତିଜ୍ଞା ଭ୍ରଷ୍ଟ
ନ ପୂରିବ ଭୂଜଶ୍ରେଷ୍ଠ
ଧିକ ମୋର ଧର୍ମନଷ୍ଟ ହୁଏ ଅପରାଧୀ ରେ ।

(ବାହୁଡ଼ାଇ) ଯାଇ ବାପ ! ଅଭିଷେକ କାର୍ଯ୍ୟ ଆରମ୍ଭ କରିବ ।

ଗୀତ

ହେଲି ନାସ୍ତିକ୍ୟ ଦୋଷ,
କୈକେୟୀ କରିବ ନାଶ
ପାତକଙ୍କ ସୂର୍ଯ୍ୟବଂଶେ ହେଲି ପ୍ରତିବାଦ । ୩ ।



ନାହିଁ ଅସ୍ତ୍ର, ପାଷାଣ୍ଡୀର ଦ୍ୱିଖଣ୍ଡିତ କରନ୍ତି ଏଖଣି । ଶାପ ପୂର୍ଣ୍ଣ ନାହିଁ ମୋ ଶୋଚନା, ସୂର୍ଯ୍ୟବଂଶ କଳଙ୍କ ଏ ! ମୃତ୍ୟୁର ଉପଯୁକ୍ତ ପ୍ରାୟଶ୍ଚିତ୍ତ ଏହି ! ରାଜ କୁଳେ ନ ହଉ ସନ୍ତାନ ।

ରାମ—ପ୍ରତିଜ୍ଞା ରକ୍ଷଣ ବାଧ୍ୟ ହୁଏ ତବ ଉଚ୍ଚେ, ଅଧୀନର ବାଧା ହେବ କଷ୍ଟେ ତାତ । ସୂର୍ଯ୍ୟବଂଶର ଅଙ୍ଗୀକାର କରନ୍ତି ଯାହା, ଧୀର ଉତ୍ତେ ପାଳନ୍ତି ଅବଶ୍ୟ । ଭକ୍ତକୁ ଭିକ୍ଷା ଦେବ ତୋମର ବଚନେ, କ୍ରୋଧ ହୃଦ୍ୟ ସହିପାରେ କୃଷ୍ଟି ।

ଦଶରଥ— ଗୀତ

ଅନ୍ଧମୁନି ଶାପ ମୋତେ
ଫଳ ହେଲା ଏ ମୁହୂର୍ତ୍ତେ
ଧନ ବାକ୍ୟକୁ ହେତେ
ସେ ଥିଲା ଏ ବ୍ୟାଧି ରେ । ୪ ।

ମୋର ଅର୍ଜିଲି କର୍ମ, କେବା କରିବ ଆନ । ପୂର୍ବେ ଅନ୍ଧମୁନି ଦଣ୍ଡ କହିଥିଲେ ମୋତେ, ଅନ୍ୟଥା ହୋଇବ ନାହିଁ । ମୃତ୍ୟୁକାଳେ ପୁତ୍ର ମୁଖ ଦେଖା ହେବ ଶୂନ୍ୟ, ଋଷିବାକ୍ୟ କେ କରେ ଖଣ୍ଡନ ।

ରାମ— ଗୀତ

ଥାଅ ଜନକ ଜନନୀ ହେ
ତବ ତୋଳନ୍ତୁ ହେଲି ମେଲାଣି
ଜନକ ପ୍ରଣମ ଜନନୀର କ୍ଷମା
ପଦେ ସମ୍ଭାଳିବ ଆଣି । ଘୋଷା ।

ଜନନି ! ଦଉନ୍ତୁ ମେଲାଣି ଅଧୀନେ ।

ଗୀତ

ମାତା ତାତ ତୋତେ ଲାଗିଲେ ମୋହର
ଯେମନ୍ତେ ମୋ ଲାଗି ନ ହେବେ କାତର
ବିଧାତା ହୃଦର କେ କରିବ ଦୂର
ନ କର ବୃଥା ଚିନ୍ତାଣି । ୧ ।

ମାତ ! ପିତା ମୋ କଷ୍ଟେ ହେବେ ବୃଥା ଅଧୀର, କରି ତାଙ୍କୁ ପ୍ରବୋଧନା ତୋମର ବଚନେ ।

ଗୀତ

ବଡ଼ ଉଦରେଣୁ ଅଧମ ସନ୍ତାନେ
କ୍ଷମା ଦେବ ଦୋଷୀ ଯେବେ ମୁଁ ଅଜ୍ଞାନେ

ବାଳକୃଷ୍ଣ ଚରଣେ, ଥାଉ ଗୋ ସତତେ
ସହାୟ ମୋତେ ଭବାନୀ ।
ମା ! ଆଶୀର୍ବାଦ କର ଏ ଅଧମେ, ଯେମନ୍ତେ ମୁଁ
ମଙ୍ଗଳରେ ଫେରିବି ସଦନେ ।
କୈକେୟୀ—ଶୀଘ୍ର ବାଓ ! କେମନ୍ତେ ଧରିବ ପ୍ରାଣ ନ
ଦେଖି ତୋ ମୁଖ ।
( ଅଭିବାଦନାନ୍ତେ ରାମର ପ୍ରସ୍ଥାନ )

—*—

## ପଞ୍ଚମ ଦୃଶ୍ୟ

## ପଥରେ ରାମ ଓ ଲକ୍ଷ୍ମଣ

ରାମ—ବାବୁ ଲକ୍ଷ୍ମଣ ! ଶୁଣିଲ ତ ସବୁ, ଅଧିକରେ ନାହିଁ ପ୍ରୟୋଜନ ! ଯାଉଛି ମୁଁ ଅଗମ୍ୟ ବନସ୍ଥେ, ଯେଉଁଠି ଚୌଦ ବର୍ଷ ଅନ୍ତେ, ଫେରୁଥିବି ଅରଣ୍ୟରୁ ମାତା ପିତାଙ୍କ ପାଖରେ ।

ଲକ୍ଷ୍ମଣ—କେଉଁଣ ଶିବ ଭ୍ରାତ ! ସଳିଳ ବନ୍ଧନେ ପଦ୍ମ ବଞ୍ଚିବ କହଇ ? ପ୍ରାଣ ଯାଉ ଅବା ରହୁ, ରାମ ବିନା ଲକ୍ଷ୍ମଣର ନାହିଁ ଅନ୍ୟ ଗତି ।

ରାମ—ବଡ଼ ବିଷମ କଥା, ତୁ ଏ ବଉଳଗା ସଙ୍ଗରେ ଯାଇ କଣ କରିବୁ ?

ଲକ୍ଷ୍ମଣ— ଗୀତ

ସହୋଦର ଅନାଦର ଆଉ କାହିଁ କି
କେମନ୍ତେ ବଞ୍ଚିବ ଦିନ ଚାହିଁ ମୁଖ ଚନ୍ଦ୍ର କି ।
ଏ ଛାର ଐଶ୍ୱର୍ଯ୍ୟ ନୁହେ ମୋର ଯୋଗ୍ୟ
ଅଯୋଗ୍ୟ ମୁଁ ମନେ ଚିନ୍ତି କି ।
ଶ୍ରୀପଦ ପଙ୍କଜ ଦେଇ ମୋତେ ଭୋଗ୍ୟ
ତୈଳୋକ୍ୟ ମଣ୍ଡିତ ଦେଖିବି । ୧ ।

ବନ ! ନାହିଁ ପ୍ରୟୋଜନ ମୋର ଏ ଛାର ସମ୍ପଦେ । ଅଗ୍ରତେ ବସତେ ଶ୍ରୀଚରଣ ସେବା ମନେ ମୁହିଁ ଧ୍ୟାନବାନ ।

ଗୀତ

ହେ ରାମଚନ୍ଦ୍ର, ନଅନ୍ତୁ ସଙ୍ଗତ,
ଅନ୍ତର ଦେଖନ୍ତୁ ଦେଖିବି ।
ମୁଁ ତ ଅଜ୍ଞାତ କପାଳି ଭଣେ
ଦୀନ ବାଳକୃଷ୍ଣ ପଦ ଧ୍ୟାଇବି । ୨ ।

ଅଳ୍ପଟାର ଜନେ କମା କର ଏତେ ବ୍ୟଥା, ଅନନ୍ତ ସମ୍ପଦେ ଲୁଟନ୍ତି ମୁଁ ପ୍ରସ୍ତାସୀ, ଦୃଷ୍ଟି ମୋର ପଦଧୂଳି !

ରାମ—ନ ହୁଅ ଅଧୈର୍ଯ୍ୟ ବାବୁ, ଯାହା ଇଚ୍ଛା କର ତୁହି ମୁଁ ରହିଛି, କିନ୍ତୁ କାନନରେ ବଡ଼ କ୍ଳେଶ ସହିବୁ ରେ ବାବୁ, ସେଥିଯୋଗୁଁ ଭାଙ୍ଗୁଥିଲି ମୁହିଁ ।

—*—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

## ଦୁଇ ଜଣ ବ୍ରାହ୍ମଣ

ଗୀତ

ଆସ ଭାଏ ଗରିବ ଦ୍ୱିଜ
କଲିକତା ଆମ୍ଭ ସଙ୍ଗରେ ଯିବ ନିଜ
ଜଜମାନ ବୃତ୍ତି ବଡ଼ ଛଟପଟ
ଗାଁଟଣାରେ ଏତେ ଜଏ ମଜିବ । ଭୋଷା ।
ତଷ୍ଟ ଭୂତ ଶ୍ରାଦ୍ଧ ମହଲା
ଏଥିକି ରେ ମନ ନ ବଳା
ଭାଙ୍ଗେ କଣ୍ଠାଗଳା ଫୁଟିବ ଜଳକା
ଦୟାକେ ପଡ଼ିବ ନ ଟଙ୍କା ଦେଲା । ୧ ।
ତହୁଁ ଯେବେ ଅଧିକ ମନ,
ଭିକ୍ଷଣାରେ ଦେବା ନୟନ
ତାଳ ବନ୍ଧୁ ଅନ୍ନ ଭଜ ଅଣ୍ଡାଭଗ,
ଯୋଗାଇ ରଖିବା ବଢ଼ କି କାର୍ଯ୍ୟ । ୨ ।
ଆମ୍ଭେ ଜଣେ ଦୁଇ ବଦେଶୀ,
ବଇଜାରେ ଭଟାଭି ବସି
ଥୋଡ଼ା ଜେଠିଲଣି, କୁହେ ଥୋଡ଼ାବେଶୀ
ଫିରିବୁ ଲେ ଲଭ ଖୁଡ଼ ମଜ୍ଜଳ । ୩ ।
ଯେ ବା ଭକ୍ତିହବ ଏବନ,
ଦେଖୁ ଜର ଖଳ ନ ମଣ,
ବଦ୍ୟା ଅଭ୍ୟାସିଣ ପଣ୍ଡିତରେ ଗଣ୍ୟ
ହୁଅ ଏଣୁ ତହୁଁ ନୁହେ ନାହକ । ୪ ।

ବନ ! ମୁଁ ସଭାକୁ ପୁଣି ଏ ଦୁଃଖାନ ଯାଉ କଲିକତାକୁ ଯାହା ଭକ୍ତିଥିଲି । କିନ୍ତୁ ବଡ଼ ବୋଧ

ବାପସବୁ ପୁଞ୍ଜିଏ ଶୁଖୁଆ ଆଣି ଦେଇଥିଲ, ଆଉ ତ ମନଟା ସମ୍ଭାଳି ହେଉ । ସେଇ ଚଖଣା, ସେଇ ଦହି, ସାରୁଆ ମା - ସନ୍ତୁଳିଥିବା ସଜନା ଶାଗ ପୁଣି ଶୁଖୁଆ । ଆଃ ! ଏ ମଉଜଟା ଛାଡ଼ି ବିଦେଶ କରିଯିବା ଭଲ ନୁହେଁ। ସବୁ ଭାବ ସ୍ଥିର କରିଛି, ହଠାତ୍ ଶୁଣିଲି ଯେ ଆଜି ରାମ ଚନ୍ଦ୍ର ଯୁବରାଜ ପଦରେ ଅଭିଷିକ୍ତ ହେଉଛନ୍ତି । ବହୁତ ଧନ ଦଉଲତ ବଣ୍ଟନ ହେବ, ସେଇଠି ତ ଧାଉଁଛି । ଏ ମେଦେଇରୁଆ ଜ୍ୱରରେ ଦେହଟା ବଡ଼ ଅସ୍ଥିର ହୋଇ ଯାଉଛି, ଖାଲି ଅମ୍ବୁଲଭାଇ ସହେଲିଏ ଚାମ୍ପୁଡ଼ଛି । ଭଲ, ଜୟ ରାମଚନ୍ଦ୍ରଙ୍କର ଜୟ ।

ଦୂତ—ନିଶାନମାନ ଉଡ଼ାଅ, ତାହାର କଣ ହେଲାଣି, ଏ ଗୁଡ଼ାକଙ୍କର ଖାଲି ପେଟ ଚିନ୍ତା ।

ଗୀତ

ନନା ସରିଲାଣି ଦୟା ଧରମ ରେ
ପୋଡ଼ା କରମ । ଘୋଷା ।
ଏ ଅଯୋଧ୍ୟା ଧାମ ହେଲା ଆଜି ଶୂନ୍ୟ
ଦଶରଥ ଦୁର୍ଘଟନ ରେ । ୧ ।
ନାରୀ ପାଇଁ ପଡ଼ି ରାଜାଗଲେ ବୁଡ଼ି
ରାମେ ବରଜୁଛନ୍ତି ବନରେ । ୨ ।
ଯେଉଁ ସନ୍ତୁଡ଼ା ଦୁର୍ଜନ କଣ୍ଟଡ଼ା
ତିଏ ଭରତ ଲୋଚନ ରେ । ୩ ।
କୈକେୟୀ ଲଗାଇ ନ ଦେଖିଲା ଥିରି
ରାମେ ଭଲ ଦୋଷ ମନରେ । ୪ ।
ଯେଉଁ କସ୍ତାବଣ୍ଟ ଅମୂଲ୍ୟର ରଖ
ପୁଷ୍ପ ଲଗୁ ଅଙ୍ଗନରେ । ୫ ।
ପୂର୍ଣ୍ଣିମାର ଶଶୀ ହେଲା ରାହୁ ଗ୍ରାସୀ
ଅମାବାସ୍ୟାରେ ପରିପୂର୍ଣ୍ଣ ରେ । ୬ ।
ଚଉଦ ବରଷ ଯିବେ ବନବାସ
କେମନ୍ତେ ଧରିବା ପ୍ରାଣ ରେ । ୭ ।
କହେ ବାଳକୃଷ୍ଣ ରୋଇବେ କଟକ
ଝୁରି ଝୁରି ଯିବ ଧନରେ । ୮ ।

ନନା ! ତୁମ୍ଭେମାନେ ଯେଉଁପାଅ, ରାଜା ତୁମ-ମାନଙ୍କୁ ଦେଖିଲେ ଅଦ୍ଭୁତ ଅପେକ୍ଷା ଦେବେ । ନନା ! କଣ କରିବା କହିବ, ମୋ ଭରତଙ୍କୁ ଟିକିଏ ଅପରିଲ ମଣ୍ଡିତ, କନ୍ତୁ ଅପୂର୍ବ ସମ୍ପୂର୍ଣ୍ଣ ଉଚ୍ଚମ ଟିକା ତୁମ ହାତରେ ଦେଇଥାନ୍ତି, କଣ ହେବ ! ଆମ କର୍ମ ଖରାପ ।

ବ୍ରାହ୍ମଣ—କଣ କହିଲୁ, ସତେ କୈକେୟୀ ତୁ ଆମ ଦାନାରେ ଧୂଳି ଦେଲୁ, ଲକ୍ଷ୍ମୀଛାଡ଼ ଯା, ଦାସୀପୁଅ ତୁ ନନ୍ଦିଶିଆ ଆମର କେତେ ବଡ଼ ଆଶାଟାଏ ଧ୍ୱଂସ କରିଦେଲୁ, ତୁ ବେଙ୍ଗଧୋଇ ତା ସଙ୍ଗରେ ଭସ୍ମ ହୋ ।

ଦୂତ—ଆଜ୍ଞା ବ୍ରାହ୍ମଣ ଏ, ମୁଁ ଭଲ କହିଲେକୁ ମୋତେ ଅଭିଶାପ ।

— * —

## ଦ୍ୱିତୀୟ ଦୃଶ୍ୟ

କୌଶଲ୍ୟା—ଏ କି ଜନରବ, କେଉଁ ରାମ ବନକୁ ଯାଉଛନ୍ତି କା ମୁଁ ଭ୍ରମରେ ପଡ଼ିଛି ! ମୋର ପୁଅ ତ ରାଜାସନରେ ବସିବ, ମୁଁ ତାହାଁ ମନେ ମନେ ମନ ଗାଇ କରୁଛି ।

ସୀତା—ମା ! ତୁମକୁ ଅନ୍ୟମନସ୍କ ଦେଖୁଛି କାହିଁକି ? କଣ ଏତେ ଭାବୁଛ ?

କୌଶଲ୍ୟା—କେ ଜାଣି ମନଟା କାହିଁକି କଣ ହୋଇଗଲା, ମୁଣ୍ଡଟା ଘୂରିଗଲା ।

ସୀତା—ତାଙ୍କ ଅଭିଷେକ ଉତ୍ସବର ହେତୁ ମଥା ଭ୍ରମ ହେଉଛି, ଟିକିଏ ବସି ପଡ଼ନ୍ତୁ, ମୁଁ ପଦସେବା କରିଦିଏ ।

(ରାମ ଲକ୍ଷ୍ମଣଙ୍କ ପ୍ରବେଶ, ସୀତା ଅନ୍ତଃପୁରକୁ ଯିବା ।)

କୌଶଲ୍ୟା - (ଗୀତ)

କହ କହ ବାପଧନ ମନ ଦୁଃଖ କାହିଁକି
ଚନ୍ଦ୍ର ଆନନ ଦିଶେ ମଳିନ
ଏ ଯୋଡ଼ା ଚରଣ ଦିଏ କହିଟି
ତୋ ମୁଖ ଶୁଖିଲା କି । ଘୋଷା ।
କଲୁ କାହାରେ ଦ୍ୱନ୍ଦ୍ୱ କେବା ପାଇଲୁ ମନ୍ଦ
କାହିଁକି କହୁଛୁ ସିଧ କଥା ନ ପାରେ ଭେଦ,
ଛାଡ଼ିବ ଚେତ ରେ ତନୁଜ
ସହି ନୁହେ ବେଦନା । ୧ ।
ବାପ ! ଜନମ ହେଲୁ କମା ତୋ ମୁଖପଙ୍କଜ ।
କି କାହିଁରେ ପାଇଥିଲୁ ତୁ ରେ, ହସି କଥା ନ କହୁଛୁ

କଥା, ଏ ବତ୍ସ ମନ୍ଦ ଦେଇ ତୋ ବିଷାଦ, ମର୍ମାନ୍ତ ହେଉଅଛୁ ଆଜ।

ଗୀତ

କିବା କାଳ ମାହାତ୍ମ୍ୟରେ, ଚନ୍ଦ୍ରାନନ୍ଦ ସୌନ୍ଦର୍ଯ୍ୟ ରେ
ଶାନ୍ତି ଶୋଭା ଅର୍କ ରେ, ପୃଥ୍ୱୀ ତେଜ ଧାର୍ଯ୍ୟ ରେ
ଏ ଅସୁର୍ଯ୍ୟ ତୋର ଯୋଗ୍ୟ ବାନାୟଣି ଭଲ୍ଲିଟି । ୬ ।

ଖଟ୍ଟାଙ୍ଗ ଶିକ୍ଷାରେ କଣ ନିପୁଣ ହୋଇ ନାହୁଁ, ସେଥିନିମନ୍ତେ ଏ ରାଜ୍ୟ ଭର ଚଳାଇବାକୁ ଭୟ କରୁଛୁ ? ନା ବାପ ! ପିତା ତୋର ସମସ୍ତ ଚଳାଇବେ; କିନ୍ତୁ ତୋ ମସ୍ତକରେ ରାଜମୁକୁଟ ଦେଖି ଏ ପାପନେତ୍ର ସାର୍ଥକ କରିବ । ତେବେ ବାପ ମନ ଭଙ୍ଗା କାହିଁକି ? ଆଉ କେବଳ ନୟନରୁ ଲୁହ ବହୁଛି !

ଗୀତ

ରାମ— (ଅଶ୍ରୁ ଶିକ୍ତ କଣ୍ଠେ)

କି କହିବି ଜନନୀ ଗୋ, ବିଧି ବାମ ହେଲଣି ।
ତୋ ଅଞ୍ଚଳ ନିଧି ଚଞ୍ଚଳ କରି ମେଲୁଣି । ଘୋଷା ।
ରାଜ୍ୟ ନାହିଁଟି ମୋହର, ଯୋଗ ନାହିଁ ବସୁନ୍ଧରା
ତେଜୁଛୁ ମା ସୁଖଚିନ୍ତା ନ କର ତୁ ଝୁରେଣି । ୧ ।

ମା ! ବିଧାତାର ବଳକୁ ମନୁଷ୍ୟର ଅସାଧ୍ୟ ନାହିଁ । ତେବେ ମୁଁ ବର୍ତ୍ତମାନ ପିତାଙ୍କର ଧର୍ମ ଓ ସତ୍ୟ-ରକ୍ଷାର୍ଥେ, ଏ ରାଜଭବନ ପରିତ୍ୟାଗ କରି କଠା କୌପୀନ ଧାରଣ କରିବି ।

କୌଶଲ୍ୟା—ବାପ କଣ ପାଗଳ ହେଲୁ କି, ଏପରି କାହିଁକି କହୁଛୁ ? ତୋର ପିତା ତୋତେ କଣ କିଛି କହିଲେ କି ? ଯେବେ ଭ୍ରମବଶତଃ କୌଣସି ଅନ୍ୟାୟ କହିଥାନ୍ତି, ତେବେ ତୋର ଭଳ ପରି ବା ଅନ୍ୟ କିଛି ଭଲ ଚିନ୍ତାର ନାହିଁ ।

ରାମ— ଗୀତ

ଧର୍ମ ବିନା ଏ ଜଗତେ ବନ୍ଧୁ ନାହିଁ ଅନ୍ୟପଥେ
ଖଳ ଫାନ୍ଦିବ କେ ମୋତେ କଲେ କଥା ଚଳଣି । ୨ ।

ମା ! ମୋତେ ଖଳ କେ ଫାନ୍ଦିବ, ଧର୍ମ ମୋତେ ଏ ଖଳ ସୁଖରୁ ବଞ୍ଚିତ କରୁଛି ।

କୌଶଲ୍ୟା—ବାପ ! କଣ ହେଲା ସ୍ପଷ୍ଟ କହ, ମୋ ଶୁଣିଛି ।

ରାମ— ଗୀତ

ଭରତରେ ସିଂହାସନ, ଦେଇ ଭୂମିଶ ଭାଜନ
ବିସପ୍ତବର୍ଷ ଅରଣ୍ୟ ହୋଇବ ଏଥି କାରଣି ॥

ମା ! ଭରତରେ ଏ ସିଂହାସନ ଦେଇ ଚଉଦବର୍ଷ ନିମିତ୍ତ ବନକୁ ଯିବି ।

ଗୀତ

ବୈମାତୀ ଦଣ୍ଡିଲେ ଯାହା, କେ ଲୁଚାଇ ପାରେ ତାହା
ବାଳକୃଷ୍ଣ ଭାବେ ଏହା ଯା ହେବାର ହେଲଣି । ୪ ।

ମା ! ପିତା ଦେବାସୁର ଯୁଦ୍ଧ ସମୟରୁ ଦୁଇଗୋଟି ବର ଦେବେ ବୋଲି ବିମାତାଙ୍କ ନିକଟରେ ପ୍ରତିଶ୍ରୁତ ଥିବାରୁ ଆଜ ଫଳରେ ଏ ଦଶା ଘଟିଲା । ତେବେ ଆପଣ ମୋତେ ଆନନ୍ଦରେ ମେଲାଣି ଦିଅନ୍ତୁ ।

କୌଶଲ୍ୟା— ଗୀତ

ରଙ୍କ ରତନ ମୋ ହାତ ଅଧରେ,
ତୁହି ମୋ ବ୍ୟାଧି ଔଷଧ ।
ତୋ ଚନ୍ଦ୍ରବଦନ ଦେଖି କେସନେ
ପରାଣ ସହେ ଧରିବ । ଘୋଷା ।

ବାପ ! ତୋର ଏ ଅଭାଗିନୀ ଚନ୍ଦ୍ରବଦନକୁ ଦେଖି ଆଉ କଣ ସହେ ପ୍ରାଣ ଧରି ରହି ପାରିବ, ବାପ ମୋର ତୁ ଛାଡ଼ି ଯା ନା !

ରାମ—ମା ! ଲେଖାଅଛି 'ପତ୍ନୀଧାତା ନଳ ଶାଳପଟେ ଲିଖିତ କର୍ମାନୁସାରେ ଫଳଂ ।' ତେବେ ଯାହା ଭାଗ୍ୟରେ ଥିବ, ତାର ଆନ କରିବା ଶକ୍ତି କାହାର ।

କୌଶଲ୍ୟା— ଗୀତ

ବନଜ ମୁଖକୁ ବନକୁ ଦେଇ,
ଭରିବି କହିବ କା ମୁଖ ଚାହିଁ,
ଧିକ ମନଦିନ୍ତ ଅନ୍ତ ପ୍ରାପ୍ତ ହୋଇ,
ସାହାକୁ ମୋ ଦେଲୁ ଛେଦ ।୧।

ବାପ ! ଯେବେ ବନକୁ ଯାଉଛୁ, ତେବେ ମୋତେ ସଙ୍ଗରେ ନେଇ ଯା ।

ରାମ—ଏ କେଉଁ କଥା, ଆପଣ ଏପରି ଅଧୀର ହେଲେ ପିତାଙ୍କୁ ପ୍ରବୋଧନା କରିବ କିଏ ?

କୌଶଲ୍ୟା —                ଗୀତ

ଧିକ ତୁ କୈକେୟୀ ଧିକ ତୋ ବୁଦ୍ଧି,
          ମୋ ପୁତ୍ରେ ହରାଇ ଅର୍ଜିଲୁ କି ସିଦ୍ଧି ।
ଜନ୍ମ ଦାଉସାଧି କଲୁ ଏ ଅବଧି,
          ପ୍ରାଣ ଏବେ ହେଉ ପଦ । ୨ ।

କଲୁ ପାପିଷ୍ଠୀ କୈକେୟି ! ତୋର ଏତେଦୂର ଛନ୍ଦ । ମୋର କୁଳଚନ୍ଦ୍ରମାକୁ କୋଳରୁ ଛଡ଼ାଇ ନେଇ କାଳ ମୁଖକୁ ଫୋପାଡ଼ିଦେଉଛୁ । ମୁଁ ଭଲ ତୋର କି ଅନିଷ୍ଟ କରିଥିଲି ଯେ, ମୋ ପ୍ରତି ତୋର ଏଡ଼େ ବଡ଼ମ୍ବନା ।

ରାମ—ମା ! ଦଇବ ବଳକୁ ନାହିଁ କାର ବଳ । କିଏ ମାତା କିଏ ପିତା, କିଏ କାର ପୁତ୍ର, ସେ ସମସ୍ତ କାଳର ଅଧୀନ ।

କୌଶଲ୍ୟା —                ଗୀତ

ବନବାସେ ଗଲେ ବାପ ମୋ ଜୀବନ,
          ସଙ୍ଗ ଭ୍ରାତା ହଟେ ତୋ ପିତା ନନ୍ଦନ,
ରେ ଗଜାରବନ ସୁରକ୍ଷ ନଦାନ,
          ବାଳିରେ ନ ହଟେ ବୁଦ୍ଧି । ୩ ।

ରାମ—ମା ! ଧୈର୍ଯ୍ୟଧର, ବାବୁ ରେ ଲକ୍ଷ୍ମଣ ମାଙ୍କୁ ପ୍ରବୋଧନା କର । ମୁଁ ଆସୁଛି ।

( ରାମ ସୀତାଙ୍କ ପ୍ରତି )

ରାମ—                ଗୀତ

ଶରଦଚନ୍ଦ୍ରବଦନା ! ମୋ     ଗଜେନ୍ଦ୍ର-କେଶୀ ରେ ।
     କି ରଦରଦ ଚର୍ଯ୍ୟାଙ୍କେ ଦେଖିବ ନାହିଁ,
ରେ ସଙ୍କରତନ ! କର ଆଲିଙ୍ଗନ,
     ତୋ ଅଙ୍ଗ କୁଙ୍କୁମ ଆଉ ମାଖିବ ନାହିଁ । ଘୋଷା ।

ପ୍ରିୟେ ! ତୁମ୍ଭ ଅମୃତ ମୁଖ ଯେତେ ଦିନ ଦେଖାର ଥିବ ହୋଇଗଲା, ଏଣିକି ତୁମ୍ଭ ମୁଖରୁ ସୁଧାଭା ବଞ୍ଚିତ କରିଲଣି ।

ସୀତା —ନାଥ ! ମୁଁ କଣ ଅଯୋଗ୍ୟା ହେଲି ?

ରାମ—ପ୍ରିୟେ ! ତୁମ୍ଭପରି ଜନକତନୟାଙ୍କୁ ହରାଇ ଏ ଜୀବନରେ ଯେ ଅନ୍ୟ ସୁଖ ଇଚ୍ଛା କରିବ, ତାହା ତୁଚ୍ଛ ।

ଗୀତ

ସୀମନ୍ତରତ୍ନ ସୀନ ବନ୍ଧନ ହେଲୁ ଧନ୍ୟ
     ଯାଉ ହେବେ ଅଞ୍ଜନ ରଞ୍ଜି ଦୁହେଁ ଲୋଚନ
ସେ କୋଳରୁ ବଞ୍ଚିତ ହେଲି ରେ ସଙ୍ଗ,
ସେ ମନ ବନ୍ଧୁ                ହେବାଣି କ୍ରୋଧ
     ସଙ୍ଗୀ ତୋ ପ୍ରୀତି ସୁଧା ବୁଝିବ ନାହିଁ । ୧ ।

ପ୍ରିୟସଙ୍ଗି ! ଏ ଜୀବନରେ ଆଉ ତୋର ସେହି ସଣୋକଣା ଅମୃତମୟ ବାଣୀ ଶୁଣିବାକୁ ଦଣ୍ଡେ ହେଲେ ଅବସର ନାହିଁ ।

ସୀତା—ନାଥ ! ଅବଳା ଦ୍ବାରରେ ଏତେ ଛନ୍ଦ କମ୍ପା, ସନ୍ଦେହ କରୁଛି ଟଣ୍ଡେ, ପ୍ରକାଶନ୍ତୁ ସମସ୍ତ ବୃତ୍ତାନ୍ତ ।

ରାମ—                ଗୀତ

କୈମାକି କଲେ ପର     ଭରତ ହେବେ ବର,
     କି ସପ୍ତବର୍ଷ କାଳ ବନବାସ ମୋହର
     ସନ୍ନ୍ୟାସୀ ସଙ୍ଗରେ ଯାଉଛୁ ମୁହିଁ
ଶୋକ ନ କରୁ                ଥାଅ ରେ ସଙ୍ଗ,
     ବାଳକୃଷ୍ଣ ବଦନ କେଉଁଠୁ ସଙ୍ଗ ।

ବିମାତା କୈକେୟୀ ପିତାଙ୍କୁ ସତ୍ୟ କରାଇ ତାଙ୍କ ପୁତ୍ର ଭରତ ନିମିତ୍ତ ରାଜ୍ୟାଧିକାର ନେଇ ମୋତେ-ନବ ପଞ୍ଚବର୍ଷ ନିମିତ୍ତ ନିର୍ବାସିତ କରିଅଛନ୍ତି । ମୁଁ ବର୍ତ୍ତମାନ ସେହି ପିତୃସତ୍ୟ ରକ୍ଷଣାର୍ଥେ ବନଗାମୀ ହେଉଛି । ତୁମ୍ଭେ ଧୈର୍ଯ୍ୟ ସହକାରେ ଶାଶୁ ଶ୍ୱଶୁରଙ୍କୁ ପ୍ରବୋଧ ଦେବ ।

ସୀତା—                ଗୀତ

ଦୟାମୟ ଆଜ ନିର୍ଦ୍ଦୟ ନାଥାଇଁ
          ଅଧୀନା ପ୍ରତି କର ବର୍ଣ୍ଣେ ।
ଏ ଲାବଣ୍ୟ ମୂର୍ତ୍ତି                ବିନା ସୀତାସଙ୍ଗ
     ବଞ୍ଚିବ କା ମୁଖ ଚାହିଁ ବନ ?
          ଆହେ ଜୀବଧନ !
     ଦୁଃଖିଙ୍କ ଦୁଃଖହାରୀ ରଚନ । ୧ ।

ପ୍ରାଣନାଥ ! ଏ କି ନିଷ୍ଠୁର ବ୍ୟବହାର ତବ, ଅଧୀନା କି ସେ ଚଉଦବର୍ଷ ତୁମ୍ଭ ସଙ୍ଗେ ଯିବ ନାହିଁରେ ରହିବ ?

ପୋଷାକଗୁଡ଼ା କାଢ଼ି ଦକା, ଧନ ରତ୍ନ ରାଜ୍ୟର ତ ଗଲ୍ ଭଏ ଆଜ ପାଣିଦଅ ଦବ। ମୁଁ ଯାଉଛି ବାପ, ଆଜ ଏ ଦଶା ଦେଖି ପାରିବ ନାହିଁ। ଅଇଛୁକା ଭଲ ବେଳଟାଏ ଅଛୁ ଶୀଘ୍ର ଶୀଘ୍ର ବାହାରି ପଡ଼।

ରାମ— (ଗୀତ)

ଚାଲ ସଙ୍ଗିନୀ    ଜନକ ଦୁହିତା
ପିତାମାତାଙ୍କୁ ବନ୍ଦିବା
ଘେନ ଆଶୀର୍ବାଦ    ତେଜିବା ସମ୍ପଦ
ବିଷାଦ ତାଙ୍କର ତୁଟାଇବା
ଉଲଗ୍ନରେଟି କାର୍ଯ୍ୟ।
ନାହିଁ ନ ଯୋଗାଇଟି ସାନୁଜ।୧।

ବାବୁରେ ସୌମିତ୍ରି! ଚାଲ ଏବେ ଘେନିବା ମେଲଣି ପିତାମାତାଙ୍କର ତହୁଁ।

ସୀତା—ମା! ଅନୁମତି ପ୍ରାର୍ଥନା ମୋହର, ଯିବି ସଙ୍ଗେ ହେବି ଅନୁଗାମୀ।

କୌଶଲ୍ୟା—ମା! ଦରିଥାନ୍ତା ଏବା ଦୁଃଖ ତୋ ମୁଖକୁ ଚାହିଁ, ସତେ କଣ ଯିବୁ? ତୋ ଇଚ୍ଛାରେ ବାଧା ଦେବା ନୁହେ ମୋ କର୍ତ୍ତବ୍ୟ। କିନ୍ତୁ କେତେ କ୍ଳେଶ ସହିବୁ ତୁ ଅରଣ୍ୟ ମଧ୍ୟରେ। ମା! ତୁଭ ଭଲଙ୍କର କଷ୍ଟ ଅନ୍ତର ନ ଦେବୁ ନାହିଁ। ବାପ ରାମଚନ୍ଦ୍ର, ବାର ଲକ୍ଷ୍ମଣ, ଏ ପାତକୀ ପରାଣ ଥାଇ କିବା ପ୍ରୟୋଜନ। ଲଗିଲ ଜନକଜେମା ତଜାଇବ ଯତ୍ନେ ତାଙ୍କୁ ତହୁଁ।

ରାମ—ମା! ଧୈର୍ଯ୍ୟଧର, କର ଆଶୀର୍ବାଦ, ନିର୍ବିଘ୍ନରେ ଫେରୁ ତବ କୋଳେ।

(ଗୀତ)

ଥାଅ ତାତ ମାତ    ଦିଅ ଆଶୀର୍ବାଦ
ନିର୍ବିଘ୍ନେ ଫେରୁ ପୁରେ
ଲକ୍ଷ୍ମଣ ମୈଥିଳୀ    ଲଗାଇଲେ ଅଳି
ସାଥରେ ନେଉଛୁ ସଙ୍ଗରେ।
ଆଜ୍ଞା ଦେଇ ପିତର।
ବାଳକୃଷ୍ଣ ବୋଲେ ବିଳମ୍ବ ନ କର।୨।

ଦଶରଥ— ଗୀତ

ନାହିଁ ଭୁଲିପାରିବୁ ଧନ ମୋ ରାଜ ରତନ ରେ।
ଏ ଅଯୋଧ୍ୟା ପୁରୀ ଆଜଠାରୁ ହେଲା ଶୂନ୍ୟ ରେ।୧।
ଗିରିଗୁହା ଲତାରଣ୍ୟ ନଦୀ ସରୋବର ରେ।
କେମନ୍ତେ ଭ୍ରମିବୁ ବାପ କାହା ସଙ୍ଗତ ରେ।୨।

ରାମ—ପିତା! ଜାନକୀ ଓ ଲକ୍ଷ୍ମଣ ମୋ ସଙ୍ଗତ ଅତି ଜଣାଇ କରିବାରୁ ତାଙ୍କ କଥାରେ ସମ୍ମତି ପ୍ରଦାନ କରି ସଙ୍ଗରେ ଆଣିଛୁ।

ରାଜା— ଗୀତ

ଅଭାଗା ମୁଁ ପାପକର୍ମ ଦେଇ ଜନ୍ମ ଦ୍ରୋହ।
ଶୂନ୍ୟ କରିଗଲୁ ତୋର ବାଳକୃଷ୍ଣ ଜଳ ରେ।୩।

ଦୂତ! ସୁମନ୍ତ୍ରଙ୍କୁ କହ ସେ ରୌପ୍ୟବର୍ଣ୍ଣ ଶମିତ ଖାଦ୍ୟ ପଦାର୍ଥେ ସଜ୍ଜିତ ରଥରେ ବସାଇ ଜନ୍ମିମା-ରଣ୍ୟରେ ନେଇ ପ୍ରଜା ଭରତଙ୍କୁ ଅଚିରେ ମାତୃକ ଗୃହରୁ ଆଣି ତାର ପିଶାଚମ ମାତା ନିକଟରେ ଦେଉ। ସେ ତାଙ୍କୁ ନେଇ ସୁଖରେ ଏ ବନ୍ଦିଙ୍କ ରାଜ୍ୟ ଐଶ୍ୱର୍ଯ୍ୟ ଭୋଗ କରନ୍ତୁ।

( ରାମ, ଲକ୍ଷ୍ମଣ ଓ ସୀତା, ଦଶରଥ, କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କ ଚରଣ ବନ୍ଦନକରି ଜଟା କୌପୀନ ଧାରଣ କରି ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

(ସୁମନ୍ତ୍ର ରଥ ବାହୁଡ଼ା, ରଥଉପରେ ରାମ, ଲକ୍ଷ୍ମଣ ଓ ସୀତା, ଗ୍ରାମବାସୀଗଣ କୋଳାହଳ କରି ପଶ୍ଚାଦ୍ଧାବନ)

ଗ୍ରାମବାସୀ—ଭାଇମାନେ ଚାଲ, ଆଉ ଏ ଶ୍ମଶାନ ଅଯୋଧ୍ୟାରେ ରହିବା ଦରକାର କଣ? ଦେଖୁନ ତ ରକ୍ଷକ ଏବେ ଭକ୍ଷକ ପାଲଟି ଗଲେ ଯୋଉଠି ମାଇପଟା କଥାରେ ରାଜ ଏପରି ଗୁଣଗ୍ରାମ ପୁତ୍ରକୁ ବଣକୁ ଘଉଡ଼ୁଛି।

ଅନ୍ୟ—ହେ ହେ ଭାଇ! ମୋର ଯେମିତି ମାଇପଟା ଥାଆନ୍ତା ତ ଠିଆକରି ଶିକୁଳିରେ ଗଣ୍ଡା, ମାଡ଼ ବଢ଼ ବଢ଼ ବରର ନାମ୍ବ ସେଇଠା।

ସମସ୍ତେ—ହେ ସୁମନ୍ତ୍ର ମନ୍ତ୍ରୀ! ତୁମ୍ଭେ ତ ଏତେ ଅବିବେକ ହେଲ। କଥାରେ ଅଛୁ ପର 'ଅନୁଗା

ରଜାଙ୍କୁ ଫାନ୍ଦବନ୍ଧ୍ୟା ମନ୍ତ୍ରୀ ! ତୁମ୍ଭର କଣ ଏଇ ଅକଲ ! କୁଅନ୍ଧଙ୍କୁ ନେଇ ଯାଅନା ! ରଡ଼, ରଡ଼, ରଥ ଧୀର କର, ଆମ୍ଭେମାନେ ଆମ୍ଭ ଦେଶର ପୂର୍ଣ୍ଣ ଶଶିଙ୍କୁ ଦେଖୁ । ଆଉ ଅଯୋଧ୍ୟାକାଶରେ ଶଶଧର ଉଦିତ ନାହିଁ, ଚତୁର୍ଦ୍ଦିଗ ତମସାଚ୍ଛନ୍ନ, ଘୋର ଘନଘଟା ଛାଇଯାଉଛି ।

( ରଥ ପଛେ ପଛେ ଧାଇଁବା )

ରାମ—ସୀତେ ! ମୋ ପ୍ରତି କର୍ଣ୍ଣପାତ କର, ଦେଖ ବନବାସରେ ଯେତେବେଳେ ଯେଉଁଠି ଚାଲିବାକୁ ଆଦେଶ ହେବ, ସେହିପରି ଚାଲିବାକୁ ପଡ଼ିବ ?

ସୀତା —ନାଥ ! ତେବେ କଣ ପ୍ରତ୍ୟାଖ୍ୟାନ କରିବାକୁ ପଡ଼ିବ ?

ରାମ — ଗୀତ

ବନଜ-ନୟନା ଘନ ଜଘନାରେ
ଗହନ କାନନେ ହେଲୁ ବାଇ ।
ବନେ ବନଚର ଦେଖି ସ୍ୱାମୀବର
କାତରେ ଛନକା ହେବୁ ନାହିଁ ।
ବନଜାତ ଦ୍ରବ୍ୟ ନ କରିବୁ ସ୍ତବ
ବନାଇ ଅନ୍ତର କେବୁ ନାହିଁ ।

ମନ୍ତ୍ରି ! ଘୋର ଅଭିଶାପ ସବୁ ଯାଏ ପଶାଇବାକୁ ପଡ଼ିବ, ପୁଣି ବନରେ ହିଂସ୍ର ଜନ୍ତୁ ଅନନ୍ତ । କୌଣସି ଭୟ ନାହିଁ କି କୌଣସି ଅପୂର୍ବ ଜନଙ୍କୁ ଆଶା ବଳାଇ ଉତ୍ତାଳ କରିବ ନାହିଁ ।

( ଗୀତ )

କେନ ସହୋଦର ମଧ୍ୟରେ ତୁ କର
କେଡ଼ାଇ ମୋ କର ଥିବୁ ରଖି,
ବୃକ୍ଷ ମୂଳେ ବସି କଣ୍ଟାଇବୁ ନିଶି
ଅନୁଷ୍ଠିତ କାଳକୃଷ୍ଣ ଲେଖି ।

ସଙ୍ଗ ! ନାନା କଷ୍ଟ ଘଟିଲେ କେନ ସହୋଦରଙ୍କ ମଧ୍ୟରୁ କେବେ ହେବେ ଅନ୍ତର ହେବୁନାହିଁ ।

—*—

## ତୃତୀୟ ଦୃଶ୍ୟ

(ଜନୈକ ନାଗରିକ ଓ ତାର ପତ୍ନୀର ପ୍ରବେଶ)

(ଗୀତ)

ପୁ—ଆ ଆ ଚମ୍ପାବୋଉ ଆଜରେ ।
ସ୍ତ୍ରୀ—କରେ କଅଣ ଖଣ୍ଡିଆ କଥା ରେ ।
ପୁ—ଆମ୍ଭେ ଦାଣ୍ଡରେ ପଡ଼ିଛୁ ତଡ଼ଳ ।
ସ୍ତ୍ରୀ—ପଡ଼ ଅଭ୍ୟନ୍ତରେ ଲେଖ ଗଢ଼ଳ ।
ପୁ—ବଡ଼ଳ ମୃଦଙ୍ଗ ସଙ୍ଗେ ଟାଇ ବସିଛୁ ଜାଣିବୁ କଣ୍ଠରେ । ୧ ।
ପୁ—ଅଯୋଧ୍ୟାର ଶିଶୁ ଗଲ ରେ
ସ୍ତ୍ରୀ—କରେ କଅଣ ଖଣ୍ଡିଆ ହେଲ ରେ
ପୁ—ରାମ ଗଲେ ବନବାସ ରେ,
ସ୍ତ୍ରୀ ତୋ କଥାକୁ ମାଡ଼େ (ମୋତେ) ହସ ରେ ।
ପୁ ନୃପେ ଲେ ଶ୍ୱାସ ମନ ଭରସା କରୁଥାନ୍ତି ଆଜ କାହାରେ ।
ପୁ - ଗୋଡ଼ାଇ କରିବା ଗ୍ରାମରେ
ସ୍ତ୍ରୀ— କ ହେବ ବଧାଇ ବାମରେ,
ପୁ—କ ପଣ ଲଭିଲ ଦମାଇ
ସ୍ତ୍ରୀ—(ଆରେ ସେତ) କହଅଁ ମାଇପ ଅନ୍ଧା,
ସ୍ତ୍ରୀ—ବାଳର ତନ୍ଦ୍ରା ଏ ଦୁଃଖ କଥା ଜଗଦୀଶ ହେଉ ସାହାରେ । (ରାମ ପ୍ରବେଶ)

ରାମ— ଗୀତ

ଆଅ ହେ ନଗରବାସୀ ତପି ଭଅ ମେଲାଣି ।
ଧରୁ ସୁଖ ସବୁ ଦୁଃଖ ଯୋଡ଼ ଜାଳ ଦେବାଣି । ୧ ।

ପ୍ରଜାବୃନ୍ଦ ! ତୁମ୍ଭେମାନେ ଆଉ ଏ ଅବସ୍ଥା ସହିତ ପଥକଷ୍ଟ କରି କାହିଁକି ଆସି ଦୁଃଖର ସୀମା ବଢ଼ାଉଛ ? ସମସ୍ତେ ଅଧୈର୍ଯ୍ୟ ନ ହୋଇ ଭଲାସୁଖେ ସ୍ୱ ସ୍ୱ ଗୃହେ ପ୍ରତ୍ୟାବର୍ତ୍ତନ କର ।

ଗୀତ

ଭରମ କଥାକୁ କେବା କହେଁଇରେ ଆଜ ।
ଦୁଃଖ ସୁଖ ଦୁଇ ମୃତ୍ୟୁ ସଂସାର ଭଜନ । ୧ ।

ଆପଣମାନେ ଦୁଆରାରେ ମହିଁ ମା ଓ ପିତାଙ୍କୁ କଥା ଦେଉଛ ସିନା, ତାଙ୍କର ଏଥିରେ ଲବେ ମାତ୍ର ଦୋଷ ନାହିଁ । ଏହା ମୋର କର୍ମ ଦୋଷ ।

ଗୀତ

ଅସାର ସଂସାରରେ ସାର ଏକା ହରିନାମ ।
କେବା ମାତା କେବା ପିତା ଆତ୍ମୀୟ ସ୍ୱଜନ । ୩ ।

ଏ ସଂସାରରେ କେହି କାହାର ନୁହନ୍ତି । ଆସିଛ ଏକା, ଯିବ ଏକା । କେହି ଏଠାରୁ କିଛି ନେଇ ନାହିଁ, କି ନେବ ନାହିଁ । ତେବେ ମାୟା, ଯେଉଁ କୃପା-ଟିକ ଆପଣମାନେ ମୋଠାରେ ଅର୍ପଣ କରିଛନ୍ତି, କୃତାଞ୍ଜଳିପୁଟେ ମୁଁ ଭିକ୍ଷା କରୁଛି, ଆପଣମାନେ ଅଯୋଧ୍ୟାରେ ମୋର କନିଷ୍ଠ ଭ୍ରାତା ପ୍ରତି ସେହିଟିକ ପ୍ରଦର୍ଶନ କରନ୍ତୁ, ଏତିକି ପ୍ରାର୍ଥନା ।

ଗ୍ରାମବାସୀ—ରାଜକୁମାର, ଆପଣ ଯେଉଁଠାରେ, ଆମ୍ଭର ଅଯୋଧ୍ୟା ସେହିଠାରେ, ଆପଣଙ୍କୁ ଛାଡ଼ି କୁଆଡ଼େ ଯିବୁ ?

ରାମ — ଗୀତ

କଲ୍ୟାଣ କରନ୍ତୁ ସର୍ବେ ଦେବ ସଜ୍ଜନବୃନ୍ଦ ।
ସାନ ବାଳକୃଷ୍ଣ ତବ ସ୍ନେହେ ଆଶୀର୍ବାଦ । ୪ ।

ଭାଇମାନେ ! ଯାଅ, ତୁମ୍ଭେମାନେ ଆଶୀର୍ବାଦ କର, ମୁଁ ଶୀଘ୍ର ବନରୁ ପ୍ରତ୍ୟାଗମନ କରେ । ବର୍ତ୍ତମାନ ଅନୁଗ୍ରହ ଏହିଠାରୁ ଦୂରୀକରଣ କର, ଘରେ ଫେରିଯାଅ ସମସ୍ତେ ଯିବା ।

ଗ୍ରାମବାସୀ—ହାଃ, ହାଃ ଜୟ ରାମଚନ୍ଦ୍ରଙ୍କର ଜୟ ।
(ଜଳ ଜଳ ଖାଦ୍ୟ ସଂଗ୍ରହ କରି ଶୋଇପଡ଼ିବା)

—*—

## ଚତୁର୍ଥ ଦୃଶ୍ୟ

( ରାମଙ୍କୁ ନିଦ୍ରାଭଙ୍ଗରେ ଦେଖି ରାମଚନ୍ଦ୍ର ସୁମନ୍ତ୍ରଙ୍କୁ ଉଠାଇ )

ରାମ—ସୁମନ୍ତ୍ର ! ଶୀଘ୍ର ରଥ ବାହୁନେଇ ସରଯୂ କୂଳରେ ଆମମାନଙ୍କୁ ଛାଡ଼ିଆସ । ପ୍ରଜା-ମାନେ ଯେପରି ନ ଜାଣନ୍ତି । ଯଦି ସେମାନେ ଜାଣନ୍ତି, ମୋ ଯିବା ସଙ୍ଗେ ପ୍ରତି ବାଧା ଘଟିବ । ଶୀଘ୍ର ଚଳାଅ । ମନ୍ତ୍ରିନ୍ ! ଆପଣ ଏହିଠାରୁ ସ୍ୟନ୍ଦନ ଫେରାନ୍ତୁ, ଅମ୍ଭେ ଏଣିକି ପଦଗାମୀ

ହୋଇ ନଦୀ ପାରହେବୁ । ଆପଣଙ୍କୁ ଆମ୍ଭର ପ୍ରଣାମ । ପିତା ମାତାଙ୍କ ସମସ୍ତ ଘର ଆପଣେ ଜାଣନ୍ତି ।

( ଗୁହ୍ୟକ ଶବର ପ୍ରବେଶ )

ଗୁହ୍ୟକ— ଗୀତ

କହ ବାପଧନ ଭାହାର ନନ୍ଦନ
କପାଇଁ ତୁମ୍ଭ କାନନ
ଦିବ୍ୟ ରମା ପାଶେ ତୁମ୍ଭ କି ଭ୍ରମେ କେଣେ
ସନ୍ଦେହ କର ମୋଚନ ।
ଦୟା କରି ଏଥର
ନାମ ଗ୍ରାମ ପ୍ରକାଶ ତୋହର !

ହୈରେ ବାପ ! ଏ ଘୋର ଜଙ୍ଗଲରେ ତୁଇ ସଙ୍ଗେ ପିଲା ଆଉ ସଙ୍ଗେ ସ୍ତ୍ରୀ ସ୍ୱଧର ଏ ଶ୍ୱାପଦାକରେ କସ କାରଣେ ବୁଲୁଛୁ । ତୁଇ କେ ଅଛୁ, ତୋର ଘର କେଉଁଠି, ତୋର ବାପର ନାମ କଣ ଅଛି । ତୋର ସାଥିରେ ଏମାନେ କେ ଅଛନ୍ତି । ସବୁ କହିବେ ହବ । ତା ନ ହେଲେ ଆମେ ତୋତେ ଏଇ ଶର ମୁନାରେ ନାଛି ଦବାର ଅଛୁ ।

ରାମ— ଗୀତ

ଶୁଣ ରେ ଶବର ଅଯୋଧ୍ୟା ଦେଶର
ଦଶରଥଙ୍କ ନନ୍ଦନ ।
ରାମଚନ୍ଦ୍ର ନାମ ସାନୁଜ ଲକ୍ଷ୍ମଣ
ଏ ତ ସୀତାଦେବୀ ସଙ୍ଗତର ।
ପିତା ସତ୍ୟ ପାଳିଣ ।
ବନବାସେ ଯାଉଅଛୁ ତିନି ଜଣ । ୨ ।

ଶବର ! ମୁଁ ସତ କହୁଛି, ମୁଁ ଅଯୋଧ୍ୟା ଦେଶ ରାଜା ଦଶରଥଙ୍କର ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ର, ଏ ମୋର ସ୍ତ୍ରୀ ଓ କନିଷ୍ଠ ଭାଇ ଲକ୍ଷ୍ମଣ ।

ଗୁହ୍ୟକ—ଆଁ, ଆଁ, ତୁଇ ଦଶରଥ ପୁଅ ରାମ ଅଛୁ । ଏ ମୋର ବୋଲ ଜନକ ରାଜା ଝିଅ ଅଛି । ଆରେ ତୁଇ ତ ବଡ଼ଲୋକ ଅଛୁ ! ଶିକାର ଖେଳିବାକୁ ଆଇଲୁ ତ ଆଇଲୁ, ଏ ପିଲା ମାଇକିନା କେମିତି ଆଣିଲୁ ରେ ?

ରାମ—ଶବର ! ମୁଁ ଶିକାର କରି ଆସି ନାହିଁ । ପିତୃ ସତ୍ୟ ପାଳନ ତତ୍ପର ଧର୍ମପାଇଁ ଘର ଛାଡ଼ି ଚଉଦ ବର୍ଷ ବନବାସ ଆସିଛୁ ।

ଗୁହ୍ୟକ—ବାପା, ତୋର କାରଣେ ସତ୍ୟ କରି
ତୋତେ ବନକୁ ପଠେଇଲା ରେ ।

ରାମ— ଗୀତ

ମାତା କଇକେୟୀ ଜନକେ ମନାଇ
ମାଗି ସେନଜନ୍ମ ବର ।
ଭରତ ରଜା ହେଉ ରାମ ବନେ ଯାଉ
ଦ୍ୱାଦଶ ବର୍ଷ ଯାଏ ଏହି ନଗର ।
ଚୌଦବର୍ଷ ପାଇଁ,
ତେଣୁ ଅଇଲି ଅଯୋଧ୍ୟା ଭୂଇଁ ।

ଗୁହ୍ୟକ—କଥା କହୁଛୁ ରେ ବାପା । ଦଶରଥ ବୁଢ଼ା
ନବାଳୁ ତାର ମୁଣ୍ଡ ଖାରାପ ଏମିତି ହୋଇ ଗଲାକି
ଯେ, ମାଇକିନା କଥାରେ ତୋତେ ତଡ଼ିଦେଲା ।

ଗୀତ

ମୁଁ ଗୁହ୍ୟ ଶବର ମିତ୍ର ତୋ ପିତାର
ଏ ବନେ ଆଶ୍ରମ ଅଛି ମୋର
ବହୁ ପୁଣ୍ୟବଳେ ଭେଟିଲି ତୁମ୍ଭରେ
ପୁନଃ, ଭାଗ୍ୟରୁ ତୋତେ ରାଜ୍ୟେଶ୍ୱର ।
ଅଯୋଧ୍ୟା ନଗର
ହୋଇ ଅଛି ବଡ଼ ଅନ୍ଧକାର । ୪ ।

ବାପ ! ତୋର ବାପର ଏ ବଯସର ଠିକ୍ ନାହିଁ
ହୋଇଛି । ଚାଲ, ମୁଁ ତୋତେ ନିଜ ସେହି ଅଯୋଧ୍ୟାର
ରଜା କରିବି ।

ରାମ—ଶବର ! ଆମ୍ଭମାନଙ୍କର ପ୍ରଣାମ ଗ୍ରହଣ କରନ୍ତୁ,
ମାତ୍ର ଆମ୍ଭମାନେ କଦାପି ଫେରିବୁ ନାହିଁ ।

ଗୁହ୍ୟକ—ଚାଲ, ଚାଲ, ଏ କଥା କହୁଛୁ; ମୁଁ ପାଖରେ
ଯିବ, ଦେଖ ସେ କେମିତି ତୋତେ ଦେଉଛି ଚାଲ, ଚାଲ ।

ରାମ—ଶବର ! ନ କରନ୍ତୁ ବୃଥା, ପିତୃ‌ଗାମୀ ସ୍ରୋତ
ଯେବେ ଉଜାଣି ବହିବ, ସୁର୍ଯ୍ୟଦେବଙ୍କ ରଥ ଯେବେ
ଲେଉଟି ପଡ଼ିବ, ତେବେ ପିତୃ ଆଦେଶ ପାଳନ
କରିବ ବ୍ୟର୍ଥ ହେବ ।

ଗୁହ୍ୟକ—ହଉ ଯେବେ ଫେରି ନାଇଁ ଯିବୁ ତ ଚାଲ, ଆଜିକେ
ଆମ କୁଡ଼ିଆରେ ରହି ସକାଳକେ ଜେଜେ ଗଙ୍ଗା
ଟେକିଦେବି ।

ରାମ—ହଉ ଚାଲନ୍ତୁ ।

( ଗୀତ )

ଯାଅ ହେ ସୁମନ୍ତ୍ର ପ୍ରବୋଧିବ ତାତ
ମୋର ଅନ୍ତେ ମୂର୍ଚ୍ଛିତ,
ମୋ ଆସିବା ଯାଏ ପାଳ ପରଜାଏ
ଯେମନ୍ତେ ନ ଘଟେ ବାଧାବନ୍ଧ
ବାଳକୃଷ୍ଣ ରଚନ
ପ୍ରାତେ ଗମିଲେ ଭରଦ୍ୱାଜ ଆଶ୍ରମ । ୫ ।

( ସୁମନ୍ତ୍ରଙ୍କର ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ )

ସୁମନ୍ତ୍ର—ମହାରାଜ ! ରାଜାଦେଶେ ନେଇ ରାଜକୁମାରେ
ଛାଡ଼ିଲି ମୁଁ ସରଯୂ ନିକଟେ । ପଥେ ପ୍ରଜାଗଣେ
କଲେ ବହୁ ଅଳି, ନାସ୍ତି କନା ଅସ୍ତି ତେବେ
ନ ଧରିଲେ ଭୂଣ୍ଡେ । ପୁଣି ତମସା ନିକଟେ
ଭେଟିଲେ ଗୁହ୍ୟକ । ଯଥାସାଧ୍ୟ ବୁଝାଇଲେ
ଯେତେ, ଅଟଳ ଯେଣୁ ସେ ତବ ସତ୍ୟରକ୍ଷା ଅର୍ଥେ,
ନାସ୍ତିକର ଗମିଲେଣି ଭରଦ୍ୱାଜ ଆଶ୍ରମକୁ ।
କହିଲନ୍ତି ପ୍ରବୋଧିବ ତାତ ମାତେ, ନ ଗଞ୍ଜିବେ
କଦାପି ସେ ମଝିଆ ମାଆଙ୍କୁ । ନାହିଁ ତାଙ୍କ ଲବେ
ମାତ୍ର ଦୋଷ ଏଥି, ଯେଣୁ ଏହା କର୍ମର ଲିଖନ ।

ଦଶ— ବୁଝିଲିଣି ମନ୍ତ୍ରି ! ଏଇ ଦେଖ ଶୂନ୍ୟ ଆସେ
ପୁଷ୍ପକବିମାନ ନେବାପାଇଁ ମୋତେ, ଅନ୍ଧକମୁନିର
ଶାପେ ନ ପାଇଲି ପୁତ୍ର ମୁଖ ହେରି । ଉଃ, ପ୍ରାଣ-
ଗଲା, ପ୍ରାଣ-ଗଲା । ରା-ମ-ହା-ରାମ ।

( ମୃତ୍ୟୁ , ରାଣୀଗଣଙ୍କର ଶୋକ )

ସୁମନ୍ତ୍ର - ରାଣି ! ଆପଣମାନେ କ୍ରୋଧ ଶାନ୍ତ କରନ୍ତୁ,
ବର୍ତ୍ତମାନ ଦୂତ ଭରତଙ୍କ ନିକଟ ଯାଉଛି, ଭରତ
ଫେରିଲେ ସତ୍କାରାଦି କାର୍ଯ୍ୟ ହେବ । ବର୍ତ୍ତମାନ
ରାଜାଙ୍କୁ ତୈଳ ଦ୍ରୋଣୀରେ ରଖାଯାଉ ।

( ତଥାକରଣ )

—*—

## ଷଷ୍ଠ ଦୃଶ୍ୟ

ଭରତ— ଦୂତ ! ଦେବ୍ୟ ଦେବଭୂମି ପ୍ରାପ୍ତ ହେଲେ ଜନ୍ମ
ଆଜ ଅଯୋଧ୍ୟା ପ୍ରାଙ୍ଗଣ, କ ସଦାବେ ସଦାବତ
ସାରି ନନ୍ଦପୁର, ପୁଣି ହାହାକାର ରବ ସଙ୍ଗେ
ଶବଦର ଧ୍ୱନି ।

ଦୂତ—ପ୍ରଭୁ ! ଅଯୋଧ୍ୟାରୁ ବନ ନଗ୍ନ ନାଥ, ତୁମ୍ଭନ୍ତେ ଅନ୍ତର, ଅସ୍ତମିତ ହୋଇଛନ୍ତି ପୂର୍ଣ୍ଣ ଶଶଧର । ଏକମାତ୍ର ତାଙ୍କ ଅଭାବ ହେବାରୁ ଜନ୍ମ ଗ୍ରାମ ଅଯୋଧ୍ୟା ଆକାଶେ ।

ଭରତ—କ କହିଲୁ ଦୂତ, ପିତା କଣ ତେବେ ମୃତ ।

ଦୂତ—ଆଜ୍ଞା, ହଁ ।

ଭରତ—ଭ୍ରାତ ତେବେ କଣ ନାହାନ୍ତି ?

ଦୂତ—ନିର୍ବାସିତ ସେହି । ଲକ୍ଷ୍ମଣ ଓ ସୀତା ସହିତରେ ଚତୁର୍ଦ୍ଦଶ ବର୍ଷ ନିମିତ୍ତ ଦଣ୍ଡକ ଅରଣ୍ୟେ ।

ଭରତ—ସାରଥି ! ସାଜ ଶୀଘ୍ର ରଥ ଦେଖେ କାହିଁ ଅଛି ସେହି ପାପିୟସୀ, ଲୁଚି ଜମ୍ବୁକ ପରାୟ ସିଂହର ଗୁହାରେ ।

ଗୀତ

ହାଇରେ ମନ୍ଦ ଅଧୀରା ! କଣ କାଜ କଲୁ ରେ
ଅଜକଙ୍କ ସୂର୍ଯ୍ୟବଂଶେ କାଳ ଲେପି ଦେଲୁ ରେ । ଘୋଷା
(ପ୍ରବେଶି କନ୍ୟାର କେଶ ଆକର୍ଷଣ ପୂର୍ବକ)

ଗୀତ

କାଳସର୍ପିଣୀ ଜନନୀ !          ହେଲୁ ତୁ ଏଡ଼େ କୁଟିଳ
ଯା ଲାଗି ତାହେ ଅକାଳ ତାରେ ଦଗ୍ଧ କଲୁ ରେ । ୧ ।

ଲେ ପାପିୟସୀ, ଦୁଷ୍ଟା ଦୁରାଚାରୀ ନଷ୍ଟା, ଡାକିନି ଅଟୁ କୁଳ ଦୁର୍ବୁଦ୍ଧି ଯୋଷା କାଳଭୁଜଙ୍ଗିନୀ । ରକ୍ତ ରକ୍ତ ଚୋଷେ, ବଂଶି ଲେପିଦେଲୁ ଅଜକଙ୍କ ସୂର୍ଯ୍ୟବଂଶେ କାଳିମାପ୍ରସର । ନୋହିଥାନ୍ତୁ ଯେବେ, ଗର୍ଭଧାରିଣୀ ଜନନୀ ମୋହର, ଦେଖନ୍ତୁ କି ଶରୀରର ପ୍ରାଣ ଏକ୍ଷଣି ।

କୈକେୟୀ—ବାପ ! ତୋର ନିମିତ୍ତ ଏ ସମସ୍ତ କାଣ୍ଡ, ରାମ ବନକୁ ଗଲେ, ତୁ ଏବେ ନିଷ୍କଣ୍ଟକ ଅଯୋଧ୍ୟା କଣ୍ଟକ ଭୋଗକର ।

ଭରତ—କି ସାହସେ କହୁ ଲୋ ପାମରୀ, କହ ଦରେ ହେବ ରାଜା ଅଯୋଧ୍ୟା କଟକେ । ହେବୁ ବୋଲି ରଚିଲୁ କି ରାଜମାତା ତୁହି ? ବୃଥା ଆଶା ତୋର । ନୋହୁ ରାଜମାତା, ହେବୁ କଷ୍ଟେ ପଥ ଭିକାରୁଣୀ ।

ଗୀତ

ନେଲୁ ତୁ କନକ ପ୍ରାଣ ଭ୍ରାତାରେ ଦେଲୁ କଷଣ ।
ବାଳକୃଷ୍ଣ ବୋଲେ ଶୂନ୍ୟ ଅଯୋଧ୍ୟା କଲୁ ରେ । ୨ ।

ଲୋ ପାତକିନୀ, ତୋ ଯୋଗେ ମୋର ଦେବୋପମ ରାମ ଓ ମାତାତୁଲ୍ୟ ଜାନକୀଙ୍କୁ ଏବଂ ପରମାରାଧ୍ୟ ପିତୃଦେବଙ୍କୁ ହରାଇଛି । ତୁ ପାପିଷ୍ଠୀ ଥାଇ କଣ ପ୍ରୟୋଜନ । ମାତ୍ର ତୋତେ ସ୍ୱୟଂ ହସ୍ତେ ପିତୃଶ୍ରାଦ୍ଧ ଆଚରିବ ତୋର ରକ୍ତେ । ( ମାରିବାକୁ ଉଦ୍ୟତ ହେବା ସମୟେ କୌଶଲ୍ୟାଙ୍କ ପ୍ରବେଶ, ଭରତର ଅଭିବାଦନ )

କୌଶଲ୍ୟା—ଏ କି କାଣ୍ଡ ବତ୍ସ ! ନ କର ତୁ ତାହା, ସହୋଦର ମାତୃବଧ ସେହି, ନ ମଣ ତୁ ଭଲା-ଭଲ ତାହା ମୋହ ତହିଁ । ଅଧର୍ମ ଏଥିରେ ସେହି ପାଇଅଛି ବନେ । ତୁହେ ଏହି ଦୋଷୀ, ( କୈକେୟୀକୁ ଛଡ଼ାଇ ନେଇ ନିଜ ଅନ୍ତଃପୁରରେ ଲୁଚାଇ ରଖିବା । କୌଶଲ୍ୟା ପ୍ରତି ଭରତ )

ଭରତ—ମାତା ! ତୁମ୍ଭଠାରେ ଶପଥ କରୁଅଛି, ଗମିବ ମୁଁ ଶ୍ରୀରାମ ଉଦ୍ଦେଶ୍ୟେ । ଭଲେ ବଳେ କୌଶଳେ ଯେ କୌଣସିପ୍ରକାରେ ଫେରାଇ ଆଣିବ କଷ୍ଟେ ରାମଙ୍କୁ ବନରୁ । ଦଣ୍ଡଛତ୍ର ଧରାଇବ ତାହାଙ୍କ ମସ୍ତକେ, ଅନୁରୂପେ ସେବକ ପ୍ରାୟେ ।

କୌଶଲ୍ୟା—[ସ୍ୱଗତ] ଧନ୍ୟବତ୍ସ ! ଧନ୍ୟ ତୋର ପିତା ମାତା, ଧନ୍ୟ ଭ୍ରାତୃଭକ୍ତି । ଭଲାଭଲ ସମର, ଭରତର ପୁଣି ସୁମିତ୍ରା ନନ୍ଦନେ । ଏକତ୍ରିତ ଚତୁର୍ଥି ରୂପେ କି ମଣ୍ଡିଅଛି ଅଯୋଧ୍ୟା ଭୂଖଣ୍ଡ । (ପ୍ରକାଶ୍ୟେ) ଯାଅ ବତ୍ସ ଆସେ ଶୀଘ୍ର, ଫେରାଇ ଆଣ ରାଘବଙ୍କୁ ବନୁଁ ।          [ମେଲଣି ସେନ ପ୍ରସ୍ଥାନ]

—*—

## ସପ୍ତମ ଦୃଶ୍ୟ

( ଚିତ୍ରକୂଟରେ ରାମ, ଲକ୍ଷ୍ମଣ ଓ ସୀତା )

ରାମ—ବାବୁ ସୌମିତ୍ରି ଶୁଣୋପର ଅଛୁ ଏ ଯେଉଁ ସର୍ବ ଶାଳ ତରୁ, ଚଢ଼ି ତହିଁପରେ ଦେଖ, ଅଦୂରରେ ଶୁଭେ ଏ କି ଜନ କୋଳାହଳ । କେତେ ଦୂରେ ଜନ୍ମ ସେହି, ପୁଣି କି କାରଣେ, ଗ୍ରହିଁଲେ ପଶିବ ତହିଁ ଅଯୋଧ୍ୟା ପର୍ଯ୍ୟନ୍ତ ।

ସୀତା — ନାଥ ! ଅନ୍ତରେ ମୋ ମୁହୂର୍ମୁହୁ ବାଢ଼େ ଉଚେ କମ୍ପ ! ମୋ ଶାଶୁ ଶ୍ୱଶୁରେ, ଆସନ୍ତି ସାନୁଜ କମ୍ପ ଦେଖି ହୋଇ ପ୍ରଜ୍ୱଳିତ ପ୍ରାପ୍ୟ ।

ରାମ — ବାବୁ ! କି ଘଟଣା ଦେଖିଲ ନୟନେ ?

ଲକ୍ଷ୍ମଣ—ଅଯୋଧ୍ୟାରେ ହୋଇ କଟ, ଆସୁଛନ୍ତି ଦେଖାଇ ଦର୍ପ, ସୈନ୍ୟ ସୈନ୍ୟ ସେନା ସଙ୍ଗରେ, ଭଜ ବ୍ୟବହାରେ, ଆଜ୍ଞାଦେଲେ ପ୍ରଭୁ ଦେଖନ୍ତି କେପାଏ ବନ୍ଧୁ ବନ୍ଧୁଛି ଅଙ୍ଗରେ ।

ରାମ—ଦଣ୍ଡ, ସ୍ଥିର ହୋଇ ରହ ଭାଇ, କ୍ରୋଧସମ ଶତ୍ରୁ ନାହିଁ ସଂସାରରେ; ଆସୁ ପାଖେ ଜଣାଯିବ ସବୁ ।

ଭରତ—( ଦୂରରୁ ଦେଖି ସାଷ୍ଟାଙ୍ଗେ ପ୍ରଣିପାତପୂର୍ବକ )

ଗୀତ

ନାଥ ମନୋହର, ସେବନ୍ତୁ ଚରଣ ମୋହର ।
ଚାଲ ଫେରି ଶୂନ୍ୟ ହୋଇଛି ଅଯୋଧ୍ୟା ନଗର । ଘୋଷା ।
ମାତା ହୋଇଲା ଭିକାରି, ଶୁଣିବ ମୁଁ ଭ୍ରାତ ଅବର
ଆସନ୍ତୁ ମୋ ସଙ୍ଗେ ଫେରି ହେବେ ରାଜ୍ୟେଶ୍ୱର ।୧।

ଭାଇ ! ଚାଲ ଫେରି, ଶୂନ୍ୟ ହୋଇଛି ଅଯୋଧ୍ୟା ନଗର । ସ୍ୱୟଂ ଫେରି, ସିଂହାସନେ ବସିବ ଏକ୍ଷଣି ।

ରାମ—ବାବୁ ରେ ! ନାହିଁ ମୋତେ ବର୍ତ୍ତମାନ, ଅଯୋଧ୍ୟାର ରାଜସିଂହାସନ ଭୋଗଯୋଗ, ଯାଇ ରାଜ୍ୟ ଅଳଙ୍କୃତ କର ସିଂହାସନ, ନବପଞ୍ଚବର୍ଷ ଅନ୍ତେ ଫେରିବ ମୁଁ ନିଶ୍ଚେ ଅଯୋଧ୍ୟା କଟକେ ।

ଭରତ—ନ ଫେରିବେ ତୁମ୍ଭେ ଯେବେ ସୀତାସହ, ନ ମଣ୍ଡିବେ ଅଯୋଧ୍ୟାର ରାଜସିଂହାସନ, ନ ଯିବ ଭରତ ନେଇ ଶତ୍ରୁଘ୍ନ ସଙ୍ଗରେ ପୁଣି ଅଯୋଧ୍ୟା କଟକେ, ସ୍ୱାଗତେବ ନିଶ୍ଚେ ଏଥି ସୁଖ ମଙ୍ଗଳ ଲଭେ ।

ଗୀତ

କୁମ୍ଭର କଳେବର ଚିରଃ; ଜାତନ୍ତୁ ହୋଇଲେ ଦୂର
ମୁଁ ଅବା ଥାଇ ଯାଇବ ନାହିଁ ମୋର ପ୍ରତିକାର ।୨।

ପିତା ଆପଣଙ୍କ ବଚ୍ଛେଦରେ ପରଲୋକ ଗମନ କରିଅଛନ୍ତି, ଅରାଜକ ହୋଇଛି ଅଯୋଧ୍ୟା । ରାଜକଥା ନ ଧରିଣ ମନେ, ସ୍ୱୟଂ ବହନ କରି ରାଜସିଂହାସନ, ଅଭୟ ଦେଇ ଚିନ୍ତିତ ପ୍ରଜାବର୍ଗ ପାଳନ କର ।

ରାଜ ମାତା, ରାଜରେ ଲକ୍ଷ୍ମଣ, ଆସିଛୁ ମୁଁ ନେବାକୁ ଫେରାଇ ।

ରାମ—ବାବୁ ରେ ! କମ୍ପ ମୋତେ କରାଉଛି ଏବେ, ଯାବେ ଥିଲେ ମିଳିପାରେ ଲକ୍ଷ ଲକ୍ଷ ରାଜ୍ୟ; ମାତ୍ର ନ ମିଳିବ କେବେ ହେଲେ ପିତା କିବା ପିତୃସତ୍ୟ । ସେ ତ ମୋର ଦୁର୍ଭାଗ୍ୟର କଥା, ଯେ ଅନ୍ତିମ କାଳରେ ତାଙ୍କୁ ନ ପାରିଲି ଦେଖି । ଯାଇ ବୁଝ ପ୍ରବୋଧ ମାତାଙ୍କୁ । ପୁଣି ଶୁଣ, ନ ଚାହିଁବୁ କେବେ ହେଲେ ମଝିଆ ମାଆଙ୍କୁ । ଅଳଙ୍କୃତ କରିଥିବୁ ଅଯୋଧ୍ୟାର ଗାଦି ।

ଭରତ—ପ୍ରଭୁ ! ସିଂହର ଆସନେ କେବେ ବସିପାରେ କି ଶୃଗାଳ !

ଗୀତ

ଶ୍ରୀଚରଣେ ମିଳୁ ଆଶ୍ରା ନାହିଁ ମୋ ଆନ ଭରସା ।
ବାଳକୃଷ୍ଣ ବୋଲେ ଆଶା ନ ଭାଙ୍ଗନ୍ତି ମୋହର । ୩ ।

ଭାଇ ! ଏ ଅଧମକୁ ଆପଣଙ୍କ ଶ୍ରୀଚରଣ ତଳେ ଆଶ୍ରୟ ପ୍ରଦାନ କରନ୍ତୁ, ଏହାହିଁ ଭିକ୍ଷା ।

ରାମ—ଭାଇ ! ମନୋଗତ ଭାବ ତୋର ଜାଣିଅଛି ମୁହିଁ, ଦୈବବଳଠାରୁ ବଳ ନାହିଁ ପୃଥିବୀରେ । କହିପାରେ ଏକା ସେହି ଦଣ୍ଡଧରେ ଧର୍ମର ମର୍ଯ୍ୟାଦା, ପୁଣି ରାଜାକୁ ଭିକାରୀ । ନୃପ ତୁ କରିବ ସେଥିପାଇଁ । କହୁଛି ମୁଁ ପୁଣି, ରାଜନୀତି ଧର୍ମେ ସାମଦଣ୍ଡଭେଦେ ସଦା ପାଳୁଥିବୁ ମନ୍ତ୍ର । ଦୋଷୀ ଦଣ୍ଡ ପାଇଁ ଯେଉଁ ଶମ ସେ ମାଗିବ ବୁଝି ସୁଝି ସେମାନଙ୍କୁ ସମା ଦେଉଥିବୁ ।

( ଏହାପରେ ଆକାଶ ଦୈବବାଣୀ )

ଧାର୍ମିକ ସଦେବ ଶାନ୍ତ ଦାନ୍ତ ଶିଖର ଭରତ
ଅଯୋଧ୍ୟାକୁ ଶୀଘ୍ର ଫେର ହେ କପୂତ ।
ରାମ ସତ୍ୟ ଲଙ୍ଘିଲେ ଭୋଗିବେ ଯିବେ ସ୍ୱର୍ଗ,
ଦୁଷ୍ଟ ନାଶି ସନ୍ତୁଷ୍ଟ ଏଥୁ ଉଦ୍ଧାରିବେ କର୍ତ୍ତବ୍ୟ ।

( ଭରତ ଦୈବବାଣୀ ଶୁଣି ରାମଙ୍କଠାରୁ ରତ୍ନ-ପାଦୁକା ନେଇ ନନ୍ଦିଗ୍ରାମରେ ସ୍ଥାପନ କରି ଚୌଦବର୍ଷ କାଳ ରାମଙ୍କ ଅପେକ୍ଷାରେ ରହି ସନ୍ନ୍ୟାସବ୍ରତ କରଣ । )

—*—

# କୁମୁଦ-କେଦାର

## ଗୀତାଭିନୟ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( ରାଜା ବୀର ମହେନ୍ଦ୍ର ଦେବ, ମନ୍ତ୍ରୀ, ସଭାସଦ୍ )

ମନ୍ତ୍ରୀ—ମହାରାଜ ! ରାଣୀମାଙ୍କ ମୃତ୍ୟୁ ଦିବସଠାରୁ ଆପଣ ସଦାବେଳେ ଚିନ୍ତିତ ଥିବାର ଆମ୍ଭେମାନେ ଅନୁମାନ କରୁଛୁ । କିନ୍ତୁ, ଯଦି ଦ୍ୱିତୀୟବାର ଦାରପରିଗ୍ରହ କରିବେ, ତେବେ ଆମ୍ଭେମାନେ ସୁବନ୍ଦୋବସ୍ତ କରିଦେବୁ ।

ସଭାସଦ—ମହାରାଜ ! ମନ୍ତ୍ରୀ ମହାଶୟ ଯାହା କହୁଛନ୍ତି ଆପଣ ସେଥିରେ ସମ୍ମତି ପ୍ରଦାନ କରନ୍ତୁ, କିଛି ଅସୁବିଧା ଘଟିବ ନାହିଁ । କୁଳରକ୍ଷା କରିବା ଆପଣଙ୍କର କର୍ତ୍ତବ୍ୟ ।

ରାଜା—ସଭ୍ୟବୃନ୍ଦ ! ଏ ଅସମ୍ଭବ କଥା, ଆଉ ମୋର କଣ ଦ୍ୱିତୀୟ ଦାର ପରିଗ୍ରହ କରିବାର ସମୟ ଅଛି ? ପ୍ରେୟସୀ ନିଶ୍ଚିନ୍ତରେ ପରଲୋକ ଗମନ କଲେ, କିନ୍ତୁ ମୋତେ ବଡ଼ ଦହଗଞ୍ଜରେ ପକାଇ ଦେଇଗଲେ ।

ମନ୍ତ୍ରୀ—ମହାରାଜ ! ସେଇଥିଲାଗି ତ ଆମ୍ଭେମାନେ ଆପଣଙ୍କୁ ଦ୍ୱିତୀୟ ଦାର ପରିଗ୍ରହ କରିବାକୁ କହୁଅଛୁଁ । ଆପଣ ଅସମ୍ମତ ହେଉଛନ୍ତି କାହିଁକି ? ଯଦି ଅନ୍ୟ କୌଣସି ବିଷୟରେ ମନରେ ଦୁଃଖ ଆସିଛି, ତେବେ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରନ୍ତୁ ।

ରାଜା— ଗୀତ

( କର୍ମ ମୋର ଏଡ଼େ ନାରଖାର ଗଲ— ବୃନ୍ଦେ )

ଧାତା କର୍ତ୍ତା କଲେ ଏତେ ଦଣ୍ଡ ରେ, କହ ମନ୍ତ୍ରୀ !
ଅପୁତ୍ରିକ ଲାଗି ସଦା ଦୁଃଖିତ ଅବସ୍ଥା । ଘୋଷା ।

ମନ୍ତ୍ରି ! ବିଧାତା ମୋତେ ଏତେ ବଡ଼ ସମ୍ପତ୍ତିର ଅଧିପତି କରି କୋଳରେ ଗୋଟିଏ ମାତ୍ର ସନ୍ତାନ ଦେଲନାହିଁ; ସେଥିପାଇଁ ମନରେ ଦାରୁଣ ଯନ୍ତ୍ରଣା ଅନୁଭବ କରୁଛି ।

ମନ୍ତ୍ରୀ—ତା ନିଶ୍ଚୟ କଥା ।

ରାଜା— ଗୀତ

ମୋ ଅନ୍ତେ ଏ ରାଜପୁର, ହେବ ନଷ୍ଟ ନାରଖାର
ନ ପାଇ ମୁଁ ପ୍ରତିକାର ଦହୁଅଛି ମଥା ରେ । ୧ ।

ମନ୍ତ୍ରି ! ମୋ ଅନ୍ତେ ଏ ରାଜପୁର ନିଶ୍ଚୟ ଶ୍ମଶାନରେ ପରିଣତ ହେବ ।

ମନ୍ତ୍ରୀ—ମହାରାଜ ! ଏକଥା କାହିଁକି କହୁଛନ୍ତି ? ଆପଣଙ୍କର ସନ୍ତାନ ନ ଥିଲେ କଣ ହେଲା, ସନ୍ତତି ଅଛି ତ ।

ରାଜା—ହଁଏ, ମୋର କନ୍ୟା କୁମୁଦ, ସେ କଣ କରିବ ?

ମନ୍ତ୍ରୀ—ମହାରାଜ ! ଆପଣ ଜେମାଙ୍କୁ ବିବାହ ଦେଇ ଜାମାତାଙ୍କ ମସ୍ତକରେ ରାଜମୁକୁଟ ଅର୍ପଣ କରନ୍ତୁ । ଏହାଦ୍ୱାରା ଜେମାର ପୁତ୍ର ଆପଣଙ୍କର ସିଂହାସନ ଦିନେ ଅଧିକାର କରିବ । ତଦ୍ୱାରା ଆପଣଙ୍କର କୁଳର ଗୌରବ ରହିବ ।

ରାଜା—ହଁ ମନ୍ତ୍ରି ! କୁମୁଦର ପୁତ୍ରଠାରୁ ଯେତେବେଳେ ପିଣ୍ଡ ପାଣି ମୁଠାଏ ପାଇବ, ସେତେବେଳେ ସେ ମୋ ସମ୍ପତ୍ତିର ସମ୍ପୂର୍ଣ୍ଣ ଅଧିକାରୀ ହେବ, କିନ୍ତୁ ଛତ

ନାହିଁ ! ମନ୍ତ୍ରୀବର ! ତୁମ୍ଭର ଏ କଥା ମୋ ମନକୁ ଦବଣ ଆସିଲା ! କିନ୍ତୁ ଗୋଟିଏ କଥାରୁ ସନ୍ଦେହ ଅଛି ।

ଗୀତ

ତୋମା କର୍ମେ ଯେବେ ସୁତ  ଲେଖି ନ ଥିବ ବିଧାତା
ମୁଁ ରାଜ୍ୟ ଦେବା ବ୍ୟର୍ଥ ଚନ୍ଦ୍ର ହସ୍ତ କଥା ରେ । ୨ ।

ମନ୍ତ୍ରି ! ମୋ ଘର ଅପୁତ୍ରକ ଦୋଷ ଯଦି ତୋମାର ଥାଏ, ତେବେ ରାଜ୍ୟ ଜାମାତାକୁ ଦେବା ଅପେକ୍ଷା କୌଣସି ଧର୍ମ କାର୍ଯ୍ୟରେ ଦେବା ଭଲ । କାରଣ ଯଦି ତୋମାର ସନ୍ତାନ ନ ହୁଏ, ଜାମାତା ଅନ୍ୟ ପତ୍ନୀ ଗ୍ରହଣ କରିପାରନ୍ତି, ତେବେ ମୋର ରାଜ୍ୟ ଜାମାତାକୁ ଦେବା ବ୍ୟର୍ଥ ।

ମନ୍ତ୍ରୀ—ତା ଅସ୍ତୁମ୍ବ କଥା, ନେବେ ଜ୍ୟୋତିଷ ଡକାଇ ତୋମାଙ୍କ ଜନ୍ମପତ୍ରିକା ବୁଝନ୍ତୁ ।

ରାଜା— ଗୀତ

ଡକାଅ ଯୋଗ୍ୟ ପଣ୍ଡିତ,  ବୁଝିବି ତୋମାର ଜାତକ
ଯିବ ମୋ ମନୁ ସନ୍ତାପ ପାଇବି ମୁଁ ଶାନ୍ତି ରେ । ୩ ।

ମନ୍ତ୍ରି ! ଶୀଘ୍ର ଜ୍ୟୋତିଷକୁ ଡକାଅ, ସେ କୁମୁଦର ଜନ୍ମପତ୍ରିକା ବୁଝନ୍ତୁ । ତାର ସନ୍ତାନ ଅଛି କି ନା । ବର୍ତ୍ତମାନ ଏତିକଟରେ ସଭା ବନ୍ଦ ଥାଉ ।

(ସମସ୍ତେ ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

( ଗୁଣସାଗର ଓ ଅଜୁ )

ଗୁଣ—ଅଜୁ, କାଲି କି ମଦ ଗୁଡ଼ାଏ ଆଣିଲୁ ଜମା କଡ଼ାଜର ପାଣ୍ୟାର ନାହିଁ । ସୁଦ୍ଧୁ ପାଣି, ସୁଦ୍ଧୁ ପାଣି !

ଅଜୁ—ନା ମହାରାଜ ! ଅଜୁ କେବେ ଦୋବସ୍ତ ମାଲ ଆଣେ ! ଅଚ୍ଛା, ତାଙ୍କ ତ ସବୁ ସରନାହିଁ, ଅନ୍ତତଃ ଥୋଡ଼ା ଅଛି; ଦେଖନ୍ତୁ ନ !

ଗୁଣ—ଆଚ୍ଛା ଅଛି, ଦେଖେଁ ଦେଖେଁ (ବୋତଲ ମୁହଁରେ ଲଗାଇ) ଅଜୁ ଏତ ଜାଲ ମାଲ ଲୁଚେଁ ।

ଅଜୁ—ଅଜ୍ଞା, ଅପଙ୍କ ମୁଣ୍ଡ ଘୂର୍ଣ୍ଣ କରୁଛି, କସବର ସେହୁ !

ଗୁଣ—ଅଜୁ ! ଦୁନିଆରେ ମୋଠାରୁ କିଏ ବଡ଼ ଅଛି କହିଲୁ !

ଅଜୁ—ନା ମହାରାଜ ! ଯାହାର ଆଖି ନ ଥିବ, ସେ ଅବା କହିବ ଗୋଟାଏ କିଏ ବଡ଼ ଅଛି । ମୁଁ ଦେଖିବାରେ ଆପଣଙ୍କଠାରୁ ବଡ଼ କେହି ନାହିଁ ।

ଗୁଣ— ଗୀତ

କହ କହ ଶୁଣି  ଏ ଦୁନିଆରେ କେହି
ମୋଠାରୁ ବଡ଼ିଆ ରହିଗଲା !
ମୋ ଆଜ୍ଞା ନ ମାନି  ହୋଇଛି ବେମାନ
ନିଦକରେ ସୁଖ ଦମ୍ଭକଲା । ପଦ ।

ଅଜୁ ! ଜଗତରେ ମୋର ଆଜ୍ଞା ଅବଜ୍ଞା କରିବା ବ୍ୟକ୍ତି କିଏ ଅଛି କହିଲୁ ।

ଅଜୁ—ଅଜ୍ଞା ! ଜହ୍ନା ପିମ୍ପୁଡ଼ିଠାରୁ ଆରମ୍ଭ କରି ଛପନକୋଟି ଜୀବଜନ୍ତୁ ପର୍ଯ୍ୟନ୍ତ ଆପଣଙ୍କ ନାମ ଶୁଣୁ ନ ଶୁଣୁ ଥରହର !

ଗୁଣ— ଗୀତ

ମୋହଠାରୁ ଅଛି କେ ବଳୀଆ,

ଅଜୁ— ଗୀତ

କୁଳର ଚନ୍ଦ୍ରମା ରଜାଙ୍କର ଶଳା ।

ଗୁଣ—ଚୁପ୍ !

ଅଜୁ—ନା, ରାଜ ଗଳାମାଳା ।

ଗୁଣ—ମୋର ଯେତେ ଜ୍ଞାନ  କେ ହେବ ସମାନ
ପଣ୍ଡିତଙ୍କ ପଣ ନାଶ କଲି । ୧ ।

ଅଜୁ ! ବୁଦ୍ଧି ଆଉ ବିବେକରେ ମୋତେ ଭଲ କିଏ ବଳେଇଯିବ ।

ଅଜୁ—କାହିଁ, ମୋ ଆଡ଼କୁ ତ କେହି ଦେଖାଯାଇ ନାହାନ୍ତି, ଆପଣ କିନ୍ତୁ ଗୋଟାଏ କାର୍ଯ୍ୟ କରି ପକାନ୍ତୁ ।

ଗୁଣ— ଗୀତ

ସଧବା ବିଧବା ନାସ୍ତି ଏହି ବ୍ରତ ।

ଅଜୁ— ଗୀତ

ସମସ୍ତଙ୍କ ମସ୍ତକେ ହେବ ନରନାଥ

ଗୁଣ—ଟେକ୍ସିରା ନାସ୍ତି  ହେବେ ନାସ୍ତି ଜାତ
ମୋ ବେଳକୁ ନୂଆ କଥା ହେଲା । ୨ ।

ଅଜୁ—ମୋର ଭଣ୍ଡୀର୍ଗୀମାନେ ତୋଳାରେ ଲେଖି ଦେଲେ, "ସଧବା ବିଧବା ନାସ୍ତି, ନାସ୍ତି କାସ୍ତି ପତିବ୍ରତା ।

ଅଜୁ—ମହାରାଜ ! ରାମରାଜ୍ୟ ତ ହେଲା । ଏତେବେଳେ କାର୍ତ୍ତି-
ଚନ୍ଦ୍ର କେଣ୍ଟ ଏ ରଣାକ ସାମ୍ରାଜ୍ୟରେ ଆଜି ପର୍ଯ୍ୟନ୍ତ
ଜନ୍ମ ଗ୍ରହଣ କରିନାହାନ୍ତି କି ଜନ୍ମ ଗ୍ରହଣ କରିବେ
ନାହିଁ । ଖାଲି ରାଜଗାଦିଟା ଆପଣଙ୍କ ହାତରେ
ରହୁ ନାହିଁ ।

ଗୁଣ—ଆରେ ଉଚ୍ଛୁଣୀ ଥିଲେ ବ ରାଜଗାଦି ପାଇ
ପାରନ୍ତିଣି, ଉଚ୍ଛୁଣୀ ମରିଗଲା, ସେ ଭାଗଟା
ଭଗିବଗଲା । ଏଣିକି ରାଜା ମଲେ ବଡ଼ା ତ
ବଡ଼ା ଆଉ ଅଛି କିଏ, ବଡ଼ରାଣୀର ଯେଉଁ ଝିଅଟି
ଅଛି, ସେ ତ ଆଜି ଗୁଡ଼ କାଲି ବିବାହ ହୋଇ-
ଯିବ । ଗାଙ୍ଗେୟର ତ ଆମେ ଖୋଦ ନଜେ ।

ଅଜୁ—ଅଜ୍ଞା, ମୁଁ କଣ କରିବ ?

ଗୀତ

ଗୁଣ— ମନ୍ତ୍ରୀଗିରିଟାକୁ ତୋତେ ମୁଁ ଦେବ ।
ଅଜୁ— ପାଇଛି ମୁଁ ବର କେତେ ଏଣିକି ସେବ ।
ଗୁଣ—ଆରେ ରାଣୀ କିଏ ହେବ ଜାଣୁ ?
ଅଜୁ—ଅଜ୍ଞା କିଏ ?

ଗୁଣ— ଗୀତ

ହୀରାମଣି ବାଇ ହେବ ପ୍ରିୟସଖୀ
କଧାରା ଏ ଘଟସ୍ରୁଷ କଲା । ୩ ।

ଅଜୁ—ରାଜା ମୁଁ, ମନ୍ତ୍ରୀ ତୁ, ରାଣୀ ସେ ହୀରାମଣି
ବାଇ, ଭଲ ହେବ ନା ?

ଅଜୁ—ଆରେ ବାଃ ବାଃ, ସ୍ୱା ପୁଣି ଉଣ୍ଟେଇବାକୁ ଅଛି ।

ଗୁଣ—ଅଜୁ ! ରାମ ସାହୁ ତାଲୁକଦାରକୁ ଟଙ୍କା
ସକାଶେ ଚଲାବ ହୋଇଥିଲା, କାହିଁକି ଟଙ୍କା
ଆଣି ପହଞ୍ଚିଲା ନାହିଁ, କଥା କଣ ?

ଅଜୁ—ତାକୁ ଉପ ବୁଝା ହୋଇଥିଲା, ସଡ଼କ ଦେବାକୁ
ଗଳ ମୂଳକୁ ଆସିବ !

ଗୁଣ—ହିଁ, ହିଁ ସେଠିକି କେତେବେଳେ ଯିବା, ଏଇଟା
କିଏ କରେ !

ଅଜୁ—ଏ ତ ମଣିନାୟକ କୁଆଡ଼େ ଧାଇଁଛି ।

ଗୁଣ—ଡାକ୍ ଡାକ୍ ।

ଅଜୁ—ଅବଧାନେ ଆଡ଼େ ଆସ ।

( ମଣି ଅବଧାନ ପ୍ରବେଶ )

ମଣି—ନାହିଁ ନାହିଁ ଆମ୍ଭର ବିଶେଷ କାର୍ଯ୍ୟ ଅଛି ।

ଅଜୁ—ମହାରାଜ, ଦେଖନ୍ତୁ ଅବଧାନେ ଆସୁନାହାନ୍ତି ।

ଗୁଣ—ଆସୁନାହିଁ, ହେ ମଣି କୌଣସିରେ, ଆଡ଼କୁ ଆସ ।

ମଣି—ନା ଆଜ୍ଞା, କାମ ଅଛି ।

ଗୁଣ—ହେ ମଣିନାହାକ, ଆଡ଼କୁ ଆ ।

ମଣି—ଜରୁର କାର୍ଯ୍ୟ ଅଛି ।

ଗୁଣ—ହେ ମଣିଆ ଅବଧାନ ଇଧର ଆଓ ।

ମଣି—ଆଜ୍ଞା ଯାଉଛି, ମହାରାଜାଙ୍କର ଜୟ ହେଉ ।
ନବରତ୍ନ ଶୁଭଫଳ ପ୍ରଦାନ କରନ୍ତୁ । ଆଜ୍ଞା
ଆପଣଙ୍କର କ ରାଶି ?

ଗୁଣ—ଅଜୁ, ରାଶି କଣ ?

ଅଜୁ—କେ ଜାଣି କଣ ଅବଧାନେ !

ମଣି—ଆପଣ ବଞ୍ଚିଲେକ ସେତେ ବାଟକୁ ଯାଇ-
ନାହାନ୍ତି । ଆଜ ଆପଣଙ୍କର ରାତିଚନ୍ଦ୍ର, ଟିକିଏ ଖରାପ ।

ଗୁଣ—ରାତିଚନ୍ଦ୍ରରେ ଖରାପ କଣ ?

ମଣି—ଆଜ୍ଞା, କିଛି ଗୋଟାଏ ଅନିଷ୍ଟ ଘଟିବ ।

ଗୁଣ—ଅଜୁ ! ଅନିଷ୍ଟ ହାଃ ହାଃ ହାଃ ।

ଅଜୁ—ହୁଃ ହୁଃ ହୁଃ ।

ଗୁଣ—ମଣି ଅବଧାନେ ! କି ଅନିଷ୍ଟ ଘଟିବ କହ,
ତୁ କୁଆଡ଼େ ଯାଉଛୁ ?

ମଣି—(ସ୍ୱଗତ) ମୁଁ ଏବାଟେ କାହିଁକି ଆସିଲି ! ଏ ତ
ବାଟରେ ଧରି ଅଚ୍ଛା ଜେରା କଲା । (ପ୍ରକାଶ୍ୟେ)
ମହାରାଜ ଆଜ ତେମାଙ୍କର ଜନ୍ମ ପଞ୍ଜିକା ବୁଝିବେ,
ଯଦି ତେମାଙ୍କର ସଧବା ଜୋଷ୍ଠି ଓ ସନ୍ତାନ ସନ୍ତତି
ହେବାର ଦେଖାଯିବ, ତେବେ ତେମାଙ୍କୁ
ସତ୍ପାତ୍ରରେ ପ୍ରଦାନ କରି ସେହି ଜାମାତାଙ୍କ
ମସ୍ତକରେ ରାଜମୁକୁଟ ପ୍ରଦାନ କରି ରାଜା ବାନପ୍ରସ୍ଥ
ଧର୍ମ ଗ୍ରହଣ କରିବେ ।

ଗୁଣ—ଅଜୁ, ଏ କି କାଣ୍ଡ ! ତୋ ମନକୁ ଏକଥା
କେମିତି ଆସୁଛି ?

ଅଜୁ—ଆଜ୍ଞା, ହେଲେ ହସବ ପ କଲ୍ଭୁଣୁ ବୋଡା
କାଢ଼ିଆ । କୁମୁଦ ବଣ ହେବ, ତାର ପୁଅ ହେବ,
ସେ ତ ଇ ରାଜଗାଦିରେ ବସିବ ।

ଗୁଣ—ଅବଧାନେ ! ଅଚ୍ଛା ତେମା କୋଷ୍ଠୀରେ କଣ
ଅଛି ?

ମନ୍ତ୍ରୀ — ଆଜ୍ଞା, ଜେମା ରାଜମାତା ହେବ । ତା'ର ପୁଅ ରାଜା ହେବ । ଏହା ଆମ୍ଭ ଗଣନାଦ୍ୱାରା ଘଟୁଛି ।

ଗୁଣି — ଆଚ୍ଛା, ତୁମ୍ଭର ଲାଭ କଣ ହେବ ?

ମନ୍ତ୍ରୀ — ଆମ୍ଭେ ପାଟଯୋଡ଼ ଆଉ ଟଙ୍କା କିଛି ପୁରସ୍କାର ପାଇବୁ ।

ଗୁଣି — ଆମ୍ଭର ଲାଭ କଣ ?

ମନ୍ତ୍ରୀ — ଆପଣଙ୍କର ଆଉ ଲାଭ କଣ, ଆପଣ ମଉଳା ଯୋଡ଼ ପିନ୍ଧିବେ ।

ଗୁଣି — ରଖ ତୋ ମଉଳା ଯୋଡ଼, କହ ମୁଁ କେମିତି ରାଜା ହେବ ।

ଅଜ୍ଞ — ଠିକ୍ କଥା, ଆପଣ ଉମେଦାରୀ କରି କରି ଲଙ୍ଗ ପାଲଟି ଗଲେଣି, ଆପଣ ରାଜା ନ ହୋଇ ଆଉ କିଏ ରାଜା ହେବ !

ଗୁଣି — ଅବଶ୍ୟ ନେ ! ତମର ହାତରେ ସବୁ ଅଛି ।

ମନ୍ତ୍ରୀ — ଆଜ୍ଞା ମୋର ହାତରେ କ'ଣ ?

ଗୁଣି — ସେ ଆଜ୍ଞା ଫାଜ୍ଞା ଚଳିବ ନାହିଁ, କହ ମୁଁ କିପରି ରାଜା ହେବ ।

ମନ୍ତ୍ରୀ — ଆଜ୍ଞା ମୋଠାରେ କଣ ଅଛି ?

ଗୁଣି — ମୁଁ ଭଲରେ କହୁଛି, କଣ ଉପାୟ ଅଛି କହ, ନୋହିଲେ ତୋ ଘରେ ହାଣ୍ଡି ପୂରେଇବି । ତୋ ମୁହଁରେ ଚାଣ୍ଡ ଲାଗିବ, ଆଉ ତୋତେ ଘର୍ ବଜାରରେ ବେଇଜତ କରିବି । ଏ କଥା ମୁଁ ଯେବେ ନ କରିବି, ମୋ ନାଁରେ କୁତା ପାଳିବୁ ।

ମନ୍ତ୍ରୀ — (ସ୍ୱଗତ ମନରେ ବାବା, ଏ ଗୁଣିଆ ତ ମହୁଆ, ସ୍ୱାର୍ଥର ତ ହିତାହିତ ଜ୍ଞାନ ନାହିଁ । ଖାଲି ମଦ ଯୋରରେ ଏ କଥା କହାଉଛି । କଣ କରିବ ? (ପ୍ରକାଶ୍ୟେ) ଆଜ୍ଞା, ଆପଣ ଅନ୍ନଦାତା, ଆପଣଙ୍କ ପାଇଁ ଚେଷ୍ଟା କରିବ ।

ଗୁଣି — ଦେଖିବା କଣ, ଏବେ ଯାଅ ରଜାକୁ କହିବୁ, ଯେପରି ଏହି ମୁହୂର୍ତ୍ତରେ ରାଜା ସ୍ତ୍ରୀଅକୁ ଘରୁ ବାହାର କରିଦେଇ ଆମକୁ ରାଜେଶ୍ୱର କରିବ । ନେ ଶହେଟଙ୍କା ପୁରସ୍କାର ନେ, କାହିଁ ଶେଷରେ ଯାହା ମାଗିବୁ ତା ଦେବୁ ।

ମନ୍ତ୍ରୀ — ହଉ ହେଲା, ଆମେ ଏହି ମୁହୂର୍ତ୍ତରେ ତାର ବାଟ କରିଦେବୁ ?

ଗୁଣି — ଯା, ଆମ୍ଭେ ତୁମ୍ଭ ପଛରେ ଯାଉଛୁ ।

ମନ୍ତ୍ରୀ — ଆମ୍ଭର ଯାଏ କେତେ, ଆସେ କେତେ ! ବର୍ତ୍ତମାନ ଟଙ୍କା ଯେଉଁଠାରୁ ମିଳିଲା ତା କଥା କରିବା । ଆଜ୍ଞା ମୁଁ ଆସୁଛି । (ପ୍ରସ୍ଥାନ)

ଗୁଣି — ଅଜ୍ଞ ଅବଧାନ ପଛରେ ଯା, ଆମ୍ଭ ପାଇଁ ସେ କଣ ବାଟ କରୁଛି ଦେଖ ।

ଅଜ୍ଞ — ଆଜ୍ଞା ଚାଲିଲି (ଉଭୟ ପ୍ରସ୍ଥାନ)

—*—

## ତୃତୀୟ ଦୃଶ୍ୟ

(ରଜା, ମନ୍ତ୍ରୀ, ଦୂତ, ଜ୍ୟୋତିଷ ପ୍ରବେଶ)

ଜ୍ୟୋତିଷ — ମହାରାଜାଙ୍କର ଜୟ ହେଉ, କୁଳ ବର୍ଦ୍ଧିତ ଥାଉ, ନବଗ୍ରହ ଶୁଭଫଳ ପ୍ରଦାନ କରନ୍ତୁ ।

ରଜା — ଜ୍ୟୋତିଷେ ତୁମ୍ଭ ବାକ୍ୟ ଅନୁସାରେ କୁଳ ବେଶ ଉଜ୍ଜ୍ୱଳ ଅଛି, ଆଉ କଲ୍ୟାଣରେ ଆବଶ୍ୟକ ନାହିଁ । ବର୍ତ୍ତମାନ ଜେମାର ଜନ୍ମ ପତ୍ରିକା ବୁଝି କହ, ତାର ସନ୍ତାନ ସନ୍ତତି ହେବେ କି ନା, ଆଉ ତାର ବିବାହ ଯୋଗ ଘଟିଛି କି ନାହିଁ ।

ମନ୍ତ୍ରୀ — (ଢୋକି ବୁଝି) ମହାରାଜ, ଜେମା ଖୁବ ଭାଗ୍ୟବତୀ, ଆଉ ତାର ବିବାହ ଯୋଗ ଫିଟିଛି । ଜେମାର ସନ୍ତାନ ସନ୍ତତି ଯଶସ୍ୱୀ ହେବେ, ଏଥିରେ କୌଣସି ସନ୍ଦେହ ନାହିଁ ।

(ଅଜ୍ଞ ପ୍ରବେଶ ଅବଧାନଙ୍କୁ ମୁଣ୍ଡ ହଲାଇ)

ମନ୍ତ୍ରୀ — (ଚୁପେ) ମୁଁ କଣ କଲି, ସବୁ ତ ସାରିଲେ । ଏ ତ ସବୁ ଶୁଣିଲେଣି ।

ରଜା — ଜ୍ୟୋତିଷେ କଣ କହୁଛନ୍ତି ?

ମନ୍ତ୍ରୀ — ଆଜ୍ଞା, ଜେମାର ଶୁଭ ପରିଣୟରେ ଆପଣଙ୍କୁ ଗୋଟିଏ ବାଧା ଅଛି ।

ରଜା — କଣ ପ୍ରକାଶ କର ?

ମନ୍ତ୍ରୀ — ଚତୁର୍ଥୀରୁ ପୁଣି—

ରଜା — ନା, କିଛି ଭୟ ନାହିଁ, ପ୍ରକୃତ କଥା ପ୍ରକାଶ କର ।

ମନ୍ତ୍ରୀ—ମହାରାଜ ! ରାଣୀମାଙ୍କର ଯେଉଁ ସନ୍ତାନ ହେବ, ସେ ଆପଣଙ୍କର ଜୀବନର ହନ୍ତା ।

ରାଜା—ରାଣୀ ମୋ ଜୀବନର କଣ୍ଟକ ! ମନ୍ତ୍ରୀ, ମୋର ସବୁ ଆଶା ଭରସା ବିଫଳ ହେଲା । ମନ୍ତ୍ରୀ, ସେ କନ୍ୟାଠାରେ ମୋର କି ପ୍ରୟୋଜନ ? ଦୂତ ଶୀଘ୍ର ମୋର ଆଦେଶ ପାଳନ କର ।

ଦୂତ—ଆଜ୍ଞା ତବ ଶିରୋଧାର୍ଯ୍ୟ ।

ରାଜା— ଗୀତ

( ରାଜରାଜ ଯାଉଛୁ ଗୁଡ଼—ତୁରଙ୍ଗ )

ଘେନିଯାଅ ଦୂତ ଦୁହିତା
ଛାଡ଼ିଦେବ ବନ ପଥରେ
ତା ସୁତ ମୋ ହତକୁ ବାଞ୍ଛି
ଲୁଚିଅଛି ତାର ଅନ୍ତରେ । ପଦ ।

ଦୂତ ! କନ୍ୟାର ଗର୍ଭରେ ମୋର ଶତ୍ରୁ ଅଛି, ସେ ମୋର ଜୀବନର ମୃତ୍ୟୁ । କୁମୁଦର ସନ୍ତାନ ମୋର ଜୀବନର କଣ୍ଟା, ଏପରି ରାକ୍ଷସୀକୁ ଗୃହରେ ରଖିଲେ ମଙ୍ଗଳ ନାହିଁ ।

ଦୂତ—ମହାରାଜ ! ଅବଧାନେ ଯାହା କହିଲେ ତା କଣ ସତ୍ୟ ? ମୋର ତ ଟିକିଏ ବିଶ୍ୱାସ ହେଉ-ନାହିଁ ।

ରାଜା—ନିଶ୍ଚୟ ବିଶ୍ୱାସଯୋଗ୍ୟ । ମୋତେ ଭଗବାନ ଅପୁତ୍ରକ କରିଛନ୍ତି ମୋର ବଂଶ ବୃଦ୍ଧି ହେବାର ମୁଁ ଦେଖିବି ନାହିଁ ବୋଲି । ବିଧାତା ମୋଠାରେ ଛନ୍ଦ କରି କୁମୁଦର ସୁତ ହେଇଲା ମାତ୍ରକେ ମୋର ମୃତ୍ୟୁ ଲେଖିଛନ୍ତି । ଯଦି ମୋର ସେହି କୁଳରକ୍ଷକ ଶିଶୁଟିକୁ ମୁଁ କୋଳରେ ଧରିବି ନାହିଁ, ତାର କୋମଳ ଅଙ୍ଗଟି ମୋର ଏ ସନ୍ତା-ପିତ ଶୁଷ୍କ ହୃଦୟରେ ଆଲିଙ୍ଗନ କରିବି ନାହିଁ, ତେବେ ମୋର ସେ ପୁତ୍ରରେ କି ଲୋଡ଼ା ?

ଦୂତ—ତା ନିଶ୍ଚୟ, ତେବେ ରାଣୀମାଙ୍କୁ ବିବାହ ଦେଇ, କିଛି ଦାନ ଯୌତୁକ ଦେଇ ଅନ୍ୟ ରାଜ୍ୟକୁ ବିଦାୟ କରିଦିଅନ୍ତୁ ।

ରାଜା—ତାକୁ ବିବାହ ଦେବି ? ତେବେ ତ ମୋର ଶତ୍ରୁକୁ ଆବାହନ କରିବା କଥା କହୁଛୁ । ନା, ସେ କନ୍ୟାକୁ ବର୍ତ୍ତମାନ ପରିତ୍ୟାଗ କରିବି ।

ଗୀତ

ହେଲୁ ଯେବେ ହେବ ଉପାୟ
ନ ଥିବ ମୋ କାଳକୁ ଭୟ
କାଳସର୍ପେ ଦେବା ଆଶ୍ରୟ
ଭୁଦେ ଜ୍ଞାପନ ମତରେ । ୧ ।

ଦୂତ ! କାଳ ସର୍ପକୁ ଆଶ୍ରୟ ଦେବାହେଁ ମୃତ୍ୟୁର ଆଶଙ୍କା । ଏ କଥା ଜାଣୁ ଜାଣୁ କଣ ବିପଦକୁ ମୁଁ ମୁଣ୍ଡ ଉପରେ ରଖିବି ।

ଗୀତ

ନଷ୍ଟ ପଛେ ହେଉ ମୋ ବଂଶ
ପାଷାଣ୍ଡୀରେ ନାହିଁ ମୋ ଆଶ
ବନେ ତାକୁ ଦିଅ ଦେଇ ବାସ
ବେତାଳଙ୍କୁ ଡାକ ଘରେ । ୨ ।

ଦୂତ ! ଯା, ବେତାଳମାନଙ୍କୁ ଡାକ ରାଣୀର ନିଦ୍ରିତାବସ୍ଥାରେ ତାର ପଲଙ୍କ ସହିତ ଉଠାଇ ନେଇ ନିବିଡ଼ ଅରଣ୍ୟ ମଧ୍ୟରେ ଛାଡ଼ିଦେଇ ଆସ । ଆଉ ଏହି ଲେଖାଟି ନିଅ, ତାର ମସ୍ତକ ଉପରେ ରଖିଦେଇ ଆସିବ । ଯାଅ ଶୀଘ୍ର, ଯାଅ ।

ମନ୍ତ୍ରୀ—ଜ୍ୟୋତିଷେ, ରାଜା ଆମ୍ଭର ବଡ଼ ଧାର୍ମିକ ଓ ନ୍ୟାୟପରାୟଣ ଥିଲେ; କିନ୍ତୁ ଏ କେଇଟା ଦିନ ହେଲା ରାଣୀ ମରିଯିବାରୁ ତାଙ୍କର ମତିଟା ବାତୁଳ ପରି ହୋଇଗଲାଣି । ତୁମ୍ଭେ ରାଜାଙ୍କ ସମକ୍ଷରେ ଏ ବୃତ୍ତାନ୍ତର କଥାଟି ପ୍ରକାଶ ନ କରିଥିଲେ ଖୁବ୍ ଭଲ ହୋଇଥାନ୍ତା !

ଜ୍ୟୋତିଷ—ମନ୍ତ୍ରୀବାବୁ, ଆପଣ କହୁଛନ୍ତି ହଁ; କିନ୍ତୁ ଆମ୍ଭଙ୍କୁ ଯାହା ଦେଖାଗଲା ତା ନ କହିଥିଲେ ତା ଦ୍ୱାରା ଯେ କ୍ଷତି ଘଟିଥାନ୍ତା, ଆପଣ କଣ ସମ୍ଭାଳି ପାରିଥାନ୍ତେ ? (ସ୍ୱଗତ) ରାଜା ବଢ଼ିଆ ଯେ ଆମ୍ଭଙ୍କୁ ଶାସ୍ତିଟା ଦେଉଛନ୍ତି, ଅନ୍ୟ ରାଜା ପ୍ରୀତି ଦେଇଥାନ୍ତେ ।

ମନ୍ତ୍ରୀ—ଭଗବାନ ଯାହା କରନ୍ତି ମଙ୍ଗଳ ନିମନ୍ତେ, ରାଣୀମା ଯଦି ପ୍ରକୃତ ରାଜମାତା ହେବାର ଯୋଗ ଥିବ, ତେବେ ନିଶ୍ଚୟ ଏ ରାଜସିଂହାସନ ତାର ପୁତ୍ର ଅଧିକାର କରିବ । (ପ୍ରସ୍ଥାନ)

— — —

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ବେତାଳମାନେ କେମାଙ୍କୁ ପଲଙ୍କ ସହିତ ଜଙ୍ଗଲରେ ଛାଡ଼ିଦେଇ ଆସିବା ପରେ କେମା ନିଦ୍ରାରୁ ଉଠି )

କୁମୁଦ — ଆହା, କେତେ ଗୁଡ଼ାଏ ଶୋଇପଡ଼ିଲି ! ପିତା ପ୍ରାୟ ରାଜସଭାରୁ ଫେରି ଆସିବେଣି । ମୁଁ ଅଲକ୍ଷଣୀଟା ତାଙ୍କ ତତ୍ତ୍ୱ ନ ନେଇ ନିଶ୍ଚିନ୍ତ ହୋଇ ଶୋଇଛି ! ଦାସୀ, ଦାସୀ, ପାଣି ଦୋଥାଟା ଆଣିବୁଟି, ( ଚକ୍ଷୁମଳି ) ଏମିତି ନିଦ ତ କେବେ ମୋର ଶୋଇ ନ ଥିଲି । ଆଜ କିଣ କାଳନିଦ ଘୋଟିଯାଇଛି କି, ଆଖିଟା ଫିଟୁ ନାହିଁ କାହିଁକି ମ ? ଦାସୀ, ଆଣିଲୁ ? କାହିଁ, କେହି ତ ନାହାନ୍ତି । ଏ, ଏ କେଉଁ ସ୍ଥାନ, ଏ ତ ମୋର ଶୟନାଗାର ନୁହେ । ଚାରି ଆଡ଼େ ବୃକ୍ଷଲତା, କୁଆ କୋଇଲି ରବ ନାହିଁ । ଏଁ, ମୁଁ କିଣ କେଉଁ ବନସ୍ତରେ ପଶିଲାପରି ଜଣାଯାଉଛି ? କି ଆଶ୍ଚର୍ଯ୍ୟ ! ନା, ମୁଁ ସ୍ୱପ୍ନରେ ଏପରି ଦେଖୁଛି । ଅଚ୍ଛା, ଏତ ମୋର ଶୋଇବା ପଲଙ୍କ ଖଣ୍ଡି । ( ପଡ଼ିଦେଖି ) ଏ କାଗଜ ଖଣ୍ଡି କିଣ ଦେଖେଁ । ( ପଢ଼ିଦେଇ ) ହା ପିତା, ଏ ଅଭାଗିନୀକୁ ଏଡ଼େ ଯାତନା ଦେବାକୁ ଆପଣଙ୍କ ମନରେ ଥିଲା ? (ମୂର୍ଚ୍ଛା) ।

ଗୀତ

( ନାଗର ନେଇ ଭାବନା ଆଉ ନ କର—ବୃତ୍ତେ )

ପିଞ୍ଜର ଦେହ, ଏହା ଥିବ ଜନ୍ମ ମନେ
ପ୍ରାଣେ ନ ମାରି କାହିଁ        ଜାଳିଲ ଏତେ ପରି
ଏ ଘୋର ଅରଣ୍ୟ କାନନେ । ଘୋଷା ।

ପିତା ! ଅନ୍ୟଙ୍କ ସେପିବା ଲତା ଆପଣ ନିଜେ ଛେଦନ କରୁଥିଲେ କିଏ ବାଧା ଦେଉଥିଲା ? ଆପଣ କାହିଁକି ତା ନ କରି ଏ ବିଡ଼ମ୍ବନା କରି ମାଇଲେ ? ଉହୋ ! ମୁଁ ଭ୍ରମବୁଝିଛି, ଆପେ ରୋପିବା ଲତା ଆପେ ଛେଦନ କରିବା ଅନ୍ୟାୟ, ତେବେ କାନନରେ ଛାଡ଼ି ଦେଇଯିବା କିଣ ନ୍ୟାୟ ମନେକଲେ ? କିଣ କରିବି ? କେଉଁ ଆଡ଼େ ତ ପଥ ଦେଖାଯାଉ ନାହିଁ !

ଗୀତ

ଚଉଦିଗ ଅନ୍ଧାର        କ୍ଷଣେ କି ଭୟଙ୍କର
କର୍କଶ ଶବ୍ଦ ଶୁଭେ କର୍ଣ୍ଣେ । ୧ ।

ଚଉଆଡ଼େ ତ ଅନ୍ଧାର ଘୋଟି ଯାଉଛି । ହିଂସ୍ର ଜନ୍ତୁମାନଙ୍କ ଚିତ୍କାରରେ ହୃଦୟ ଶତଧା ବିଦୀର୍ଣ୍ଣ ହୋଇ ପଡ଼ୁଛି । ମୁଁ କିଣ କରିବି ? କେଉଁଠିକି ଅବା ଯିବି ? ନା, ପାଗଳ ମନ ତୁ ପୁଣି କେଉଁଠିକି ଯିବାକୁ ଭାବୁଛୁ, ଯିବାର ପଥ ତୋତେ ମିଳିବ ନାହିଁ । ତୁ ସିଂହ ଶାର୍ଦ୍ଦୂଳ ମୁଖରେ ପଡ଼ିବୁ ବୋଲି ତୋତେ ତୋ ପିତା ଏ ଅଟ୍ୱାଗ୍ନି ବନସ୍ତରେ ଛାଡ଼ିଦେଇ ଯାଇଛନ୍ତି । ଆଉ ମିଛରେ କାହିଁକି ଏତେ ଖେଦ କରୁଛୁ ? ତୋର ଆଶା ଏଥି ତନ୍ତୁମୂଳେ । ତୁ ଯେତେଦିନ ସୁଖ ପାଇବାର ଥିଲା, ସେତେଦିନ ପାଇ ସାରିଛୁ । ହା ମନ୍ଦ ବିଧାତା, ସ୍ତ୍ରୀ ଜନ୍ମ ଦେଇ ଯୌବନ ଅବସ୍ଥାରେ ପୁଣି ବିନା ଅପରାଧରେ ଏ ଦଣ୍ଡ !

ଗୀତ

ଅବଳାଠାରେ ଛନ୍ଦ        କଲୁ ମନ୍ଦ ଦଇବ
କି ଯଶ ନେବୁ ମୋ ନିଧନେ । ୨ ।

ହା ରେ ବିଧାତା ! ଏ ଅଭାଗୀଠାରେ ତୋର ଏତେ ଛନ୍ଦ । ପିତା, ମୋର ବାଲ୍ୟ ଅବସ୍ଥାରେ ଏତେ ସ୍ନେହ କରି ମୋତେ ସିଂହାସନରେ ବସାଇବାକୁ ଇଚ୍ଛୁଥିଲ; କିନ୍ତୁ ବର୍ତ୍ତମାନ କିଣ ଏହି ସିଂହାସନ ଅର୍ପଣ କଲ ? ମାଗୋ, ଅଭାଗିନୀକୁ ଛାଡ଼ି ସ୍ୱର୍ଗଧାମରେ ନିଶ୍ଚିନ୍ତ ହୋଇଅଛିଲ୍, ଦେଖ, ସେହି ସ୍ୱର୍ଗଲୋକରେ ଥାଇ ଦେଖ ତୋ କନ୍ୟା କି ଦଶା ଭୋଗ କରୁଛି । ଏ ଜନ୍ମ ! କିଣ କହିଲ ପରି ଶୁଣାଗଲା, ଟିକିଏ ଅପେକ୍ଷା କରେଁ ।

( ଭାରଦ୍ୱାଜ ପ୍ରବେଶ )

ଗୀତ

ଝମ୍ପତାଳ

ଅନିତ୍ୟ ଅସାର ସଂସାର
ମୋହ ମାୟା ଅନ୍ଧକାର
ପତିତପାବନ ପୀତାମ୍ବର
ତବ ହବ ଭବେ ହେ କର୍ଣ୍ଣଧାର । ପଦ ।

ହରି ପିତା ହରି ମାତା
ହରି ଜ୍ଞାତ ସହୋଦର
ତୈଲୋକ୍ୟ ନାଥଙ୍କ ରକ୍ଷ ମୋକ୍ଷ
ହରି କଳୌ ହରି ନାମ ସାର ।୧।
ଅରୂପ ଅଚ୍ୟୁତାନନ୍ଦ          ଆନନ୍ଦ ଅଣାକାର
ଶ୍ରୀରାଧାରମଣ ନବଘନ ଶ୍ୟାମ
ଭକ୍ତ ହୃଦ କର୍ଣ୍ଣଧାର ।୨।

ହରିବୋଲ, ହରିବୋଲ, କିଏ ଗୋଟିଏ ଜଙ୍ଗଲ ମଧ୍ୟରେ କ୍ରନ୍ଦନ କରୁଛି ? ଏ ତ ଭୟାନକ ସ୍ଥାନ, କେବଳ ହିଂସ୍ରଜନ୍ତୁମାନଙ୍କର ଆଶ୍ରମ ! ମନୁଷ୍ୟ ଏଠାକୁ ଆସିଲା କାହିଁ ? ତେବେ ଦେଖେଁ (ନିରୀକ୍ଷଣ) ଓଃ, ଏ ତ ଗୋଟିଏ ସ୍ତ୍ରୀ ଲୋକ ହେବ ପରା, କି ଆଶ୍ଚର୍ଯ୍ୟ ! ଏ ଏଠାକୁ ଆସିଲା କିପରି ? ତେବେ ପଚାରେ । ଆଲୋ ମା ! ଏ ଅଗନାଅଗନ ବନସ୍ଥଳରେ ତୁ କିଏ ଏଠାରେ କାହିଁକି ଏକାକିନୀ ହୋଇ ବସିଛୁ ? ତୋ ପାଖରେ କେହି ନାହାନ୍ତି !

ଗୀତ
( ଖଣ୍ଡିନ ସ୍ୱର )
କାହାର ଦୁଲଣୀ          କେଉଁ କଥା ଲାଗି
ବସିଛୁ ବିଜନେ ଏକା
ପ୍ରାଣେ କେହି ଆଶା          ନାହାନ୍ତି ରେ ଯୋଷା
ଲାଗୁନାହିଁ ମନେ ଶଙ୍କା
ସେହି ଚନ୍ଦ୍ର ବଦନ
ଦେଖି ସଂଶୟ ହେଉଛି ଆମ୍ଭ ମନ ।୧।

ମା ତୁ କିଏ, କାହାର କନ୍ୟା, କାହିଁକି ଏଠାରେ ଏକାକିନୀ ବସିଛୁ ? ତୋତେ ଭୟ ଲାଗୁନାହିଁ ? ଶୀଘ୍ର ଆମ୍ଭ ଆଗରେ ପ୍ରକାଶ କର । ମା, ଲଜ୍ଜା କରୁଛୁ କାହିଁକି ?

ଗୀତ
ଶୁଣ ଚନ୍ଦ୍ରମୁଖୀ          ଲୁହଁ ସେହି ଆଖି
ଆମ୍ଭେ ଋଷି ସାବଧାନ
ଆମ୍ଭର ଆଶ୍ରମ          ଏ ବନ ପ୍ରାନ୍ତେଣ
କାହିଁ କରୁ ଏତେ ଲାଜ ?
କନ୍ୟା, ନ କର ଭୟ
ଆମ୍ଭ କଲ୍ୟାଣରୁ ଲଭିବୁ ଅଭୟ । ୨ ।

ମା, ତୋତେ କିଏ ଏ ଦୁଃଖ ଦେଇଛି, ଆମ୍ଭ ଆଗରେ ଶୀଘ୍ର ପ୍ରକାଶ କର । ତୁ ଲଜ୍ଜା କରନା ମା, ତୁ ଆମ୍ଭର ଝିଅ ତୁଲ୍ୟ, ପିତା ନିକଟରେ କନ୍ୟାର କି ଲଜ୍ଜା ?

କୁମୁଦ—          ଗୀତ
(ଦ୍ୱିଜ ଲକ୍ଷ ବଦନ—ବୃତ୍ତେ)
ଋଷି ଋଷିବ କଣ ?
ଜନ୍ମାଇ ଦେଲେ ପିଅର ନ ଦେଇ ଲକ୍ଷ (ମୋ ମୁଖେ)
ମୋ ଗର୍ଭୁ ହେବ ଯେ ବାଳ
ସେ ମୋ ପିତାଙ୍କର କାଳ
କୋଷ୍ଠି ସାଧି ଦେଲା ଫଳ ଖଳ ଜ୍ୟୋତିଷ ହେ । ୧ ।

ଋଷିବର, ପିତା ମୋର ଜ୍ୟୋତିଷଠାରୁ କୋଷ୍ଠି ବୁଝି ଦେଖିଲେ ଯେ, ମୋ ଗର୍ଭରୁ ଯେ ସନ୍ତାନ ଜନ୍ମିବ ସେ ତାଙ୍କର ଶତ୍ରୁ; ସେଥିଲାଗି ମୋତେ ଏ ଦଣ୍ଡ ଦେଇଛନ୍ତି ।

ଋଷି—ମା, ତୁ କେଉଁ ରାଜାର କନ୍ୟା ? ତୋର ନାମ କଣ, ଶୀଘ୍ର ପ୍ରକାଶ କର ।

କୁମୁଦ—          ଗୀତ
ବୀର ମହେନ୍ଦ୍ର ଦୁହିତା          ମୋ ନାମ କୁମୁଦବତୀ
ଦଇବେ ଘଟିଲା ଅତି ମନ୍ଦ ଭବିଷ୍ୟ । ୨ ।

ଋଷିବର, ମୁଁ ବୀର ମହେନ୍ଦ୍ର ଦେବଙ୍କ କନ୍ୟା, ମୋ ନାମ କୁମୁଦବତୀ ।

ଋଷି—ଆଚ୍ଛା, ତୋର ସ୍ୱାମୀ ଅଛନ୍ତି ? ଆଉ ତୁ ଏଠାକୁ ଆସିଲୁ କିପରି ?

କୁମୁଦ—          ଗୀତ
ପଲଙ୍କେ ଥିଲି ମୁଁ ଶୋଇ          କେ ଏଥେ ଆଣିଲା ବହି
ଅବିବାହିତା ଟି ମୁହିଁ ଘେନା ନାରାୟଣ ହେ । ୩ ।

ଋଷିବର, ମୋର ନିଦ୍ରିତାବସ୍ଥାରେ କିଏ ମୋତେ ପଲଙ୍କ ସହିତ ଉଠାଇ ଆଣି ଏଠାରେ ଛାଡ଼ିଗଲେ । ପିତା, ମୁଁ ବିବାହ କରିନାହିଁ ।

ଋଷି—ଅଚ୍ଛା ମା, ତୋର ପିତା ମୋର ଜଣେ ପରମ ବନ୍ଧୁ । ସେ ବଡ଼ ଉତ୍ତମ ଲୋକ । ମୁଁ ବୁଝି ପାରୁଛି, କେହି ଖଳଲୋକ କୁବୁଦ୍ଧି ମତରେ ପଡ଼ି ସେ ତୋତେ ଏ ଦଶା ଦେଇଛନ୍ତି । ଚାଲ ମା, ମୁଁ ତୋ ପିତାଙ୍କୁ ବୁଝାଇ ସୁଝାଇ ତୋତେ ତାଙ୍କ ନିକଟରେ ଛାଡ଼ି ଦେଇ ଆସିବି ।

କୁମୁଦ— ଗୀତ

ଏଡ଼େ ମୁଁ ପିତା ବଚନ, କପାଇଁ ଯିବ ସଦନ
ଛାଡ଼ିଯାଉ ଚିନ୍ତି, ପ୍ରାଣ ପଡ଼େ କୁଳଶ । ୪ ।

ଋଷିବର, ବଜ୍ରାଘାତ ହୋଇ ମୋର ପ୍ରାଣ ଛାଡ଼ିଯାଉ, ଜଙ୍ଗଲରେ ସିଂହ ଶାର୍ଦ୍ଦୁଳଙ୍କ ମୁଖରେ ଏ ଛାଣ ଯାଉ, ଆଉ ନିଜ ସଦନକୁ ଫେରିବି ନାହିଁ ।

ଋଷି—ମା, ପଛ କଥା ସବୁ ପରେ ଶୋଚିବା; ଆମ୍ଭେ ତୋତେ ନିଶ୍ଚୟ କୌଣସି କୁଳୀନ ରାଜପୁତ୍ର ହସ୍ତରେ ସମର୍ପିଦେବା । ବର୍ତ୍ତମାନ ଆମ୍ଭ ସଙ୍ଗରେ ଆମ୍ଭ ମଠକୁ ଚାଲ, ସେଠାରେ ଋଷି କନ୍ୟାମାନଙ୍କ ସଙ୍ଗରେ ଆନନ୍ଦରେ ରହିବୁ ।

କୁମୁଦ—ପିତା, ଏ ଦୁଃଖିନୀକୁ କାହିଁକି ପୁଣି ବନ୍ଧନଜାଲରେ ପକାଇବେ ? ମୃତ୍ୟୁ ମୋପକ୍ଷରେ ଶ୍ରେୟସ୍କର ।

ଋଷି—ମା, ଆମ୍ଭେ ତୋର ଦୁର୍ଦ୍ଦଶା ଦେଖି ତୋତେ ଏଠାରେ ଏକାକିନୀ ଛାଡ଼ି ଯିବୁ ନାହିଁ । ତଦ୍ଦ୍ୱାରା ଆମ୍ଭର ଧର୍ମହାନି ହେବ । ନିରାଶ୍ରୀକୁ ଆଶ୍ରୟ ଦେବା ଆମ୍ଭମାନଙ୍କର କର୍ତ୍ତବ୍ୟ । ବିପଦଗ୍ରସ୍ତ ଲୋକକୁ ରକ୍ଷା କରିବା ଆମ୍ଭର ନିତ୍ୟବ୍ରତ । ତହିଁରୁ ଆମ୍ଭେ ବିରତ ହେଲେ ଆମ୍ଭର ତପସ୍ୟାର ଫଳ ନଷ୍ଟ ହେବ । ତୋର ଲକ୍ଷଣଗୁଡ଼ିକରୁ ଆମ୍ଭେ ଅନୁମାନ କରୁଅଛୁ, ତୁ ନିଶ୍ଚୟ ଐଶ୍ୱର୍ଯ୍ୟଶାଳିନୀ ହୋଇ ରାଜ ମହିଷୀ ହେବୁ । ଚାଲ ଆଶ୍ରମକୁ ଚାଲ ।

କୁମୁଦ—ଚାଲନ୍ତୁ ପିତା । (ପ୍ରସ୍ଥାନ)

—*—

## ଦ୍ୱିତୀୟ ଦୃଶ୍ୟ

ନାଟକୀୟ ଓ ତାର ପତ୍ନୀ ।

ପୁ—ଆଲୋ ବଡ଼ ବୋଉ, ଗୋଟିଏ କଥା ଶୁଣିଲୁଣି ?

ସ୍ତ୍ରୀ—ଆରେ କଅଣ ?

ପୁ—ଆମ୍ଭ ରଜା ଶ୍ରୀଅନୁ ବିବାହ ହେଇ ନୂଆଁଇ ମୁଣ୍ଡରେ ଜଟା ଦେଇ ସନ୍ନ୍ୟାସୀ ହେବେ ବୋଲି କହୁଥିଲେ, ଆଜି ଶୁଣିଲୁଣି କଣ ହେଲାଣି ?

ସ୍ତ୍ରୀ—ନାଇ ତ ମୁଁ କିଛି ଶୁଣି ନାହିଁ ।

ପୁ—ଆଲୋ ଶୁଣିବୁ କାହିଁକି, ଖାଲି ଘରେ ବସି ଚାଉଳ କୁଣ୍ଡା ମାଡ଼ିବୁ ।

ସ୍ତ୍ରୀ—ତୁ ତ ମନ୍ଦିରରେ ଗୁଡ଼ା ହେଉଛୁ ? କଣ କହ ବା !

ପୁ—ଆଲୋ ରଜା ବୁଢ଼ା ହେଲେଣି । ଏବେଟା ମାଇକିନିଆ ବଞ୍ଚିଲେ ନାହିଁ—ମଲେ । ଆଜି ପୁଣି ଶୁଣ ଯାଉଛୁ ପୁଣି ଗୋଟାଏ ରଜା ବାହା ହେବ ।

ସ୍ତ୍ରୀ—ଆରେ କଥାଟା ଏକା କହୁଛୁ, କିନ୍ତୁ ମନକୁ ଆସୁନାହିଁ ।

ପୁ—ଆଲୋ ବେଶୀ ଦୂରରେ ନାହିଁ ଲୋ !

ସ୍ତ୍ରୀ—ଆଉ କେବେ ?

ପୁରୁଷ— ଗୀତ

( ଲେଲୁନାହିଁ ନାଭ—ଦୁଃଖେ )

ପୁ—ବାଜବେଣ ରଜା ବାହାଘର ଦେଖିବାକୁ କାଲି
ଯିବୁ ନାହିଁ କି ?
ସ୍ତ୍ରୀ—କିଜ ମାଡ଼ୁଅଛି ସୁବର୍ଣ୍ଣ ଗୋଟାଏ ଚୁଡ଼ାଟିଏ ଖଞ୍ଜି
ଦେବ କାହିଁ କି । ପଦ ।
ପୁ—ରାଣୀ ଲାଗି ରଜାଙ୍କ ମନ-ହେଲାଣି ତ ଦେଖ ଉଚ୍ଛନ୍ନ ।
ସ୍ତ୍ରୀ—କିଣା ଟଙ୍କାଗଲେ ସବୁ ହେବ ଚୂର୍ଣ୍ଣ ହାଟ ବସିଯିବ
ସାତ ମାଙ୍କଣ । ୧ ।
ପୁ—ଅପୂର୍ବ କି ଅଜନ୍ମ ରାଜ ରାଣୀ ଦୁର୍ଭେ ହେବ ତନୁଜ ।
ସ୍ତ୍ରୀ—ବୁଢ଼ାନା ଧାନରୁ ଟଙ୍କା କି ହୋଇବ ଉଗାର ହସିବା
କଥା ଏହ୍ଵ କି । ୨ ।
ପୁ—ତୋର କୋଳେ ନ ହେଲା ପୁତ୍ର—ମୁଁ ଦେଖିବି
ହୋଇବ ବାଟ ।
ସ୍ତ୍ରୀ—ଗାଇତଣେ କଏ ଅଟକ କରୁଛୁ ପାଆ ମୋତେ ଗୁଡ଼
ଦଣ୍ଡ ଦେଇକି । ୩ ।

ପୁ—ହଉଲୋ, ମୁଁ ତୋତେ ଛାଡ଼ ପତ୍ର ଲେଖି ଦେଲେ ତୁ ତ ରଣ୍ଡୀ ହୋଇ ବାରଦ୍ୱାର ହେବୁ ।

ସ୍ତ୍ରୀ—ଆରେ ଏହ୍ନି କଥା ଲାଗି ହେଲେଣି ! କାଣ୍ଡ ପୋଡ଼ ଦେଇ ସାତ ବାହା ହେବ ଦେଖିବୁ ।

ପୁ—ଆଲୋ, ମୁଁ ତ ତୋତେ ଦେଖୁଛୁ ତୁ ଜଣେ ସତୀ ସାଧ୍ୱୀ ।

ସ୍ତ୍ରୀ—ଆରେ ହଁ, ମୁଁ ସେହିପରି ଉତ୍କୃଷ୍ଟ ଜାତ ।

ପୁ—ଅଚ୍ଛା କହିଲୁ, ମୋ ଆଗରୁ ଏତ ହୋଇଛୁ କେବେଟା ।

ସ୍ତ୍ରୀ—ଆରେ ତୋତେ ଖାଇଲେ ହୋଇଯିବ ସାତଟା ।

ସୁ - ଆଲେ ମୁଁ ତ ବଡ଼େ ପୁରାଣରେ ଶୁଣିଥିଲି ।

ଅହଲ୍ୟା ଦ୍ରୌପଦୀ ତାରା
କୁନ୍ତୀ ମନ୍ଦୋଦରୀ ତଥା
ପଞ୍ଚକନ୍ୟା ସ୍ମରେନ୍ନିତ୍ୟଂ
ମହାପାତକ ନାଶନଂ ।

ଆଉ ତୁ ଶୁଣି ଏହା ଭିତରେ କୋଉଟି ଥିଲୁ, ଏଥର ସେ ଶ୍ଳୋକରେ ହେଲା ଅହଲ୍ୟା ଦ୍ରୌପଦୀ ତାରା କୁନ୍ତୀ ମନ୍ଦୋଦରୀ ତଥା, ବାଳମା ସୁରତେ ନିତ୍ୟଂ ମହା ଦୁର୍ଗତି ନାଶନଂ ।

ସ୍ତ୍ରୀ—ଖଣ୍ଡିଆ; ମୋତେ ଠାଟ୍ଟା କରୁଛୁ ? ଯା ଯା ମୋପରି ନାଗରୀ ଗୁଣ୍ଠ ଚମ୍ପାଗୋରୀ ଦୁନିଆ ଭିତରେ ପାଇବୁ ?

ସୁ—ଅଲେ ପେଚକମୁଖୀ ସିଙ୍ଘାଣିନାକୀ ଯା ଆଉ କାହାଆଗେ କହିବୁ ।

ସ୍ତ୍ରୀ—ତେବେ ମୁଁ ଗଲି । ( ପ୍ରସ୍ଥାନ )

ସୁ—ମୁଁ ତୋ ପଛେ ପଛେ ଗ୍ଲଲି ( ଅଣ୍ଟା ଡ଼ଳାଇ ପ୍ରସ୍ଥାନୋଦ୍ୟତ ) ।

( ଅବଧାନେ ପ୍ରବେଶ—ବାଳକାପ ପ୍ରଭ )

ଅବଧାନେ—କହୋ ପଲେଇ ପୁଅ ! କୁଆଡ଼େ ଅଣ୍ଟା ହଲେଇ ହଲେଇକା ଯାଉଛ ?

ପଲେଇ—ଅବଧାନେ, ପ୍ରଣାମ !

ମଣି—ହଉ, ବୁଢ଼ାଟିଏ ହୋଇଥା, ହଳରେ ପଲେଇ ପୁଅ, ତମର ପର ସ୍ତ୍ରୀଅଟିଏ ହୋଇଥିଲା, ଗଣା ଯୋଗୁଟିଏ କହେନିଅ ।

ପଲେଇ—ଅବଧାନେ ଗଣାଯୋଗୁ କଣ କରିବ, ମୋର ଘର ଘରକନ୍ନା ହୋଇଗଲା !

ମଣି—କଣ ତମ ସ୍ତ୍ରୀଟି ମରିଗଲା ?

ପଲେଇ—ମଲ୍ଲଠାରୁ ବଳେ ।

ମଣି—କଣ ?

ପଲେଇ—ଆହେ, ଘୁଡ଼ପଡ଼ ଦେଇଦେଲା !

ମଣି—ତେବେ ତ ଭଲସର ହେବ । ଅମର ତ ଯଥା ଯୋଡ଼ ଥୁଆ ।

ପଲେଇ—ଆମର ତ ହବା ଜେରଅଛୁ, ଆଜା ରଜାଙ୍କ ଭଲବର ପର କାଲ ?

ମଣି—ଆରେ କେଡ଼େ ବଡ଼ ମହନ୍ତଟାଏ ହୁଙ୍କିଗଲା ! ଆମ୍ଭେମାନେ ସୁକୁମ ସୁକୁର କଣ ବୁଢ଼ା ରଜାକୁ ସେଥିରେ ପକାଇ ଦେଉଥିଲୁ; କନ୍ତୁ ରଜା ଅମଙ୍ଗ ହେବାରୁ ସବୁ ବନ୍ଦବାନ୍ଦ ହୋଇଗଲା । ଷାଠିଏ ବର୍ଷ ବରକୁ ଏବେ ଭଣ୍ଡୀ ପୀଙ୍କନ୍ୟା ଛଡ଼ା ଆଉ କୋଉଠୁ ପାଇଟିଏ ମିଳିବ ?

ପଲେଇ—ଆରେ, ମୁଁ ତ ସେ ରଜାଘର ବାହାଘର କଥା ଶୁଣି ମୋ ବାଳବୋଲ ସାଙ୍ଗରେ ଟାଟେ କଳିଆ କରି ତାକୁ ଘୁଡ଼ପଡ଼ ଦେଇ ନୂଆ ମାଇପଟିଏ କରିବାକୁ ବସିଥିଲି । ଏବେ ମୋ କଥା ସରିଲା ! ହେ, ସେ କୁଆଡ଼େ ଗଲା ମୁଁ ଦେଖେଁ ।

ମଣି—ଆରେ ରହ ହୋ ।

ପଲେଇ—ଆରେ ରହିବ କଣ ମୋ କଥା ସରିଲା ! (ପ୍ରସ୍ଥାନ)

ମଣି—ରଜାଘର ବାହାଘରଟାଏ ହୋଇଥିଲେ କିଛି ମିଳି ଥାନ୍ତା, ସେ ବନ୍ଦ । ଏଇଟାର ବ ଦୁଇଅ ପୁଅର ଘରଟାଏ ହୋଇଥିଲେ କିଛି ମିଳିଥାନ୍ତା-ସବୁ ବନ୍ଦ । ହଉ ଯିବା ଦେଖିବା ! ଅବଧାନ ମଣିଷ ଭିକ୍ଷା କଲେ କଣ ଲାଜ ମାଡ଼ିବ ? ହଉ ଯିବା । (ପ୍ରସ୍ଥାନ)

—*—

## ତୃତୀୟ ଦୃଶ୍ୟ

(କେଦାର ଓ ଶିକାରୀ ବୃନ୍ଦ)

କେଦାର—ଏହି ତ ନିବଡ଼ ଅରଣ୍ୟ, ଏଠାରେ ମୃଗ ବରାହ ଆଦି ଥିବାର ଜଣାଯାଉଛି । ଅଦୂରରେ ଏହି ପାହାଡ଼ର ନିମ୍ନଭାଗରେ ଗୋଟିଏ ସ୍ୱଚ୍ଛ ଝରଣା ଦେଖାଯାଉଛି । ସେଠାକୁ ପଶୁମାନେ ଜଳ ପିଇବାକୁ ନିଶ୍ଚୟ ଗଡ଼ିବେ । ତୁ ଶିକାରୀମାନଙ୍କୁ କହ—ସେ ଯାହାର ସତର୍କରେ ରହନ୍ତୁ । ମୁଁ ଏହି ଝରଣାର ଉତ୍ତର ପାଖରେ ରହୁଛି ।

ଦୂତ—ହଉ ମହାରାଜ !

(ଶିକାରୀମାନେ ଅନ୍ୟାନ୍ୟ ଦିଗେ ଗମନ ଓ କେଦାର ଝରଣା ନିକଟରେ ଲକ୍ଷ୍ୟ ଠିକ୍ କରି ପଶୁମାନଙ୍କୁ ଅପେକ୍ଷା କରିବା, କୁମୁଦ କଳସୀ ଘେନି ଝରଣା ନିକଟକୁ ଆସିବା)

କୁମୁଦ— ଗୀତ

(କଣ୍ଣଦେବା ପୁକର୍ଣୀ—ବୁଢ଼େ)

ଆହା କି ସୁନ୍ଦର ଏ ମାଧବୀ ଲତାଟି
ସରୋବରେ ମାଉଛି ।
ତରୁବର ଲାଗି ମିଳା ଶୋଭା ତାର ବଢ଼ୁଛି । ପଦ ।
ଅଳି ପ୍ରେମାକୁଳ ହୋଇ
ଫୁଲେ ଫୁଲେ ଗୁଞ୍ଜରଇ
ଧନ୍ୟ ଏହି ତାହାପାଇଁ
କି ରଙ୍ଗରେ ନାଚୁଛି । ୧ ।

ଆହା, ଏ ମାଧବୀ ଲତାଟି କେଡ଼େ ସୁନ୍ଦର ଦିଶୁଛି ! ଯଦି ତରୁବର ତାକୁ ଆଶ୍ରୟ ଦେଇ ନ ଥାନ୍ତା, ତେବେ ସେ କି ଏତେ ସୌନ୍ଦର୍ଯ୍ୟଶାଳିନୀ ହୋଇଥାନ୍ତା ? ପୁଣି ଦେଖୁଛି କେତେଗୁଡ଼ିଏ ଲତା ଅନାଶ୍ରିତା ହୋଇ ଭୂମିରେ ଲୋଟୁଛନ୍ତି । ସେମାନଙ୍କ ପରି ମୋର ଦଶା ପଡ଼ୁଛି ! ହଁ, ଦୁଃଖ ସୁଖ ବୁଝିଆ ନ ଗଲା, ମୁଁ କେତେବେଳୁ ପାଣିଟିଏ ପାଇଁ ଆସିଲିଣି—ଯାଏ ଶୀଘ୍ର ଯାଏଁ ।

(ମାଠିଆ ଜଳରେ ବୁଡ଼ାଇବା ସମୟରେ କେଦାରକୁ ଦେଖି ସଲଜ୍ଜ ଭାବେ ପଳାୟନ ଓ ପଛକୁ ଚାହିଁ ଚାହିଁ ପ୍ରସ୍ଥାନ)

କେଦାର—( କନ୍ୟାଟିକୁ ଆଗମନରୁ ଶେଷ ପର୍ଯ୍ୟନ୍ତ ଦେଖି ) ଉଃ, କି ଆଶ୍ଚର୍ଯ୍ୟ ! ଲତା ଅଭ୍ୟନ୍ତରରୁ କିଏ ଗୋଟିଏ ଅଜଣା ସୁଧାଂଶୁବଦନା ବାହାରି ଆସି ଜଳ ନେଉଥିଲା । ମୋତେ ଦେଖି ତାର ଚକ୍ଷୁ ପଡ଼ିଲା ମାତ୍ରେ ସଲଜ୍ଜ ବଦନରେ ଚାହିଁ ଚାହିଁ ମୃଗ ଶିଶୁ ପରି ପୁଣି ଅରଣ୍ୟରେ ଲୁଚିଗଲା । ଏ କଣ ମାୟା ! ନା ତାର ଗତିରୁ ସେ ଅନାଥିନୀ ବୋଲି ମୁଁ ବେଶ୍ ପରିଚୟ ପାଉଛି । କିଏ ସେହି ? କାହିଁଗଲା ? ଏ ହୃଦୟ କାନନରେ କାମାନଳ ଲଗାଇ ଦେଇ 'କାହିଁ' ଲୁଚିଗଲା ! ଉହୋ, କଣ କରିବି ? ଆଉ ତ ମୋର ଯନ୍ତ୍ରଣା ସହୁନାହିଁ ।

(ଅବାକାବା ଓ ମୂର୍ଚ୍ଛା, ଶିକାରୀମାନେ ଓ ଦୂତ ପ୍ରବେଶ )

ଦୂତ—( ଶିକାରୀଙ୍କ ପ୍ରତି ) ତୁମ୍ଭମାନଙ୍କର କିଛି ଶିକାର ଯୁଟିଲା ?

ଶିକାରୀ—ହଁ ଖଣ୍ଡେ ଖଣ୍ଡେ । ମହାରାଜ କାହାନ୍ତି ?

ଦୂତ—ସେ ଝରଣାର ଉତ୍ତର ପାଖରେ ଥିଲେ, ଚାଲ ଦେଖିବା । (କିଛି ଦୂର ଯାଇ) ଏଇଠି ତ ମହାରାଜ । ବର୍ତ୍ତମାନ ଲକ୍ଷ୍ୟ ଭେଦିବେ, ଟିକିଏ ଅପେକ୍ଷା କରିବା ।

ଶିକାରୀ—ଦୂତ ଦେଖିଲୁ, ମହାରାଜ ଯେଉଁ ଆଡ଼କୁ ଲକ୍ଷ୍ୟ ରଖିଛନ୍ତି, ସେ ଆଡ଼ରେ ଝରଣା, କାହିଁ ଜୀବ ଜନ୍ତୁ ତ କିଛି ଦେଖାଯାଉ ନାହାନ୍ତି ।

ଦୂତ—ଆରେ ଝରଣାରେ ଜଳ ହମ୍ସ, ହଂସଚକ୍ର, ଆଉ କହିଛ କୋଉଠି ଲୁଚିଥିବ ସେଇଆକୁ ଲକ୍ଷ୍ୟ ରଖିଥିବେ ।

ଶିକାରୀ—ହା ରେଇବା, ରାଜା କଣ ମେଲିଆ ଶିକାର କରନ୍ତି ? ଭଲ ଦେଖିଲୁ ଦେଖି ତାଙ୍କ ହସ୍ତରେ ତ ଧନୁଶର ନାହିଁ ।

ଦୂତ—ଆରେ ଥୋଇ ଦେଇଥିବେ !

ଶିକାରୀ—ନାହିଁ, କାହିଁକି ଏପରି ହେଉଛି, ଟିକିଏ ଆଉ ନିକଟକୁ ଯିବା ।

ଦୂତ—ଚାଲୁନା (କିଛି ନିକଟ ଯାଇ )

ଶିକାରୀ—ଦୂତ, ଆମ୍ଭେମାନେ ଏତେ ନିକଟ ହେଲେଣି, ରାଜା କଣ ଆମ୍ଭମାନଙ୍କ ଆସିବା କଥା ଜାଣି ପାରୁ ନାହାନ୍ତି ?

ଦୂତ—ଆରେ ସାଢ଼େ ଯେବେ ମାମଲତରେ ମନ ଦେଇଥିବ, ଆମ କଥା ଚକ୍ଷୁରେ କଣ ?

ଶିକାରୀ—ଦୂତ ! ରାଜା କଣ ଅବାକାବା ହୋଇ ବସିଲେ ପରି ଜଣା ଯାଉଛନ୍ତି, ତାଙ୍କର ଶିକାର ପ୍ରତି ଲକ୍ଷ୍ୟ ନାହିଁ ।

ଦୂତ—ଆରେ, ଲକ୍ଷ୍ୟ କାହାକୁ କରନ୍ତି ଅବା କଣ, ମୁଁ କିଛି ବୁଝିପାରୁ ନାହିଁ ।

ଶିକାରୀ—ଆରେ ଚାଲ ରାଜାଙ୍କ ନିକଟ ଚାଲ, କଣ ଘଟଣା ଦେଖିବା (ସମସ୍ତେ ଗମନ ଓ ଡରି ଡରି ରାଜାଙ୍କୁ ଡାକିବା ଓ ଅବଶେଷରେ ରାଜାଙ୍କ ଅଙ୍ଗ ସ୍ପର୍ଶରେ ଦେଖିଲେ ରାଜା ଅଚେତ ହୋଇ ଭୂମିଶାୟୀ । ସମସ୍ତେ କଣ ହେଲା କଣ ହେଲା କହି ଚିତ୍କାର )

ଦୂତ—ଆରେ ଏ କଣ ହେଲା ? ରାଜା କଣ ଏମିତି ହୋଇଗଲେ ?

ଶିକାରୀ—ସର୍ବନାଶ, ସର୍ବନାଶ ! ଆରେ ସବୁ ଆଶାଭରସା ଆମର ବୁଡ଼ିଲା !

ଦୂତ—ହେ କଣ କହୁଛୁ, ମୋ ହାତରେ ତେଜ଼ିଗଆ ଅଛି, ସେଥିରେ ଔଷଧ ଅଛି ।

ଶିକାରୀ—ରାଜାଙ୍କୁ ଦେବା ଦେଲୁ ।

ଦୂତ—ଆରେ, ତା ନୁହେଁ, ମୋ ହାତରେ ଅଛି । ମୁଁ ଛୁଇଁଲେ କାଳେ ମାଗ ହୋଇଯିବ । ମତେ ମୂର୍ଖର ଛୁଇଁବାକୁ ଅବଧାନ ମନା କରିଛି ।

ଶିକାରୀ—ମୂର୍ଖ, କେତେବେଳେ କେଉଁ କଥା !

ଦୂତ—ହେ କଣ କରିବା ରେ ? ( ଉଚ୍ଚସ୍ୱରେ ) ଆମ୍ଭ କଥା ସରିଲା ।

ସମସ୍ତେ—( ହାସ୍ୟ ହାସ୍ୟ ଶବ୍ଦ )

( ଚିତ୍କାର ଶୁଣି ସାରଦ୍ୱାଜ ପ୍ରବେଶ )

ଋଷି—ହରିବୋଲ ହରିବୋଲ, ଆରେ କଣ କଣ, କଥା କଣ ?

( ସମସ୍ତେ ଋଷିଙ୍କୁ ଦେଖି ଡାକିଲେ )

ଋଷି—କଣ ହେଲା, ଏପରି କାହିଁକି ହେଉଛ, ଏ ରାଜପୁତ୍ର କାହିଁକି ଏପରି ହେଲେ ?

ଦୂତ—ଆମ୍ଭେମାନେ ଶିକାର କରିବା ନିମନ୍ତେ ଆସିଥିଲୁ, ଆମ୍ଭ ମହାରାଜ ଏହି ଝରଣା ନିକଟରେ ଶିକାର ଉଦ୍ଦେଶ୍ୟରେ ରହିଲେ । ଆମ୍ଭେମାନେ ଅନ୍ୟ ଦିଗକୁ ଗଲୁଁ, ଯାଇ ଫେରି ଆସିଲା ବେଳକୁ ରାଜାଙ୍କର ଏ ଦଶା, ଆପଣ ଦେଖନ୍ତୁ କଣ ହେଲା ।

ଋଷି—ଆଚ୍ଛା, ବ୍ୟସ୍ତ ହୁଅନା, ଟିକିଏ ଜଳ ଆଣିଲ ।

( ଜଳ ଆଣି ଋଷି ରାଜା ମୁଖରେ ସେଚନ କରି ଡାକିବା ଓ ରାଜା ନିଦ୍ରାରୁ ଉଠିଲାପରି କାହିଁଗଲା କହି ପୁଣି ମୂର୍ଚ୍ଛା )

ଋଷି—ଉଠ ରାଜପୁତ୍ର !

ରାଜା—କିଏ ? କୁଆଡ଼େ ଗଲା ?

ଋଷି—ରାଜନ୍, ତମର ମତି ବିଭ୍ରମ ହୋଇଯାଇଛି କି ? କାହିଁ କିଏ ?

ରାଜା—ହେଲା ତ କଳସୀ, ତନ୍ୱୀ ।

ଋଷି—ରାଜନ୍ ଏକଣ ! ଚନ୍ଦ୍ରବଂଶ ଭଳକର ସୂର୍ଯ୍ୟ, ବାସ୍ତବିକ ପର କଣ ହେଉଛ ? କୁମର ଏପରି ହେବାହାରା ଭୂମ୍ଭ ମାଙ୍କ ଲୋକମାନେ ଚିନ୍ତିତ ହେଉଛନ୍ତି, ଉଠ ।

ରାଜା—( ଉଠି ତପସ୍ୱୀଙ୍କୁ ଦୃଷ୍ଟି ପ୍ରଣାମ କରିବା )

ଋଷି—ରାଜନ, ଏ କି କଥା ? କାହିଁକି ଏପରି ହେଉଥିଲ ?

କେଦାର—ନା କହୁ ନାହିଁ । ମୁଁ —

ଋଷି—ପୁନରାୟ ସେହି କଥା, କଣ ଘଟିଲା ଆମ୍ଭ ଆଗରେ ପ୍ରକାଶ କର ।

କେଦାର— ଗୀତ

( ନରପତି ହେ ଏ କି ଅନୀତ କୁମର—ବୃତ୍ତେ )

ଋଷିବର ହେ, ଶୁଣ ଦୁର୍ଦ୍ଦଶା ମୋହର

ଦେଖ ବିଷମ ସମସ୍ୟା ହେଲା ବଡ଼ ଡରକର । ପଦ ।

ଋଷିବର ଗୋଟିଏ ଅଦ୍ଭୁତ ଘଟଣା ଦେଖି ଏ ହୃଦୟ ଅସ୍ଥିର ହୋଇଯାଇଛି ।

ଋଷି—କି ଘଟଣା

କେଦାର— ଗୀତ

ମୃଗ ଲକ୍ଷ୍ୟ କଲାବେଳେ,

ମୃଗାକ୍ଷୀପ୍ରେ ଦେଖି ଭୋଳେ

ଜ୍ଞାନ ମୋ ଗଲା ସେକାଳେ

ପଡ଼ି ହୃଦେ କାମ ଶର । ୧ ।

ତପସ୍ୱୀ, ମୁଁ ମୃଗକୁ ଲକ୍ଷ୍ୟ କଲାବେଳେ ଗୋଟିଏ ଅପୂର୍ବ ରମଣୀ ମୋର ଦୃଷ୍ଟିଗୋଚର ହେବାହାରା ହୃଦୟ ଅଥୟ ହୋଇପଡ଼ିଛି ।

ଋଷି—ଜଣେ ସ୍ତ୍ରୀ ? ଆଚ୍ଛା ସେଠାରେ ସେ କଣ କରୁଥିଲା ?

ରାଜା— ଗୀତ

ବନପଥେ ଧୀରେ ଖସି

(ବନ) କେଲିବେଳେ ଶୁକ୍ରକେଶୀ

ମୋଠାରେ ତା ନେତ୍ର ଆସି

ପଡ଼ିଗଲାଟି ନିକର ।

ଋଷିବର ! ସେ ସୁନ୍ଦରୀ ଝରଣାର ଅପର ପାର୍ଶ୍ୱରୁ ବାହାରି ଝରଣା ନିକଟରୁ ଜଳନେବା ସମୟରେ ମୁଁ ତାକୁ ଦେଖିଲି ଓ ସେ ସ୍ତ୍ରୀର ମଧ୍ୟ ଦୃଷ୍ଟି ମୋ ଉପରେ ପଡ଼ିଗଲା ।

ଋଷି—ତାହାଁ କଣ ହେଲା ?

କେଦାର— ଗୀତ

ନିମିଷେ ଯେପରି ଆସି
ଗୃହଁ ମୋତେ ଚପଳାକ୍ଷୀ
ବେଗେ ମୋ ପ୍ରାଣ ଲୁଟେଣି
ଗଲା ମରାଳ ଚରଚର । ୩ ।

ତାର ମୋର ଶୁଭ ଚକ୍ଷୁ ହେବା ମାତ୍ରେ ସେ ସେହି ବନ ମଧ୍ୟକୁ ପଳାଇଗଲା ।

ଋଷି—ଆଚ୍ଛା ।

କେଦାର— ଗୀତ

ଅସମ୍ଭାଳେ ଗଲାବେଳେ
(ତାର) ବାସ ଲୋଟୁଥିଲା ତଳେ ।
ଯୌବନ ତା ଦେଖି ହେଲେ,
ନ ଚଳିଲା ନେତ୍ର ମୋର । ୪ ।

ଧନ୍ୟ ମୋ ନବ ତରୁଣୀ
(ତାକୁ) ଗଢ଼ିଛି କେଉଁ ବିଧାଣୀ
ଯେ ମୋତେ ଦେଲାଟି ଆଣି
ହେବ ତା ପଦେ କିଙ୍କର । ୫ ।

ସେ କନ୍ଦର୍ପ-ଦର୍ପ-ଦଳା,
ଅଟେ କାହାର ମଲ୍ଲିକା
ଦେବାଙ୍ଗନା କି ବାଳା,
ପ୍ରକାଶି ସନ୍ଦେହ ହର । ୬ ।

ଋଷିବର ! ଜୀ ସେହି ବନବନିତା, କେତେ ଥରେ ତାକୁ ଦେଖିଛନ୍ତି କଥ । ତାହାର ସେ ମୋର ଅର୍ଦ୍ଧାଙ୍ଗିନୀ, ରହିବଟି ଏ ମଣ୍ଡଳେ । ଋଷିବର କି ନରର ମୂର୍ତ୍ତି, କେମନ୍ତେ ପାଇବ ତାର ଶୁଭଶୁଭ ବାର୍ତ୍ତା ? ବୁଲିଥିଲି ଜଗତରେ କେତେ କେତେ ଦେଶ, ଦେଖିଛି ଏ ନେତ୍ର କେତେ କେତେ ନାରୀ, କିନ୍ତୁ ଏପରି ସ୍ବର୍ଗୀୟ ଶୋଭା ଦେଖି ନାହିଁ ଭାବି ।

ଋଷି - ଠିକ୍ କଥା, ତୁମେ ରାଜପୁତ୍ର, ଅନେକ ଦେଶ ବୁଲିଥିବ ଅନେକ କଥା ଦେଖିଥିବ । ଆଉ ରାଜା ହୋଇ ନାନା ପ୍ରକାର ମନୋରଞ୍ଜନ ହୋଇଥିବ । କିନ୍ତୁ ମର୍ତ୍ତ୍ୟର କଥା ତୁମେ ମର୍ତ୍ତ୍ୟର କଥା ଯାହା ଦେଖିଥିବ ସେତକ ।

କେଦାର—ଏ କଣ ମର୍ତ୍ତ୍ୟର କନ୍ୟା ନୁହେ ।

ଋଷି—ମର୍ତ୍ତ୍ୟର କନ୍ୟା ହୋଇଥିଲେ ଏପରି ଅଗ୍ନିଗିରି ବନସ୍ଥଳୀକୁ ଆସିଥାନ୍ତା କାହିଁ ? ନିଶ୍ଚୟ ସେ କେଉଁ ଦେବକନ୍ୟା, ତମକୁ ଭଣ୍ଡାଇବାକୁ ଆସିଥିଲା ।

କେଦାର - ଋଷିବର ! ତାକୁ କଣ ପାଇବ ନାହିଁ, ଆଉ ତାର ରୂପ ଲାବଣ୍ୟ ସନ୍ଦର୍ଶନ କରିବ ନାହିଁ ?

ଋଷି— ରାଜନ କି ଭ୍ରମରେ ପଡ଼ିଛ, ଚାଲ ଆମର ଆଶ୍ରମ ଏହି ନିକଟରେ । ସେଠାରେ ଟିକଏ ଶ୍ରମ ହର ରାଜ୍ୟକୁ ଫେରିଯିବ ।

କେଦାର—ନା ଋଷିବର, ମୁଁ କେଉଁ ଆଡ଼କୁ ଯିବ ନାହିଁ, ମୋର ମତ ଠିକ୍ ନାହିଁ ।

ଋଷି - ରାଜନ ! ତୁମ୍ଭେ ରାଜଦଣ୍ଡ ଧାରଣ କରି କି ଅନ୍ୟାୟ କାର୍ଯ୍ୟରେ ମନ ବଳାଉଛ ? ଭଗବାନ ତୁମ୍ଭଙ୍କୁ କଣ ଏହି ବୁଦ୍ଧି ଦେଇଛନ୍ତି, ତୁମ୍ଭେ ଆଉ ରାଜ୍ୟ ଶାସନ କରିବ କଣ ? ତୁମର ତ ଲମ୍ପଟ ସ୍ବଭାବ ଛାଡ଼ ଯାଇନାହିଁ, ଚାଲ ଆମ୍ଭ ଆଶ୍ରମକୁ ଚାଲ । ଏ ସବୁ ପିଲା ବୁଦ୍ଧି ଛାଡ଼ । ତୁମର ପିତା କେଡ଼େ ଧର୍ମପରାୟଣ, ତାଙ୍କର କୀର୍ତ୍ତି ଅଦ୍ୟାବଧି ଉଜ୍ଜ୍ୱଳ ଭାବରେ ରହିଛି । ତୁମ୍ଭେ ସେହି ମଗଧାଧୀଶ୍ବରଙ୍କର ପୁତ୍ର ହୋଇ ତୁମର ଏ ଜ୍ଞାନ ପ୍ରବୃତ୍ତି ! ଛି, ଛି, ଲୋକେ ଶୁଣିଲେ କଣ କହିବେ ? ଏ ଜଙ୍ଗଲ, କେଉଁଠି ଡାକିଣୀ, ଭୂତ, ପ୍ରେତ, ରାକ୍ଷସୀ କି କଲ୍ପନା କଣ ଦେଖି ତୁମ୍ଭେ ଜ୍ଞାନଶୂନ୍ୟ ହୋଇ ଯାଉଛ । ଆଉ ବିଳମ୍ବ କରନା, ଆଜ ମୋର କ୍ଷୁଦ୍ର ପର୍ଣ୍ଣ କୁଟିରରେ ଆତିଥ୍ୟ ସ୍ବୀକାର କରିବାକୁ ହେବ ।

କେଦାର—ହଉ ପ୍ରଭୁ (ଶିକାରୀଙ୍କ ପ୍ରତି) ତୁମ୍ଭେମାନେ ରାଜ୍ୟକୁ ଫେରିଯାଅ । ମୁଁ ଯାଇ ପହଞ୍ଚିବ, ମନ୍ତ୍ରୀ ଆଉ ଦୂତ ଥାନ୍ତୁ ଆମ ସଙ୍ଗରେ ଯିବେ । ଋଷିବର ଚାଲନ୍ତୁ । ଏଠାରୁ କେତେ ବାଟ ପଡ଼ିବ ?

ଋଷି—ଏହି ଅନତି ଦୂରରେ । (ପ୍ରସ୍ଥାନ)

— * —

## ଚତୁର୍ଥ ଦୃଶ୍ୟ

( ଫୁଲ ବଗିଚାରେ ଜଳ ଦେବାବେଳେ
କୁମୁଦ ଗୀତ ଗାଇ ଗାଇ ପ୍ରବେଶ )

କି ମନ ମୋହନ ରୂପ ଦେଖିଲି ଆଜ । ଘୋଷା ।
କିବା ବିଧି କେତେ ଦିନେ
ଗଢ଼ିଛି ତାକୁ ଯତନେ
ମୁଖ କୋଟି ଚନ୍ଦ୍ର
ଜିଣେ ରସିକରାଜ । ୧ ।
କାମ ଫୁଲ ଶର ବେନି
ଭ୍ରମୁଛି କିବା ଅବନୀ
ବାମାଏ ଦେଖି ତା ଠାଣି
ପାଇବେ ଲାଜ । ୨ ।

ଆହା ! ଏ ପୁରୁଷଟିକୁ ବିଧାତା କେତେ ଦିନେ ଗଢ଼ିଥିଲା, ତାଙ୍କ ମୁଖ ତ ଚନ୍ଦ୍ର ସୂର୍ଯ୍ୟଙ୍କୁ ନିନ୍ଦା କରୁଛି । କିଏ ସେ ? ଏ ମର୍ତ୍ତ୍ୟରେ ସେପରି ରୂପବାନ ପୁରୁଷ କଣ ଅଛନ୍ତି ? ମୁଁ ତାଙ୍କୁ ଦେଖିଲି ବେଳଠାରୁ ମୋ ମନ ଆଉ କେଉଁଥିରେ ଲାଗୁନାହିଁ ! କଣ କରିବି ? ସେ ରୂପ ତ ସବୁବେଳେ ମୋ ନୟନରେ ନାଚୁଛି ? ତାଙ୍କି ଭଲେ, କୁଆଡ଼େ ଆସିଥିଲେ, କିଏ ସେ ?

୧ମ ସଙ୍ଗିନୀ—ସଖି, ଆମକୁ ଗୁପ୍ତ ରଖି ଆଉରେ ପ୍ରକାଶ ଆସିଲ ନାହିଁ ତ ? ତମ ମନଟା ନାହିଁ ତ ବାନ୍ଧି ଥିବାର ଆମ୍ଭେମାନେ ଜାଣି ପାରୁଛୁ । ନାହିଁ, ନହେଲେ ତ ଏପରି ସବୁ କୁସୁମ ଦେଖାଯାଏ ନାହିଁ, କଣ, କଥା କଣ ?

୨ୟ—ସେ ଦିନ ଆମେ ପୁକରେ ପାଣି ଆଣିବାକୁ ଯା'ନ୍ତି, ଆଜ ନାହିଁ କି ଏବା ପାଣି ପାଇଁ ଯାଇ ଫେରିଲୁ ବେଳଠାରୁ ଖାଲି ଦାଣ୍ଡ ଡୋଳାଉଛି ମୁହଁ ଉଛ ଉଛ ହେଉଛନ୍ତି ।

୩ୟ—ସତ କଥା ଏବା ।

୪ର୍ଥ—ନାହିଁ କି, ଭାବରୁ କେବେ କୌଣସି ବିଷୟରେ କଷ୍ଟ ହେଲା, ତେବେ ଆମ ଆଗରେ ପ୍ରକାଶ କରିବେ ନାହିଁ କାହିଁକି ? କୁମୁଦ, ତୁମକୁ ପାଇଲୁ ବଡ଼ ଆମ୍ଭେ ଅମୂଲ୍ୟ ଧନ ପାଇଲୁ ପରି ମନେ କରୁଛୁ । ତୁମେ ଯଦି ତୁମ ମନ କଥା ଆମ ପାଖରେ ନ କହିବ, ଆମ ମନରେ କଷ୍ଟ ହେବ ।

କୁମୁଦ—ସଖିଏ ! ତୁମ୍ଭମାନଙ୍କର ମୋ ପ୍ରତି ଯେଉଁ ସ୍ନେହ ଆଦର, ତା ମୁଁ ସାତ ଜନ୍ମରେ ଶୁଝି ପାରିବି ନାହିଁ । ସେଦିନବେଳେ ମୁଁ ପାଣି ଆଣି ଫେରିବା ବେଳକୁ ଗୋଟିଏ ଭ୍ରମର ମୋ ମୁହଁରେ ବାରମ୍ବାର ବସିବାକୁ ଘୋଡ଼ାଇଲା, ମୁଁ ତାକୁ ଉଡ଼ାଉଥିବା ବେଳେ ମାଧବ ବୋଲି ଜଣେ ପ୍ରକାର ଆସିଲେ, ତୁମ୍ଭେମାନେ କଣ ଜାଣିନ କେଜାଣି !

୧ମ—ଭଉଁରଟାଏ ଘୋଡ଼ାଉଥିଲା ନାହିଁ କି ମ ?

୪ର୍ଥ—ଆରେ ଆମ କୁମୁଦଙ୍କ ମୁହଁ ତ ଗୋଟିଏ କୁସୁମ ପରି, ଫୁଲ ଫୁଟିଲେ ଯେପରି ସୌରଭ ଦେଖାଯାଏ, ତାଙ୍କ ମୁହଁଟି ସେହିପରି ଦିଶୁଛି । ଭ୍ରମର ଫୁଲ ମନେ କରି ମଧୁ ଚୁମ୍ବିବା ଆଶାରେ ଘୋଡ଼ାଉଥିବ !

୨ୟ—ହିଁ, ସେଇଆ ।

୧ମ—ମୁଁ ଅନୁମାନ କରୁଛି, ସଖିଙ୍କର ଆମର ବୋଧ-ହୁଏ ଅଳ୍ପଦିନ ମଧ୍ୟରେ ସ୍ୱାମୀଲାଭ ହେବ ।

କୁମୁଦ—(ଲଜ୍ଜାରେ ଅବନତ ମସ୍ତକ ହୋଇ) ମୋତେ ସେସବୁ ଭାବ କହିବ ନାହିଁ ।

ସଖିଏ— ଗୀତ

ନାହିଁ କି ଜାଣୁ ସଖି
ତତେ ମନ୍ଦା ରେ (ସଙ୍ଗାତ)
ଶ୍ରୀଅଙ୍ଗ ଅବଳୁ କଟା କନକଲତା
କହିବେ ସ୍ୱର୍ଗରୁ ଆମ୍ଭେ
ତୋଳିଲୁ ଫୁଲ (ତୋ ପାଇଁ)
ବୈକୁଣ୍ଠ ଭଣ୍ଡାର କରଗତରୁ ଗୂଢ଼
ତୁ ଆମର ପ୍ରାଣ ସଖି
ନେଇ ଫିଙ୍ଗୁନ ( ସଙ୍ଗାତ ରେ)
ତୁ ଜଣାଇ ଦେଲେ ଆମ୍ଭେ ମନକୁ ଜାଣୁ ।

କୁମୁଦ—ମୁଁ ତୁମ୍ଭମାନଙ୍କ ପରି ଦେବଦୁର୍ଲ୍ଲଭ ସଖିଗୁଡ଼ିଏ ପାଇ ମୋର ଜୀବନ ସାର୍ଥକ କରୁଛି । ମୋର ଆଉ କେଉଁ କଥାକୁ ଚିନ୍ତା ନାହିଁ, ବେଳ ଢେର ଆସିଲେଣି, ନିଜ ନିଜ ବାଟୀରେ ପଶ ।

୧ମ—ମୋ ପାଇଁ ଫୁଟିଲାଣି ।

( ମାଧବର ପ୍ରବେଶ )

ଋଷି—( ଋଷିକନ୍ୟାଙ୍କ ପ୍ରତି ) ମା'ମାନେ ଆମ୍ଭର ଆଜ ସୁପ୍ରଭାତ, ମଗଧ ଦେଶ ଅଧୀଶ୍ୱର ଆମ୍ଭର ଏଠାରେ ଆତିଥ୍ୟ ଗ୍ରହଣ କରିବେ, ତୁମ୍ଭେମାନେ ଯାଅ, ଶୀଘ୍ର ଅନ୍ନ ବ୍ୟଞ୍ଜନ ଆଦି ପ୍ରସ୍ତୁତ କର ।

ସକ୍ଷିଏ—ପିତା, ସମସ୍ତ ପ୍ରସ୍ତୁତ ହୋଇସାରିଛି, କେବଳ ଆପଣଙ୍କ ଅପେକ୍ଷାରେ ଥିଲୁ, ଖାଲି ଠାକୁରଙ୍କୁ ନୈବେଦ୍ୟ ଦେବା ବାକି ଅଛି ।

ଋଷି—ବହୁତ ଆଚ୍ଛା ମା, ହଁ ଆଉ ଗୋଟିଏ କଥା । କୁମୁଦ ଆମର ରାଜକନ୍ୟା, ଅବଶ୍ୟ ରାଜାଙ୍କର ପରିବେଷଣ ଶିଖିଥିବ । ସେ ଅତିଥି ସମ୍ଭ୍ରାନ୍ତ ରାଜପୁତ୍ର, ଯେପରି ରାଜପୁରରେ ମନୋଜ୍ଞ କଲ ଭଳି ସେ ମନେ କରିବେ । କେଶୀ କହିବା ବାତୁଲ ମାତ୍ର । ଆଉ ପରିବେଷଣ ଭାର କୁମୁଦଠାରେ ନ୍ୟସ୍ତ ରହିଲା । (କୁମୁଦ ପ୍ରତି) ମା ତୋ ମୁହଁଟା କାହିଁକି ଶୁଖିଲା ଦେଖାଯାଉଛି, କେଉଁଠି ରକ୍ତ ଭସ୍ମ କରିଛୁ କି, ନା ମନରେ କୌଣସି ବିଷାଦ ପଡ଼ିଛି ?

କୁମୁଦ—ନା ପିତା, ଆପଣଙ୍କ କଲ୍ୟାଣରୁ ଆଉ ସଙ୍ଗୀ ସଖୀମାନଙ୍କ କୃପାରୁ ମୁଁ ବେଶ୍ ସୁଖିଣୀ ।

ଋଷି—ତେବେ ଯାଅ ମା, ଦେଖ ସ୍ନାନ ମାର୍ଜନା ସାରି ଆସିଲେଣି, ପ୍ରସାଦ ଆଣିବାର ବନ୍ଦୋବସ୍ତ କର ।

( ପ୍ରସ୍ଥାନ )

( କେଦାର ପ୍ରବେଶ )

ଋଷି—ରାଜନ୍ ! ରାଜପୁରରେ ନାନା ଭୋଗ ବିଳାସରେ ଦିନ କଟାଉଛ; କିନ୍ତୁ ଋଷିକୁଟୀରରେ ଥରେ ମାତ୍ର ଆତିଥ୍ୟ ଗ୍ରହଣ କର ଯେ କିଛି ତ୍ରୁଟି ହେଲେ ସେ ତ୍ରୁଟି ବଡ଼ିବ, ତା ମନରେ ଧରିବ ନାହିଁ ।

କେଦାର—ପ୍ରଭୁ ! ମୁଁ ଆଜ ଆପଣଙ୍କୁ ଭଗବାନ ବୋଲି ମନେ ମନେ ଗର୍ବ କରୁଛି, ମୋର ଆଜ ସୁପ୍ରଭାତ, ଜୀବନର ସୁଖର ଦିନ ।

୧ମ ଋଷିକନ୍ୟା—( ଖାଦ୍ୟ ନେଇ ଯିବା )

୨ୟ—(ଆସନ ଦୁଇଟି ଯଥାସ୍ଥାନେ ସ୍ଥାପନ କରିବା) ।

କେଦାର -(ସ୍ୱଗତ) ଆହା ଏମାନେ ଏଣ ଋଷିକନ୍ୟା, ତା ନ ହେଲେ କି ଏତେ ରୂପବତୀ ହୋଇଥାନ୍ତେ । ଏମାନେ ବଡ଼ ଭାଗ୍ୟବତୀ ।

୩ୟ— ଜଳପାତ୍ର ଯଥାସ୍ଥାନେ ସ୍ଥାପନ)

୪ର୍ଥ —(ଲବଣ)

କେଦାର—( ସ୍ୱଗତ ) ମୁଁ ଆଜ ସ୍ୱର୍ଗୀୟ ସୁଖ ଅନୁଭବ କରୁଛି, ମୋର ଜୀବନ ଆଜ ଧନ୍ୟ ହେଲା ।

କୁମୁଦ—(ଅନ୍ନଥାଳ ନେଇ ପ୍ରବେଶ, ଋଷିଙ୍କ ନିକଟରେ ଏକ ଥାଳ ଓ ଅନ୍ୟ ଥାଳଟି ରାଜାଙ୍କ ନିକଟରେ ଦେଇ ପ୍ରସ୍ଥାନ କଲବେଳେ ରାଜା କୁମୁଦକୁ ଦେଖିବା) ( କୁମୁଦ କିଛି ଦୂରରେ ଠିଆହୋଇ ରହିବ ) ।

ରାଜା—( ସ୍ୱଗତ ) କି ଆଶ୍ଚର୍ଯ୍ୟ, ପୂର୍ବେ ଯେଉଁ ନନ୍ଦନ ଭ୍ରମେ ମୋଟି ଦୃଷ୍ଟିଗୋଚର ହେବାଦ୍ୱାରା ମୋର ହୃଦୟରୁ ଜୀବନ ଶୂନ୍ୟ ହୋଇଥିଲା, ଏ ତ ସେହି ଅକଳଙ୍କ ଚନ୍ଦ୍ରବଦନା । ମୁଁ ବର୍ତ୍ତମାନ ସ୍ୱପ୍ନ ରାଜ୍ୟରେ ନା ଜଣ ! ( ଅନ୍ୟମନସ୍କ )

ଋଷି—ବତ୍ସ ! ବସିଲ୍ କାହିଁକି ? ପ୍ରସାଦ ସେବା କର ।

କେଦାର—ପ୍ରସାଦ କାହିଁ !

ଋଷି—ତୁମର କଣ୍ଠସ୍ୱରେ, ମୁଁ ଜାଣି ପାରୁଛି ବୋଧହୁଏ ତୁମର ପୂର୍ବର ଭ୍ରମଟା ମନରୁ ଦୂରୀଭୂତ ହୋଇନାହିଁ ।

କେଦାର—ହଁ ବସୁଛି ( ଋଷି ପ୍ରସାଦ ସେବା କରିବା, ରାଜା ପ୍ରସାଦରେ ଅନ୍ୟମନସ୍କଭାବେ ହାତ ମାରିବା)

କୁମୁଦ—( ସ୍ୱଗତ ) କଣ କରିବ, ମୋର ଲୋକ ତ ଆଉ ଡାକୁନାହିଁ । ସେ ଝରଣା ନିକଟରେ ଯେଉଁ ଅବଶ୍ୟ ଲୋକଙ୍କୁ ଦେଖି ସଖୀଙ୍କୁ ଭୂତ ମନେ କରିଥିଲି, ଏତ ସେହି !

ଋଷି - ମା, ଆଉ କିଛି ଆଣିବୁ ନାହିଁ କି ?

କୁମୁଦ (କାନ୍ଥରେ ରହିଲ ଘାବରେ ପ୍ରବେଶି ବ୍ୟଞ୍ଜନ ସ୍ଥାନରେ ଅନ୍ନ ଦେବାର ଅନନ୍ତରୁ, ସଖୀମାନେ ପଛରେ ଧାବନ ଓ ଏ ଘଟଣା ଦେଖି ଆପଣା ଆପଣା ଭିତରେ ଠାରଠାର )

ଋଷି—ଏ କଣ କଲୁ ମା, ଭଲ ଯା ।

( କୁମୁଦ ପ୍ରସ୍ଥାନ )

ରାଜନ୍ ! ବୋଧହୁଏ ପ୍ରସାଦ ଭଲହୋଇ ନାହିଁ, ନାହିଁ ଜମା ତ ଖାଇଲ ନାହିଁ ।

ରାଜା—ହଁ ( ଅନ୍ୟମନସ୍କଭାବେ ) ଖାଇ ସାରିଲିଣି, ଖୁବ୍ ଆନନ୍ଦ ହୋଇଛି ।

(କୁମୁଦ ଋଷିଙ୍କ ଚରଣ ଧରିବା, କେଦାର ଅଶ୍ରୁମାର୍ଜ୍ଜନ କରାଇ ମାଗିବା, ତାଙ୍କ ଉପରକୁ କେଦାର ଉଠିବା, କୁମୁଦକୁ ଧରି ଡୋଲିରେ ଚଢ଼ାଇଲା ବେଳେ ଋଷି)

ଋଷି—ମା, ବହୁ ଚିନ୍ତା କରନା, ତୁ ସୁଖରେ ଘର କର।

୧ମ ପକ୍ଷୀ—ନାଗର, ଆମ୍ଭ ସଖୀ ଲଗିଲା (ଓଷ୍ଠ ଧରି)

୨ୟ ପକ୍ଷୀ—କୁମୁଦ, ଛାଡ଼ିଗଲୁ, ମନେ କରିବୁ (ଆଖିରୁ ଲୁହ ପୋଛିବା)

୩ୟ ପକ୍ଷୀ—ଆମକୁ ଭୁଲିବୁ ନାହିଁ।

୪ର୍ଥ ପକ୍ଷୀ—ନାଗର, ଆମ୍ଭ ପ୍ରାଣକୁ କାଢ଼ି ନେଇ କୁମୁଦ ଯାଉଛି (କୁମୁଦ ଲୁହ ପୋଛିବା, ରାଜା ଆଶ୍ୱାସନା ସଖୀମାନଙ୍କୁ ଦେବା, ଦୂତ ଡାଙ୍ଗି ଚଳାଇବା, ସମସ୍ତେ ପଛେ ପଛେ ଡାଙ୍ଗି ଧରି ଗମନ।)

ଋଷି—ହେ ହରି! ସଂସାରରେ କି ମାୟା ମମତା ଲଗାଇଛନ୍ତି। [ପ୍ରସ୍ଥାନ]

—*—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ଗୁଣ—ଅବଧାନେ ଏତା ଅଚ୍ଛା ଗଲେ, କେମିତି ଫିକର କରେଇ ଦେଲ! ଏଥର ବଦା ତ ବଦା, ଆଣ ମଦ ଆଣ।

ଅନୁ—ନିଅନ୍ତୁ ମାଲ ଭର୍ତ୍ତି।

ଗୁଣ—ଅନୁ ଭଣ ଦେଖୁଛୁ, ଦେ ଗିଲାସ ପୂରୁ ନାହିଁ, ଦେ ପୂର୍ଣ୍ଣ ଗ୍ଲାସ ଗୋଟାଏ ଦେଲୁ—

ଅନୁ—ଅଜ୍ଞ ଗିଲାସରେ ମନ ନ ମାନିଲେ ବୋତଲ ସୁଦ୍ଧା ମୁହଁରେ ଲଗେଇ ଦିଅନ୍ତୁ [ବୋତଲ ପ୍ରଦାନ, ଗୁଣ ପାନ]

ଗୁଣ—ଆଜ ଚାନ୍ଦ ପୂରା ପାଓ୍ୱାର।

ଅନୁ—ଆଜ୍ଞା, ଆପଣ ଷ୍ଟେୟାରିଙ୍ଗକୁ ଠିକ୍ ଧରିଥାନ୍ତୁ, ନୋହିଲେ ଗାଡ଼ି ଆକ୍ସିଡେଣ୍ଟ ହୋଇଯିବଟି।

ଗୁଣ—ଆରେ ନା ନା, ମୁଁ ଭଣ ଏବେ ବେହୁସିଆର ହୋଇଛି!

ଅନୁ—ଆଜ୍ଞା, ନିଶା ଖାଇବାକୁ କେତେ ଲୋକ ଘୃଣା କରନ୍ତି।

ଗୁଣ—ଜାଣୁ ନ, ନିଶାଟା କଣ ଖରାପ ଜିନିଷ? ଅନୁ! ତୁ କଣ ଜାଣୁ, ନିଶା ସେଇଁ ଜିନିଷ ତାକୁ ଟେଷ୍ଟ ପୁଣି କରିବାକୁ ହେବ। ଲୋକେ ତାର ବ୍ୟବହାର ନ ଜାଣି ଖରାପ ବୋଲି କହନ୍ତି, ନିଶା ଦୁର୍ବଳର ବଳ, ଅନାଥର ନାଥ, ଅସହାୟର ସହାୟ ତାରା, ରସିକର ହୃଦୟ ନିଧି।

ଅନୁ—ତା ଠିକ୍, ଆଜ୍ଞା କୋଉ ନିଶାକୁ କୋଉ ସ୍ୱାଦ୍ କହନ୍ତୁ ତ।

ଗୁଣ—ବର୍ତ୍ତମାନ ଆମ ଦେଶରେ ଯେ ଚଳୁଛି, ତାର ବ୍ୟବହାର ନିୟମ ଶୁଣ।
ଆରେ ଗଞ୍ଜକୁ ଚୂଡ଼ାଦସା, ଗଞ୍ଜେଇକୁ କଣ୍ଟୁଡ଼ା, ମଦକୁ ଶୁଖୁଆ ପୋଡ଼ା, ବ୍ରାଣ୍ଡିକୁ କୁକୁଡ଼ା, ଆରେ ଏଟା କଏ ରେ।

ଅନୁ—ଆଜ୍ଞା, ଜମିଦାର ବାଲୁଜଦାରକୁ ଏଠି ସ୍ଥାନକୁ ଆସିବାକୁ ହୁକୁମ ହୋଇଥିଲା, ସେଇ ବୋଧହୁଏ ଟିକେ ସେଇ ଆସିଲା। ମହାରାଜ! ମୁଁ ଟିକେ ପୋଖରୀପାଣି ଦସିଆସେ।

ଗୁଣ—ଆରେ ଆରେ, ତୁ ପୋଖରୀପାଣି ପିବୁ କଣରେ, ମୋର ତ ଲୁଗାରେ ଘଟାରେ ପଡ଼ିଲା ପଡ଼ ଭଣୀ ଯାଉଛି, କଣ କହିବାରେ ସେ ତ ଆସିଲା।

ଅନୁ—ଆଜ୍ଞା, ଆପଣ ବନ୍ଦ ହେଉନାହାନ୍ତି; ସେ ଆସିଲେ ସ୍ୱରୂପତ କରେଇଦେବେ।

ଗୁଣ—ଆରେ କଡେଇବ କଣ ରେ, ତାକୁ ଦେଖି ତ ମୋ କଲିଜା ଜାହ୍ନିକ ପାଣି ହୋଇଯାଉଛି। (ଥରିବା)

ଅନୁ—ମହାରାଜ, ଏତେ ଭୟ କାହିଁକି? ଚାଲନ୍ତୁ, ଏ ଘରରେ ଲୁଚିଯିବା।

ଗୁଣ—ଚାଲ ଚାଲ, ତାର ମୁହଁକୁ ଦେଖି ମୋର ପିଳେଇ ପାଣି ହୋଇଯାଉଛି। (ଘରରେ ଲୁଚିବା)

(ଜମିଦାର ପ୍ରବେଶ)

ଜମି—(ସ୍ୱଗତୋକ୍ତି) କାହିଁ, କୁଆଡ଼େ ଗଲେ! ଏ ଏଟା ଜଙ୍ଗଲରେ ପଶି ବଡ଼ ବଡ଼ ଜମାଦାର

କମଳା—ଦାସୀ, ଜାଣି ଅଜଣା ପରି କପଟ କରୁଛୁ, ତାଙ୍କ ବଡ଼ରାଣୀ ହୋଇ ବସିଥିଲି, ଆଜ ସାତ ପୋଇଲିଙ୍କୁ ତଳପଡ଼ିଲିଣି, ଆଉ ଅଛି ? ବିଧାତା ସିନା ଏତେ ହଟହଟା କରୁଛନ୍ତି । (କ୍ରନ୍ଦନ)

ଦାସୀ—ଦୁଃଖ କଲେ କଣ ହେବ, କର୍ମରେ ବିଧାତା ଯାହା ଲେଖିଛନ୍ତି, ତା ନିଶ୍ଚେ ଭୋଗ କରିବାକୁ ପଡ଼ିବ ।

କମଳା— ଗୀତ

( ତାଳ ଖେମଟା )

ପ୍ରାଣ ସଖୀ କହ ମୋତେ କପାଳେ ହେଲା ଏ ଦଶା ।
କେତେ ବେଳ ମାତ୍ର ଆସିଲାଣି ଘୋର ଅବଶା ।
ସଖି ଗୋ ! ମୋ ଦୁଃଖ କହିଲେ ନ ସରେ
ନାଥ ଥାଉ ଅନାଥିନୀ ହୋଇଛି ମୁଁ ଅଭାଗିନୀ
ଆଉ କଣ୍ଟକ ନ ହେବ ଭାଙ୍ଗିଲା ମୋ ଭରସା ।

ସେତ ମୋତେ ପର କରି ଦେଇ ବସିଲେଣି, ମୁଁ ଆଉ କାହାର ହେବ ।

ଦାସୀ—କାହିଁକି ? ଏମିତି କଣ କଥା ହେଲା, ମୁଁ ତ ତମ କଥାରୁ କିଛି ଅର୍ଥ ପାଉନାହିଁ ।

କମଳା— ଗୀତ

ନୂଆରାଣୀ ପ୍ରେମେ ନାଥ ରହିଲେଟି ଅବିରତ
ମୋତେ ନ ଦେଖିଲେ ସାକ୍ଷାତ ଉଡ଼ିଯାଏ ମୋ ହଂସା ।

ଦାସି ! ନୂଆରାଣୀ ଆସିଲା ଦିନଠାରୁ ନାଥ ତାଙ୍କ ପ୍ରେମରେ ସଦାବେଳେ ରତହୋଇ ମୋତେ ଆଉ ଚାହୁଁନାହାନ୍ତି, ମୁଁ ଏବେ କଅଣ କରିବ ? ଆଉ ଗୋଟିଏ କଥା ଶୁଣିଛୁ ।

ଦାସୀ—କଣ ମ ?

କମଳା— ଗୀତ

ରାଣୀଙ୍କୁ ଗର୍ଭବତୀ ହେବ ସନ୍ତାନ ସନ୍ତତି
ଅମୃ ସୁଖ ଗଲା ଲୁଟି ପଡ଼ିଲାଣି ଦୁର୍ଦ୍ଦଶା ।

ଦାସି ! ରାଣୀ ବର୍ତ୍ତମାନ ଗର୍ଭବତୀ, ଯଦି ତାର ପିଲା ପିଲା ହୁଅନ୍ତି, ତେବେ ଏ ଅଣ୍ଟୁ ବୁଢ଼ୀର କଥା ସରିଲା ।

ଗୀତ

ରଜା ରାଣୀଙ୍କର ଭାବ କେମନ୍ତେ ହେବ ଅଭାବ
ବାଳକୃଷ୍ଣ କହେ ଭାବ ଶୁଣ ଜନେ ଏ ଭରସା । ୪ ।

ଦାସି ! କଣ କଲେ ରଜା ନୂଆରାଣୀଙ୍କୁ ମନରୁ ପାଶୋରି ଦେବେ ।

ଦାସୀ—ହଇ ହୋ ମହାଦେଇ ! ନୂଆରାଣୀ ଯେବେ ଗର୍ଭବତୀ ହେଲେଣି, ତେବେ ମୃଦୁସୁଲ ବୁଢ଼ୀ ଠେଇଁ ତ ସବୁ କଥା । ତାକୁ ନାଲି ଗୁଣ୍ଡା ଦେଲେ ସେ କିଛି ଉପାୟ କରିପାରିବ ନାହିଁ ?

କମଳା—ଠିକ୍ କଥା, ଠିକ୍ କଥା, ମୋର ତ ମନେ ନ ଥିଲା, ତୁ ମୃଦୁସୁଲ ମାଉସୀକୁ ଡାକିଲୁ ।

ଦାସୀ—ମୁଁ ଯାଉଛି, ଏଇକ୍ଷଣି ଡାକିଆଣିବି ।

( ପ୍ରସ୍ଥାନ )

କମଳା—ଯଦି ମୃଦୁସୁଲ ଆସି ନୂଆରାଣୀର ଗର୍ଭଟି ନଷ୍ଟ କରିଦେବାର ବାଟ କରିଦିଏ, ତେବେ ରଜାଙ୍କ ମନରେ ନିଶ୍ଚୟ ପରିବର୍ତ୍ତନ ଆସିଯିବ ।

( ମୃଦୁସୁଲ ପ୍ରବେଶ )

ମୃଦୁ—ହଇଲେ ନାତୁଣି, କାହିଁକି ଡାକୁଥିଲୁ ମ ।

କମଳା - ମୋ ଦୁଃଖ ତ ଦେଖୁଛୁ, ସବୁ ଜାଣୁଛୁ କଣ ? ଗୋଟିଏ ଉପକାର କରିପାରିବୁ ।

ମୃଦୁ—ତୋର କଣ କହୁନାହୁଁ, ତୋର ଉପକାର କରିବ ନାହିଁ ଆଉ କାହାର କରିବ ବା । ଔଷଧରେ ହେଉ ବାଉଁଶରେ ହେଉ ଗୁଣିଆରେ ହେଉ ଫଙ୍କିରେ ହେଉ କେତେବେଳେ ତାଙ୍କ ଭରସା ଯାଏ ! ମୋର ଉଚ୍ଚାଟନ ତୋର ପାଖରେ ।

କମଳା—ଆଉ ନୂଆରାଣୀ ଗର୍ଭବତୀ ହୋଇଛି । ଯଦି ତାର ପିଲାପିଲି ହୁଅନ୍ତି, ତେବେ ଅଣ୍ଟୁବୁଢ଼ୀର କଥା ସରିଲା । ସେହିକେ ତ ସେ ଆସିଲା ଦିନୁ ମୁଁ ସାତ ପୋଇଲିଠାରୁ ତଳଲିଣି ।

ମୃଦୁ—ତୋ କଥାକୁ ଏତେ କଥା ହେଲାଣି ! କଣ ଏଡ଼େ ଝକଟେନାକୁ ସେଇ ଆସିଲା ଦିନ ମୁଁ ଜାଣିଥିଲି, ସେ ଯେତେ ଏମିତି ହୋଇଗଲାଣି ! ଏ ଜଗତରେ ଶୋଷକି ଆଉ ବଳ ନାହିଁ । ଘରେ ଗୋଡ଼ ମ ଦେଇଛୁ ପୁଅ । ମଲୁ, ବର୍ଷେ ଦିବସ ତୋଷଣେଇ କରିଥାନ୍ତେ ସିନା ଗୋଲୁ କଥା ହୁଅନ୍ତା, ଏ ଗୋଡ଼ ତଳୁ ନ ଭାଙ୍ଗୁ ।

ଦାସୀ—ଆଉ ! ଏଡ଼େ ଝକଟେ କାହାକୁ କହୁଛୁ ବା, ଖାଇ ପିଇ ସାତ ଶରଧାରେ ରହି ରହିବ

ଗୀତ

କହୁଟେ ମୁଁ ସ୍ୱର୍ଗରୁ ଫୁଲ
ତୋଳି ଆଣିଦେବି ତୋ କର
ଯାହା ମାଗ ଶରଧା ତୋର
ତାହା ଦେବି ହେମାଙ୍ଗୀ । ୧ ।

ପ୍ରିୟେ, କେଉଁ କଥା ଲାଗି ତୁମ୍ଭ ମନ ଜଳୁଛି, ସେ କଥା ପ୍ରକାଶ କର, ବର୍ତ୍ତମାନ ଆଣି ଦେଇ ପାରେ । ତୋର ବିଷଣ୍ଣ ବଦନ ଦେଖି ଏ ପ୍ରାଣ ଅସହ୍ୟ ହେଉଛି ।

ଗୀତ

ଦେଖୁ ତୋର ନୟନ ଜଳ
ଭାସୁଲଣି ବଦନାଞ୍ଚଳ
ପ୍ରାଣ ମୋର ହୁଏ ଆକୁଳ
କାହେ କର ବଗଳୀ । ୨ ।

ପ୍ରିୟେ, ନୟନରୁ ତବ ଅଶ୍ରୁଧାର ଗଡ଼ି ଗଣ୍ଡ ଭାସି ହେଲାଣି ତ ଆର୍ଦ୍ର, କହ କିବା ତବ ଅଭିଳାଷ ଏ ମୁହୂର୍ତ୍ତେ ଦେଇପାରେ ସଖି ।

କୁମୁଦ— ଗୀତ
(ସ୍ୱଗତ)

ଜୀବଧନ ଜୀବନରେ ବଞ୍ଚିବ କି ଆଉ
ଦଇବ ବାଧି ମୋଠାରେ ସାଧିଲାଣି ଦାଉ
କାହିଁ ଆସି ହେ
ଝୁରିଁ ଝୁରିଁ କାଳ ଯାଏ ସ୍ୱାମୀ ହେ ।

ନାଥ ! ଆଉ ଜୀବନରେ ବଞ୍ଚିବ ନାହିଁ, ମୋତେ ଭବିଷ୍ୟତ ଅନ୍ଧାର ଦେଖାଗଲାଣି ।

କେଦାର—ପ୍ରିୟେ, ମୁଁ ତ କିଛି ବୁଝି ପାରୁନାହିଁ କାରଣ କଣ !

କୁମୁଦ— ଗୀତ

ଏ ମର୍ମ ବେଦନା ବଢ଼ିଲାଣି ବେଳୁ ବେଳ
କହେ କି ବାହାରେ ନ ପାରୁଛି ଏକ ବୋଲ ?
ମୂକଧନ ହେ ।
ଯାଉ ପଳେ ପଳ ତୁମ୍ଭେ ସେବା ହେ । ୨ ।

ନାଥ ! ଏ ମର୍ମବେଦନା ବେଳକୁ ବେଳ ପ୍ରବଳ ଭାବରେ ବଢ଼ିଲାଣି, ଆଉ ବଞ୍ଚିବ ନାହିଁ । ଯାହା ଉପାୟ କରିବାର ଶୀଘ୍ର କରନ୍ତୁ ।

କେଦାର—ସଖି ! ମୁଁ ତ ଜାଣିପାରି ନ ଥିଲି, ବର୍ତ୍ତମାନ ତାର ବନ୍ଦୋବସ୍ତ କରି ଦେଉଛି । ଦାସୀକୁ ପଠାଇ ମୃଦୁସୁଲ ଓ ବଡ଼ରାଣୀଙ୍କୁ ତୁମ୍ଭ ନିକଟକୁ ପଠାଇ ଦେଉଛି । ସେ ତୁମ୍ଭର ସେବା ଶୁଶ୍ରୂଷା କରିବେ । ତୁମ୍ଭେ କିଛି ଭାବନା କରନା, ମୁଁ ଆସୁଛି । ( ପ୍ରସ୍ଥାନ )

କୁମୁଦ—( ସ୍ୱଗତ ) ନାଥ ତ ଆଜ୍ଞା ଲୋକଙ୍କୁ ମୋ ତତ୍ତ୍ୱ ନେବାକୁ ବନ୍ଦୋବସ୍ତ କରିବାକୁ ଗଲେ, ବଡ଼ରାଣୀ ତ ମୋର ଶିଶୁ ଦଣ୍ଡେ ଦେଖେ ନାହିଁ, ହଉ ଭଗବାନ ଯାହା କରିବେ, ମୋର କିଛି ଆପତ୍ତି ନାହିଁ । ( ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ

[ କମଳା ଓ ଦାସୀ ପ୍ରବେଶ ]

କମଳା—ଦାସୀ ଦେଖିଲୁ, ଆଜ ଅସରଣିଆ ପଡ଼ିଛି ବୋଲି କେତେ ନାଥଙ୍କର ସୁହାଗିଆ ଭାବ ଦେଖାଗଲା ।

ଦାସୀ—ସେଥିର ସବୁଦିନେ ସୁହାଗିଆ ଭାବ ହେବ, ମୃଦୁସୁଲ ନାକ ତାର କାଟ କରିଦେବ ସେ ! ଆମର ଖୁଲ୍ଲନା ସାହିକୁ ଯିବା ।

କମଳା—ନାହିଁଲେ ସେ ମାଇକିନିଆ ଖାଲି ବାଡ଼େଇ ପିଟି ହେଉଛି, ମୋତେ କାହିଁକି ଦେଖି ଜଳ ମାରୁଛି । ସେଇ ଯୋଗରୁ ମୁଁ ଏଠିକି ଚାଲେଇ ଆସିଲି । ସେ ମୃଦୁସୁଲ କଣ କରୁଛି କହୁ ।

ଦାସୀ—ହଁ, ସତେ ସେ ମାଇପିଟା ଏତେ ବଢ଼ି ବସି ହେଉଛି କାହିଁକି ? କୁଆଡ଼ୁ ତୋଉଠି ଅଧିକ ଆଜକରେ ଉଡ଼ିଯିବ । ମଲା, ଟିକିଏ ସମ୍ଭାଳି ହୋଇ ପାରୁ ନାହିଁ ? ଅତ ବଢ଼ ବଢ଼ ଲୋଭର (ମୃଦୁସୁଲ ନୂଆପୁଅ ନେଇ ପ୍ରବେଶ )
ରାଣୀ, ଦେଖିଲୁଣି କେଡ଼େ ସୁନ୍ଦରିଆ ପୁଅଟିଏ ।

କମଳା—ହଁ ସତେ କେଡ଼େ ସୁନ୍ଦର ହାତ ଗୋଡ଼ ହୋଇଛି ! ଏକା ବଢ଼ଲାଣି । ତୁ ଆଜି ଆଣିଲୁ ବେଳେ କେଉଁ ଦେଖି ନାହାନ୍ତି ?

ମହାରାଜ, ଡାଆଣୀ ପିଶାଚୁଣୀ ରକ୍ଷାସୀ ଅପ୍ସରା ଏମ୍ଭ ଭଳିଆ କେତେ କେତେ ବଣରେ ସବୁ ବସନ୍ତରେ ଭୂତ ଭବରେ ବୁଲୁଛନ୍ତି । ତାଙ୍କ ହାବୁଡ଼ରେ ପଡ଼ିଲେ ମଣିଷର ବୁଦ୍ଧିଜ୍ଞାନ ସବୁ କୁଆଡ଼େ ଯିବ । ସେ ତ ଏମିତ ରୂପ ଦେଖାଇ ଦେବ ଯେ, ଲୋକ ତାକୁ ନ ପାଇବା ପର୍ଯ୍ୟନ୍ତ ପାଗଳ ହେବ ।

ଦୂତ—ମୃତ୍ୟୁଞ୍ଜୟ ମାଉସି ! ତୁ ଯାହା କହୁଚୁ, ତା ଠିକ୍ ସତ । ମୁଁ ମୋର ଆଖିରେ ସବୁ କଥା ଦେଖିଛି । ଆମ ମନ୍ତ୍ରୀମାନଙ୍କର ଠିକ୍ ସେ ମାଈକିନିଆକୁ ଦେଖିଲାବେଳଠାରୁ ମଥାଟା ଗୋଟାଏ ଆଡ଼କୁ ଧାଇଁଲା ।

ମୃତ୍ୟୁ—ଆମ ଗାଁରେ ପରା ସେମିତ ଗୋଟାଏ ନାରୀକି ପ୍ରଧାନ ପୁଅ ସ୍ୱାଙ୍ଗରେ ଗଡ଼ଜାତଆଣୀ ସାଙ୍ଗେ ସାଙ୍ଗେ ଗୋଡ଼େଇ ଆସିଥିଲା । ଦେଖିଲୁ କେଉଁଟା ଦିନରେ ସେ କ ଘର ଥିଲା ଏକାବେଳକେ ମୂତ୍ରଯୋଗ । ମହାରାଜଙ୍କର ଧର୍ମବଳ ଥିଲା ବୋଲି, ନୋହିଲେ ଡାକିଣୀ ରକତ ଶୋଷି ଖାଇଯାଆନ୍ତାଣି ।

କେଦାର—ମୋର କର୍ମଟା ଖରାପ ।

ମୃତ୍ୟୁ—କର୍ମ ଜାଣିକ ଖରାପ, ଜାଣୁ ଜାଣୁ ଯିଏ ମନ୍ଦକର୍ମ କରିବ, ସେ ପୁଣି ପରକୁ ବଧାଚାର ଦୋଷ ଲଗାଇବ କାହିଁକି ? ସେଗୁଡ଼ା କଣ ମାଈକିନିଆ, ତେମେ ଭ୍ରମରେ ପଡ଼ିବ ବୋଲି କଣ ମୁଁ ଭ୍ରମରେ ପଡ଼ିଛି ?

କେଦାର—ଆଉ ସେ କଣ, ଏସବୁ କଥା ମୋତେ ତ ମନ୍ତ୍ରୀପରି ଜଣାଯାଉଛି !

ଦୂତ—ମହାରାଜ ! ଆପଣ ହରିଣୀ ଖାଖରେ ଯେଉଁଦିନ ଶିକାର କରୁଥିଲେ, ସେଦିନ ତ ଏହି ଏକ ମାଈକିନିଆକୁ ଦେଖି ଲଭିଥିଲେ ମନେ କରନ୍ତୁ । ଆମ୍ଭେମାନେ ତ ଆପଣଙ୍କୁ ଆଉ ପାଇବୁ ବୋଲି ଆଶା କରି ନ ଥିଲୁ ?

କେଦାର—ହଁ, ସେଦିନ କଥା ।

ମୃତ୍ୟୁ—ଗୋଟାଏ ଡେଙ୍ଗା ସେ ମାଈକିନିଆ ଛାତିରେ ଅଛି, ଆଉ ମୁଣ୍ଡଟା ତଳକୁ ଓହଳିଛି ସେଇଠୁ—

କେଦାର—ଏ ତ ବଡ଼ ଅସମ୍ଭବ କଥା ! ସେ ପିଲା କଣ ବଞ୍ଚି ଥାଏ ?

ମୃତ୍ୟୁ—ହଁ, ପିଲାଟା କୁଆଁ କୁଆଁ କରି ଭଲ ଚୁଆପରି ହେଉଥାଏ । ସେଇଠୁ ଥିଲା ଥିଲା ମୁହଁରୁ ଦୁଇଜଣା ଯୋଗୀ ବେଶ ମୁହଁଟିକା ଗୋଟିଏ ବାଟରେ ଦେଇ ଭଲ ମଣିଷ ପରି ବସିଲା । ସେ ତୁଆ ଜନ୍ମ ହେଲା କେତେବେଳେ, ପୁଣି ପଳେଇଲା କେତେବେଳେ ମୁଁ ତ ଦେଖି ନାହିଁ !

କେଦାର—ଏ ତ ବଡ଼ ତାଜବ କଥା ! ଏପରି ଘଟଣା ତ ମୁଁ କେବେ ଶୁଣି ନ ଥିଲି !

ଦୂତ—ଏ ତ ବଡ଼ ଆଶ୍ଚର୍ଯ୍ୟ କଥା ।

ମୃତ୍ୟୁ—ତେମେ ଜାଣୁ ଜାଣୁ ଏ କଥା କହୁଛ, କେବେ ଯିନା ଶୁଣି ନ ଥିଲ, ଏବେ ନିଜ ଆଖିରେ ଦେଖ ।

ଦୂତ—ମହାରାଜାଙ୍କର ସେ ପୂର୍ବ ରୂପ, ସେ ପୂର୍ବ ତେଜ ନାହିଁ ?

କେଦାର—ମୁଁ ତ ଏସବୁ ଘଟଣା ଶୁଣି ଅବାକ୍ ହୋଇଗଲିଣି । ବର୍ତ୍ତମାନ କରିବ କଣ ?

ମୃତ୍ୟୁ—ସ୍ୱାମୀ ଟିକଏ ତାକୁ ଦେଖି ଆସିବେ । ଦେଖନ୍ତୁ ସେ କଣ ଆଉ ସେ ରୂପ ଅଛି କି ? ମୁଁ ତ ଦେଖି ଆସିଛି ଝିଅଟାକୁ ଲଣ୍ଠେଇ ଦେଇ ବେଶବନ୍ଧ ହୋଇ ବସିଛି । କି ସୁନ୍ଦର ଚୁଆଟାକୁ କଣ କରିଛି ଦେଖିବେ ସ୍ୱାମୀ ।

କେଦାର—ମୋର ଆଉ ଯିବାର ପ୍ରୟୋଜନ ନାହିଁ । ଦୂତ ଶୀଘ୍ର ମୋ ଆଦେଶ ପାଳନ କର ।

(ଗୀତ)

(କହ ଦୂତ ଏ କି ଅଶୁଭ କଥା ହେଲା ଏ—ଭୁଲେ)

ଯାଅ ଦୂତ ରାକ୍ଷସୀକୁ ଦେଖାଇବୁ ପଥ ରେ
ସକଳ ଆଶା ଭରସା କରିଦେଲି ବ୍ୟର୍ଥ ରେ । ଘୋଷା ।
ଡାଆଣୀ ସେ ପିଶାଚୀ ଆରୁ ମୁଁ ନ ଥିଲି ଜାଣି
କରି ତାକୁ ପାଟରାଣୀ ଘଟିଲା ଅନର୍ଥ ରେ । ୧ ।

ଦୂତ ! ସେ ରାକ୍ଷସୀପାଖରେ ଏତେ କଥା ଥିଲା ବୋଲି ମୁଁ ଆଗରୁ ଜାଣି ନ ଥିଲି ।

ଗୀତ

ଆପେ ଜନ୍ମ କଲ୍ ପୁତ୍ର       ଗର୍ଭେ ଝେପିଲ୍ ଟେମନ୍
ମଣ୍ଡୁଛି ବଡ଼ ଅଦ୍ଭୁତ ଶୁଣା ନାହିଁ ମର୍ତ୍ତ୍ୟରେ । ୨ ।

ଦୂତ ! ସ୍ତ୍ରୀଟାଏ କେଉଁଠି ପୁତ୍ର ପ୍ରସବ କରି ଆପେ ଗର୍ଭକୁ ଝେପିଛୁ, ଏହା ଅଦ୍ଭୁତ ଓ ଅଶ୍ରୁତପୂର୍ବ ଅଟେ ! ମୋର କର୍ମରେ ଏଭଳି ଘଟିବାକୁ ଥିଲା !

ମୃଦୁ—ହି ହି ହି, ମେକନନ୍ଦା, ଅଳ ନନ୍ଦା, କୁଳ ନନ୍ଦା, ହି ହି !

କେଦାର—            ଗୀତ

ଭାଜପଶିଣୀ ଟେ ଦୁଷ୍ଟା       ମାର୍ଜାର ପ୍ରାୟେ ତା କଥା
ନାହିଁ ତାକୁ ଆଉ ଆସ୍ଥା ବାଳକୃଷ୍ଣ ବୃଥା ରେ । ୩ ।

ଦୂତ, ମୃଦୁସୁନ୍ଦ ପାଠ ଶୀଘ୍ରେ, ସେ ରାକ୍ଷସୀକୁ ବୃଦ୍ଧନ୍ତ ଅନ୍ତର କରିଦିଅ । ଆଉ ତାର ମୁହଁ ଦେଖିବ ନାହିଁ । (ପ୍ରସ୍ଥାନ)

ମୃଦୁ—ଦୂନ ଆ, ଟିକଏ ମୋ ପାଖରେ ଆ, ହି ହି ହି, ଆଜୁ ଏବେ କୋଉ ମାଇକିନିଆ ଅପୂର୍ବ ଥିଲେ ! ହି ହି, ଘମ ଘମ, ମଣିଷିରୁ ମଣିଷି ଚକ୍ଷୀ ଗୋଟେଇ କରି ବାହାଦୋଇ ଘଟୁଛନ୍ତି ! ଓହୋ ରେ ପ୍ରେମ, ମୋ ପ୍ରେମ !

ଦୂତ—ମାଉସୀ ଭଳି ସେଇଆ, ମୋତେ ଟିକଏ ଛୁଇଁ ଦେ ! ମୁଁ ଲଜ୍ଜା କରୁଛି ?

ମୃଦୁ—କୁ କରିବୁ କରିବୁ ପାଗଳା ମୋତେ ଏକା ନପଢ଼ । (ଜନାନ୍ତରେ) ଜଣେ ଟଙ୍କା ରଙ୍କୁରାଣୀ- ଠାରୁ ନେବ । (ପ୍ରସ୍ଥାନ)

—※—

ଦ୍ୱିତୀୟ ଦୃଶ୍ୟ

(ରାଜା ଶରତ ମହେନ୍ଦ୍ର, ମନ୍ତ୍ରୀ ଓ ଦୂତ)

ରାଜା—ମନ୍ତ୍ରୀ, ଆଜ ମୋର ଜୀବନର ପରିବର୍ତ୍ତନ ଘଟିଛି । ଭଗବାନ ଏତେ ଦିନେ ମୋର ଅନ୍ତର ବେଦନା ବୁଝି ସୁଫଳ ପ୍ରଦାନ କରିଛନ୍ତି ।

ମନ୍ତ୍ରୀ—କଣ ମହାରାଜ, ଶୁଣିବାକୁ ବଡ଼ ଇଚ୍ଛା ହେଉଛି । ଶୀଘ୍ର ପ୍ରକାଶ କରନ୍ତୁ ।

ରାଜା—            ଗୀତ

(କର୍ମ ମୋର ଏବେ ନାହିଁ ଭାଗ୍ୟ ବୁଝେ)
ଭାଗ୍ୟ ମୋର ଘଟିଲା ସୁଫଳ ରେ, ମନ୍ତ୍ରିବର
ଅପୂର୍ବ ଚିନ୍ତା ମନୁ ଆଜି ହେଲା ଦୂର । ପଦ ।
ସ୍ନାନାନ୍ତେ ମୁଁ ନଦୀକୂଳେ ତର୍ପଣ କରିଥିବେଳେ
ଆସି ଲାଗିଲା ମୋ କୋଳେ ସୁନ୍ଦର କୁମର ।

ମୁଁ ସ୍ନାନ ସାରି ତର୍ପଣ କରିବା ସମୟେ ଗୋଟିଏ ଶିଶୁ ପାଣି ମଧ୍ୟରେ ଥାଇ ଭାସିଭାସି ମୋ ନିକଟରେ ଲାଗିଲା ।

ମନ୍ତ୍ରୀ- କଣ ଜୀବନ୍ତ ଶିଶୁ ?

ରାଜା -            ଗୀତ

କୋଟି ସୂର୍ଯ୍ୟ ଜିଣି ତେଜ       ଦେଖିଲି ତା ମୁଖାମ୍ବୁଜ
ତେଣୁ ଚଳିଲା ମୋ ଧୈର୍ଯ୍ୟ
ହସ୍ତେ ଆଣିଲି ସତ୍ୱର । ୧ ।

ମନ୍ତ୍ରୀ, ତା ରୂପ ଦେଖି ମୋର ଭାରି ଇଚ୍ଛା ମନରେ ସ୍ନେହ ଆସିଲା । ତେଣୁ ଘରକୁ ନେଇଆସିଲି, କିନ୍ତୁ ଗୋଟିଏ କଥା ଅଭାବ ଲାଗୁଛି ।

ମନ୍ତ୍ରୀ—କଣ ମହାରାଜ ?

ରାଜା—            ଗୀତ

କ୍ଷୀର ନ ଖାଇ ଚନ୍ଦନ,       ହେଉଛି ବଡ଼ ଅଧୈର୍ଯ୍ୟ
କ୍ଷୀର ତେ ଦେବଟି ଆଜ
ଶୋକ ଅନ୍ତରେ ରେ । ୧ ।

ପିଲାଟି କ୍ଷୀର ନ ପାଇବାରୁ ବଡ଼ କଷ୍ଟ ଦାଉକୁ ଦେଉଛି । ବର୍ତ୍ତମାନ ସହର ଗୋଟାକ ସନ୍ଧାନ କରି, ସେ ପିଲାଟିକୁ ଟିକଏ କ୍ଷୀର ଦେଇ ବଞ୍ଚାଇପାରିବ । (ପ୍ରସ୍ଥାନ)

ମନ୍ତ୍ରୀ—ଦୂତ ! ସନ୍ଧାନରେ ଯା, କେଉଁଠି ପତ ଦେଖି ସ୍ତୁତି ପାଇବେ ।

ଦୂତ—ଆଜ୍ଞା ସ୍ୱାମୀ, ଆଉ ଗୋଟାଏ ଅଛି ! ନ ମିଳିଲେ କେଉଁକୁ ଆଜ୍ଞା ତାକୁ ସେଠା ଆସି ଦାବୁଡ଼େଇ ଦେବ ।

ମନ୍ତ୍ରୀ—ହଁଏ, ତୋର ସ୍ତ୍ରୀ ଆସି ନୂଆ ପୁଅକୁ କ୍ଷୀର ଦେବ !

ଦୂତ—ଜାଣିନ ତବ ନାହିଁ ? ଆମ ଖାମିନ ଘର କଥା, ଟଙ୍କା ମିଳିବ, ଶାଢ଼ୀ ମିଳିବ । ଏ ସୁଯୋଗ ଛାଡ଼ିବାକୁ ଅଛି ! ମୋତେ ମିନା ଦେଖନ୍ତୁ ଏମିତ, ମୋର ଦାନ ଉଦ୍ଧାରରେ ଲାଗେ ମନ । ଆଜି ମୋ ବଲବାଲ୍ମ ମୋ ପୋଲି ବଳେ । ତାଙ୍କୁ ଯାହା ଗୋଟିଏ ସମୟ ବେଳେ ମାଗିଦବ, ସେ କାହାକୁ କୌଣସି ଭୟରେ ମନା କରିବ ନାହିଁ ।

ମନ୍ତ୍ରୀ—ତୋର ପିଲାପିଲି କଣ ?

ଦୂତ—ଉଁହୁଁ, ଯେତେବେଳେ ଭଗବାନ ଭଣା କରିଦେବେ ନି !

ମନ୍ତ୍ରୀ—ଆଜ ରାଜପୁତ୍ରଙ୍କୁ କ୍ଷୀର ଦେବ କପଡ, ପାଗଳ !

ଦୂତ—ଟିକେଟେକେ ନାହାନ୍ତି ବୋଲି ତ, ସେ ଏବେ ନ ଦେଲେ ନାହିଁ, ସୁଆଡ଼ୁ ଗୋଟିଏ ପିଲା କାଲି ଧରି ଆଣିଲେ ଯାଇ । —*— (ପ୍ରସ୍ଥାନ)

## ତୃତୀୟ ଅଧ୍ୟାୟ

କୁମୁଦ— (ଗୀତ)

( ଚଉପାଳ )

ଆରେ ଦାରୁଣ ବଜ୍ର ତୋ କ୍ଷମା କେତେ ସହିବ ।
ସହିଲଣି ଯାହା ତାହା ଆଗେ କହିବ । ପଦ ।

ହା ରେ ଦଇବ ! ଏ ଅଭାଗିନୀ ଜୀବନରେ କେତେ ଆଉ କଷ୍ଟ ସହିବ ? କେତେ ଦଣ୍ଡ ମଗୁଛନ୍ତି ଏ ଅଲକ୍ଷଣୀ ଜୀବନ ନେବାକୁ କଣ ଯମ ଡରୁଛି ।

( ଗୀତ )

କୁଟ କରି ସପତଣୀ କଲେ ମୋତେ ଅନାଥିନୀ ।
ଏ ଯେଉ ଦୁଃଖ ଭଳନ୍ତି କେମନ୍ତେ ମୋ ପ୍ରାଣଧନ । ୧ ।

ନାଥ, ମୁଁ ମନା କରୁଥିଲି, ଜାଣିକି ମୋତେ ସପତଣୀଙ୍କୁ ସମର୍ପି ଦେଇ ଶେଷରେ ଏ ଦଣ୍ଡ ଦେଲ, ବର୍ତ୍ତମାନ କେଉଁଆଡ଼େ ଗଲ ?

( ଗୀତ )

କାଲି ଜାତ ପୁତ୍ର ଗୋଟେ ଦେଖିଲି ନାହିଁ ଏ ଲୋକେ
ଆଜ ଏ ପ୍ରାଣ ନାଥଙ୍କ ବଶେ ଦହିବ ।

ହା ରେ ଦଇବ, ଦଶମାସ ଦଶଦିନ ଭୋଗି ଜନ୍ମ ପୁତ୍ର ଦେଖି କି ଜନ୍ମ ଦେଲି ଟିକିଏ ନେତ୍ରରେ ଦେଖିବାକୁ ପାଇଲି ନାହିଁ ! ସାଉଛୁ ଭାଳ ଉଛ ଗୋଟାଏ ଆଣି ଏଠାରେ ଅଗ୍ନି ଲଗାଇ ଶ୍ୱାସ ଦେବ । ହେ ପିତା, ଭାରଦ୍ୱାଜ ତୁମ୍ଭର ଯୋଗୁ ଏ ଦଶା ।

( ଭାରଦ୍ୱାଜ ପ୍ରବେଶ କୁମୁଦ ପ୍ରତି )

ଭାରଦ୍ୱାଜ—ଧୈର୍ଯ୍ୟ ଧର ମା, ତୋର କିଛି ଅନିଷ୍ଟ ହୋଇ ନାହିଁ, ଅଳ୍ପ କାଳଶୀଘ୍ର ଅନ୍ତରେ ତୁ ପୁତ୍ର ସମ୍ପତ୍ତି ସର୍ବସ୍ୱ ଭୋଗ କରିବୁ ।

କୁମୁଦ—ପିତା, ପିତା ! ଅଭାଗିନୀ ଆପଣଙ୍କର କଣ ଅନିଷ୍ଟ କଲି ବୋଲି ଏ ଦଣ୍ଡ ଦେଲେ—

( ଭୂମିରେ ପତନ )

ଭାରଦ୍ୱାଜ—ନା ମା ଉଠ, ତୋର କିଛି ଅନିଷ୍ଟ ହୋଇ ନାହିଁ, ତୋର ସନ୍ତାନଟି ବର୍ତ୍ତମାନ ନଗରରେ ଅଛି ।

କୁମୁଦ—ପିତା ! ମୁଁ କି ଆପଣଙ୍କର କନ୍ୟା ନୁହେଁ ? ତେବେ ବୃଥାରେ କନ୍ଦୁଛନ୍ତି କାହିଁକି ?

ଭାରଦ୍ୱାଜ—କନ୍ଦୁ ନାହିଁ ମା, ଶୁଣ ।

( ଗୀତ )

( ତାଳ-ଝମ୍ପା )

ଚନ୍ଦ୍ରିକା ତୁ ଯା ତୋର ନିଜ ବାସ ରେ ।
ତୋ ଚନ୍ଦ୍ରକ ଅଛି ତୋର ପିତା ପାଶରେ । ପଦ ।

ମା ! ତୋର ପୁତ୍ର ନଷ୍ଟ ହୋଇ ନାହିଁ ପିତା ନିକଟରେ ରହିଲାଣି । ତୁ କିଛି ଭାବନା ନ କରି ସେଠାକୁ ଚାଲି ଯା ।

କୁମୁଦ—ପିତା, ଅଭାଗିନୀକୁ ଭଣ୍ଡାଉଛନ୍ତି କାହିଁକି ? ମୋ ପୁତ୍ର ସେଠାକୁ ଗଲା କିପରି ?

ଭାର— ଗୀତ

ତୋର ଗର୍ଭ ଦେଖି କ୍ଷଣେ, କଳିଙ୍ଗ କୁମରମଣି
କୁଟ କରି ସପତଣୀ ପକାଇଲେ ତା ନାଶ ରେ । ୧ ।
ମୁଦୁସୁଲି ପୁତ୍ର ନେଇ ନଈରେ ଦେଲେ ଭସାଇ ।
ତାଙ୍କୁ ତୋ ପିତାର ଭାଇ ନେଲେ ପୁତ୍ର ଆଶରେ । ୨ ।

କୁମୁଦ, ତୋର ସନ୍ତାନଟି ଯେତେବେଳେ ଜନ୍ମ ହୋଇଥିଲା, ମୁଦୁସୁଲି ଗୋଟିଏ ହାଣ୍ଡିରେ ସେ ପିଲାଟିକୁ ରଖି ନଦୀରେ ଭସାଇଦେଲେ । ତେବେ ତୋର ପିତା ସ୍ନାନ ସାରି ତର୍ପଣ କଲାବେଳେ ସେ ହାଣ୍ଡିଟି ତାଙ୍କ ନିକଟରେ ପଡ଼ିଲା । ତୋ ପିତା ସେ ପିଲାଟିର ସଙ୍ଗତ

ଅବସ୍ଥା ଦେଖି ଆନନ୍ଦରେ ବୁଡ଼ନ୍ତୁ ନେଇଚଯ଼; କିନ୍ତୁ ବର୍ତ୍ତମାନ ଗୋଟିଏ କଥା ଲାଗି ତୋର ପିତା ବଡ଼ ବ୍ୟସ୍ତ ।

( ଗୀତ )

ତୁ ସ୍ୱପ୍ନେ ସେ ସ୍ଥାନେ ଯାଇ ପୁତ୍ର ବଞ୍ଚା କ୍ଷୀର ଦେଇ
କର୍ମେ ଯା ଲିଖିଛି କିଏ କେ କରିବ ହ୍ରାସ ରେ । ୩ ।

ମା, ତୁ ଛଦ୍ମ ଭାବରେ ତୋର ପିତା ରାଜାଙ୍କୁ ଯାଇ ସନ୍ତାନଟିକୁ କ୍ଷୀର ଦେବା କାର୍ଯ୍ୟରେ ନିଯୁକ୍ତ ହୁଅ । ଚାଲ, ମୁଁ ତୋତେ ପଥ ଦେଖାଇଦେବି ।

କୁମୁଦ—ପିତା, ସତେ ମୋର ନୟନ ପିତୁଳା ଜୀବନରେ ଅଛି, ମୁଁ ଦେଖିବି । ଏ ପାପ ଚକ୍ଷୁରେ ସେ ରୂପକୁ ଦେଖିବି ?

ସାର—ମା ! ବ୍ୟସ୍ତ ହୁଅନା, ଚାଲ ପଥ ଦେଖାଇଦେବି ! ( ପ୍ରସ୍ଥାନ )

—ଃ✱ଃ—

## ଚତୁର୍ଥ ଦୃଶ୍ୟ

( ରାଜା ଓ ଦୂତ ପଶ୍ଚାତେ କୁମୁଦ ପ୍ରବେଶ )

ରାଜା—ଦୂତ, ସନ୍ତାନଟିକୁ କ୍ଷୀର ଦେବା ଲୋକ କେଉଁଠାରୁ ପାଇଲ ?

ଦୂତ—ଆଜ୍ଞା ଏହି ଲୋକଟି ।

ରାଜା —( କୁମୁଦ ପ୍ରତି ) ହଇଲୋ ଝିଅ, ତୁ କିଏ କେବୁ ?

କୁମୁଦ—ମହାରାଜ, ମୋତେ ବର୍ତ୍ତମାନ ଜର ଲୁଗା ଦେଲେ ମୁଁ ଏଠାରେ ଦାସୀ ଭାବରେ ରହି ପିଲାର ସମସ୍ତ ଖବର ବୁଝିବି । କିନ୍ତୁ ମୋର ଆପତ୍ତି, ଦାସୀ ଘରେ ଖାଇବି ନାହିଁ କି ଅନ୍ୟ ପୁରୁଷ ମୁଖ ଚାହିଁବି ନାହିଁ ।

ରାଜା—ଦୂତ, ଭଗବାନ୍ ମୋର ଅନ୍ତର ବେଦନା କଷ୍ଟେ ଜାଣିପାରିଛନ୍ତି । ଆଚ୍ଛା, ( କନ୍ୟାପ୍ରତି ) ତୋର ରହିବାର ସୁବନ୍ଦୋବସ୍ତ କରି ଦେଉଛି ।

ଗୀତ

( ଚମ୍ପକ ତୁ ଯା ତୋର—ବୁଝେ )

ଦୂତ ଦେଲେ ସୁତକୁ ଆଣି ଏ ଦାସୀ ପାଣ
କ୍ଷୀର ଦେଇ ବଞ୍ଚାଇବ ରଖି ତାର ବାସ । ପଦ ।
ଦୂତ ! ଶୀଘ୍ର ଆଣି ସନ୍ତାନଟିକୁ ଏ ଦାସୀ ସମୀପରେ ।

ଗୀତ

କୁମୁଦ ଲାଗି ସେ ପୁର    ତୋରା ହୋଇଥିଲା ମୋର
ଏ ଦାସୀ ରହୁ ଚରଣରେ ଏ ସ୍ୱଳ୍ପମାସ । ୧ ।
ଯାହା ତା ଦୈନିକ ଖାଦ୍ୟ    ଭଣ୍ଡାରୁ ଦେବ ସଜାଡ଼ି
ଆମ ଶାଗ ଭାତ ତୁଚ୍ଛ ସେବା ତାର ଆଶ । ୨ ।

ଦୂତ ଶୀଘ୍ର ଯାଇ ପୁତ୍ରକୁ ଆଣି ଏ ଦାସୀ ସମୀପରେ ଦେ, ମୁଁ ଆସୁଛି । (ପ୍ରସ୍ଥାନ)

କୁମୁଦ—ବିଧାତା, ଦୁଃଖଆଁଟା ତୋର ଖେଳ ଘର । ତୁ କେତେବେଳେ କାହାକୁ କଣ ନ କରୁଛୁ । କାହିଁ ରାଜଚକ୍ରବର୍ତ୍ତୀ ହସ୍ତରେ ଭିକ୍ଷା ଦେଲ, ପୁଣି ଯାହାଙ୍କୁ ସ୍ୱର୍ଗୀୟ ସମ୍ପଦ, ଧନ୍ୟ ତୋର ଇଚ୍ଛା !

(ଦୂତ ପୁତ୍ର ନେଇ ପ୍ରବେଶ)

ଦୂତ—(ପୁତ୍ରରେ ଆଉଁଷାଇ) "ଧୋରେ ବାଇଆ ଧୋ, ଯେଉଁ କିଆରୀରେ ପାଚିଲା ଧାନ ସେହି କିଆରୀରେ ଶୋ । "

(ଧୂଅ ଧୂଅ ଧେଇକି ନାଚ ସ୍ୱର୍ଣ୍ଣର ନାଚ ପ୍ରଭୃତି ଶିଶୁଖେଳାଇବା ଅବସ୍ଥାରେ ଓ କୁମୁଦକୁ ଦେବା ।)

ନେ ନାନ ! ପୁଅ ତ ତୋର, ଭଲ କରି ବଢ଼ାଇ ଲୁଚାଇ ଚାଣ ଚୁଣା କରିଦେ । ରାଜା ତୋ ଉପରେ ଭାରି ଭଲ ଖୁସି ଅଛନ୍ତି । ଚାଲେ, ନୂଆ କୁଆସରେ ତୋତେ ଛାଡ଼ିଦେଇ ଆସିବି ।

କୁମୁଦ—(ସ୍ୱଗତ) ଭଗବାନ, ଏତେ ଦିନେ ଅଭାଗିନୀର ମନସ୍କାମ ପୂର୍ଣ୍ଣ ହୋଇଛି, ପିତା ସାରଦାର ଏ ଅଭାଗିନୀ ଆପଣଙ୍କ ଚରଣ ତଳେ ସର୍ବଦା ଭରସା । ମୋ ପୁତ୍ର ଏହିପରି ଦୟା ରଖିଥିବେ, ମୋର ଅନ୍ୟ କେହି ସହାୟ ଭରସା ନାହାନ୍ତି, କେବଳ ତୁମ୍ଭେ । (ପ୍ରସ୍ଥାନ)

—✱—

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ

ସାରଦାର—ଏହି ତ ରାଜବାଟି, କାହିଁ କାହାର ସାକ୍ଷାତ ତ ନାହିଁ, ଅରେ କାଉଡ଼ ଭ ? (ପ୍ରକାଶ୍ୟେ) କିଏ ଅଛ, କିଏ ଅଛ ?

(ଦୂତ ପ୍ରବେଶ)

ଦୂତ—ଆପଣ କିଏ ? କି ଆପଣଙ୍କର ଲୋଡ଼ା ?

ସାର—ଆରେ, ତୋର ରାଜା ସତ୍ୱର ମୋତେ ଟିକିଏ ସାକ୍ଷାତ କରନ୍ତୁ । ତାଙ୍କଠାରେ ମୋର ବିଶେଷ କିଛି କାର୍ଯ୍ୟ ଅଛି ।

ଦୂତ—ଅଚ୍ଛା, ମୁଁ ଡାକୁଛି ଦେଉଛି, ଆପଣ ଏଠାରେ ଅପେକ୍ଷା କରନ୍ତୁ । ବର୍ତ୍ତମାନ ମନୋଦୁଃଖରେ ବସିଛନ୍ତି । (ପ୍ରସ୍ଥାନ)

(ରାଜା ପ୍ରବେଶ, ସ ରାଜାଙ୍କୁ ଦେଖି ଅବନତ ମସ୍ତକ ଓ ପ୍ରଣିପାତ)

ସାର—ବାପ ଚିରଞ୍ଜୀବୀ ହୁଅ, ଆମ୍ଭଙ୍କୁ ଚିହ୍ନି ପାରୁଛ ତ । ଏପରି ବିମର୍ଷ ଭାବରେ ଦିଶୁଥିବାର କାରଣ କଣ ?

କେଦାର—ଋଷିବର ! ଏ ଦରିଦ୍ରର ଦ୍ୱାରରେ ଆପଣଙ୍କ ପଦରେଣୁ ପଡ଼ି ମୋର ପୁଣ୍ୟ ସାର୍ଥକ ହେଲା । ଦୟା କରି ମୋର ଅନୁରୋଧ ରକ୍ଷା କରି ଆଜି ରାତି ଏଠାରେ ରହିଯାନ୍ତୁ ।

ସାର—ହଁ ରାଜା, ତୁ ଆମ୍ଭର ସ୍ନେହପାତ୍ର । ତୋର ଆତ୍ମ ପ୍ରତି ଯେପରି ସ୍ନେହ ମମତା, ଆମ୍ଭର ମଧ୍ୟ ତୋଠାରେ ସେହିପରି । ଯେତେବେଳେ କନ୍ୟାଟିଏ ହେଲା ପୁଅଟିଏ ପାଇଲୁ, ସେତେବେଳେ ଆଉ କଥା ଅଛି ! କଣ ତୁମ୍ଭର ଭଲ ଅଛି ତ ? ତାକୁ ଦେଖିବା ପାଇଁ ଋଷିକନ୍ୟାମାନେ ମୋତେ ବାଧ୍ୟ କରି ପଠାଇଲେ । ଯାଉଁ ଥିଲି, ଟିକିଏ ଆମ୍ଭଙ୍କୁ ସାକ୍ଷାତ କରାଇଦେ ।

ଦୂତ—ବାବାଜି କଣ ବସିବାକୁ ଆସିଛନ୍ତି କି ! ବାବାଜି ମହାତ୍ମା, ଖୋଜା କିଏ ତାଙ୍କ ?

ସାର—ଅରେ ଆମ୍ଭେ ବୈରାଗୀ ଲୋକ, ଆମ୍ଭେ କାହା କେଉଁଠାରୁ ପାଇବୁ ? ଆମ୍ଭେ ଆଶୀର୍ବାଦ ଛଡ଼ା କିଛି କାହାରିକୁ ଦେଇପାରିବୁ ନାହିଁ ।

କେଦାର—(ସ୍ୱଗତ) ଋଷିଙ୍କୁ କଣ ଉତ୍ତର ଦେବି ! ସେ ତାଙ୍କର କନ୍ୟାର ଦୁର୍ଦ୍ଦଶା ଶୁଣିଲେ ଆଉ କଣ ଥୟ ହେବେ !

ସାର—ରାଜନ କଣ ମନେ ମନେ ଭାବୁଛ ? ମୁଁ ତୁମ୍ଭର ଅଭ୍ୟର୍ଥନାରେ ବହୁତ ପ୍ରୀତିଲାଭ କଲି; କିନ୍ତୁ ମୋର ବିଶେଷ କାର୍ଯ୍ୟ ଅଛି । ମଠରେ କେଜାଣି କାଳେ କୌଣସି ଉପଦ୍ରବ କରେ, ସେଥି ନିମନ୍ତେ ମନ ଛନଛନ ହେଉଛି । ମୋତେ କନ୍ୟା ସତ୍ୱର ଦେଖା କରାଇଦେଲେ ମୁଁ କିଛି ଦୁଃଖ ସୁଖ ହୋଇ ବାହାରିଯିବି ।

କେଦାର—ମୁଁ କଣ ଉତ୍ତର ଦେବି ?

ସାର—ରାଜନ, କଣ ତୁମ୍ଭର ଶରୀର କିଛି ଅସୁସ୍ଥ ହୋଇଛି ?

କେଦାର—ଋଷିବର, ସେ ସ୍ତ୍ରୀର କଥା କଣ ମୁଁ ପ୍ରକାଶ କରିବି !

ସାର—( ଆଶ୍ଚର୍ଯ୍ୟ ହୋଇ ) କଣ କଣ ?

କେଦାର—ଗୀତ ( ରାମଲୀଳା ସ୍ୱର ଦାଣ୍ଡି )

ହେ ଋଷି, ମୁଁ କି କହିବି ସେ ଯୋଷାର କଥା
କହିଲେ ହେବକ୍ୟ ମୋର ଭ୍ରମିଯାଏ ମଥା । ୧ ।

ଋଷିବର ! ସେ ସ୍ତ୍ରୀଠାରେ ଏତେ ଗୁଣ ଥିଲା ବୋଲି
ମୁଁ ଜାଣି ନ ଥିଲି । ଆଉ ଆପଣ କି ମଧ୍ୟ ଚିହ୍ନି ଜାଣି
ପାରି ନ ଥିବେ ।

ସାର—କଣ, କଥା କଣ ?

ରାଜା— ଗୀତ

ତାର ମୋର ଉଦରସ୍ଥ ହେଲା ବର୍ଷରେ
ଗର୍ଭବତୀ ହୋଇ ଜାତ୍ମ ଦଶିଲା ସୁନ୍ଦର । ୨ ।

ସାର—ତହିଁ କଣ ହେଲା ?

କେଦାର— ଗୀତ

ପାଟରାଣୀ ଶୁଣେ ତାକୁ କହିଲେ ଲାଗି
ଅଶ୍ରୁ ଅବକାର ହେଲା ଭଣ୍ଡାରରୁ କାଢ଼ି । ୩ ।

ସାର—ବହୁତ ଅଚ୍ଛା, ସେ ଉଚିତ ପାଟରାଣୀଯୋଗ୍ୟ ।

ଦୂତ—ବାବାଜି ମନେ ମନେ ବିଡ଼ି ଖାଉଛି ।

ରାଜା— ଗୀତ

ପୁଣି ଏକ ଉପୁଜିଲା ଗର୍ଭରୁ ତାହାର
ସେ ପୁତ୍ରକୁ ବଳେ ମୁଡ଼ା କରିଲା ଆହାର । ୪ ।

ଋଷି—ତହିଁ କଣ ହେଲା ?

ରାଜା— ଗୀତ

ରାକ୍ଷସୀର ସବୁ ଯନ୍ତ୍ର ଦେଖିଲି ତାଠାରେ
ଉଜାଡ଼ିଲି ଦେଖି ନେଇ ରାଜ୍ୟର ସୀମାରେ । ୫ ।

ତପସ୍ୱୀ ! ମୁଁ ତାର ଏପରି ରାକ୍ଷସୀ ପ୍ରକୃତି ଦେଖି ତାକୁ ରାଜ୍ୟରୁ ତଡ଼ିଦେଲି ।

ଋଷି—ରାଜନ ! ତୁ ଏତେ ଅବୋଧ, ଆମ୍ଭେ ତୋର ଉପଯୁକ୍ତ ଯୋଗ୍ୟା କନ୍ୟା ସମର୍ପି ଦେଇଥିଲୁ, ତୁ ବୃଥା ଦୋଷ ଦେଇ ଆଗ ପଛ ନ ବିଚାରି ମୋର ଦୁହିତା କନ୍ୟାଟିକୁ ଅନାଶ୍ରିତ କରି ଜଙ୍ଗଲରେ ଛାଡ଼ି ଦେଲୁ । କହ ରାଜନ, ସ୍ୱଚକ୍ଷୁରେ ସେ କନ୍ୟାର କିଛି ମନ୍ଦ ପ୍ରକୃତି ଦେଖିଛୁ ?

ରାଜା—ନା, ଦେଖି ନାହିଁ । ଯାହା ଶୁଣିଲି ତାହା ହିଁ ମୋର ମନକୁ ବିଶ୍ୱାସ ଆସିଲା । ଆଉ ତାର ମୁଖ ଦର୍ଶନ କରିବାକୁ ମୋର ମନ ବଳିଲା ନାହିଁ ।

ଋଷି—ରାଜନ, ତୁ ନିର୍ଦ୍ଦୋଷୀ ରାଜକନ୍ୟାକୁ ଯୁକ୍ତିହୀନ ଦଣ୍ଡ ଦେଇଛୁ । ଏହାର ଶାସ୍ତି ନିଶ୍ଚେ ଭୋଗ କରିବୁ । ମୁଁ ଯାଉଛି । (ପ୍ରସ୍ଥାନୋଦ୍ୟତ)

ରାଜା – ତପସ୍ୱୀ, କ୍ଷମା କରନ୍ତୁ, କଣ ଏଥିରେ କିଛି ଗୂଢ଼ ମର୍ମ ଅଛି ?

ଋଷି—ନିଶ୍ଚୟ, ତୋର ବଡ଼ରାଣୀ ଓ ମନ୍ତ୍ରୀପୁଅ କୁକର୍ମ କରି ତୋର ପ୍ରିୟାକୁ ତୋ ନିକଟରୁ ବଞ୍ଚିତ କରାଇ ଦେଇଛନ୍ତି । ଯଦି ତୋର ସ୍ତ୍ରୀ ଆଉ ତୋର ସେହି ନବପ୍ରସୂତ ପୁଅଟିକୁ ଦେଖିବାକୁ ଇଚ୍ଛା, ତେବେ ଆମ୍ଭ ସଙ୍ଗରେ ଆ ।

ରାଜା—ମୁଁ ଅଜ୍ଞାନ, କିଛି ଭେଦ ଜାଣେ ନାହିଁ, ମୋର ପୁଅ ଅଛି, ସ୍ତ୍ରୀ ଅଛି !

ଋଷି—ଆମ୍ଭେ କନ୍ୟାର ଦୃଷ୍ଟି ଉପରେ ତତ୍ତ୍ୱ ନ ଥିଲେ କନ୍ୟା ନିଶ୍ଚୟ ପ୍ରାଣ ହରାଇ ଦେଇଥାନ୍ତା । ସେ ପୁଅ କନ୍ୟା ଉଭୟ ଆନନ୍ଦରେ ଅଛନ୍ତି, ଥରେ ଯାଇ ଦେଖି ପାରିଲେ ସମସ୍ତ ବିଷୟ ବୁଝିପାରିବୁ ।

କେଦାର—ତପସ୍ୱୀ, ଅଜ୍ଞାନରେ ଆପଣଙ୍କ ନିକଟରେ ଦୋଷୀ ହୋଇଛୁ । ମୋତେ ପଥ ଦେଖାନ୍ତୁ । ସେ ଧନକୁ ମୁଁ ଦେଖିବ ।

ଋଷି—ଆସ ତେବେ । (ପ୍ରସ୍ଥାନ)



( ଦ୍ୱିତୀୟ ଦୃଶ୍ୟ )

( ଗୁଣସାଗର ଓ ଅଜୁ ପ୍ରବେଶ )

ଗୁଣ—ଅଜୁ, ପୁଣି ଗୋଟାଏ ବ୍ୟାପାର ଆସି ଉପୁଜିଲାଣି । କଣ କରିବା ରେ ?

ଅଜୁ—ବ୍ୟାପାର କଣ ମୁଁ ତ ଜାଣେ ନାହିଁ !

ଗୁଣ—ରାଜା ଯେଉଁ ପିଲାଟିକୁ ନଈରୁ ପାଇ କରି ଆଣିଥିଲେ, ସେ କେତେଟା ଦିନରେ କଣ ହୋଇଗଲାଣି ରେ । ରାଜା ତାକୁ ଭାରି ପଢ଼ା ଶୁଣା କରାଉଛି, ତାକୁ ବୋଧେ ରାଜ୍ୟ ଦେବ ।

ଅଜୁ—ଆଜ୍ଞା, ଆମ୍ଭେ କଣ ଏପରି ଉମେଦାରି କରି କରି ଦିନ ଯିବ ।

ଗୁଣ—ଅଜୁ "ଉପାୟ କରି ନାନା ମତେ, ପଣ୍ଡିତ କର୍ମର ଆଦ୍ୟନ୍ତେ" ଚେଷ୍ଟା କରିବା । ଛାଡ଼ିବା କାହିଁକି ? ଆଚ୍ଛା, ସେ ଟୋକା ବିନାଶ ହେବାର ବାଟ କିଛି କରିପାରିବୁ ?

ଅଜୁ—ଆଜ୍ଞା, ମାରିବାକୁ ବସିଲେ ତ ଗୋଟା ମିନଟକୁ ଅଖଟ, ତେବେ ଗୁପ୍ତ ରୂପରେ ମାମଲତ କଲେ ଭଲ ।

ଗୁଣ—ଆଚ୍ଛା, ସେ ଟୋକା ତ ସେ ଦାସୀ ପାଖରେ ସଦାବେଳେ ରହୁଛି, ସେ ଦାସୀକୁ ଭଗାଇ କଲେ ଅଳ୍ପେରେ ଆମ୍ଭ ଅଭିଳାଷ ପୂର୍ଣ୍ଣ ହୋଇ ପାରନ୍ତା ।

ଅଜୁ—ମହାରାଜ, ଦାସୀଟା ଭାରି ସୁଆନ ଅଛି, ବିଶ୍ୱାସ ପାତ୍ର ଉଚିତ ଏକଟେ । ଦାସୀ ହେଲେ କଣ ହେଲା, ତା ରୂପ ଦେଖିଲେ ମୁନି ଋଷି ଟଳି-ପଡ଼ିବ ।

ଗୁଣ—ଅଜୁ, ସ୍ତ୍ରୀମାନେ ସ୍ୱଭାବତଃ କାମୀ । ଅତଏବ ଜଣେ ରସିକ ରାଜାଙ୍କ ଅନୁରୋଧ ରକ୍ଷା କରିବାକୁ ସେ ଆପ୍ତ କୁଣ୍ଠିତ ହେବ ନାହିଁ । ଅଜୁ, ତୁ ଭଲ ଏ ବଢ଼ିଆ ଉପାୟ ପଟାପଟି କରି ଦେଇ ଆସିବୁ !

ଅଜୁ—ଆଜ୍ଞା, ବୁଝିଲୁ । ଦାସୀ ଜଣେ ସାମାନ୍ୟ ଲୋକଟାଏ, ମୋଠାରୁ କଣ ବଞ୍ଚିଯିବ ?

ଗୁଣ—ତୁ ଯା, ମୁଁ ପ୍ରେକ୍ଷାଗାରରେ ଅପେକ୍ଷା କରି ବସିଛି । ନେ, ଖଣ୍ଡେ ଚିଠି ନେଇ ଯା ।

ଅଜୁ—ଦଅନ୍ତୁ ।

ଗୁଣ—ଆରେ ତୁ ଲେଖ, ମୁଁ ଡାକୁଛି ।

ଅଜୁ—( କାଗଜ କଲମ ଧରି ) ଡାକନ୍ତୁ ।

ଗୁଣ—ଲେଖ, ଶ୍ରୀ ଶ୍ରୀ ରାଜାଧିରାଜ ଗୁଣସାଗରଙ୍କର ଶ୍ରୀମତୀ ରସିକାବରଙ୍କୁ ସେ କଥି । ଆମ୍ଭେ ତୁମ୍ଭର ରୂପରେ ମୁଗ୍ଧ ହୋଇ ଆମ୍ଭର ତୁମ୍ଭଙ୍କୁ ଆମ୍ଭ ହୃଦୟ ସିଂହାସନରେ ଅଧିକାରିଣୀ କରିବା ଉଦ୍ଦେଶ୍ୟରେ ମନ ବଳାଇଛୁ ! ତୁମ୍ଭେ ଏ ପତ୍ରବାହକଠାରୁ ସମସ୍ତ ହାଲ ବୁଝି ଅକୁଣ୍ଠିତ ଭାବରେ ଆମ୍ଭର ଅଭିଳାଷ ପୂର୍ଣ୍ଣ କରିବାକୁ ସ୍ୱୀକୃତ ହେବ । ଇତି । ତୁମ୍ଭର ସେବାପ୍ରାର୍ଥୀ ରସିକ ଚୂଡ଼ାମଣି ନୂତନ ରାଜା ଗୁଣସାଗର । ଆଉ ଲେଖ—

ପୁନଶ୍ଚ ଥାଉ କି ଆମ୍ଭେ ଏହି ପୁଷ୍ପ ଉଦ୍ୟାନ ପ୍ରେକ୍ଷାଗାରରେ ତୁମ୍ଭଙ୍କୁ ଅପେକ୍ଷା କରି ରହିଲୁ । ତୁମ୍ଭେ ଆମ୍ଭର ଅଭିଳାଷ ପୂର୍ଣ୍ଣ କଲେ ଆମ୍ଭେ ତୁମ୍ଭଙ୍କୁ ରାଜରାଣୀ କରିବାର ବନ୍ଦୋବସ୍ତ କରିବୁ । ସମସ୍ତ ଅଭିବ, ସାକ୍ଷାତରେ ସମସ୍ତ କଥାବାର୍ତ୍ତା ।

—*—                (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

କୁମୁଦ—ନା, ମୁଁ କିଛି ଶୁଣିବ ନାହିଁ । ମୋତେ କାହିଁକି ଏତେ ବ୍ୟସ୍ତ କରୁଛ ।

ଅଜୁ—ନା, ମୁଁ ତ କିଛି ବ୍ୟସ୍ତ କରୁ ନାହିଁ ! ତୁମ୍ଭେ ଏ ପତ୍ର ଖଣ୍ଡିକ ନିଅ । ଆଉ ତାର ଉତ୍ତର କଣ ଦଉଛ ଦିଅ ।                ( ପତ୍ର ପ୍ରଦାନ )

କୁମୁଦ—(ପତ୍ରପଢ଼ି) ଭଗବାନ, ଏ କି ପରୀକ୍ଷା ! ମୁଁ ତ ଏତେଦିନ ହେଲା ଏହି ସ୍ଥାନରେ ନିର୍ଭୟରେ ରହିଥିଲି, ଆଜି ତ ଏ ପାଷଣ୍ଡମାନେ ମୋର ଜୀବନ ମଡ଼ନ ନେବାକୁ ବସିଲେଣି । କଣ କରିବି, ଏ ଅତ୍ୟାଚାର ଯେବେ ବଳାତ୍କାରରେ ମୋତେ ଆକ୍ରମଣ କରନ୍ତି, ମୋର ଗତି କଣ ? ହା ବିଧାତ ! ମୋତେ ସ୍ୱାମୀ ସୁଖରୁ ବଞ୍ଚିତ କରିଲ କଣ ଏ ପାଷଣ୍ଡଙ୍କ କବଳରେ ପକାଇବୁ !

ଅଜୁ—କଣ କହୁଛନ୍ତି, ମୁଁ ଯିବି ପରା । ସେଠି ସେ ପରା ବ୍ୟସ୍ତ ହେଉଥିବେ ।

କୁମୁଦ—କେଉଁଠିକି ଯିବୁ ଅତ୍ୟାଚାରୀ, ମୋତେ କଣ କରି ପାରିଲୁ କି ! ତୁ ଜାଣୁ ମୁଁ କିଏ ? ମୂର୍ଖ, କାହା ଅନୁମତିରେ ଏ ଗୃହରେ ପ୍ରବେଶ କଲୁ ? ଦେଖିବୁ ବର୍ତ୍ତମାନ ?

ଅଜୁ—ବାବା ରେ ! ଏ ଜଣେ ତ ଧକା, ସୁନ୍ଦରୀ, ସ୍ୱାଭାବିକୁ ଡିଙ୍କିଏ ଗୁଣ୍ଡିଲ, ଆମକୁ ସିନା ଭଲଭାବରେ ଦେଉ-ଥିଲ, ଦେଖିଲ ଏ କିଏ ? ( ଅନ୍ତରୁ ଦେଖାଇ )

କୁମୁଦ—(ସ୍ୱଗତ) ଆଜି ଏ କି କାଣ୍ଡ, ଜନେ କାହେ ଏକଥା ଘଟି ନ ଥିଲା । ମୁଁ ନିଶ୍ଚୟ ଜାଣିଲି, ଏ ପାଷଣ୍ଡ ମୋ ରୂପରେ ମୁଗ୍ଧ ହୋଇ ମୋର ସତୀତ୍ୱ ନଷ୍ଟ କରିବାକୁ ମନ ବଳାଇଛନ୍ତି । ଭଗବାନ, ହେ ଅନାଥର ନାଥ, ହେ ଦ୍ରୌପଦୀ-ଲଜ୍ଜାନିବାରକ, ମୋର ହୃଦୟରେ ବଳ ଦିଅ ।

ଗୁଣ ସାଗର—ପ୍ରବେଶ, (ଅଜୁ ପ୍ରତି) ହେଲା ।

ଅଜୁ—(ଗୁଣ ନିକଟକୁ ଯାଇ) ମହାରାଜ, ସେ ଯେଉଁ ଧମକ ଦେଖାଉଛି, କଣ ଶୁଣିବେ !

ଗୁଣ—କଣ ସାମାନ୍ୟ ସ୍ତ୍ରୀଟା ଧମକେଇଦେବ ! ଆଉ କିଏ ଅଛି ?

ଅଜୁ—ନାହିଁ, ସେ ଏକା ।

ଗୁଣ—ଚାଲିଲୁ ! (କୁମୁଦ ପ୍ରତି) ହେ ସୁନ୍ଦରି ! କଣ ଆମ କଥା ବୁଝିଲ ହେଉଛି ?

କୁମୁଦ—ମୋଠାରେ କଣ ଅଛି ?

ଗୁଣ—ତୁମଠାରେ କଣ ଅଛି, ତୁମ୍ଭେ ଜାଣି ନାହଁ ? ତେବେ ଆମ୍ଭର ମାତୃଣି ଗୀତ ଶୁଣ ।

ଗୀତ

( କଣ ଗୋ ଲଳନା—ତୁଣ୍ଡ )

ନବ ରସିକା ତୋ    ରସେ ରସିବାକୁ
ବହୁ ଆଶ କରିଅଛି ମୁହିଁ
ହସି ଭବେ ଭଣ    କଣ ମୋତେ ଯେତ
ଆଉ ଲୁଗାବନ ଭୂଇଁ ତୁହ ।

ହେ ସୁନ୍ଦରି ! କନ୍ଦର୍ପକୁ ତୋତେ ଆଶା କରି କର୍ଣ୍ଣକୁ ସ୍ୱତନ୍ତ୍ର ସ୍ୱର୍ଗର ପଥ ଜଣାଇ ବସିଛୁ । ଆମ୍ଭେ ଯୁବା, ତୁ

ସୁନ୍ଦରୀ, ଆଉ ଲଜ୍ଜା କାହିଁକି ? ଆସ ଏ ହୃଦୟକୁ ପ୍ରେମ ପିପାସା ମେଣ୍ଟାଇ ଦିଅ ।

ଗୀତ

ଆମ୍ଭେ ଏ ରାଜ୍ୟର ଅଟୁଁ ରାଜେଶ୍ବର
ତୁ ଆମ୍ଭର ହେଲେ ପ୍ରାଣସଙ୍ଗ ।
ସୁଖେ ଦବା ନଶି କଟାଇବୁ କମି
ବୃଥା କର୍ପା କରୁ ମାନ ବଙ୍କ । ୧ ।

ଆମ୍ଭଙ୍କୁ ତୁ ଭଜ ହେଲେ ଏ ବଭବ ଭୋଗ କରିବୁ ।

ଆରେ ସୁମାକର ! ନ କର ଉତ୍ତ୍ୟକ୍ତ
ମାର ଶରେ ମରୁଛି ମୁଁ ସଙ୍ଗ,
ତୁ ସୁରତ ଦାନ ଦେଇ ଏ ଜୀବନ
ରଖ, ନାହିଁ ପତ କର ନାହିଁ ।

ସଖି ! ତନ୍ମଧ୍ୟେ ପ୍ରୟୋଜନ ନାହିଁ ।

ଅଜୁ—ଆସୁନ, ଭିଁ ; ଦେଖ କଏ ତୁମ୍ଭଙ୍କୁ ମାଲୁନ ଦେଇ ନାହିଁ କି ? ଗୋଲକ ପଣ କରିବ, ଗନ୍ଧାଉଛି ?

ଗୁଣ—ଅଜୁ ସେପରି କଥା ମନରେ କୌଣସି କଷ୍ଟ କରିବେ ( ସ୍ତ୍ରୀ ପ୍ରତି ) ଆଉ ଅପମାନ କରନା ।

କୁମୁଦ—ଲଜ୍ଜା ଗଲା, ମାନ ଗଲା, ମନରୁ ଗଲା ! ଓଃ କି ବଡ଼ଗଣ୍ଡରେ ପଡ଼ିଲି ! ଭଗବାନ ତୁମେ ହିଁ ଭରସା ।

ଗୁଣ—କଣ ଏତେ ଭାବୁଛ ?

କୁମୁଦ—ବର୍ତ୍ତମାନ ସୁରେନ୍ଦ୍ର ରଜାଙ୍କୁ ଫେରୁଥିବ ମୋତେ କ୍ଷମାଦଅ, ଅନ୍ୟ ସମୟକୁ ଆସିବ ।

ଗୁଣ—ସ୍ୱାନା କଣ କଥା ? ଯାହା ହେବାର ହେଉ ଆମ୍ଭେ ଏ ସୁଯୋଗ ଛାଡ଼ିପିବୁ ନାହିଁ ।

କୁମୁଦ—ମୁଁ ତୁମ୍ଭ ଦୁଇଜଣଙ୍କ ମଧ୍ୟରୁ ଜଣଙ୍କୁ ଗୋଟିଏ କଥା କହିବି ।

ଗୁଣ—କାହାକୁ ?

କୁମୁଦ—କଏ ଜଣେ ମୋ ପାଖରେ ଆସ ।

ଗୁଣ—ମୁଁ ତେବେ ଯାଉଛି, ସ୍ୱଳ କଣ କହିବ ତ ମୋ ଆଗରେ କହିବ ( ଉଠି )

ଅଜୁ—(ଗୁଣରେ ହସ୍ତଧରି ବସାଇ) ତୋହଲେ ମୁଁ ଯାଉଛି ତୁମ୍ଭେ ଥାଅ ।

ଗୁଣ—( ହସ୍ତ ଫୋପାଡ଼ ଦେଇ ) ମୁଁ ଯାଏ ।

ଅଜୁ—ଭିଁ, ସେମିତି କଥାକୁ କେହି ସିବାନାହିଁ, ସେ ଯାହା କହିବେ ଆମ୍ଭ ଦୁଇଜଣଙ୍କୁ କହନ୍ତୁ । କାହିଁକି ଗୋଟାଏ ସାମାନ୍ୟ କଥାରେ କପଟ ରଖିବ ?

କୁମୁଦ—ଅସମୟଟା—କାଳେ କେହି ଗୁଳ ଆସିବ ।

ଗୁଣ—ଆସୁ, କଏ ଆସିବ । କେହି ଗୋଟାଏ ଆମ କଥାରେ ପାଟି ଫିଟାଇବେ ଏମିତ ତା କାପରେ କ୍ଷମତା ଅଛି ! ଏ ରାଜ୍ୟ ସାରୁ ଆମ୍ଭକୁ କଏ ନ ଜାଣେ ? ତୁମ୍ଭେ ସେ ସବୁ ବିଷୟକୁ କୌଣସି ଭୟ ରଖନା

କୁମୁଦ—ଏମିତ ତରତରି କାହିଁକି ହେଉଛନ୍ତି ? ଟିକଏ ବସିଯାନ୍ତୁ । ମୁଁ ଏ ଲୁଗା ଗାଲଟି ପକାଏ । ଆଉ ଅନ୍ୟ ସମୟକୁ ଆସିଥିଲେ ଭଲ ହୋଇ ନ ଥାନ୍ତା ? କାଳେ କଏ ଆସିବ । ମୋ ମନରେ ଭୟ ଆସୁଛି ।

ଗୁଣ—ତେମେ କାହାର ଦରକାର କବାଟଟା ଭଲ କରି ଦିଅ, ସିଏ ଆସିବ ଆସୁଥାଉ ।

କୁମୁଦ—ତୁମ୍ଭ ଦୁହିଁଙ୍କ ଛଡ଼ା ଏ କଥା ଯେପରି କେହି ଲେଶମାତ୍ର ନ ଜାଣିବେ—ନାହିଁ ?

ଗୁଣ—ଆମ୍ଭଙ୍କୁ ଧବଳେଶ୍ୱରଙ୍କ ଦେଖି,-ତମଠେଇଁ ଗୋଟାଏ କପଟ ?

କୁମୁଦ—ପ୍ରକୃତ ସେ ଭ୍ରମର ଜାତ ।

ଅଜୁ—ସେ ଗୋଟାଏ କଥା, ତେମେ କବାଟଟା ଭଲକରି କଳଦିଅ ।

କୁମୁଦ—ସେ ଚୋକାଟାକୁ ଡରମାଡ଼ୁଛି, କାଳେ ଆସି ପଡ଼ୁଥିବାଏ ; ରଜାଙ୍କୁ କହି ମୋତେ ଧରା ପକାଇ ଦେବ ।

ଗୁଣ—ନା, ନା, ସେ ସବୁ ବିଷୟରେ ଏତେ ଭୟ କରନା, ଆଉ ଏମିତ କଥା କହୁ କହୁ ବେଳଯିବ । ତେମେ କବାଟଟା ଦେବଟି ?

କୁମୁଦ—ଦଉଛି ତମ ଓଖରେ ପାନ ଅଛି କି ?

ଗୁଣ—ନଦ କି ନ୍ଥ ? ଏକ ଗୁଣ୍ଡିଆ ।

କୁମୁଦ—ଉଁହୁଁ, ମୁଁ ଗୁଣ୍ଡି ଖାଏନାହିଁ ।

ଗୁଣ—ଆଚ୍ଛା କୁହ୍ନ ପଡୁଆ ନାହିଁ । ଅଜୁ, ତୁ ପାନରେ
ଚୂନ ଲଗାଉଛୁଟି ମୁଁ ଗୁଆ ଗଣ୍ଡି କରୁଛି—ପୁଣି
ହୋଇଯିବ । ତେମେ ଯାଅ କବାଟ କଅ । ଆସିଲ
ବେଳକୁ ପାନ ଠିକ୍‌ହୋଇ ସାଇଥିବ । ଯାଅ ।
(ପାନ ଭାଙ୍ଗିବା ଅଭିନୟ)
କୁମୁଦ—(ସ୍ୱଗତ) ବଞ୍ଚିବ ବଞ୍ଚିବ (ପ୍ରସ୍ଥାନ କବାଟ
ବାହାର ପାଖରୁ ଦେବା)
ଗୁଣ—ଅଜୁ ମାଇକିନିଆଟା ବଡ଼ ସୁନ୍ଦର ଲୋକ, ତା
କଥାଗୁଡ଼ାକ କେଡ଼େ ମିଠା ।
ଅଜୁ—ମହାରାଜ, ମୁଁ ପଢ଼ିଲେ ସେପରି ତା ମିଷ୍ଟାସ
ଦେଖିଥିଲି ମୁଁ ଭାବିଲି ସ୍ତ୍ରୀ ସଙ୍ଗରେ ପଡ଼ିବା ବଡ଼
ଅସମ୍ଭବ, କିନ୍ତୁ ମଣକୁ ପୁଣି ଏମିତ ଥିଲି ।
ଗୁଣ—ସ୍ତ୍ରୀମାନଙ୍କର ମୋ ଜୋଖାଏ ସ୍ୱଭାବ !
ଅଜୁ ଏଥର ବନସନ୍ତ ଏକଟି ଆଡ଼ା ।
ଗୁଣ—ହୁ—ହିଁ (ଚୋବା ପକାଇ ଅଣ୍ଟୁ ହଲାଇବା)
ଅଜୁ—ଏତେବେଳେ ଯା ଏକଣ କବାଟ ଦେଉଥିବ କି ?
ଗୁଣ—ଡାକୁନାହିଁ ।
ଅଜୁ—ଓ, କୁଆଡ଼େ ଗଲ ମ (ନେପଥ୍ୟକୁ ଚାହିଁ)
ଜାଣିକି ଶୁଣୁନାହିଁ ?
ଗୁଣ—କୁଆଡ଼େ ପଳେଇଲା କି ?
ଅଜୁ—ମୁଁ ଦେଖେଁ କବାଟଟା କିଏ ସେ ପାଖରୁ
କିଆଗଲା ପରି ଜଣାଗଲା ।
ଗୁଣ—(ଠେଲିଦେଇ ଦେଖ୍ ବେ
ଅଜୁ—ଦେଖି) ହେ ସର୍ବନାଶ !
ଗୁଣ—କରେ କଣ ?
ଅଜୁ—ଆରେ କବାଟ ମୋ ପାଖରୁ ବନ୍ଦ ମଲି ରେ
ମଲେ !
ଗୁଣ—ଆରେ ମାଇକିନିଆ କୁଆଡ଼େ ଗଲା ?
ଅଜୁ—ମାଇକିନିଆ ଚମ୍ପଟ ।
ଗୁଣ—ଆଉ କୌଣସି ଯିବାର ବାଟ ନାହିଁ ?
ଅଜୁ—ଅଲ୍ଲା, ମଣିଷ ତ ମଣିଷ—ଜନ୍ତୁ ପିମ୍ପୁଡ଼ି ଗଳି-
ଯିବାର ବାଟ ନାହିଁ । ସେ ତ ରଜାଙ୍କୁ ଏ କଥା
କହି ଆମକୁ ଧରାଇ ଦେବ, ସେ ମାଇ-
କିନିଆ ତ ପଳାଟଏ ।

ଗୁଣ—(ଭୟରେ) ଆରେ, କହିବା କଣ ରେ ।
ଅଜୁ—ମଲେ ନ ! କି ଅପମାନରେ ? (ପାଣି ଖଣ୍ଡମାଣ)
ଯିବା କୁଆଡ଼େ ?
ଗୁଣ—(ନେପଥ୍ୟେ ପଦଶବ୍ଦ) ହେଇ କିଏ ଆସିଲାଣି ।
ଅଜୁ—ଚାଲ ଯେ ଖଟତଳେ ପଶିଯିବା ।
( ତଥାକରଣ ଓ ଖଟତଳେ ପଶି ମୁଣ୍ଡ ବାହାରକୁ
କାଢ଼ିବା । ବାହାରେ ସୁରେନ୍ଦ୍ର ମା' ମା' ଶବ୍ଦ )
ଗୁଣ—ଆରେ, ସେ ଟୋକା ତ ଆସିଲା । ହେ, ଏଠି ତ
ଦେଖାଯାଉଛି । ଚାଲ ସେ ଚୁଲା ଭିତରକୁ ଯିବା
(ତଥାକରଣ) (ବାରଯାଗା ଏଠି ସେଠି ହେବା
ଅଭିନୟ ।)
( ସୁରେନ୍ଦ୍ର ଦ୍ୱାର ଖୋଲି ଗୃହରେ ପ୍ରବେଶ )
ସୁରେନ୍ଦ୍ର—ମା ! ମା ! କୁଆଡ଼େ ଯାଇଛୁ ? ଏ କଣ
ଗୋଟାଏ ଦୁଲକନା ହେଲା (ଜରେଣି ସ୍କୁବିବା !)
ଗୁଣ—ଅଜୁ ଏ ତ ଏକା, ଦେଖିଲା ଦାମ କରିଦେବା
( ଠାରରେ ) ।
ଅଜୁ—କହୁଛ କଣ ? ଏହି ଟୋକା ଆମର ଚର ଶତ୍ରୁ ।
ବର୍ତ୍ତମାନ ଯାହା କରିବାର ଦେଖିଲି କାମ କରି-
ଦେବା । ଆଉ ମାଇକିନିଆର ଆମ ପ୍ରତି ଅସଦ୍
ବ୍ୟବହାରର ପ୍ରତିଶୋଧ ଏହି ଟୋକାଠାରୁ ନେଇ
ଯିବା ।
ଗୁଣ—ଧର ଯାହା ହେବାର ହେବ । (ଉଠିବା)
ସୁର—କିଏ, ଏ କିଏ ? ମା' ମା !
ଅଜୁ—ଆଉ ମା, ଚଳ ରେ (କହି ହସ୍ତ ଧରି ପକାଇ)
ସୁରେନ୍ଦ୍ର—ମା', ମା' (ଉଚ୍ଚସ୍ୱରେ) ।
ଗୁଣ—(ତିନ ମୁହିଁକୁ ମାଡ଼ିବସି) ଅଜୁ, ଏମିତ ଧରି ଟେକି
ନେଇ ପଳାଇବା, ଏଠି ଆଉ କିଛି କାମ ନାହିଁ ।
ଅଜୁ—ହିଁ ଚାଲନ୍ତୁ, ( ପ୍ରସ୍ଥାନ କଲାବେଳେ ସୁର—ମା'
ମା' ଡାକ ଛୁଟିଟିଏ ହେବ )

—*—

## ଚତୁର୍ଥ ଦୃଶ୍ୟ

( ରଜା, ଦୂତ, କୁମୁଦ )

ରଜା—କାହିଁ କଏ ?

କୁମୁଦ—(ସ୍ୱଗତ) ମୁଁ ଦ୍ୱାର ବନ୍ଦ କରି ଯାଇଥିଲି, ଦ୍ୱାର ଖୋଲିଲା କଏ ? ବୋଧହୁଏ ସୁରେନ୍ଦ୍ର ଆସି ଦ୍ୱାର ଖୋଲିବାରୁ ସ୍ୱେର ବାହାରି ପଳାଇଛି । (ପ୍ରକାଶ୍ୟେ) ମୁଁ ଦ୍ୱାର ବନ୍ଦ କରିଥିଲି ସୁରେନ୍ଦ୍ର ଉଦ୍ୟାନବନରୁ ଆସି ଦ୍ୱାର ଖୋଲିଛି, ଦେଖ ତ ତାର ବସ୍ତ୍ର ବସ୍ତାନି ସବୁ ଏଇଠି ପଡ଼ିଛି ।

ରଜା—ସୁରେନ୍ଦ୍ର କାହିଁ ?

କୁମୁଦ—(ଖୋଜିଦେଖି) କାହିଁ ? ଏଠାରେ ତ ନାହିଁ କୁଆଡ଼େ ଗଲା !

ରଜା—ଦୂତ, ଦେଖିଲୁ ସୁରେନ୍ଦ୍ର ବାହାରେ ଅଛି କି ?

ଦୂତ—ମହାରାଜ ! ଆମେ ତ ସ୍କୁଲ ବାଟେ ଆସିଲେ । ପିଲାଏ ତ କେତେବେଳରୁ ଛୁଟିହୋଇ ଗଲେଣି, ସ୍କୁଲରେ ସ୍ୱେର ପଢ଼ୁଛି ।

ରଜା—ଆଉ ପୁଅ କୁଆଡ଼େ ଗଲା ଦେଖ ଶୀଘ୍ର ।

କୁମୁଦ—(ସ୍ୱଗତ) କଣ ହେଲା ? ପୁଅ କଣ ସେ ପାଷାଣ୍ଡଙ୍କ କବଳରେ ପଡ଼ିଲା ?

ରଜା—କାହିଁ ପୁଅ କାହିଁ, ଆଉ ସେ ସ୍ୱେର କାହାନ୍ତି ?

ଦୂତ—ସ୍ୱେର ତ ଘରେ ଥିଲା, ଏ ତ କବାଟ ବନ୍ଦ କରି ଆପଣଙ୍କ ନିକଟ ଗଲେ, ଏହି ସମୟ ମଧ୍ୟରେ ସୁବରାଜ ଆସି ଏ ଘର ଖୋଲି ସ୍ୱେରଙ୍କ ହାବୁଡ଼େ ପଡ଼ିଛନ୍ତି । ଏଥିରୁ ଅନୁମାନ କରନ୍ତୁ, ଘଟଣା ଯାହା ହୋଇଥିବ ।

ରଜା—ନିଶ୍ଚୟ, ମୋ ପୁଅକୁ ସେ ସ୍ୱେର କୁଆଡ଼େ ନେଇ ପଳାଇଛନ୍ତି । ଦୂତ କଣ ହେଲା ?

( ଅଚାହୋଇ ବସିବା )

କୁମୁଦ—( ସ୍ୱଗତ ) ସେ ପାଷାଣ୍ଡ ତ ମୋ ପୁଅକୁ କୁଆଡ଼େ ନେଇଗଲେଣି, ମୁଁ କଣ କରିବ ?

ରଜା—ଦୂତ, ଆଉ ସନ୍ଦେହ କାହିଁ ତ ? ସୁରେନ୍ଦ୍ର ନିଶ୍ଚୟ ସେ ଦସ୍ୟୁମାନଙ୍କ ହସ୍ତଗତ ହେଲା । (କୁମୁଦ ପ୍ରତି) ରାକ୍ଷସୀ ! ତୋର ଜୀବନ ରକ୍ଷା କରିବାକୁ କି ମୋର ନିକଟ ପଳାଇ, ମୋର ଅମୂଲ୍ୟ ଧନଟିକୁ ଦସ୍ୟୁମାନଙ୍କ କବଳରେ ପକାଇଲୁ ହେ ରାକ୍ଷସୀ, ମୋର ପୁଅକୁ ଦେ ।

କୁମୁଦ—(ସ୍ୱଗତ) ମୁଁ ପାଷାଣ୍ଡୀ କଣ କଲି ? ନିଜର ମହତ ରକ୍ଷା କରିବାକୁ ଯାଇ ମୋ ରତ୍ନନିଧିକୁ ହରାଇ ବସିଲି । (ପ୍ରକାଶ୍ୟେ) ମହାରାଜ, ମୁଁ ନିଶ୍ଚୟ ଜାଣି ପାରୁଛି ସୁରେନ୍ଦ୍ରକୁ ସେ ପାଷାଣ୍ଡମାନେ କେଉଁଆଡ଼େ ନେଇଗଲେ ।

ରଜା—ରାକ୍ଷସୀ, ଯାଇଲୁ ମୋ କୁଳ ଚନ୍ଦ୍ରମାକୁ ସାରିଲୁ (ଦୂତପ୍ରତି) ଦୂତ, ଦସ୍ୟୁ କଥା ମିଥ୍ୟା, ଏ ରାକ୍ଷସୀ ମୋ ପୁଅକୁ ତାଙ୍କ ହସ୍ତରେ ଦେଇ ମିଥ୍ୟା ଛଳନା କରୁଛି ।

କୁମୁଦ—ନା, ମୁଁ କିଛି ମିଥ୍ୟା କଥା କହୁ ନାହିଁ ।

ରଜା—କିଛି ଶୁଣିବ ନାହିଁ, ରାକ୍ଷସୀ ! କହ ମୋ ପୁଅକୁ କାହାକୁ ଦେଇଛୁ, ବା କାହା କୁପରାମର୍ଶରେ ତାକୁ ମାରି ମିଥ୍ୟା ଛଳନା ଦେଖାଉଛୁ, ମୋ ପୁଅ ଦେ । ନଚେତ୍ ତୋର ପ୍ରାଣ ମୁଁ ନେବ ।

କୁମୁଦ—ମହାରାଜ ! ତାହାହିଁ କରନ୍ତୁ, ଏ ଅଭାଗିନୀକୁ ପ୍ରାଣଦଣ୍ଡ ଆଜ୍ଞା ଦିଅନ୍ତୁ, ହତଭାଗିନୀ ଆଉ ସୁରେନ୍ଦ୍ର ବିଚ୍ଛେଦରେ ଧୈର୍ଯ୍ୟଧରି ରହି ପାରିବ ନାହିଁ ।

ରଜା—ଦୂତ, ଶୀଘ୍ର ମୋ ଆଦେଶ ପାଳନ କର ।

### ଗୀତ

(କହ ଦୂତ ଏକ ତପସ୍ୱୀତ-- ତୁଣ୍ଡେ)

ବାନ୍ଧ ଏ ରାକ୍ଷସୀ ଖରେ ନିଅ କାରାଗାରେ
ପାଷାଣ୍ଡୀ ମାରିଛି ନିଶ୍ଚେ ସୁତକୁ ମୋହର ରେ । ପଦ ।
ମିଥ୍ୟା ଛଳନା ଦେଖାଇ କଥା କହୁଛି ବଢ଼ାଇ
ଆଶା ଭରସା ବୃଥା ଗଲାଟି ମୋହର ରେ । ୧ ।
ପାଷାଣ୍ଡି ! ମୋର ସର୍ବନାଶ କଲୁ, ମୁଁ ସୁରେନ୍ଦ୍ରକୁ ପାଇ କେତେଶୁଭାଏ ଦମ୍ଭ କରିଥିଲି । ମୋ ଧନ କୁଆଡ଼େ ଗଲା । ରାକ୍ଷସୀ କହ ମୋ ପୁଅ କଣ କଲୁ ।

କୁମୁଦ—(ସ୍ୱଗତ) କଣ କହିବ ? ପୁତ୍ର ବିଚ୍ଛେଦରେ ଏ ଅଭାଗିନୀ ହୃଦୟରେ ଯେ ଦାରୁଣ ଯନ୍ତ୍ରଣା ଅନୁଭବ କରୁଛି, ତା ଈଶ୍ୱରଙ୍କୁ ଗୋଚର ।

ରାଜା—ପକ୍ଷୀ, ଯେତେବେଳେ ଗର୍ଭ ଅଛି, କହ ଶୀଘ୍ର ମୋ ପୁତ୍ର କେଉଁଠାରେ ଅଛି।

କୁମୁଦ—ମୋତେ ଅନୁମତି ଦିଅ ମୁଁ ସନ୍ଧାନ କରିବି।

ରାଜା—ପକ୍ଷୀ! ମୁଁ ଦେବି?

ଗୀତ

ଆଜରେ ଯେବେ ମୋ ପୁଅ ନ ଆଣିବୁ କି ବାଧାରେ
ତୋ ମୁଣ୍ଡକୁ କାଟି ଦ୍ୱାରେ ଦେବାଇବ ଶୂଳରେ। ୨।

ପାଷାଣ୍ଡି, ଆଜ ଦିନ ମଧ୍ୟରେ ଯେବେ ମୋ ପୁତ୍ରକୁ ନ ପାଏ କାଲି ନିଶ୍ଚୟ ତୋତେ ଶୂଳରେ ଚଢ଼ାଇବି। ସକ୍ଷମୀ! ତୋର ଏବେ କି ସାଦ?

କୁମୁଦ - (ସ୍ୱଗତ) ମୋର ସେଇଆ ଇଚ୍ଛା, ସୁରେନ୍ଦ୍ର ଏବେ ଜୀବନରେ ଅଛି? ଆଜ ମା, ମା ବୋଲି ମୋତେ ଆଉ ଡାକିବୁ? ଭଗବାନ ମୋର ମେଷ ପିଲୁକା ଦୁଃଖୀର ଧନକୁ କୁଆଡ଼େ ହରଣ କରି ନେଇଗଲୁ?

ରାଜା— ଗୀତ

(ଦୂତ ପ୍ରତି)

ଦେଖରେ ଦୂତ ସବାଘ୍ର କାହିଁ ଗଲା ପୁତ୍ରମଣି
ଯେ ଦେବ ମୋତେ କି ଆଣି
(ତାକୁ) ଦେବ ଅର୍ଦ୍ଧ ରାଜ୍ୟରେ। ୩।

ଦୂତ! ରାଜ୍ୟରେ ଘୋଷଣା କର, ଯିଏ ସୁରେନ୍ଦ୍ରକୁ ମୋର ଖୋଜି ଆଣିଦେବ, ତାକୁ ରାଜ୍ୟର ଅଧେ ଦେବି। ନିଅ ଏ ପାଷଣ୍ଡୀକୁ କାରାଗାରେ ରଖ (ପ୍ରସ୍ଥାନ)

ଦୂତ—ଯେ ଆଜ୍ଞା।

କୁମୁଦ—ହାୟରେ! ବେଶ ବଢ଼ିଆ କରିଛୁ! ଦିନେ ରାଜରାଣୀ, ଦିନେ ଘରଛଡ଼ା, ଆଉ ଆଜ ଅପରାଧିନୀ, ହର ହର! (ପ୍ରସ୍ଥାନ)

—*—

# ଷଷ୍ଠ ଅଙ୍କ

## ପ୍ରଥମ ଦୃଶ୍ୟ

(ଜଙ୍ଗଲ)

ସୁରେନ୍ଦ୍ର—ମାମୁଁ, ମୋତେ ମାରନା। ମା ମୋର କାନ୍ଦିବ।

ଗୁଣ—ମା କାନ୍ଦିବ? ମାଆ ନ ଆମକୁ ବାଛିଥିଲା।

ଅଜୁ—ଆଉ ବଳମ୍ବ କାହିଁକି।

ସୁରେନ୍ଦ୍ର— ଗୀତ

(ସବେଦାଦର ଫଳ କର—କୁଦ୍ଧେ)

ମାମୁଁ, ମାରନା ମାରନା।
କାନ୍ଦି କାନ୍ଦି ମରିବ ମୋ ମା।

ଏ ବୃଦ୍ଧ ପରାଣ ମାର ଅକାରଣ
କ ଯଶ ଲଭିବ ହେ ମାତୁଳଗଣ
ମୁଁ ତୁମ୍ଭର କ୍ରୋଧ କେବେ ହୋଇନାହିଁ
ହେଷ ମୋଠାରେ କରନା। ୧।

ମାମୁଁ, ତୁମ୍ଭ ନିକଟରେ ଦିନେ ମାତ୍ର ଦୋଷୀ ହୋଇନାହିଁ, କାହିଁକି ମୋ ପ୍ରତି ଏ ଅତ୍ୟାଚାର ହେଉଛି?

ଗୁଣ—ତୁଚ୍ଛ ଆମ୍ଭର ଶତ୍ରୁ, ତୋତେ ମାଇଲେ ଆମ୍ଭର ରାଜ ସିଂହାସନ ଦଖଲ ହେବ।

ସୁରେନ୍ଦ୍ର—ମାମୁଁ, ସାମାନ୍ୟ ଐଶ୍ୱର୍ଯ୍ୟ ଲାଗି ମୋତେ ମାରିବେ?

ଗୁଣ—ଆରେ ହିଁ, ଅଜୁ! ଏମିତି ତା କଥା ଶୁଣୁ ଶୁଣୁ ବେଳ ଯିବ। ଦେ ଚଣ୍ଡିକା ଧରି ଦେଉଁ। ଅନାହିଁତ କର ବା।

ଅଜ—ଯେମିତି ହେବ କାହିଁ ଧରେ କରି ଲମ୍ବିବନା ଶୁଆଇ ପକାଇବା। ଜଣେ ଭଣ୍ଡିରେ ଆଉ ଜଣେ ଗୁଡରେ ଠିଆ ହୋଇଯିବା।

ଗୁଣ—ଠିକ୍ ଠିକ୍।

ସୁର—ମାମୁଁ!

ଗୀତ

ପୁର ଧନ ପାଇଁ ଏ ଜୀବନ ନେବ
କ ଯଶ ଲଭିବ ସଂସାରରେ ଭବ
ନ ସହିବ ଧର୍ମ କର ମନ କର୍ମ
ତ୍ୟାଗ ମନ ଧାରଣା। ୨।

ମାମୁଁ ! ଏ ସଂସାରରେ କେହି ଚିର ହୋଇ ରହିବ ନାହିଁ । କେବଳ ରହିବ ଭଲ ମନ୍ଦ ଦୁଇ କଥା । ଆପଣଙ୍କ ଭାଗ୍ୟରେ ଯେବେ ରାଜସିଂହାସନ ଥିବ, ମୁଁ କଣ ତାହା ଛଡ଼ାଇ ନେଇ ପାରିବି ? ମାମୁଁ, କର୍ମଲେଖା କାହାର ଅପହରଣ କରି ପାରିବ ନାହିଁ । ମୋତେ କ୍ଷମା ଦିଅ ।

ଘୃଣା—ଅକ୍ରୂ, କଣ ପଣ୍ଡିତ କଥା ଶୁଣୁଛୁ ବା ? ଆମର ଆଉ ଜ୍ଞାନ ବୁଦ୍ଧି ନାହିଁ—ଆମକୁ ଜ୍ଞାନ ବୁଝାଉଛି । ଧର ଶୀଘ୍ର । (ସୁରେନ୍ଦ୍ରଙ୍କୁ ଧରିବା)

ସୁରେନ୍ଦ୍ର— ଗୀତ

(ପ୍ରାଣ ବାନ୍ଧବ ରେ ବନ୍ଧା ମୁଁ ପ୍ରେମେ ତୋହରି-ବୃତ୍ତି)

ଦୀନବନ୍ଧୁ ହେ, ସଙ୍କଟ ଦିନ ମୋହର
ତୁମ୍ଭେ ଦୀନନାଥ ଅନାଥର ନାଥ
ମୋ ଆରତ ସେନାକର । ପଦ ।
ଗତି ମୁକ୍ତି ଦାତା ତୁମ୍ଭେ ବିଶ୍ୱକର୍ତ୍ତା
ତୁମ୍ଭେ ଶରଣ-ସୋଦର ।
ମୋତେ ମୋକ୍ଷପଥ ଦେଖା ହେ ଅନନ୍ତ
ଅନ୍ତେ ଲଭେ ତୋ ପୟର । ୨ ।

ହେ ବିପଦଭଞ୍ଜନ, ହେ ଆରତ ନାଶନ, ହେ ଦୀନବନ୍ଧୁ ! ମୋର ସଦ୍‌ଗତି ବିଧାନ କର !

ଘୃଣା—ଏବା ତଳେ କେତେ ବେଳ ହଉଛି ?

(ଉଡ଼ାଇ ଉପରେ ଟିଆଡେବା ଅବସରରେ, କେଦାର ପ୍ରବେଶ)

କେଦାର—ପାଷଣ୍ଡ ! କ୍ଷାନ୍ତହୁଅ, ନିର୍ଦ୍ଦୋଷୀ ଅଜ୍ଞାନ ବାଳକେ କମ୍ପା ଦିଅ ଦଣ୍ଡ ? (ଘୃଣା ଅକ୍ରୂ ଭୟରେ ପଳାୟନ)

କେଦାର—ଆହା, କେଡେ ସୁନ୍ଦର ସୁକୁମାର ଶିଶୁଟି । ଏ କଣ ହୋଇଗଲା ? କାହିଁକି ସ୍ୱାଭ ପ୍ରାଣ ବିନାଶ କଲି ? ମୂର୍ଚ୍ଛା ନା ବଞ୍ଚିଛି ଦେଖେଁ । (ନିଶ୍ୱାସ ଚାଲି) ନା ନିଶ୍ୱାସ ଚାଲୁଛି, ତେବେ ଏହି ପୁଷ୍କରିଣୀ ନିକଟକୁ ନେଇଯାଏ ସେଇଠି ଶୁଶ୍ରୂଷା କରିବି । ପିତା ସାରଦାଙ୍କ ! ତୁମ୍ଭେ କେଉଁ ପଥରେ ରହିଲ, ଶୀଘ୍ର ଆସ, ଏ ଶିଶୁଟିର ପ୍ରାଣ ରକ୍ଷାକର । ଏ ସ୍ଥାନ ଶୀଘ୍ର ପରିତ୍ୟାଗ କରିବା ଦରକାର, କାଳେ ପାଷାଣ୍ଡମାନେ ପୁଣି ଆସି ପାରନ୍ତି ।

(କାନ୍ଧରେ ନେଇ ପ୍ରସ୍ଥାନ

—*—

## ଦ୍ୱିତୀୟ ଦୃଶ୍ୟ

( ରାଜ ଅନା—ବୃତ୍ତି )

ଦୂତ— ଗୀତ

ଭାଇ, ଧର ନୂଆ ପୁଅ ନେଲା କେଉଁ ଚୋର ।
ଜେମା ଉଆସରେ ଦିନ ଦିପହରେ
ଦାସୀ ସଙ୍ଗେ କଲା ଠାରଠୁର । ୧ ।
ଧରିବ ଯେ ନର ଅଧେ ରାଜ୍ୟଭାର
ରାଜା ଦେବେ ହୋଇଛି ଢିଣ୍ଡୁର । ୨ ।

ହେ ଭାଇ, ରାଜାଙ୍କର ନୂଆ ପୁଅକୁ ଚୋର ନେଇ ଯାଉଛି । ଯିଏ ସେ ଚୋରକୁ ଧରିଆଣି ଦେବ, ରାଜା ତାକୁ ରାଜ୍ୟରୁ ଅଧେ ଦେଇ, ତା ମୁଣ୍ଡରେ ଛାତି ବାନ୍ଧିବେ ।

( ଘୃଣା ଓ ଅକ୍ରୂ ପ୍ରବେଶ )

ଘୃଣା—କଣ କଣ, କଥା କଣ ?

ଦୂତ—ତେମେ କଣ ଶୁଣିନାହିଁ ।

ଅକ୍ରୂ—ନା, ଆମେ ତ କିଛି ଶୁଣି ନାହୁଁ ।

ଦୂତ—ସେ ଯୋଉ ପୁଅ ନୂଆ ଉଆସରେ ସେ ଦାସୀ ଜମା ଥିଲା ସେ ପୁଅକୁ ଖାଇବେଳେ ଚୋରେ ପଶି କିଏ ନେଇ ଯାଇଛି । ଅଲଟିଆ ନଗର ଯାକ ଢୋଲ ପଡ଼ୁଛି, ଯିଏ ସେ ଚୋରକୁ ଧରି ଦେବ ରାଜ୍ୟରୁ ଅଧେ ନେବ ।

ଘୃଣା—ଆଜ୍ଞା ସେ ମାଇକିନିଆ କଣ କହୁଛି ?

ଦୂତ—ମାଇକିନିଆଁ କଛି କହୁ ନାହିଁ, ଆମ୍ଭେ ଜାଣିପାରୁଛୁ ମାଇକିନିଆ ଟିକିଏ ରହିକରି ସେ କାଣ୍ଡ ହୋଇଛି । କାରଣ ମାଇକିନିଆ କଥାରୁ କେତେକ କଥା ତଗଲ ଜଣାପାଉଛି ।

ଘୃଣା—ଏ କଣ ପ୍ରକୃତ କଥା ?

ଦୂତ—ମୁଁ କଣ ତମ ସାଙ୍ଗରେ ଥଟ୍ଟା କରୁଛି ?

ଗୁଣ — ଆଚ୍ଛା; ଏଟା ଆଜ ନୃଆ ସହରକ ଆଉକୁ ବୁଲିବାକୁ ଯାଉଛନ୍ତି ।

ଦୂତ — ରଜା, ପୁଅ କଥା ଶୁଣି ତାଙ୍କର ଅକଲ ଗୁମ ହେଲାଣି, ଆଜ ସେ ବୁଲିବାକୁ ଯାଉଥିଲେ ।

ଗୁଣ — ଆରେ, ଠିକ୍ ଆମ ରଜାଙ୍କ ପରି ପୋଷାକ ପୋଷାକ ହୋଇ ଜଣେ କିଏ ଯାଉଛି । ଆମେ ବର୍ତ୍ତମାନ ବାଟରେ ଦେଖି ଆସିଲୁ ଆମେ ମନେକଲୁ ମହାରାଜ କୁଆଡ଼କୁ ବାହାରି ପଡ଼ିଛନ୍ତି । ଏଚା! କାହାର ବେଟାବେର ଯାଉଛି (ଅଳପ୍ରତି) ବୁଦ ରେ ?

ଅଜ — ହିଁ ହିଁ ।

ଗୁଣ — ଆମ ମନେ ମନେ ରଜା ବୋଲି ଆମେ ବାଟ ଛାଡ଼ି ଗୁଳିଆସିଲୁ ।

ଦୂତ — ରଜା ତ ଅସୁର କୁଆଡ଼େ ଯାଇ ନାହାନ୍ତି ।

ଅଜ — ତେବେ (ଅଙ୍ଗୋର) ସେଇ ତ ।

ଦୂତ — ଆଚ୍ଛା ତେବେ ବାଟରେ ଦେଖିଥିଲ ।

ଗୁଣ — ବାଟ ମାଳଭିକ ଭିତରେ ।

ଦୂତ — ଆଉ ତା ସଙ୍ଗରେ କିଏ ଥିଲା ଅଛି ?

ଗୁଣ — ଆଉ ସାଙ୍ଗରେ (ଭାବ) ଆମେ ଅନେକ ଦୂରରେ ଥିଲୁ — ଭଲକରି କହି ପାରିବୁ ନାହିଁ ।

ଅଜ — କିଏ ଜଣେ ଥିଲା ପରି ?

ଗୁଣ — ଅଜ — ସେଇ ତ ଶ୍ୱେର, ଟିକିଏ ଯିବାକ ? ବୁଲିଲୁ ।

ଦୂତ ସ୍ୱା ସେଇ ବାଳକୁ ଅଛି ? ବୁଲନା ରାଜ୍ୟରୁ ଅଧେ ଦେବ ବୋଲି ରଜା ଢେଙ୍କ କହିଛନ୍ତି, ନ ଦେଲ ବେଇକୁ କୋଡ଼ାଏ ଗାଁ ରହିବ ।

ଅଜ — ବୁଲ ଦେଖିବା, ତାର ଏଡ଼େ ସାହସ !
(ପ୍ରସ୍ଥାନ)

— · —

## ତୃତୀୟ ଦୃଶ୍ୟ ।

(କେଦାର ସୁରେନ୍ଦ୍ରକୁ ଧରି)

କେଦାର — କଣ କହିବ, ଚୋରଙ୍କର କାହିଁଗଲେ ? ଏ ପିଲାର ତ ଏତେବେଳଯାଏ ଚେତା ଆସିଲା ନାହିଁ ମୁଁ ଅରଣ୍ୟ ମଧ୍ୟରେ କେଉଁଆଡ଼େ ନେଇ କରି ବୁଲିବି ?

(ଗୁଣ, ଅଜ, ଦୂତ ପ୍ରବେଶ)

(ଗୁଣ ଦୂରରେ ରହି ଅଙ୍ଗୁଳିରେ ଠାରିବା ଅଭିନୟ)

ଗୁଣ — ଏଇ ନବ କି ?

ଅଜ — (ଦଉଡ଼ି ଯାଇ) ଆରେ ଏଇଠି ତ ପୁଅ ।

ଦୂତ — ଆରେ ହେ ହେ (ଦଉଡ଼ି ଯିବା)

ଗୁଣ — ଆଗେ ପୁଅକୁ ଦେଖ (ସମସ୍ତେ ବେଢ଼ି ଯିବା)

କେଦାର — (ସ୍ୱଗତଃ) ଆଉ ରକ୍ଷାନାହିଁ । ଏ ପାଷଣ୍ଡ ତ ପୁଣି ଏମାନଙ୍କୁ ଶିଶୁକୁ ସେଇ ମାରି ପକାଇବା ଉଦ୍ଦେଶ୍ୟରେ ଆସିଲେଣି ମୁଁ ତ ଏକା କଣ କରିବି ? (ପ୍ରକାଶ୍ୟ) ହେ, ତୁମ୍ଭେମାନେ କାହିଁକି ଏପରି ହେଉଛ ? ତୁମର ଏ ଅଜ୍ଞାନ ଶିଶୁ କି ଦୋଷ କଲା ?

ଗୁଣ — ସୁରେନ୍ଦ୍ରକୁ ଦେଖି (ଦୂତ ପ୍ରତି) ଦୂତ ପିଲାଟିକୁ ଦରମରା କରି ସାରିଲାଣି ଅମେ ଆଉ ଟିକିଏ ବିଳମ୍ବ କରିଥିଲେ ତ ସବୁ ସରି ଯାଇଥାନ୍ତା ।

ଦୂତ — ଆଗ ସେ ଚୋରକୁ ଧର, ସମସ୍ତେ ଧରିବାକୁ ଉଦ୍ୟତ ।

କେଦାର — ହେ ମୂର୍ଖ କାହିଁକି ସେପରି ହେଉଛ ଦେଖ ସେ ପିଲାଟିର ଜ୍ଞାନ ଶୂନ୍ୟ ହୋଇଯାଇଛି । ମୁଁ ତାର ଶୁଶ୍ରୂଷା କରୁଛି — ମୋତେ ବାଧା ଦିଅନା !

ଗୁଣ — (ଦୂତ ପ୍ରତି) ଯାହା କହେନ୍ତି ଚୋରର ମୁଣ୍ଡ କାଟ, (କେଦାର ପ୍ରତି) ରେ ମୂର୍ଖ ! ଶୁଶ୍ରୂଷା କରିବୁ କଣ ? ମିଥ୍ୟା ପ୍ରମାଦ କାହିଁକି ଭୁ କାହିଁକି ? ଏ ଶିଶୁକୁ ଚୋରିକରି ଆଣି ଏ ଅବସ୍ଥା କଲୁ ।

ଦୂତ — କିପ କାହିଁକି ଆଣିଲୁ ?

ଅଜ — କରା ବେ କହିଁକି ଆଣିଲୁ ।

କେଦାର — ମୁଁ ଏ ପିଲାଟିକୁ ଦସ୍ୟୁମାନଙ୍କ କବଳରୁ ରକ୍ଷା କରିଛି ।

ଗୁଣ — ମିଥ୍ୟା କହୁଛୁ ? କାହିଁକି ଏ ପିଲାକୁ ଆଣିଲୁ ।

ଦୂତ — ବୁଲ ରଜାଙ୍କ ପାଖକୁ ନେଇଯିବା, ପାଷାଣ୍ଡକୁ ବାନ୍ଧ ।

କେଦାର — କାହିଁକି ମୋର କି ଅପରାଧ ?

ଅଜ — ଚୋରଙ୍କର ମୁଣ୍ଡ କାଟ, ଧର ଶୀଘ୍ର ।

କେଦାର—ମୁଁ କଣ ଚୋର ।
ଗୁଣ—କେଡ଼େ ଦମ୍ଭରେ କଥା କହୁଛି । (ଦୂତ ପ୍ରତି) ଦୂତ ଦେଖ ତା ଧମାକ୍ ।

ଗୀତ—( ଦାଣ୍ଡି )

ଆରେ ରେ ପାଷାଣ୍ଡ ! କାହିଁ କଲୁ ଏଡ଼େ କର୍ମ ?
କି ସାହସେ ଏ ପୁରକୁ କରିଲୁ ହରଣ ? ୧ ।
ଶୃଗାଳ ହୋଇ ତୁ ସିଂହ ଗହ୍ୱରେ ପଶିଲୁ ।
ମୂଷିକ ହୋଇ ମାର୍ଜାର ସଙ୍ଗେ ବାଦ କଲୁ । ୨ ।
ବାମନ ହୋଇ ତୁ ଚନ୍ଦ୍ରେ ବଢ଼ାଇଲୁ ହସ୍ତ ।
ଏକ୍ଷଣି ଏହାର ଶାସ୍ତି ଭୁଞ୍ଜିବୁ ପାପିଷ୍ଠ । ୩ ।

ଦୂତ ! ଆଉ ବିଳମ୍ବ କାହିଁକି, ଶୀଘ୍ର ମୂର୍ଖକୁ ନେଇ ଗଲେ ବନ୍ଧନ କରିବା ।
କେଦାର—ନିଂ, ମୁଁ ନିର୍ଦ୍ଦୋଷୀ, କାହିଁକି ମୋତେ ବନ୍ଧନ କରୁଛ ?
ଗୁଣ—ଚୁପ୍ କର ।
କେଦାର—ପିତା ଭରଦ୍ୱାଜ ମୋତେ ଏଇ ଶାସ୍ତି ଦେବାକୁ କଣ ଆପଣଙ୍କ ମନରେ ଥିଲ ? ଓଃ ବୁଝିଲି ମୁଁ ଆପଣଙ୍କ କନ୍ୟାଟିକୁ ଯେଉଁ ଦଶା ଦେଇଛି, ତାହାର ପ୍ରତିଶୋଧ ।
ଗୁଣ—ଦୂତ, ପୁଅକୁ ଧ, ଆମ୍ଭେ ଏ ଚୋରକୁ ଧରୁଛୁ ।
( ସେନ ପ୍ରସ୍ଥାନ )

—*—

## ଚତୁର୍ଥ ଦୃଶ୍ୟ

ରାଜା, ଜ୍ୟୋତିଷ, ମନ୍ତ୍ରୀ

ଦୂତ— ( ସୁରେନ୍ଦ୍ରକୁ ଶୁଆଇ )
ରାଜା—କଅଣ କରିବି, ସୁରେନ୍ଦ୍ରର କିପରି ଚେତନା ଲାଭହେବ ? ଧନ ରେ ଉଠ !
ଦୂତ—ତାକୁ ଦରମର କରିଥିଲା ଆମ୍ଭେ ଯାଇ ପହଞ୍ଚିଲୁ ।
ରାଜା—ସେ ପାଷାଣ୍ଡ ଦସ୍ୟୁକୁ ଶୀଘ୍ର, ଏଠାକୁ ନେଇ ଆସ । ଆଉ ସେ ପାଷାଣ୍ଡୀକୁ କାରାଗାରକୁ ନେଇ ଆସ ।
ଦୂତ—ଯେ ଆଜ୍ଞା । ( ପ୍ରସ୍ଥାନ )

( କେଦାରକୁ ଧରି ଗୁଣ ଓ ଅନ୍ୟ ପ୍ରବେଶ ).
ରାଜା—ଏହି ପାଷାଣ୍ଡ ? ଜ୍ୟୋତିଷେ ଦେଖନ୍ତୁ, ଏହି ମୂର୍ଖ ମୋର ଶତ୍ରୁ (ପ୍ରକାଶ୍ୟେ) ହେ ବର୍ବର ! କି ସାହସେ ମୋର ଗୃହରେ ପ୍ରବେଶ କରି ମୋର କୁଳଚନ୍ଦ୍ରମାକୁ ଏ ଦଶା ଦେଲୁ ?
କେଦାର—( ସ୍ୱଗତ ) ବିନାମେଘେ ବଜ୍ରର ପତନ ପ୍ରଭୁ !
ଜ୍ୟୋତିଷ—ଆଉ କହିବ କଣ, ସେ ଅଳଙ୍କାର ବକ୍ଷଣ୍ଡ ନେବାକୁ ତ ଏବେ ଫିକର କରୁଛି ।
ଗୁଣ—ଆଉ ସାମାନ୍ୟ ବିଳମ୍ବ ହୋଇଥିଲେ ଏକଦମ ମାରି ଦେଇଥାନ୍ତା ।
କେଦାର—ଦୋଷୀ, ନିର୍ଦ୍ଦୋଷୀ ହେଉଛି କହ ମିଥ୍ୟା କଥା ।
ରାଜା—ମୂର୍ଖର ବେଶଭୂଷାରୁ ତ ଅନୁମାନ ହେଉଛି କଣେ ସମ୍ଭ୍ରାନ୍ତ ରାଜପୁତ୍ର । (ପ୍ରକାଶ୍ୟେ) ରେ ମୂର୍ଖ ! ଏ ଚଣ୍ଡାଳ ବୃତ୍ତିରେ କାହିଁକି ମନ କଳାଇଲୁ ?
ଜ୍ୟୋତିଷ—ମହାରାଜ ! ଯେ ଯେଉଁ ଗ୍ରହରେ ଜନ୍ମ ।
ରାଜା—ଆରେ ମୂର୍ଖ ! ଆଜ ତୋର ପାପର ପ୍ରାୟଶ୍ଚିତ୍ତ କରିଦେବି ।
କେଦାର—ମୁଁ କଣ ଅନ୍ୟାୟ କରିଛି ମହାରାଜ ।
ରାଜା—ଆହୁରି ଅନ୍ୟାୟ କରିଥାନ୍ତୁ ?

ଗୀତ

( ଆଲେ ଦୁଷ୍କୃତ—ରୂପକ )

କହ ରେ ବର୍ବର କାହିଁ ମୋ କୁମର
ସ୍ୱେଚ୍ଛାରେ ଗୋପନେ ନେଲୁ ।
ଜାଣି ଜାଣି ଦୁଷ୍ଟ କୃଷ୍ଣସ ମସ୍ତକେ
ଆପେ ଆଣି ପକାଇଲୁ ।
ଏଡ଼େ ମନ୍ଦ କରମ
କରିବାକୁ ମୂର୍ଖ ଦେଲୁ ମନ ।୧।

ମୂର୍ଖ, କାହିଁକି ବଳେ ବଂଶ ମୃତ୍ୟୁକୁ ନିମନ୍ତ୍ରଣ କଲୁ ?

ଗୀତ

ପୁର ଧନ ପାଇଁ ମୂର୍ଖ ହୋଇ ବାଇ
କର ନରହତ୍ୟା ପାପ

ଆଜନ୍ମ ରେ ମୂର୍ଖ !  କୃଞ୍ଜିବୁ ମେ ମୃଗ
ରଖିବଟି କେଉଁ ବାଣ
ଧିକ ଧିକ ତୋ ବୁଦ୍ଧି
କୁଳାଙ୍ଗାର ହେଲୁ ତୋର ବାନ ବଧି । ୨ ।

କୁଳାଙ୍ଗାର ତୋର ପାପର ସମୁଚିତ, ଦଣ୍ଡ ବିଧାନ କରିବି, ତେବେଯାଇ ଚେଷ୍ଟା କରିବ ।

( ସାରଦ୍ୱାଜ ପ୍ରବେଶ, ଦଉଡ଼ିବୋଲ ଦରିବୋଲ ଭଙ୍ଗ)

ରାଜା—ଜୟ, ଜୟ ତପସ୍ୱୀ ! ମୋର ପ୍ରଣାମ ଗ୍ରହଣ କରନ୍ତୁ ।

କେଦାର—ପିତା ପିତା ! ମୋତେ ଏହି ଅବସ୍ଥା ଦେଖିବାକୁ ଆପଣଙ୍କ ମନରେ ଥିଲା ?

( ଥକାହୋଇ ବସିପଡ଼ିବା )

ସାରଦ୍ୱାଜ—ରାଜନ, ଏ କ'ଣ ? ଏ ପିଲା କାହିଁକି ଏପରି ହୋଇଛି ?

ରାଜା—ତପସ୍ୱୀ ଶୁଣ କହିବି, ( କେଦାରକୁ ଦେଖାଇ ) ଏ ପାଷାଣ୍ଡ ମୋ ପୁତ୍ରକୁ ନେଇ ମାରି ଦେଉଥିଲା । ଦଇବ କଲରୁ ମୋର ଗୁଇନ୍ଦାମାନଙ୍କ ଦ୍ୱାରା ଧରାହୋଇ ଏ ସ୍ଥାନକୁ ଆସିଛି । ଆଜି ଏ ପିଲାକୁ ଏପରି ଆଘାତ କରିଛି, ସଦ୍ୟାଘାତ ପ୍ରହାର ବାହାରିଲା ଭଳି ହୋଇଛି—ଆପଣ ଦେଖନ୍ତୁ । ଅନୁଗ୍ରହ କରି ମୋର ଦୁର୍ଦ୍ଦଶା ମୋଚନ କରନ୍ତୁ ।

ସାରଦ୍ୱାଜ—କହି ରଚନା କରନା, ଏ ସନ୍ତାନଟି ଆପଣଙ୍କର ଜନ୍ମିତ ପୁତ୍ର ? ସ୍ୱାର ମାତା ଅଛନ୍ତି ତ ?

ରାଜା—ନା ତପସ୍ୱୀ, ତାର ଜନ୍ମିତ ପିତାମାତା କିଏ ମୁଁ ଜାଣେନାହିଁ ! ମୁଁ ଥରେ ନଦୀରେ ସ୍ନାନ କରୁ କରୁ ଗୋଟିଏ ହାଣ୍ଡିରେ ଥାଇ ଏ ପିଲାଟି ମୋ ନିକଟରେ ଭାସି ଭାସି ଲାଗିଲା । ମୁଁ ତା ରୂପରେ ଓ ତାର ତେଜରେ ମୁଗ୍ଧ ହୋଇ ଧର୍ମପୁତ୍ର କରି ରଖିଲି । ସେତେବେଳେ ଶିଶୁଟି ପ୍ରାୟ ଦୁଇ ତିନ ଦିନର ହୋଇଥିବ ।

ସାରଦ୍ୱାଜ—ଆଚ୍ଛା, ଏତେ ଦିନର ଅବସ୍ଥାରୁ ଶିଶୁଟିକୁ ବଞ୍ଚାଇଲେ କିପରି ?

ରାଜା—ଭାଗ୍ୟକୁ ଜଣେ ଦାସୀ ମିଳିଲା ! ତାର ଆଶ୍ରୟରେ ଶିଶୁଟିକୁ ଆଶ୍ରୟ କରି ଦେବାରୁ ସେ କ୍ଷୀର ଦେଇ ତାହାକୁ ବଞ୍ଚାଇଲା ।

ସାରଦ୍ୱାଜ—ସେ ସ୍ତ୍ରୀ ଲୋକ କାହିଁ ?

ରାଜା—ତପସ୍ୱୀ ସେ ସ୍ତ୍ରୀ ଲୋକ (କେଦାରକୁ ଦେଖାଇ) ଏ ପାଷାଣ୍ଡର ସଙ୍ଗରେ ପଡ଼ି ପୁତ୍ରଟିକୁ ସ୍ୱାକୁ ଦେଇଦେଲା । ତାର ଆଗରୁ ମନ ପ୍ରକୃତ ନ ଥିଲା । ଏହି ପାଷାଣ୍ଡ ତାକୁ କୌଣସି ପ୍ରଲୋଭନ ଦେଖାଇ ଧର୍ମନାଶ କରିଛି ।

କେଦାର—ନା, ମିଥ୍ୟାକଥା ।

ରାଜା—ଚୁପ୍ କର, ତପସ୍ୱୀ । ପୁତ୍ରଟି କିପରି ଚେତା ପାଇବ ତାହା ବାଟ କରନ୍ତୁ ।

ସାରଦ୍ୱାଜ—ସେହି ସ୍ତ୍ରୀ, ସେ କ'ଣ ସ୍ୱାର ପାଳନକର୍ତ୍ତ୍ରୀ ; ସେ ନ ଆସିଲେ କୌଣସି ମତେ ଆରୋଗ୍ୟ ହୋଇ ପାରିବ ନାହିଁ ।

ରାଜା—ବର୍ତ୍ତମାନ ସେ ଆସୁଥିବ, ତାକୁ ମୁଁ ଡାକିଛି କରିଛି ।

ସାରଦ୍ୱାଜ—(ସ୍ୱଗତ) ବେଶ ହେଉଛି ଲାଗିଛି, ଯେ ଦୋଷୀ ସେ ଭଦ୍ର ଲୋକ, ବର୍ତ୍ତମାନ ନିର୍ଦ୍ଦୋଷୀରେ ଦଣ୍ଡ ।

(କୁମୁଦ ପ୍ରବେଶ, କେଦାର ତାକୁ ଦେଖି)

କେଦାର—ଏ କିଏ ? ଏ କିଏ ? ମୋର ହୃଦୟେଶ୍ୱରୀ କୁମୁଦ ହାଃ ବିଧାତା !

କୁମୁଦ—ପିତା ସାରଦ୍ୱାଜ, ଅଭାଗିନୀର ଏହି ଦଶା (କେଦାର ପ୍ରତି) ନାଥ ! ନାଥ !

ରାଜା—(ସ୍ୱଗତ) ଏ କ'ଣ ?

ସାରଦ୍ୱାଜ—ନା, କହି ରଚନା କରନା । ନେ ତୋ ସନ୍ତାନକୁ ନେ, କୁମୁଦ (ସୁରେନ୍ଦ୍ରକୁ ଦେଖି) ବାପ ବାପ ମୋ ରଙ୍କ ନିଧିରେ (ସୁରେନ୍ଦ୍ର ମୂର୍ଚ୍ଛାରୁ ଉଠି) ମା ମା, ତୁମର ଏ ଦଶା କାହିଁକି ? ତୁମର ଚନ୍ଦ୍ରପରି ବଦନ ହୋଇଛି କାହିଁକି ?

( କୁମୁଦ କାନ୍ଦିବେ ଲାଗିବା ସୁରେନ୍ଦ୍ର ଜାଣିବାର ଖୋଲଦେବା ।)

ରାଜା—ତପସ୍ୱୀ ! ଏ ଘଟଣାବଳୀ ଦେଖି ମୋର ମନ ବିଭ୍ରମ ହୋଇଗଲାଣି ।

ସାରଦ୍ୱାଜ—ଆଜ୍ଞା, ରାଜନ୍ ! ତୁମ୍ଭ ପୁତ୍ର ବର୍ତ୍ତମାନ ସଚେତ, ଥରେ ଭଲକରି ପଚାର କିଏ ତାକୁ ଏ ସ୍ୱଳ୍ପତର ଦଣ୍ଡ ଦେଇଥିଲା ।

ରାଜା—ବାପ ସୁରେନ୍ଦ୍ର, ତୋତେ କିଏ ଏ ଦଶା ଦେଲା ?

ସୁରେନ୍ଦ୍ର—ମାମୁଁ ଦୁହେଁ ଆମ ଘରେ ପଶିଥିଲେ । ମୁଁ ଯେପରି ଘରକୁ ଯାଇ ମା, ମା, ଡାକିଲି, ସେ ମୋତେ ଧରିନେଇ ଜଙ୍ଗଲରେ ମାରି ପକାଇଥିଲେ । କିଏ ରକ୍ଷାକଲା ମୁଁ ଜାଣେ ନାହିଁ ।

( କୁମୁଦ ପୂର୍ବ ଗୁଣାକରଙ୍କ ପତ୍ରଖଣ୍ଡି ପ୍ରଦାନ )

ରାଜା—(ପଢ଼ି) ଗୁଣସାଗର, ତୁମ୍ଭେ ମୋର ଶତ୍ରୁ ( ଉଠିଯାଇ କେଦାର ହସ୍ତରୁ ସାଙ୍କୋଳ ଫିଟାଇ ) ସାରବର, ମୁଁ ପ୍ରକୃତରେ ତୁମ୍ଭଙ୍କୁ ଦୋଷୀ କରିଛି । ତୁମ୍ଭେ ଦେବତା, ମୋତେ କ୍ଷମାଦିଅ ।

ସାରଦ୍ୱାଜ—ରାଜନ୍, ଥରେ ଭଲକରି ଦେଖିଲ୍ ଏ କନ୍ୟା କାହାରି ।

ରାଜା—କିଏ, ମୁଁ ଚିହ୍ନିପାରୁ ନାହିଁ !

ସାରଦ୍ୱାଜ—ଥରେ ତୋର ସ୍ନେହ ଭରଣତ ହୃଦୟରେ ଦେଖ, ଏ ତୋହର କନ୍ୟା କୁମୁଦ ନା ?

ରାଜା—ମୋର କନ୍ୟା କୁମୁଦ, ମୁଁ ତାକୁ···ନା,···ଏ କିଏ କୁମୁଦ, ମୋର କନ୍ୟା କୁମୁଦ !

କୁମୁଦ—ପିତା ପିତା, ଧୈର୍ଯ୍ୟଧର ।

ସାରଦ୍ୱାଜ—ରାଜନ୍, ତୋର ଜାମାତା ସେହି ମଗଧ ଦେଶ ଅଧୀଶ୍ୱର କେଦାର ସିଂହ ।

ରାଜା—ଆସ, ବତ୍ସ !

ଋଷି—କେଦାର ନେ ତୋର ପୁତ୍ରକୁ କୋଳରେ ଧର ।

କେଦାର—(ସୁରେନ୍ଦ୍ରକୁ ଧରି) ବାପରେ !

ରାଜା—ଋଷିବର ! ଆପଣ କେଉଁ ଦେବତା, ମୋତେ କ୍ଷଣକ ମଧ୍ୟରେ କଣ ଦେଖାଇଦେଲେ ? ଏ ସମସ୍ତ ଘଟଣା କଣ, କହିଦିଅ !

ସାରଦ୍ୱାଜ—ତୁମ୍ଭ ଜ୍ୟୋତିଷଙ୍କୁ ପଚାର, ସେ ସମସ୍ତ କହିପାରିବେ ।

ଜ୍ୟୋତିଷ—ଆମ୍ଭେ କିଛି ଦୋଷ କରିନାହୁଁ, ଆମ୍ଭକୁ ( ଗୁଣକୁ ଦେଖାଇ ) ଏମାନେ କହିଲେ ତୁମ୍ଭେ ରାଜାଙ୍କୁ କହ, କୁମୁଦର ଯେ ସନ୍ତାନ ହେବ ସେ ଆପଣଙ୍କ ଶତ୍ରୁ ।

ରାଜା—ସତେ ଋଷିବର ! ସୁରେନ୍ଦ୍ର ନଈରେ ଭସି ଆସିଲା କିପରି ? କୁମୁଦକୁ କିଏ ରକ୍ଷାକଲା ? କୁମୁଦର ଏ ରାଜପୁତ୍ରଙ୍କ ସଙ୍ଗରେ କିଏ ମିଳନ କରାଇଲା ଓ କୁମୁଦକୁ ପୁଣି ବିଚ୍ଛିନ୍ନ କରାଇଲା କିଏ ?

ସାର—କୁମୁଦ ଆମ୍ଭଦ୍ୱାରା ଉଦ୍ଧାର ହୋଇ କେଦାରର ପାଟମହିଷୀ ହେଲା । ତତ୍ପରେ କେଦାରର ଅନ୍ୟ ରାଣୀମାନଙ୍କଦ୍ୱାରା କୁମୁଦର ଗର୍ଭ ପ୍ରସବ ସମୟରେ ସନ୍ତାନଟି ନଦୀରେ ଭସିଲା ଓ କୁମୁଦକୁ ବନବାସ ଦଣ୍ଡ ହେଲା । ଆମ୍ଭେ ଏ ସବୁ କଥା ଜାଣିପାରି କୁମୁଦକୁ ଛଦ୍ମବେଶରେ ତୋର ଦେଶକୁ ପଠାଇ ଦେଲୁ । ଏଥିରେ ପ୍ରକୃତ ଦୋଷୀ—୧ମ-ଜ୍ୟୋତିଷ (ଜ୍ୟୋତିଷ ଭୟରେ-ନା), ୨ୟ ଗୁଣସାଗର, ୩ୟ ଅଳୁ, ୪ର୍ଥ କେଦାରର ରାଣୀ କମଳା (କୁମୁଦର ସପତ୍ନୀ), ୫ମରେ ମୃଦୁସ୍ୱରି, ଏହି ପାଞ୍ଚଜଣଙ୍କ ଦ୍ୱାରା ଏତେ କାଣ୍ଡ ।

ରାଜା—କେଦାର, ମୋ ଧନ, ଆସ ଏ ଅଭାଗା ପିତାର ଅନୁରୋଧ ରକ୍ଷାକର । ମୁଁ ଥରେ ତୋତେ କୋଳରେ ଧରେ । ଆ କୁମୁଦ, ତୋର ସ୍ନେହର ଧନ ସୁରେନ୍ଦ୍ରକୁ କୋଳରେ ଦେନଆ ( ତଥାକରଣ ) । ଋଷିବର ! ଆଜ ମୋର ଜୀବନ ସାର୍ଥକ ହେଲା, ତୁମ୍ଭ ନିକଟରେ ଆମ୍ଭେମାନେ ସଦା ଋଣୀ (ସମସ୍ତଙ୍କର ପ୍ରଣିପାତ)

କେଦାର—( ହୃଦପ୍ରତ ) ବର୍ତ୍ତମାନ ମଗଧ ଯାଇ ସେ ପାଷଣ୍ଡୀ ଦୁଇଜଣ ଓ ଏ ଅତ୍ୟାଚାରୀ ତିନିଜଣଙ୍କୁ ଯାବତ୍ ଜୀବନ କାରାଗୃହରେ ରଖ ।

ରାଜା—(ଋଷିଙ୍କୁ କୋଳାଗତ ଓ ସମସ୍ତେ ମିଳନରେ) ମଙ୍ଗଳମୟ ହରି ଯାହା କରନ୍ତି ମଙ୍ଗଳ ପାଇଁ । ହରିବୋଲ, ହରିବୋଲ, ହରିବୋଲ, ବୋଲଭାଇ !



# ଗୁପ୍ତମନ୍ତ୍ର

## ଗୀତିନାଟ୍ୟ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

( କମଳା ରାଧାରମଣଙ୍କ ସେବାରେ ନିଯୁକ୍ତ ଥିବା ସମୟରେ ରାଜା ମୁକ୍ତାରାମ ଧୀରେ ଧୀରେ ପ୍ରବେଶ କରିଲେ )

ମୁକ୍ତାରାମ—ରାଣୀ !

କମଳା—ମୁଁ ରାଣୀ ? ଆପଣ ଯେ ବର୍ତ୍ତମାନ ରାଜା ନୁହନ୍ତି, ସାମାନ୍ୟ ପଥର ଭିକାରୀ ।

ମୁକ୍ତାରାମ—ତେବେ କଣ ମୁଁ ମୋର ସର୍ବସ୍ୱ ହରାଇଛି କମଳା ? ନା, ନା, ମୁଁ କିଛି ହରାଇ ନାହିଁ । ତୁମେ ମୋର ରାଜ୍ୟ, ଆଉ ଐଶ୍ୱର୍ଯ୍ୟ ଏହି ରାଧାରମଣ ।

କମଳା—ଐଶ୍ୱର୍ଯ୍ୟ ରାଧାରମଣ ସତ, କିନ୍ତୁ ରାଧାରମଣଙ୍କ ଦୁଃଖରେ ଆପଣ ଦୁଃଖୀ ନୁହନ୍ତି ।

ମୁକ୍ତାରାମ—ରାଧାରମଣଙ୍କ ଦୁଃଖ ? ଏ କପରି କଥା ରାଣୀ !

କମଳା—ରାଧାରମଣଙ୍କର ଘୋର ଦୁଃଖ, ମୁଁ କାଲି ରାତିରେ ରାଧାରମଣଙ୍କର ଦୁଇ ଚକ୍ଷୁରୁ ଜଳ ଗଡ଼ିବାର ଦେଖିଛି ।

ମୁକ୍ତାରାମ—ରାଧାରମଣ ଚକ୍ଷୁରୁ ଜଳ ଗଡ଼ାଉଛନ୍ତି ! ସେ କପରି କଥା କମଳା ?

କମଳା—ଆପଣ ଯେ ଗୋଟାଏ ଗୁରୁତର ଅନ୍ୟାୟ କରିଛନ୍ତି !

ମୁକ୍ତାରାମ—ମୁଁ ତ କିଛି ଅନ୍ୟାୟ କରିନାହିଁ, ମୋତେ ସ୍ମରଣ କରାଇ ଦିଅ କମଳା !

କମଳା—ଆପଣଙ୍କ ପିତୃ ରାଜ୍ୟରେ ଯେ ଯୁଗଳ ମୂର୍ତ୍ତି ବହୁକାଳ ହେଲା ପ୍ରତିଷ୍ଠିତ ଥିଲେ, ଆପଣ ସେ ସମୟରେ ଶତ୍ରୁଧରଙ୍କୁ ସିଂହାସନ ଦେଇ ଚାଲି ଆସିଲେ, ସେତେବେଳେ ରାଧାରମଣଙ୍କ ବାମସ୍ଥ ରାଧାରାଣୀଙ୍କୁ ମାଗିବାକୁ ଭୁଲି ଯାଇଥିଲେ ।

ମୁକ୍ତାରାମ—ବାସ୍ତବିକ ମୁଁ ଭୁଲିଛି । ରାଧାରାଣୀଙ୍କୁ ମାଗି ପାରିଲି ନାହିଁ । ସେତେବେଳେ ମନରଟି ଶୂନ୍ୟ କରିବାକୁ ମୋର ମନ ଡାହିଁକ ହେଲା ନାହିଁ । ଏହି ରାଧାରମଣଙ୍କୁ ଘେନି ଚାଲିଆସିଲି ରାଣୀ ।

କମଳା—ଏ କେବଳ ଆପଣଙ୍କର ସ୍ୱାର୍ଥପର କାର୍ଯ୍ୟ ନୁହେଁ କି ? ଆପଣ କ୍ଷଣକାଳ ପାଇଁ ମୋତେ ଛାଡ଼ି ପାରନ୍ତି ନାହିଁ, କିନ୍ତୁ ଆପଣଙ୍କ ରାଧାରମଣଙ୍କୁ ରାଧାରାଣୀଙ୍କ ନିକଟରୁ ବିଚ୍ଛିନ୍ନ କରି ରଖି ପାରନ୍ତି । ଏହା କଣ ସ୍ୱାର୍ଥପର କାର୍ଯ୍ୟ ନୁହେଁ କି ?

ମୁକ୍ତାରାମ—ବାସ୍ତବିକ, ମୁଁ ସ୍ୱାର୍ଥପର କାର୍ଯ୍ୟ କରିଛି । ମୁଁ ଘୋର ଅପରାଧୀ, ମୋତେ ଉପାୟ କହିଦିଅ କମଳା, ଶତ୍ରୁଧର ତ ବର୍ତ୍ତମାନ ମୋର କୌଣସି ଅନୁରୋଧ ରକ୍ଷାକରିବ ନାହିଁ । ଉପାୟ କଣ ? ରାଧାରମଣ ! ମୋତେ ବୁଦ୍ଧି ଦିଅ, ମୋତେ ଉପାୟ ଦିଅ ।

( ଏହା କହି ଉତ୍ତେଜିତ ହୋଇ ଦ୍ରୁତ ଚାଲିଗଲେ )

କମଳା—ହାଃ ଅଦୃଷ୍ଟ ! ଯେ ଦିନେ ବିପୁଳ ସାମ୍ରାଜ୍ୟର ଅଧିକାରୀ, ସେ ଆଜି ପଥର ଭିକାରୀ !

( ଏ ସମୟେ ଶୁକଦେବ ଗୀତଟିଏ ଗାଇ ଆସିଲେ )

ଗୀତ

ବଂଶୀ ମୋର ବାଜେନା ସଖି,
ବାମେ ନରେଖି ନାହିଁ ଶ୍ରୀରାଧା ।
ମୁହିଁ ଏକାକୀ ସକଳ ଆଡ଼ି
ତା ବିଚ୍ଛେଦେ ମୋର ପରାଣେ ବାଧା । ପଦ ।
ସ୍ଥାବରଜଙ୍ଗମେ ମୋତେ ମୁହିଁ ଦେଖେ,
ପ୍ରିୟା ବିନା ହୋଇ କେମନ୍ତେ ରହି,
ରାଧା ବିନା ମୋର ନାହିଁ ଆଧାର
ତା ବିଚ୍ଛେଦେ ମୋର ପରାଣେ ବାଧା ॥

କମଳା—ଶୁକଦେବ !

ଶୁକଦେବ—ମା !

କମଳା—ରାଧାରମଣଙ୍କ ଚକ୍ଷୁରୁ ଜଳ ଗଡ଼ିବା କଥା କିଛି ଜାଣ କି ?

ଶୁକଦେବ—ଜାଣେ ମା !

କମଳା—ତେବେ ଉପାୟ ?

ଶୁକଦେବ—ଶକ୍ତିଧର ନିକଟରୁ ରାଧାରାଣୀଙ୍କୁ ମାଗି ଆଣିବା ଛଡ଼ା ଅନ୍ୟ କିଛି ଉପାୟ ନାହିଁ ମା !

କମଳା—ଶକ୍ତିଧର ଯେବେ ରାଧାରାଣୀଙ୍କୁ ନ ଦିଏ ।

ଶୁକଦେବ—ତା ହେଲେ ରାଧାରମଣଙ୍କ ଚକ୍ଷୁରୁ, ଅବିରତ ଝର ଝର ଜଳ ଗଡ଼ିବ । ତାକୁ ନିବାରଣ କରିବାର ଅନ୍ୟ ଉପାୟ ନାହିଁ ମା ! ମୁଁ ଆସୁଛି । ( ପ୍ରସ୍ଥାନ )

କମଳା—ହେ ରାଧାରମଣ, ପ୍ରେମର ଠାକୁର ! ଉପାୟ ଦିଅ । ତୁମ ଚକ୍ଷୁରୁ ଜଳ ଗଡ଼ିବା ଦେଖି ମୁଁ ସେ ସ୍ଥିର ହୋଇ ରହି ପାରୁନାହିଁ ।

( ଏ ସମୟେ ଶଙ୍ଖନାଦ ଆସି ପହଞ୍ଚି କହିଲା )

ଶଙ୍ଖନାଦ—ମା ! ଏଇ ଯେ ରାଜା ମହାଶୟ ଆସିଛନ୍ତି ।

( କମଳା ପିତାଙ୍କ ଚରଣ ବନ୍ଦନା କଲା ପରେ )

ରତ୍ନେଶ୍ୱର—ମୁକ୍ତିରାମ, କେଉଁଠାରେ କମଳା ?

କମଳା—ଏଇ ଯେ, ରାଧାରମଣଙ୍କ ପଦ ସେବାରେ ନିଯୁକ୍ତ ଅଛନ୍ତି ।

ରତ୍ନେଶ୍ୱର—ଛି ଛି, ନିର୍ଲଜ୍ଜ କାପୁରୁଷ !

କମଳା—ଏପରି ଭାଷିକି କହୁଛନ୍ତି ବାବା !

ରତ୍ନେଶ୍ୱର—ମୁଁ ତାଙ୍କ ପକ୍ଷରେ, ସେ ହୃତରାଜ୍ୟର ପୁନରୁଦ୍ଧାର କରିବେ ନା ଏହି ରାଜା ରାମଙ୍କ ପଦପ୍ରାନ୍ତେ ପଡ଼ିଥିବେ, ମୁକ୍ତିରାମ ! ମୁକ୍ତିରାମ ! !

( ମୁକ୍ତିରାମ ଧୀରେ ପ୍ରବେଶି ରତ୍ନେଶ୍ୱରଙ୍କ ପଦ ବନ୍ଦନା କଲେ )

ରତ୍ନେଶ୍ୱର—ମୁଁ ତୁମକୁ ଗୋଟାଏ କଥା ପଚାରିବାକୁ ଆସିଛି ମୁକ୍ତିରାମ ! ତୁମେ କି ତୁମର ଏହି ରାଧାରମଣଙ୍କୁ ଚିହ୍ନ ? ସେ ଦିନେ କୁରୁକ୍ଷେତ୍ର ଯୁଦ୍ଧରେ ଅର୍ଜୁନଙ୍କୁ କହିଥିଲେ "କ୍ଲୈବ୍ୟଂ ମସ୍ମଗମଃ ପାର୍ଥ !"

ମୁକ୍ତିରାମ—ମୁଁ ସେ କିଛି ବୁଝି ପାରୁନାହିଁ, ମୋର ପ୍ରତିପକ୍ଷ କିଏ ?

ରତ୍ନେଶ୍ୱର—କପରି ବୁଝିବ ? ତୁମେ ସେ ସାଧୁ, କାପୁରୁଷ । ଏହି ରାଧାରମଣ ମୂର୍ତ୍ତିକୁ ସ୍ୱେଚ୍ଛା ପର କେଉଁ ପ୍ରକାର ଆସିଲ । ମୁଁ ତୁମକୁ କନ୍ୟାଦାନ କରି ଆଉ ସଭ୍ୟ ସମାଜରେ ମୁଖ ଦେଖାଇ ପାରୁନାହିଁ । କି ଲଜ୍ଜା, କି ଅପମାନ ! ସାମାନ୍ୟ ଗୋଟାଏ ବିଗ୍ରହ ବିନିମୟେ ସିଂହାସନ ଦାନ ! ଜଗତ ଇତିହାସରେ ଏ ବୋଧହୁଏ ପ୍ରଥମ ! ଏତେ ବଡ଼ ମୂର୍ଖତା କେହି କେବେ କରି ନାହିଁ କମା କରିବ ନାହିଁ ।

କମଳା—ପିତା ! ମୁଁ ଆପଣଙ୍କୁ ବୁଝାଇ ଦେଉଛି, ସେ କିଛି ଅନ୍ୟାୟ କରି ନାହାନ୍ତି ।

ରତ୍ନେଶ୍ୱର—ସେ କୌଣସି ଅନ୍ୟାୟ କରି ନାହାନ୍ତି ?

କମଳା—ନା ବାବା, ସେ କୌଣସି ଅନ୍ୟାୟ କରି ନାହାନ୍ତି । ଶକ୍ତିଧରର ପ୍ରାଣରେ ରାଜ୍ୟ ଆକାଂକ୍ଷା ଥିଲା । ସେ ଉଦ୍ୟୋଗୀ ଓ ଉଚ୍ଚାଶୟ । ସେ ଏକେତ ସୈନ୍ୟ ମଧ୍ୟ ସଂଗ୍ରହ କରିଥିଲା । ଏପରି ସ୍ଥଳେ ଗୋଟାଏ ଗୋଟାଏ ଯୁଦ୍ଧ ବିଗ୍ରହ ଘଟାଇ ବହୁ-ଲୋକ କ୍ଷୟ ହେବା ଅପେକ୍ଷା ଶକ୍ତିଧର ହାତରେ ସିଂହାସନ ଦେଇ ପ୍ରଜାମାନଙ୍କର କଲ୍ୟାଣ ସାଧନ କରିଛନ୍ତି ବାବା !

ରତ୍ନେଶ୍ୱର ମୂର୍ଖ ତୁମ୍ଭ, ମନୁଷ୍ୟଙ୍କୁ ମାରିବାକୁ ନ ଦେଇ ମଙ୍ଗଳ କାମନା କରିବା କ ଉଚିତ ? ଶଙ୍ଖଧରର ଅତ୍ୟାଚାରରେ ତୋର ପ୍ରଜାମାନେ ଆତୁର ଓ କାତର । ସେମାନେ ଘୋର ନର୍ଯାତନା ସହ୍ୟ କରିବା ଅପେକ୍ଷା ଆତ୍ମବଳ ଦେବାକୁ ପ୍ରସ୍ତୁତ ।

ମୁକ୍ତକାମ—ଏ ଅନର୍ଥ ପାଇଁ ଦାୟୀ ଆପଣଙ୍କ ପୁତ୍ର ବଜ୍ରବାହୁ ।

ରତ୍ନେଶ୍ୱର ବଜ୍ରବାହୁ !

ମୁକ୍ତକାମ - ହଁ ।

ରତ୍ନେଶ୍ୱର—ବଜ୍ରବାହୁ ! ବଜ୍ରବାହୁ ଉପରେ ତୁମ୍ଭେ ଯେ ଅଭିଯୋଗ କରନ୍ତି !

ମୁକ୍ତକାମ—ସେ ଅତ୍ୟନ୍ତ ମିଥ୍ୟାବାଦୀ, ଶଠ ଓ ପ୍ରବଞ୍ଚକ । ମୁଁ ତା'ର ଉକ୍ତିରେ ସତ୍ୟତାକୁ ଚିରଦିନ ସନ୍ଦେହ କରେ ।

ବଜ୍ରବାହୁ—(ପ୍ରବେଶି) ପିତା ! ମୁଁ ବହୁ ସଂଖ୍ୟକ ସୈନ୍ୟ ସଂଗ୍ରହ କରିଛି । ବର୍ତ୍ତମାନ ଆଦେଶ ପାଇଲେ ଶଙ୍ଖଧରର ରାଜଧାନୀ ଆକ୍ରମଣ କରିବାକୁ ସାହସୀ ହେବି ।

ମୁକ୍ତକାମ—ତୁମ୍ଭେ କ ଜାଣନା ବଜ୍ରବାହୁ ! ମୁଁ ସ୍ୱଇଚ୍ଛାରେ ଶଙ୍ଖଧରକୁ ସିଂହାସନ ଦାନ କରି ଆସିଛି ।

ବଜ୍ରବାହୁ—ପ୍ରଜାମାନେ ଯେ ତୁମ୍ଭଙ୍କୁ ଚାହାନ୍ତି ।

ମୁକ୍ତକାମ—ମୁଁ ଚାହେଁ ପ୍ରଜାମାନଙ୍କର କଲ୍ୟାଣ, ମୋର ପ୍ରିୟତମ ପ୍ରଜାମାନଙ୍କ ମୃତଦେହ ସ୍ତୂପାକାର କରି ମୁଁ ମୋର ସିଂହାସନର ସୋପାନ ବଢ଼ାଇ ପାରିବ ନାହିଁ ବଜ୍ରବାହୁ !

ବଜ୍ରବାହୁ—ତେବେ କେଉଁଣ ପ୍ରଜାମାନଙ୍କ ଉପରେ ଏହି ଅତ୍ୟାଚାର ଓ ଉତ୍ପୀଡ଼ନ ହେଉଥିବ ?

ମୁକ୍ତକାମ ସେ କଥା ତୁମ୍ଭେ ଜାଣ, ତୁମ୍ଭେ ତ ଗୋପନେ ପ୍ରଜାମାନଙ୍କ ମଧ୍ୟରେ ଅଶାନ୍ତି ଓ ଉତ୍ତେଜନା ସୃଷ୍ଟି କରିଛ, ଆଉ ଏକ ପଟରେ ଶଙ୍ଖଧରକୁ ଅତ୍ୟାଚାରୀ ବୋଲି ପ୍ରକଟ କରାଇ ଦେଉଛ । ଏ ସବୁ ଅଶାନ୍ତି ଲାଗି ଦାୟୀ ତୁମେ ।

ବଜ୍ରବାହୁ—ମୁଁ ?

ମୁକ୍ତକାମ—ହଁ ତୁମ୍ଭେ; ତୁମ୍ଭର ଉଦ୍ଦେଶ୍ୟ ମୋତେ ସିଂହାସନରେ ବସାଇବା ନୁହେଁ । ଶଙ୍ଖଧରକୁ ସିଂହାସନଚ୍ୟୁତ କରିବା !

ରତ୍ନେଶ୍ୱର—ତା ଯଦି ସତ୍ୟ ହୁଏ, ବେଶ୍ ବଜ୍ରବାହୁ ସାହାଯ୍ୟରେ ଶଙ୍ଖଧରକୁ ସିଂହାସନଚ୍ୟୁତ କରି ତା ପରେ......

ମୁକ୍ତକାମ—ତା ପରେ ଆଉ କଅଣ ? ବଜ୍ରବାହୁର ହାତ ଧରି ସିଂହାସନରେ ବସାଇ ଦେବା ଆପଣଙ୍କର ଉଦ୍ଦେଶ୍ୟ, କିନ୍ତୁ କାହିଁକି ଏପରି ପରିବର୍ତ୍ତନର ପ୍ରୟୋଜନ ହେଉଛି; ମୁଁ ଯେ କିଛି ବୁଝି ପାରୁ ନାହିଁ ।

ଶଙ୍ଖନାଦ—ଶଙ୍ଖଧର ଯେ ଅତ୍ୟାଚାରୀ ପିତା !

ମୁକ୍ତକାମ—ତୋର ଏ ଯେ ମାମୁଁ, ତା' ଠାରୁ କଣ ଅତ୍ୟାଚାରୀ ନ ହେବେ କାହିଁକି ? ଏପରି କିଛି ପ୍ରମାଣ ଦେଇ ପାରିବୁ ଶଙ୍ଖନାଦ ! ନା, ତା ଦେଇ ପାରିବୁ ନାହିଁ ! ମୁଁ ମାତ୍ର ଦୁଇଟି ବର୍ଷ ମଧ୍ୟରେ ତୋର ମାମୁଁଙ୍କ ଗୁଣଗ୍ରାମ ବୁଝି ନେଇଛି । ପ୍ରଜାମାନେ ଯେବେ ଶଙ୍ଖଧରର ବଶବର୍ତ୍ତୀ ନ ହୋଇ ନାନାଦି ପ୍ରତିବାଦ କରନ୍ତି, ସେ ନିଜେ ନଷ୍ଟ ହେବେ । ଅବଶେଷରେ ରାଜପୁରୀ ଶ୍ମଶାନରେ ପରିଣତ ହେବ ।

ରତ୍ନେଶ୍ୱର—ତୁମ୍ଭେ ଉନ୍ମାଦ, ମୁକ୍ତକାମ ! ତୁମେ ଉନ୍ମାଦ ।

ବଜ୍ରବାହୁ—ମୁଁ ଗୋଟିଏ ପ୍ରଶ୍ନକଥା ପଚାରିବାକୁ ଚାହେଁ, ତୁମ୍ଭେ ଶଙ୍ଖଧରକୁ ସିଂହାସନଚ୍ୟୁତ କରିବାକୁ କୌଣସି ଚେଷ୍ଟା କରିବ ନାହିଁ ?

ମୁକ୍ତକାମ—ନା କେବେ ନୁହେଁ । ମୁଁ ସ୍ୱଇଚ୍ଛାରେ ଶଙ୍ଖଧରକୁ ସିଂହାସନ ଦାନ କରି ଆସିଛି । ତା ଫେରି ପାଇବାର କିଛି ମାତ୍ର ଚେଷ୍ଟା କରିବି ନାହିଁ ।

ରତ୍ନେଶ୍ୱର—ସେ ଚେଷ୍ଟା ମୁଁ କରିବ । ମୁଁ ଶଙ୍ଖନାଦ ପ୍ରଭୃତି ସମସ୍ତଙ୍କୁ ଅବସର ଦେବ । ମୁଁ ବୃଦ୍ଧ ହୋଇଛି ସତ୍ୟ, ମୁକ୍ତକାମ ! କିନ୍ତୁ ଏହିର କଥା ମନେ ପଡ଼ିଲେ ମୋର ଶିର ପ୍ରଶିରର ରକ୍ତ ଉତ୍ତେଜିତ ହୋଇଉଠେ । ତୁମେ ଯାଅ ବଜ୍ରବାହୁ, ତୁମେ

ସୈନ୍ୟ ସମାବେଶ କର । ମୁଁ ସତ୍ୟ କହୁଛି, ସେ ଚେଷ୍ଟା ମୁଁ କରିବି । (ପ୍ରସ୍ଥାନ)

ବଜ୍ରବାହୁ—ତେବେ ମୁଁ ଆସେ ।

ରତ୍ନେଶ୍ୱର—ଆଚ୍ଛା ଶଙ୍ଖନାଦ ! ତୁ ବର୍ତ୍ତମାନ ବୟଃପ୍ରାପ୍ତ, ତୋର କି ଏଥିରେ ମତ ?

ଶଙ୍ଖନାଦ—ମା, ବାପା ! ମୋତେ ଅନୁମତି ଦିଅ, ମୁଁ ଯୁଦ୍ଧ କରିବି । ପ୍ରଜାମାନଙ୍କ ଉପରେ ଏତେ ଅତ୍ୟାଚାର ସହ୍ୟ ହୁଏ ନା ମା !

କମଳା—(ରତ୍ନେଶ୍ୱର ପ୍ରତି) ବାପା ! ମୋର ଏକମାତ୍ର ପୁତ୍ରକୁ ଯୁଦ୍ଧାନଳରେ ଆହୁତି ଦିଅନା !

ମୁକ୍ତାରାମ—ହେ ରାଧାରମଣ ! ତୁମର କି ଇଚ୍ଛା, ତୁମେ ଜାଣ । ମୁଁ ଏ ସମସ୍ତ ଦେଖି ଅବାକ୍ ହୋଇଗଲିଣି । (ପ୍ରସ୍ଥାନ)

ଶଙ୍ଖନାଦ—ମା ! ତୁମେ ଯଦି ଥରେ ବାପାଙ୍କୁ କୁହ, ସେ ଯୁଦ୍ଧଲାଗି ପ୍ରସ୍ତୁତ ହେବେ । ମୁଁ ଶୁଣିଛି, ତାଙ୍କପରି ସାହସୀ ଓ ଯୋଦ୍ଧା ଆଉ କେହି ନାହାନ୍ତି ।

କମଳା—ସେ କଥା ଖୁବ୍ ସତ୍ୟ ଶଙ୍ଖନାଦ ! କିନ୍ତୁ ସେ ରାଧାରମଣଙ୍କ ପଦ ଛୁଇଁ ପ୍ରତିଜ୍ଞା କରିଛନ୍ତି, ଜୀବନରେ କାହା ଅଙ୍ଗରେ ଅସ୍ତ୍ରାଘାତ କରିବେ ନାହିଁ । ବରଂ ପ୍ରୟୋଜନ ହେଲେ ଆତ୍ମହତ୍ୟା କରିବେ ।

ରତ୍ନେଶ୍ୱର—ତା ହେଲେ ଶଙ୍ଖନାଦ, ତୁ ବର୍ତ୍ତମାନ ମୋ ସଙ୍ଗରେ ଯିବୁ କି ନା ।

ଶଙ୍ଖନାଦ—ମା ! ମୋତେ ଅନୁମତି ଦିଅ । ବାପା ପଛକେ ଯୁଦ୍ଧ ନ କରିବେ ନ କରନ୍ତୁ, ମୁଁ ଯୁଦ୍ଧକରି ଶତ୍ରୁଧରକୁ ସିଂହାସନରୁ ତଡ଼ି ଦେଇ ମୋର ବାପାଙ୍କୁ ସିଂହାସନରେ ବସାଇବି । ମା ! ତୁମେ ଯେ ରାଜରାଣୀ, ତୁମର ଏ ଭିକାରୁଣୀ ବେଶ ଦେଖିଲେ ମୋର ହୃଦୟ ଫାଟିଯାଏ ମା ।

କମଳା—(ରତ୍ନେଶ୍ୱର ପ୍ରତି) ବାପା ! ମୋତେ ଆଉ ଗୋଟିଏ ଦିନ ଭାବିବାକୁ ଅନୁମତି ଦିଅନ୍ତୁ ।

ରତ୍ନେଶ୍ୱର—ନା ! ମୁଁ ବର୍ତ୍ତମାନ ଶୁଣିବାକୁ ଚାହେଁ, ଶଙ୍ଖନାଦ ମୋ ସଙ୍ଗରେ ଯିବ କି ନାଁ ।

କମଳା—ନା ଯିବ ନାହିଁ । ମୁଁ ତାକୁ ଯୁଦ୍ଧକୁ ଯିବାକୁ ଦେବି ନାହିଁ । ରାଜ୍ୟ ଜୟ କରିବା ଅପେକ୍ଷା ଆତ୍ମଜୟ କରିବା ଅଧିକ ବଡ଼ କାର୍ଯ୍ୟ ପିତା !

ରତ୍ନେଶ୍ୱର—ହଁ, ସ୍ୱୀକାର କଲେ ଖୁବ୍ ଭଲ କାର୍ଯ୍ୟ କିନ୍ତୁ, ତା ଭଳା ବା ରାଜପୁତର କାର୍ଯ୍ୟ ନୁହେଁ । ତା ହେଲେ ଶଙ୍ଖନାଦ, ତୁ ତୋର ବାପାଙ୍କ ପରି ଏହି ରାଧାରମଣ ମନ୍ଦିରରେ ପଡ଼ିଥା, ପଶ୍ଚାତେ ମୋର କୌଣସି ଦୋଷ ଦାଉକୁ ନାହିଁ । ମୁଁ ଆସୁଛି । (ପ୍ରସ୍ଥାନ)

ଶଙ୍ଖନାଦ—ଅଜା ମହାଶୟ ! ଯାଅନା, ଯାଅନା, ଶୁଣ ଶୁଣ । (ପ୍ରସ୍ଥାନ)

କମଳା—ଶଙ୍ଖନାଦ ! ଶଙ୍ଖନାଦ ! ! ହେ ରାଧାରମଣ, ତୁମେ ସତ୍ୟ କି ଯୁଦ୍ଧ ବିଗ୍ରହ ଇଚ୍ଛା କର ?

(ଶୁକଦେବ ପ୍ରବେଶ)

ଗୀତ

ଭୁଲି ନପାରି ଗୋ ଭୁଲି ନପାରି
ପ୍ରିୟାମୁଖ ଚନ୍ଦ୍ର ମାଧୁରୀ
ମନେ ପଡ଼େ ସେହି ବଇଜୟନ୍ତୀ
ମନେ ପଡ଼େ ସେହି କଦମ୍ବମୂଳ
ଜୀବନେ ମରଣେ ଶୟନେ ସ୍ୱପନେ
ରାଧା ମୋର ଏକା ଚରଣେଶ୍ୱରୀ ।

(ମୁକ୍ତାରାମ ପ୍ରବେଶି)

ରାଣୀ ! ମୁଁ ଆଜ ରାଧାରମଣଙ୍କ ଚକ୍ଷୁରୁ ଜଳ ଗଡ଼ିବାର ପରିଷ୍କାର ଦେଖିବାକୁ ପାଉଛି ।

କମଳା—ତାର ଉପାୟ ?

ମୁକ୍ତାରାମ—ହଁ ଉପାୟ ଅଛି, ଆଜ ମୁଁ ଶତ୍ରୁଧର ନିକଟକୁ ଲୋକ ପଠାଇବି । ସେ ଯେବେ ରାଧାରାଣୀଙ୍କୁ ପଠାଇ ନ ଦିଏ, ତା ହେଲେ ମୁଁ ନିଶ୍ଚୟ ଯୁଦ୍ଧ ଘୋଷଣା କରିବି ।

କମଳା—ଆପଣ ଯେ ରାଧାରମଣଙ୍କ ପଦଯୁଗଳ ଛୁଇଁ ପ୍ରତିଜ୍ଞା କରିଛନ୍ତି, ଜୀବନରେ କାହା ଅଙ୍ଗରେ ଅସ୍ତ୍ରାଘାତ କରିବେ ନାହିଁ !

ମୁକ୍ତାରାମ—ପ୍ରତିଜ୍ଞା କରିଛି ସତ୍ୟ, କିନ୍ତୁ ରାଧାରମଣଙ୍କ ଦୁଇ ଚକ୍ଷୁରୁ ଜଳ ଗଡ଼ିବା ଦେଖି ମୁଁ ଆଉ

ଧୈର୍ଯ୍ୟଧରି ରହିପାରୁ ନାହିଁ । ମୋତେ ବିଦ୍ରୋହ ଯୁଦ୍ଧ କରିବାକୁ ପଡ଼ିବ । ମୁଁ ମୋର ଶ୍ରୀରାଧାଙ୍କୁ ଗ୍ଭହେଁ । ଶୁକଦେବ ! ତୁମ୍ଭଦ୍ୱାରା ଗୋଟିଏ କାର୍ଯ୍ୟ ହୋଇପାରିବ କି ?

ଶୁକଦେବ— କି କାର୍ଯ୍ୟ ?

ମୁକ୍ତାରାମ—ମୋ ତରଫରୁ ଶଙ୍ଖଧର ନିକଟକୁ ଯାଇ ଶ୍ରୀରାଧା ମୂର୍ତ୍ତିଙ୍କୁ ଆଣିବାକୁ ପ୍ରାର୍ଥନା କରିବ, ଆଉ ବୁଝାଇ କହିବ, ସେ ଯଦି ମୋର ରାଧାରାଣୀଙ୍କୁ ଫେରାଇ ନ ଦିଏ, ତା ହେଲେ ମୁଁ ଅନଶନ କରି ପ୍ରାଣତ୍ୟାଗ କରିବ ।

ଶୁକଦେବ—ତାର ଫଳ କଅଣ ହେବ ରାଜା ! ସେ ଯେ ଆନନ୍ଦରେ ନୃତ୍ୟ କରିବ । ସେ ଯେ ଆପଣଙ୍କ ମୃତ୍ୟୁ ଗ୍ଭହେଁ ।

ମୁକ୍ତାରାମ—କଅଣ କହୁଛ ଶୁକଦେବ ! ମୁଁ ତାକୁ ରାଜ୍ୟ ଦେଇଛି, ଐଶ୍ୱର୍ଯ୍ୟ ଦେଇଛି, ତାର ସେଥିରେ ତୃପ୍ତି ନାହିଁ ଯେ—ସେ ମୋର ମୃତ୍ୟୁ ଗ୍ଭହେଁ ? ଏକଥା ବିଶ୍ୱାସ ହେବା ପୂର୍ବ୍ବ ମୁଁ ଯେପରି ମରିଥାଏ । ରାଧାରମଣ ମୋତେ ମରିବାକୁ ଦିଅ, ମୋତେ ମରିବାକୁ ଦିଅ ! (ମନ୍ଦିରକୁ ଗ୍ଭଲିଗଲେ)

କମଳା—ଶୁକଦେବ ! ତୁମ୍ଭେ ଶଙ୍ଖଧରକୁ କାହିଁକି ଗୋଟାଏ ନରକ ପଶୁ ସଦୃଶ ମନେ କର ? ତୁମ୍ଭେ ପତ୍ରଟି ନେଇ ଯାଅ, ସେ ନିଶ୍ଚେ ଶ୍ରୀରାଧା ମୂର୍ତ୍ତିଙ୍କୁ ପଠାଇ ଦେବ । ଆସ ମୋ ସାଙ୍ଗରେ ଆସ । ରାଧା-ରମଣ ! ଶଙ୍ଖଧରକୁ ସୁବୁଦ୍ଧି ଦିଅ, ଶଙ୍ଖଧରକୁ ସୁବୁଦ୍ଧି ଦିଅ । ( ପ୍ରସ୍ଥାନ )

———

## ଦ୍ୱିତୀୟ ଦୃଶ୍ୟ

( ଜଣେ ବୈଷ୍ଣବ ଗୀତଟିଏ ଗାଇ ପ୍ରବେଶ )

ମିଛ ମାୟାରେ ଭୁଲନା ରେ ପାଗଳା ମନ ।
ଅସାର ସଂସାର — କେହ୍ନ ନୁହେଁ କାର
ଧନ, ଦାରା, ସୁତ ସବୁ ହିଁ ଅଥିର
କ୍ଷଣିକ ବିଳାସ — ନାହିଁ ସୁଖ ଲେଶ
କ୍ଷଣଭଙ୍ଗୁର ଏ ଜୀବନ । ୧ ।
ଆତ୍ମୀୟ ସୋଦର — ଯାକୁ ବୋଲୁ ମୋର
ମଲାବେଳେ କେହ୍ନ ନ ଯିବେ ସଙ୍ଗର
ତୋ ପିନ୍ଧା ପାଲଟି — ଦେବେ ଘୋଡ଼ ଘୋଡ଼
ଗନ୍ତୁଥିବ ମୁଣ୍ଡ ଶ୍ମଶାନ । ୨ ।
ଯେବେ ଗଣ୍ଠିଧନ — ଭଜ ନାମ କୃଷ୍ଣ
ସେହି ତୋ ପିଣ୍ଡକୁ ହୋଇବ କାରଣ
ପିବୁ ସୁଖ ନିଦ୍ରା — ନାହିଁ ଭବବାଧା
ନ ଦଣ୍ଡିବ କାଳ ଶମନ । ୩ ।

( ଏ ସମୟରେ ଶଙ୍ଖଧର ପହଞ୍ଚିଗଲେ, ବୈଷ୍ଣବ ନିକଟକୁ ଯାଇ ମାଗିଲା )

ବାବା ! ଗୋଟିଏ ପଇସା ଭିକାରୀକୁ ଦେ ।

ଶଙ୍ଖଧର—ଏ ଭବସଂସାରେ ସାର ବୋଇଲେ କେବଳ ପଇସା, ଆଉ ଅନ୍ୟ କିଛି ନାହିଁ ? ଆଚ୍ଛା, କେତେ ଦିନ ହେବ ବାବାଜୀ ହୋଇଛ ? ବୟସ କେତେ ?

ବୈଷ୍ଣବ—ବାବା ! ବର୍ଷ ଦୁଇ ତିନି ହେବ ଭେଷ ନେଲିଣି, ବୟସଟା କେତେ ସ୍ମରଣ ହେଉନାହିଁ । ପ୍ରାୟ ଏଇ...ତିରିଶ ବତିଶି ମଧ୍ୟରେ ।

ଶଙ୍ଖଧର—ଆଚ୍ଛା ! ଏତେ କମ୍ ବୟସରେ ବାବାଜୀ ହେବାର ମତଲବ ?

ବୈଷ୍ଣବ— ବାବା, ଦେଖିଲି ଏ ସଂସାରଟା କିଛି ନୁହେଁ । ଖାଲି ମୋହମାୟା, ଅଶାନ୍ତି । ବାବା କିଛି ନୁହେଁ । ଦେ ବାବା, ଗୋଟିଏ ପଇସା ଦେ । ବାରଦ୍ୱାର ଭିକାରି, ବାରଦ୍ୱାର ହେବୁ ।

ଶଙ୍ଖଧର— ଆଚ୍ଛା, ବିଭା ହୋଇଥିଲ ?

ବୈଷ୍ଣବ—ବାବା, ସେସବୁ ଲାଜ ଆଉ ବୈଷ୍ଣବ ଲୋକକୁ କଅଣ ପଚାରୁଛ ? ବାବା ସେ ବିଭା ହେବା ନହେବା କିଛି ନୁହେଁ, କିଛି ନୁହେଁ ।

ଶଙ୍ଖଧର —ପିଲାପିଲି କେତୋଟି ?

ବୈଷ୍ଣବ—ବାବା ! ସେଇଥିରେ ତ ଜଞ୍ଜାଳ ଜର୍ଜରିତ ହେବାକୁ ପଡ଼ୁଛି । ପୁଅ ଝିଅ ହୋଇ ଛଅଟି ।

ଶଙ୍ଖଧର—ଓଃ-ତା ହେଲେ ତ ତୁମେ ତ୍ୟାଗୀ ବୈଷ୍ଣବ ।

ବୈଷ୍ଣବ—ହିଁ ବାବା ! ଏକ ରକମ ତ୍ୟାଗୀ ।

ଶଙ୍ଖଧର—ଆଚ୍ଛା, ସେମାନଙ୍କର ବ୍ୟବସ୍ଥା ?

ବୈଷ୍ଣବ—ତାଙ୍କ ବ୍ୟବସ୍ଥା ତାଙ୍କର । ବାବା, ଶ୍ରୀମଦ୍ ଭାଗବତରେ ଶୁଣିଥିବେ, ପ୍ରବ ନବେଶି ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ ।

ଶଙ୍ଖଧର—ଓଃ, ଆପଣ ତ ବେଶ ଶାସ୍ତ୍ରଦର୍ଶୀ ।

ବୈଷ୍ଣବ—ବାବା ! ଯାହା ଗୁରୁଙ୍କ ଆଜ୍ଞା ହୋଇଛି ।

ଶଙ୍ଖଧର—ବାବାଜୀ ! ଗୁରୁ କିଏ ?

ବୈଷ୍ଣବ—ବାବା ! ବୁଝିନାହଁ ?
ମନ ମୋହର ନିଜ ଗୁରୁ,
ଉତ୍ତର କେତେବେଁ ପଚ୍ଛୁ,

ଶଙ୍ଖଧର—ବାଃ, ମନ କହୁଛି ତୁମ ପିଲାଙ୍କୁ ଗଡ଼େଇ ମାରି ବୈରାଗୀ ସାଜି ବୁଲିବ ?

ବୈଷ୍ଣବ—ନା ବାବା ! ଭିକ୍ଷାପଣ ଯା କିଛି ମିଳେ, ଠାକୁରଙ୍କ ଗଞ୍ଜେଇ ଝିଆଣା ଯାଇ ଅବଶିଷ୍ଟ ଘରକୁ ପଠାଇ ଦେବାକୁ ପଡ଼େ ।

ଶଙ୍ଖଧର—ଠାକୁରଙ୍କର ଗଞ୍ଜେଇଟା ବି ଚଳେ ? ଚିଲମ ଫିଲମ ଅଛି ନା, ବାହାର କର ତ ?

ବୈଷ୍ଣବ—ବାବା ! ଥାଇପାରେ, ମାଲପାଲ ଅଛି କି ?
(ଚିଲମ ଝୁଲିରୁ ଖୋଜି ହୋଇ)
ବାବା ! ଚାହିଁକି ପଇନାହଁ, କେଉଁଠି ଗୁଣ୍ଡଦେଇ ଆସିଲିଣି । ଦେ ବାବା ଜଳୁର ଦେଉଛୁ ଗୋଟିଏ ପଇସା ଦେ ଯିବା ?

ଶଙ୍ଖଧର—ବାବାଜୀ ! ଜାଣ ଏ ଦେଶର ରାଜା କିଏ ?

ବୈଷ୍ଣବ—ରାଜା ! ରାଜା ତ ଥିଲେ ପରମଧାର୍ମିକ ମୁକ୍ତକାମ । ଯୋଗୀ ଭକ୍ତଙ୍କୁ ଦେଖିଲେ କୋଟି ପାଦପୂଜା ବାବା, କୋଟି ପାଦପୂଜା ।

ଶଙ୍ଖଧର—ଓଃ, ଯେଉଁ ସକାଶେ ଶିକଡ ଶଢାକାଟି ବାହାରି ପଡ଼ିଛ ବାବାଜୀ ? ଅଚ୍ଛା, କାମଧନ୍ଦା କରି ଚଳୁଥିଲେ ତ ବେଶ୍ ସୁବିଧାରେ ଚଳୁଅନ୍ତ !

ବୈଷ୍ଣବ—ନାହିଁ ବାବା ! ଈଶ୍ବର ସୁଖେ ଦୁଃଖେ ଯାହା ଦେଉଛନ୍ତି ସେଇ ଯଥେଷ୍ଟ ।

ଶଙ୍ଖଧର—ନିଜର ଜମିବାଡ଼ି କିଛି ଥିଲା ନାଁ ?

ବୈଷ୍ଣବ—ହଁ ବାବା ! ଯାହା ମାଣେ ଦିଇ ଯା ଥିଲା, ତାକୁ ସବୁ କାଟକୁଟ ଲଗାଇ ଦେଇଛୁ, ସେ ସବୁ କିଛି ବୁଝିବାକୁ ପଡେ ନାଁ !

ଶଙ୍ଖଧର—ହୁଁ, ତାକୁ ଯେ ଭୋଗ କରିବାକୁ ପଡ଼ିବ ବାବାଜି ! ହଳକର ଆସେ ?

ବୈଷ୍ଣବ—ବାବା ! ବଡ଼ ପରିଶ୍ରମ କାର୍ଯ୍ୟ, ଆମେ ଟିକେ ପିଲାଦିନୁ କାମ ଧନ୍ଦାକୁ ପାରୁ ନାହିଁ ।

ଶଙ୍ଖଧର—ବେଶ ତ ମୋଟା ମୋଟି ହୋଇଛୁ, କାମ ଧନ୍ଦାକୁ ପାରିବୁ ନାହିଁ କଣ ? ବୈରାଗୀ ସାଜି ଭିକ୍ଷା ମାଗିବାଟା ସୁବିଧା ଉପାୟ, ନାଁ ?

ବୈଷ୍ଣବ—ହଁ ବାବା ! ପଇସାଟିଏ ଦେ ଯିବା ?

ଶଙ୍ଖଧର—ବାବାଜି ! ପଇସାଟି ଗୋଲାକାର
ଦୁଇଅଣାଟି ଚୌକା
ଭବର ଭବାର୍ଣ୍ଣବ ତରଣେ ନୌକା ।
ପଇସାଟି ପାଇଲେ ହୁଏ ଗଞ୍ଜେଇ ଦଳନ
ପଇସାଟି ଲାଗି ଆଜ ଚାବୁକ ମର୍ଦ୍ଦନ ।
(ନେପଥ୍ୟକୁ ଚାହିଁ) କିଏ ଅଛି, ଚାବୁକଟା ନେଇ ଆସ ତ !

ବୈଷ୍ଣବ—ଚାବୁକ ! ସେ କଅଣ ହେବ ବାବା ?

ଶଙ୍ଖଧର—ଭିକ୍ଷା ଦିଆହେବ (ଚାବୁକ ପହଞ୍ଚାଇଲା)
ହେ ପ୍ରହରୀ ଲଗା ଚାବୁକ—
(ଚାବୁକ ପ୍ରହାର ହେଲାରୁ ବୈଷ୍ଣବ ମରିଗଲି, ମରିଗଲି, ମରିଗଲି, ଡାକ ଦେଲା ।)

ଶଙ୍ଖଧର—ଚାକିରି କରିବୁ ?

ବୈଷ୍ଣବ—ହଁ, ବାବା !

ଶଙ୍ଖଧର—(ପ୍ରହରୀ ପ୍ରତି) ନେଇ ଯା ଏହାକୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବା ଲାଗି ମନ୍ତ୍ରୀଙ୍କୁ କହିବ, ଆଉ ମାସିକ ଦଶଟଙ୍କା କରି ବେତନ ତାର ଘରଯା ଶକଟ ପଠାଇଦେବ ।

ବୈଷ୍ଣବ—ଆଜ୍ଞା, ନାଇଁ ।

ଶଙ୍ଖଧର—ସୈତାନ !

ବୈଷ୍ଣବ—ହଁ, ଯାଉଛି ବାବା ! (ପ୍ରସ୍ଥାନ)

ଶଙ୍ଖଧର—କାମ ଧନ୍ଦା ଚାକିରି ବାକିରି ନ କରି ଭିକ୍ଷାର୍ଥି ହେଣା ?

(ସୁନନ୍ଦା ଧୀରେ ପ୍ରବେଶି)

ସୁନନ୍ଦା—ବାବା ! ତୁମେ ଯାହାକୁ ମନ ତାକୁ ଚାବୁକ ମାରୁଛ ?

ଶଙ୍ଖଧର – ଏସବୁହିଁ ତ ସେ ଷୈଭାନ, ସୁନନ୍ଦା, ଏମାନଙ୍କ ସୁଶିକ୍ଷାର ଏକମାତ୍ର ବାହକ ଗ୍ରନ୍ଥକ ।

(ଉଗ୍ରସେନ ପ୍ରବେଶି)

ରାଜା ! ଯେ ସମସ୍ତ ପ୍ରଜାମାନଙ୍କର ଘରଦ୍ୱାର ପୋଡ଼ି ଦିଆଯାଇଥିଲା, ସେମାନେ ବର୍ତ୍ତମାନ ବଶ୍ୟତା ସ୍ୱୀକାର କରିଛନ୍ତି ।

ଶଙ୍ଖଧର—ସତେ ନା ? ଅଚ୍ଛା, ସେମାନଙ୍କର ଖୁବ୍ ଭଲ ଘର ମଜ୍‌ବୁତ କରି ତିଆରି କରିଦିଅ, ଯେପରି ସେମାନେ ରହିବେ ।

(ଉଗ୍ରସେନ ପ୍ରସ୍ଥାନ)

ସୁନନ୍ଦା – ବାବା ! ତୁମେ ପ୍ରଜାମାନଙ୍କ ଉପରେ ଏତେ ଅତ୍ୟାଚାର କର କାହିଁକି ?

ଶଙ୍ଖଧର— ପ୍ରଜାମାନେ ଯେ ମୋ ଉପରେ ଏତେ ଅତ୍ୟାଚାର କରନ୍ତି ? ମୁଁ ରାଜା, ସେ ମୋର ରାଜସ୍ୱ ଦେବେ ନାହିଁ କମ୍ବା ରାଜା ବୋଲି ସ୍ୱୀକାର କରିବେ ନାହିଁ ।

(ଦୂରରୁ ଜଣେ ଫେରିବାଲା ଡାକିଲା କଦଳୀ, କଦଳୀ)

ଶଙ୍ଖଧର – ଫେରିବାଲା ! ଆଣ ତ କଦଳୀ ।

(ଫେରିବାଲା ନିକଟକୁ ଆସିଲା)

କଦଳୀ କି ଦରରେ ବିକି କରୁଛୁ ?

ଫେରିବାଲା – ବାବୁ, ଗୋଟା ଦି ପଇସା ।

ଶଙ୍ଖଧର – ଅଚ୍ଛା ଫେରିବାଲା ! ଜାଣୁ ଏ ଦେଶର ରାଜା କିଏ ?

ଫେରିବାଲା—ରାଜା ?

ଶଙ୍ଖଧର – ହଁ, ରାଜା ।

ଫେରିବାଲା—ରାଜା ତ ଥିଲେ ସେଇ ପରମଧାର୍ମିକ ମୁକ୍ତରାମ ।

ଶଙ୍ଖଧର —ଆଉ ଅଧର୍ମୀ ରାଜା କିଏ ତାକୁ ଚହ୍ନିଚୁ ?

ଫେରିବାଲା —ବାବା ରେ ! ସେ ବୁଆଡ଼େ ଗୋଟାଏ ଡକାଏତ ।

ଶଙ୍ଖଧର – ହଁ, ତୁ ଏ କଦଳୀ ଦାମ ପାଇବୁ ନିଶ୍ଚୟ ନାହିଁ ।

ଫେରିବାଲା—କାହିଁକି ଆଜ୍ଞା ?

ଶଙ୍ଖଧର – ( ଫେରିବାଲା ପ୍ରତି ) ଲଗା ଖୁବ୍ ।

ଫେରିବାଲା—ମଣିଗଲି ବାବୁ ! ମଣିଗଲି ବାବୁ ! ମୁଁ କଦଳୀ ଦେବା କରିନାହିଁ ।

( ଚୂଡ଼ାମଣି ପ୍ରବେଶି )

ଚୂଡ଼ାମଣି – ହଁ, ବାବୁ ଏ ଭଲ ସ୍ୱେଚ୍ଛା, ଦେଖେଁ ତୋ କଦଳୀ ! ହଁ ଠିକ୍ ଧରିଛି, ଏ ମୋର ବାଡ଼ି ଚମ୍ପା-କଦଳୀ, ମୁଁ କହୁଛି କଦଳୀ ନେଲା କିଏ ! ଏ ସ୍ୱେଚ୍ଛାକର ମୋର ବାଡ଼ି ମାରିଛି ହୋ ।

ଫେରିବାଲା – ଆଜ୍ଞା ! ଗୋସେଇଁ କହୁଛନ୍ତି ତାଙ୍କର ଚମ୍ପାକଦଳୀ, ମୋର ଏସବୁ କାଠିଆ କଦଳୀ ।

ଶଙ୍ଖଧର—ଗୋସେଇଁ ! ତୁମର ସବୁ ଚମ୍ପାକଦଳୀ ଚୋରି ଯାଇଛି, ଏ କଦଳୀ କଣରି ତୁମର ?

ଚୂଡ଼ାମଣି—ହଁ, ମୋର ହିଁକେ ଏଭ୍ରମ ହୋଇଯାଇଛି। ସେଇ କାଠିଆ କଦଳୀ ହେବ ସବୁ ! ହଁ, ସେଇ କାଠିଆ କଦଳୀ ମୋର । ( କାନରେ ବାନ୍ଧିବା )

ଶଙ୍ଖଧର—ଏ କଥଣ ହେଉଛି, ଗୋସେଇଁ !

ଚୂଡ଼ାମଣି—ଆଜ୍ଞା ! ଶୁଣନ୍ତୁ, ଆପଣ ଜଣେ ଶିକ୍ଷିତ ଭଦ୍ରଲୋକ । ବିବେଚନା କରି ଦେଖନ୍ତୁ, ମୋ ବାଡ଼ିରୁ ନଗଦ ସ୍ୱେଚ୍ଛ ହୋଇଥିବାରୁ କଦଳୀ ଗୁଡ଼ିକ ଅଧେ ଅଧେ ବି କଞ୍ଚା ଅଛି ।

ଶଙ୍ଖଧର—( ହାସ୍ୟକରି ) ହଁ, ତା ତ ସତ ।

ଚୂଡ଼ାମଣି – ହାରାମଯାଦା ! ସ୍ୱେ ସ୍ୱେଚ୍ଛା, ଏ କଥା ଯେତେବେଳେ ଆପଣଙ୍କ ନିକଟରେ ପ୍ରମାଣିତ ହେଲଣି, ତେତେବେଳେ ଏ କଦଳୀଗୁଡ଼ିକ ଠାକୁରଙ୍କ ଲାଗି ନେଇଯାଉଛି, ଫେରିବାଲା ! ମାର ଖୁବ୍ ମାର ।

( କଦଳୀ ବାନ୍ଧି, ନେଇ ଯିବାକୁ ବାହାରିଲେ )

ଫେରିବାଲା—ଗୋସେଇଁ ! ମୋ କଦଳୀ କଣନା, ମୁଁ ଏ କଦଳୀ ବିକି ପିଲା କୁଟୁମ୍ବ ପୋଷେ ।

ଚୂଡ଼ାମଣି—( ସକ୍ରୋଧେ ) ଯା ଯା. ସ୍ଲେଚ୍ଛଲୋକ ! କଦଳୀ ବିକି ପିଲା କୁଟୁମ୍ବ ପୋଷିବୁ ? ଯା ଯା,

( ପ୍ରସ୍ଥାନୋଦ୍ୟତ )

ଶଙ୍ଖଧର—ଛାଡ଼ ତୁଅ ଗୋସେଇଁ ! ( ଫେରିବାଲାକୁ ଗୋଟିଏ ଟଙ୍କା ଦେଇ ) ଏ ଫେରିବାଲା, ତୋ କଦଳୀ ଦାମ ନେ ।

ଚୂଡ଼ାମଣି—ଆପଣ ଦାମ୍‌ଟା ଦେଇଦେଲେ, ( ସୁନନ୍ଦାକୁ ଗୋଟିଏ କଦଳୀ ଦେଖାଇ ) ମା, ନେ ଗୋଟିଏ କଦଳୀ ଖା ।

ଫେରିବାଲ—ମୋତେ ଟଙ୍କାଟାଏ ଯେ ଦେଲେ ?

ଶଙ୍ଖଧର— ଚୂଡ଼ାମଣି ପ୍ରତି ) ଗୋସେଇଁ, କହି ପାରିବ ଏ ଦେଶର ରାଜା କିଏ ?

ଚୂଡ଼ାମଣି—ରାଜା ? ରାଜା ତ ଥିଲେ ସେହି ପରମ ଧାର୍ମିକ ମୁକ୍ତକାମ । ତାଙ୍କୁ ତଡ଼ିଦେଇ ବର୍ତ୍ତମାନ ଗୋଟାଏ କିଏ ରାଜା ହୋଇଛି, ଶଙ୍ଖଧର ! ସେ ଭାଷଣ୍ଡ, ତା ନାଁ ମୁହଁରେ ଧରି ନାଁ । ତାର ନାଁ ଅଛି ଧର୍ମଜ୍ଞାନ, ନା ଅଛି ଦେବ ଦ୍ୱିଜେ ଭକ୍ତି ? ସୁଦ୍ଧ ଗୋଟାଏ ନଦାରଦ ପାଷଣ୍ଡ, ପଶୁଠାରୁ ହୀନ ।

ଶଙ୍ଖଧର—ଆଚ୍ଛା ସେ ପାଷଣ୍ଡ ଶଙ୍ଖଧରକୁ ଚିହ୍ନ ? ତାକୁ କେବେ ଦେଖିଛ ?

ଚୂଡ଼ାମଣି—ସେଟା ପାଖକୁ ଯାଏ କିଏ, ତାର କଅଣ କଡ଼ା ସାନ ଖବର ଅଛି ? ଯାହାକୁ ଦେଖେ ବାଟ ଘାଟରେ ବେକାର କରେ । ଆହା ! ରାଜା ତ ଥିଲେ ପରମଧାର୍ମିକ ମୁକ୍ତକାମ । ବ୍ରାହ୍ମଣ ଦେଖିଲେ କୋଟି ପାଦପୂଜା, କୋଟି ପାଦପୂଜା । ଅନ୍ତତଃ ଗୋଟିଏ ଟଙ୍କା ଦକ୍ଷିଣାରୁ କମ୍ ନୁହେଁ ।

ଶଙ୍ଖଧର—( ଫେରିବାଲ ପ୍ରତି ) ହେ ଫେରିବାଲ, ଜାଣିଛ ଛଡ଼ାଦେଲି ?

ଫେରିବାଲ—ଟଙ୍କାଟାଏ ଯେ ଦେଲେ—

ଶଙ୍ଖଧର—ହିଁ, ସେ ତୋର ପୁରସ୍କାର । ଆଜିଠାରୁ ମହାନରଖ ଏ ଦେଶର ରାଜା ମୁଁ, ମୋ ନାଁ ଶଙ୍ଖଧର ।

ଫେରିବାଲ—ଆରେ ବାପରେ ! (ବେମକପଡ଼ ପ୍ରସ୍ଥାନ )

ଚୂଡ଼ାମଣି—ଦୁର୍ଘଟଣା ହୁଅ ବାବା, ଦୁର୍ଘଟଣା ହୁଅ । ମୋର ମଥାର ଠିକ୍ ନ ଥିଲା, ମୁଁ କଣ ବୋଲି କଅଣ କହି ପକାଉଛି । ମୋତେ ବର୍ତ୍ତମାନ ଉପୁଜର ଶନିର ଦୃଷ୍ଟି । ସେଥିଲାଗି ଏଇ କଦଳୀ ଫଟକୀ ସଉଦା କରୁଛି ।

ଶଙ୍ଖଧର—ପ୍ରହରୀ ! ଲଗା ବେତ ।

ପ୍ରହରୀ—ପ୍ରଭୋ ! ଏ ଯେ ବ୍ରାହ୍ମଣ ।

ଶଙ୍ଖଧର—କିଏ ବ୍ରାହ୍ମଣ ? ଏ ହେତାଟା, ଦେ ବେତକଟା ଦେ, ବେତକଟା ମୋତେ ଦେ, ( ବେତ ନେଇ ପୁଟାଇ ) କହ ବ୍ରାହ୍ମଣ, କେତେ ପ୍ରହାର ବେତ ସହି ପାରିବ ?

ଚୂଡ଼ାମଣି—ନାହିଁ ପ୍ରଭୋ ! ବେତାଘାତ କରନା, ମୁଁ ଜଣେ ନିଷ୍ଠାବାନ ତ୍ରିସନ୍ଧ୍ୟାନିଷ୍ଠ ବ୍ରାହ୍ମଣ ।

ଶଙ୍ଖଧର—ତ୍ରିସନ୍ଧ୍ୟା ଆଉ ବ୍ରାହ୍ମଣ ଏ ଦୁଇଟା କଥା ତୁମ୍ଭପରି ଅବ୍ରାହ୍ମଣ ମୁହଁରେ ଧରି ପ୍ରକୃତ ବ୍ରାହ୍ମଣରେ କଳଙ୍କ ଲଗାନା । ସେମାନେ ବହୁ କଷ୍ଟରେ ତା ଉପାର୍ଜନ କରିଥିଲେ ।

ଚୂଡ଼ାମଣି—ତେବେ ତ ମୁଁ ଜଣେ ବ୍ରାହ୍ମଣ ସନ୍ତାନ ?

ଶଙ୍ଖଧର—ବିଶ୍ୱାସ ହୁଏ ନାଁ, ଆଜି ସାମାନ୍ୟ ଫେରି-ବାଲାଠାରୁ କଦଳୀ ଫାଙ୍କିମାରି ନେଇ ଯିବାକୁ ପ୍ରସ୍ତୁତ । ତୁମ୍ଭର ଏ କୁତ୍ସିତ ବ୍ରାହ୍ମଣର ମର୍ଯ୍ୟାଦା ଓ ବ୍ରାହ୍ମଣର ବ୍ରତକୁ ନତମସ୍ତକ କରୁଛି । ତୁମ୍ଭେ ତୁମ୍ଭର ସେହି ପିତୃ ପୁରୁଷଙ୍କ ମୂଳଧନଟି ବସି ବସି ଖାଇ ସାରିଲଣି । ଆଜି ତୁମ୍ଭର ସେହି ବ୍ରହ୍ମତ୍ୱ ନାହିଁ । ତୁମ୍ଭେ ଫେରିବାଲାଠାରୁ ହୀନ, ତୁମର ଉପଯୁକ୍ତ ଶାସ୍ତି ଏହି ବେତ ।

( ମାରିବାକୁ ଉଦ୍ୟତ )

ଚୂଡ଼ାମଣି—ହାୟ ରାଜା ! ମୋତେ କ୍ଷମା କରନ୍ତୁ, ମୁଁ ଆଉ ହେବେ ଏପରି କାର୍ଯ୍ୟ କରିବି ନାହିଁ । ମୋତେ କ୍ଷମା କରନ୍ତୁ ।

ଶଙ୍ଖଧର—କ୍ଷମା ପାଇବାର ଉପଯୁକ୍ତ ତୁମେ ବୃଦ୍ଧ ବ୍ରାହ୍ମଣ ! ଆଚ୍ଛା, କ୍ଷମା ଦେଇପାରେ, ଯଦି ମୋର ଗୋଟିଏ ଉପକାର କର ।

ଚୂଡ଼ାମଣି—କଅଣ ଆଜ୍ଞା, କହନ୍ତୁ ।

ଶଙ୍ଖଧର—ତୁମ୍ଭେ ଜାଣ ମୁଁ କିଏ ?

ଚୂଡ଼ାମଣି—ଆଜ୍ଞା !

ଶଙ୍ଖଧର—ଷୋଳବର୍ଷ ହେଲା ମୋର ସ୍ତ୍ରୀର ଦେହାନ୍ତ ଘଟିଛି । ଏକମାତ୍ର କନ୍ୟା ଛଡ଼ା ଆପଣାର ବୋଲିବାକୁ ଆଉ କେହି ନାହିଁ । ଶୈଶବ କାଳରୁ ମୁଁ ଥିଲି ପିତୃମାତୃହୀନ, ପଥର ଭିକାରୀ; କିନ୍ତୁ ଆଜି ପ୍ରକାଣ୍ଡ ରାଜ୍ୟର ରାଜା, ବାହୁବଳେ ଓ ବୁଦ୍ଧିର କୌଶଳେ ।

ଚୂଡ଼ାମଣି—ଆଜ୍ଞା ! ଆପଣ ହେଉଛନ୍ତି ଜଣେ ସୁପ୍ରତିଷ୍ଠ ସ୍ୱନାମଧନ୍ୟ ପୁରୁଷ । ଏଇ ସସାଗରଧରା, ପୃଥ୍ୱୀ···

ଶଙ୍କ୍ରଧର — ଥାଉ ଥାଉ, ଆଉ ତୋଷାମୋଦର ପ୍ରୟୋଜନ ନାହିଁ, ମୁଁ ଆଜ ବିବାହ କରିବା ଲାଗି ଉଦ୍ଗ୍ରୀବ; କିନ୍ତୁ ମନମୁତାବକ ପାତ୍ରୀଟିଏ ପାଇ ପାରୁନାହିଁ !

ଚୂଡ଼ାମଣି — ଆଜ୍ଞା ! କି ରକମ ପାତ୍ରୀ କହନ୍ତୁ । ମୁଁ ଏକବାରେ ନିଖୁଣ ସୁନ୍ଦରୀର ସନ୍ଧାନ ଆଣି ଦେଇପାରେ ।

ଶଙ୍କ୍ରଧର — ଜାଣ କିନ୍ତୁ ବ୍ରାହ୍ମଣ, ମୁଁ ସୁନ୍ଦରୀ ଚାହେଁନା, ଚାହେଁ ଖୁବ୍ କୁତ୍ସିତା ।

ଚୂଡ଼ାମଣି — ଆଜ୍ଞା ! ମେ ତେ କଉଣ ପରିହାସ କରୁଛନ୍ତି ?

ଶଙ୍କ୍ରଧର — ପରିହାସ ନୁହେଁ ଗୋସେଇଁ ! କନ୍ୟାଟି ଏପରି କୁତ୍ସିତ ହେବା ଦରକାର, ଯାହାକୁ କି ଥରେ ଦେଖିଲେ ଆଉ ଥରେ ଦେଖିବାକୁ ଇଚ୍ଛା ହେବ ନାହିଁ । ସେ କନ୍ୟାଟିର ନାମ ହୋଇଥିବ ଶ୍ରୀମତୀ ନାଗିଣୀ ।

ଚୂଡ଼ାମଣି — ନାଗିଣୀ ! ନାଗିଣୀ ସେ ମୋର କନ୍ୟାର ନାମ ।

ଶଙ୍କ୍ରଧର — ତୁମ୍ଭର କନ୍ୟାର ନାମ ? ଅଚ୍ଛା ! ଦେଖିବାକୁ କିପରି ?

ଚୂଡ଼ାମଣି - ଲୋକେ ଭାରି କୁତ୍ସିତା ବୋଲି କହନ୍ତି; କିନ୍ତୁ ମୋ ଚକ୍ଷୁରେ ସେତେ ... ... ... ।

ଶଙ୍କ୍ରଧର – ହଁ, ତୁମ୍ଭ ଚକ୍ଷୁରେ ସେ ତ କୁତ୍ସିତା ଦେଖା ଯାଏ ନାହିଁ । ଠିକ୍ ସେଇ କନ୍ୟାଟି ମୁଁ ବିବାହ କରିବି । ଅଚ୍ଛା କହ, କେବେ ବିବାହର ଆୟୋଜନ କରି ତୁମ୍ଭ ଘରକୁ ଯିବାକୁ ହେବ ?

ଚୂଡ଼ାମଣି – ଆଜ୍ଞା ! ମୁଁ ଶୁଣିଛି ଆପଣଙ୍କର କୁଆଡ଼େ ଜାତଗୋତ୍ର ଠିକ୍ ନାହିଁ । ମୁକ୍ତିକାମଙ୍କ ପିତା ଆପଣଙ୍କୁ କେଉଁଠୁ କିଣାଇ ଆଣିଥିଲେ ।

ଶଙ୍କ୍ରଧର — ଯାହା ଶୁଣିଛ, ତା ଅକ୍ଷରେ ଅକ୍ଷରେ ସତ୍ୟ । ମୋର ବାପ ମା କିଏ ମୁଁ ଜାଣେ ନାଁ, ସେଥିରେ ଅଛି କଅଣ ? ଉପସ୍ଥିତ କ୍ଷେତ୍ରରେ ମୁଁ ରାଜା ।

ଚୂଡ଼ାମଣି - ସମାଜ ଯଦି ମୋତେ ନିର୍ଯାତନ କରେ ।

ଶଙ୍କ୍ରଧର — ତୁମେ ସମାଜକୁ ନିର୍ଯାତନ କରିବ । କହିବ, ମୁଁ ଶଙ୍କ୍ରଧରର ଶ୍ୱଶୁର, ମୋତେ ସାତଖୁଣ ମାଫ୍ ।

ଚୂଡ଼ାମଣି — ଆଜ୍ଞା ! ମୋର କନ୍ୟାଟି ଅତି କୁରୂପା । ପିଲାଟି ବେଳୁଁ ତାର ମୁହଁ ପୋଡ଼ି ଯାଇଥିଲା, ସେ ରାଣୀ ହେବାର ଉପଯୁକ୍ତ ନୁହେଁ । ଆପଣ ଇଚ୍ଛା କଲେ ମୁଁ ଖୁବ୍ ନିଖୁଣ ସୁନ୍ଦରୀର ସନ୍ଧାନ ଆଣି ଦେଇପାରେ ।

ଶଙ୍କ୍ରଧର — ମୁଁ ସୁନ୍ଦରୀ ସ୍ତ୍ରୀକୁ ଅତ୍ୟନ୍ତ ଘୃଣା କରେ । ଅଚ୍ଛା କହ ଦେଖି, ତୁମ୍ଭର କନ୍ୟାର ବୟସ କେତେ ?

ଚୂଡ଼ାମଣି — ପ୍ରାୟ ପଚିଶ ବର୍ଷ ।

ଶଙ୍କ୍ରଧର — ବ୍ରାହ୍ମଣ ଘର ! ଏତେଦିନ ଯାଏ ବିବାହ ନ ହୋଇଛି କଣ ?

ଚୂଡ଼ାମଣି — ଆଜ୍ଞା ! ମୁହଁପୋଡ଼ା କୁତ୍ସିତାଟାକୁ ବାହା ହେବ କିଏ ? ଅନେକ ଜାଗାରେ ଠିକ୍ କଲି, ଏଇ କୁପଣ୍ଡ କାରଣରୁ ସବୁ ଭାଙ୍ଗିଭୁଙ୍ଗି ଯାଉଛି ।

ଶଙ୍କ୍ରଧର — ଗୋସେଇଁ ! ତୁମ୍ଭ, ତାର ଓ ମୋର ଅବସ୍ଥା ସମାନ, ମୁଁ ଘୃଣିତ, ସେ ଉପେକ୍ଷିତ, ଯାଅ ଶୀଘ୍ର ବିବାହର ଆୟୋଜନ କର, ନୋହିଲେ ଏହି ସ୍ୱରୂପ ।

(ଚୂଡ଼ାମଣି ଦୁର୍ଗା ଦୁର୍ଗା କହି ପଳାଇବା)

ଶଙ୍କ୍ରଧର — କୁଆଡ଼େ ଗଲୁ ସୁନନ୍ଦା !

ସୁନନ୍ଦା — ମୁଁ କହୁଛି ତୁମକୁ ଛାଡ଼ି ପିଟାଇବ ନାହିଁ, ମୁଁ ଫୁଲ ତୋଳୁଛି ।

ଶଙ୍କ୍ରଧର - ଉଗ୍ରସେନ !

( ଉଗ୍ରସେନ ପ୍ରବେଶ )

ଉଗ୍ରସେନ ! ମୁକ୍ତିକାମ ନିକଟରୁ ଯେ ଲୋକଟା ଆସିଥିଲା, ତାକୁ ଏ ଚିଠିଟା ଦେଇ କହିବ ସାଧାରଣୀ ବିଆସିବ ନାହିଁ । ହଁ, ପୁଣି ଶୁଣ, ବର୍ତ୍ତମାନ ସୈନ୍ୟସଂଗ୍ରହ କର ଆବଶ୍ୟକ । ଖୁବ୍ ତୁମ୍ଭର ସଂଗ୍ରାମ ନିକଟରେ ଘଟିବା ସମ୍ଭବ ।

( ଉଗ୍ରସେନ ପ୍ରସ୍ଥାନ )

ସୁନନ୍ଦା — ବାବା ! ପୁଣି ସେହି ଯୁଦ୍ଧର ଆୟୋଜନ । ତୁମେ କେତେ ଦୁଃଖୀ ଗଉଡ଼ା ମନୁଷ୍ୟ ଜାତି ମାରି ପକାଇବ !

ଶଙ୍କ୍ରଧର — ମୁଁ ତ ନିଜେ ମାରୁନ ନାହିଁ ସୁନନ୍ଦା !

ସୁନନ୍ଦା — ତୁମେ ମନ ମନୁଷ୍ୟ ବଞ୍ଚାଇପାର ?

ଶକ୍ତିଧର—ସୁନନ୍ଦା ! ତୁ ବନବାସ ସେଇ ତୋର ମା'ର ମୃତ୍ୟୁ କଥାଟି ସ୍ମରଣ କରାଇ ଦେଉଛୁ, ଦେଖେଁ କ ରକମ ହାଉଟି ଗୁଛିଛୁ ?

ସୁନନ୍ଦା– ନଁ ! ମୁଁ ଦେଖାଇବ ନାହିଁ । ତୁମେ ଖାଲି ଦୁଷ୍ଟ ।

ଶକ୍ତିଧର ରାଜା ହେଲେ ଟିକେ ଦୁଷ୍ଟ ହେବାକୁ ପଡ଼େ । ରାଜାର କାର୍ଯ୍ୟ ତ ତୋ ପରି ଫୁଲମାଳ ଗୁନ୍ଥିବା ନୁହେଁ ।

ଉଗ୍ରସେନ— (ପ୍ରବେଶ କରିଲ) ସେ ଲୋକଟି ମୁଦ୍ ଓଠିଆ ନେବାକୁ ନାରାଜ, ବରଂ ଦନ୍ତି ରହୁଛି । ମୁକ୍ତିକାମ ବର୍ତ୍ତମାନ ଉପବାସୀ ଅଛନ୍ତି ।

ଶକ୍ତିଧର—ଥାଆନ୍ତୁ ଉପବାସୀ, ଏ ଶକ୍ତିଧର ତାଙ୍କୁ କ୍ଷୁଧା ଯନ୍ତ୍ରଣାରେ ଛଟପଟ କରାଇବ । ଯାଅ, ତାଙ୍କୁ ଯିବାକୁ କହ । ଯଦି କିଛି ଆପତ୍ତି କରେ, ନିଅ ଚାବୁକ ନିଅ, ଦଶ ଘାହାରେ ଚାବୁକ ଦେଇଦିଅ ।
(ଉଗ୍ରସେନ ପ୍ରସ୍ଥାନ)

ସୁନନ୍ଦା—ବାବା ! ପୁଣି ସେଇ ଚାବୁକ ?

ଶକ୍ତିଧର—କହୁଛି ପରା ସୁନନ୍ଦା ! ଏମାନେ ଯେ ଶୈତାନ, ଏମାନଙ୍କର ସୁରକ୍ଷାର ଏକମାତ୍ର ବାହନ ଚାବୁକ । ଆ, ଯିବା ଆ । (ପ୍ରସ୍ଥାନ)

———

## ତୃତୀୟ ଦୃଶ୍ୟ

କମଳା—(ପ୍ରବେଶି) ସ୍ୱାଧୀନମଣ ! ଉପାସ୍ୟ ଦେବତା ଶକ୍ତିଧର ଯେପରି ସ୍ୱାଧୀନଙ୍କୁ ପଠାଇ ଦେବାରେ ତ୍ରୁଟି ନ କରେ ।

ଶଙ୍ଖନାଦ—(ଜଣେ ପ୍ରଜାର ହାତଧରି ଆଣିଲ । ଲୋକଟି କାନ କଟିଯିବା ଯନ୍ତ୍ରଣାରେ କାନ୍ଦି କାନ୍ଦି ଆସିଲ) ମା ! ମା ! ଏଇ ଦେଖନ୍ତୁ ଶକ୍ତିଧରର ଲୋକ, ଆମର ପ୍ରତ୍ୟେକ ସ୍ୱଜନଟିର ତାନକୁ କାଟି ଏତେ ଅବସ୍ଥା ଦେଇଛି ।

କମଳା – କାହିଁକି ?

ଲୋକଟି—ଶକ୍ତିଧରର ଲୋକ ମୋତେ ପଚାରିଲେ ତୁ କିଏ ? ମୁଁ କହିଲି, ମୁଁ ରାଜା ମୁକ୍ତିକାମର ପ୍ରଜା । ସେମାନେ କହିଲେ ଶକ୍ତିଧର ଉପସ୍ଥିତ ରାଜା, ମୁକ୍ତିକାମ କେହି ନୁହେଁ । ତୁ କାହିଁକି ରାଜା ବୋଲି କହିଲୁ ? ଏଣୁ ମୋର କାନ କାଟି ଛାଡ଼ି ଦେଲେ ।

ଶଙ୍ଖନାଦ—ମା ! ବର୍ତ୍ତମାନ କ କହିପାରିବ, ଶକ୍ତିଧର ଅତ୍ୟାଚାରୀ ନୁହେଁ ? ମୁଁ ନିଶ୍ଚେ ଯୁଦ୍ଧଯାତ୍ରା କରିବ । ଚାଲ ଭାଇ ! ଏ ଅତ୍ୟାଚାରର ମୁଁ ପ୍ରତିଶୋଧ ନେବ । (ପ୍ରସ୍ଥାନୋଦ୍ୟତ)

କମଳା—କେଉଁଠାକୁ ଯିବୁ ବାପ ! ମୁଁ ତୋତେ ଯୁଦ୍ଧ-କ୍ଷେତ୍ରକୁ ଯିବାକୁ ଦେବି ନାହିଁ ।

ଶଙ୍ଖନାଦ— ଗୀତ

ବାଧା ଦିଅନା ମା ବାଧା ଦିଅନା
ବାନ୍ଧିଲଣି ପଣରେ ।
ସିଂହର ବନେ ଶୃଗାଳ ବନେ
ବସିଛି ଉଚ୍ଚ ଆସନେ ।
ମୁଁ ଥାଉଁଥାଉଁ ଲୁଟିବ କେହେ
କାହିଁ ରହି ଜୀବନେ ।
ଶତ୍ରୁ ରକତ ଯେବେ ରଞ୍ଜିତ
ନ ହେବ ମୋର କୃପାଣେ ।
ସେନ ଜୀବନ କବା କାରଣ
ନ ଯାଇ ମୃତ୍ୟୁ ସଦନେ ।

କମଳା—ଆଚ୍ଛା ବାପା ! ତୁ ତ ଜାଣୁ ତୋର ପିତା ଶକ୍ତି-ଧରକୁ ସିଂହାସନ ଦାନ କରି ଆସିଛନ୍ତି । ସେ ବର୍ତ୍ତମାନ ରାଜା, ତା ଆଦେଶ ମାନି ଚଳିବା ଆବଶ୍ୟକ । ଯାଅ, ଶକ୍ତିଧର ସଙ୍ଗେ ଏପରି ଅସହ-ଯୋଗିତା କର ନାହିଁ । (ଲୋକ ପ୍ରସ୍ଥାନ)

(ରତ୍ନେଶ୍ୱର ପ୍ରବେଶ)

ରତ୍ନେଶ୍ୱର—କମଳା ! ମୁଁ ଏହି ବେଶରେ ପହଞ୍ଚି-ବାକୁ ଆସିଛି, ଶଙ୍ଖନାଦର ଉଦଣ୍ଡାତ ଉକ୍ତା ତୁ କହୁ କରିବୁ, ନାଁ ସେ ଏହି ସ୍ୱାଧୀନମଣ ଉଦ୍ୟମରେ ପଡ଼ି ରହି କାଳାତ୍ପାତ କରିବ ?

କମଳା—ବାବା ! ସିଂହାସନରେ ବସି ନିରୀହ ପ୍ରଜା-ମାନଙ୍କ ଉପରେ ପ୍ରଭୁତ୍ୱ କରିବା ଅପେକ୍ଷା

ଖ୍ରି ଶ୍ରୀ ରାଧାରମଣଙ୍କ ସେବାରେ ନିଯୁକ୍ତ ହେବା ତ କିଛି ମନ୍ଦ କାର୍ଯ୍ୟ ନୁହେଁ, ବାବା !

ରତ୍ନେଶ୍ୱର - ସ୍ୱୀକାର କରେଁ, ଖୁବ୍ ଭଲକାର୍ଯ୍ୟ; କିନ୍ତୁ ଏହା ରାଜା ବା ରାଜପୁତ୍ରର କାର୍ଯ୍ୟ ନୁହେଁ । ସିଂହାସନରେ ବସି ପ୍ରଜାଙ୍କୁ କଷ୍ଟ ଦେବା ହିଁ ଶଙ୍ଖନାଦର ଉଚିତ କାମ । ସେ କାହିଁକି ଦ୍ୱେଷପରି ରାଧାରମଣଙ୍କ ମନ୍ଦିରରେ ପଡ଼ି ରହିବ ? ମୋତେ ଉତ୍ତର ଦେ କମଳା !

ଶଙ୍ଖନାଦ—ପ୍ରଜାମାନଙ୍କ ଉପରେ ଯେ ଏତେ ଅତ୍ୟାଚାର ଓ ଉତ୍ପୀଡ଼ନ ହେଉଛି, ସହ୍ୟ କରି ହୁଏ ନା । ଦେଖ ମା, ଶକ୍ତିଧରର ଅତ୍ୟାଚାରରେ ପ୍ରଜାମାନେ କେତେଦୂର କଷ୍ଟ ଭୋଗ ନ କରୁଛନ୍ତି !

କମଳା – ଶକ୍ତିଧର ତ ତୋପରି ରକ୍ତମାଂସରେ ଗଢ଼ା ମନୁଷ୍ୟ । ସେ ପ୍ରଜାମାନଙ୍କ ଉପରେ ଏତେ ଅତ୍ୟାଚାର କରୁଛି, ତାର କିଛି ନା କିଛି ଉଦ୍ଦେଶ୍ୟ ଅଛି ।

ଶଙ୍ଖନାଦ—ମୋର ମନେ ହୁଏ, ତାର ଉଦ୍ଦେଶ୍ୟ କେବଳ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବା !

ରତ୍ନେଶ୍ୱର—(ସମ୍ବୋଧେ) କମଳା !

କମଳା ବାବା !

ରତ୍ନେଶ୍ୱର—ସେ ନରପିଶାଚର ପକ୍ଷ ସମର୍ଥନ କରିବା ତୋର ଉଦ୍ଦେଶ୍ୟ ।

କମଳା—ବାବା ! ମୁଁ ଶକ୍ତିଧରକୁ ଚିହ୍ନେ । ସେ ଥିଲା ଦିନେ ଚିତ୍ରମାଳ୍ୟସ୍ଥାନ ପ୍ରଥମ ଅଧୀଶ୍ୱର । ଏହି ରାଜ ପ୍ରାସାଦରେ ପ୍ରତିପାଳନ କରି ଦେଖିଛି, ତାର ହୃଦୟରେ ଦୟା ଓ ମାୟାର ଅଫୁରନ୍ତ ଉତ୍ସ ଅଛି । ଖୁବ୍ ତା'ର ଚକ୍ଷୁଦ୍ୱୟକୁ ଦେଖିଲେ ମନେ ହୁଏ, ସେ କେତେ ବଡ଼ ମହତ୍ । ତେବେ କାହିଁକି ଯେ ସେ ଏତେ ଅତ୍ୟାଚାରୀ ହୋଇଉଠିଛି, ତା ବୁଝି ପାରୁ ନାହିଁ !

ଶଙ୍ଖନାଦ—ମା ! ଦିନେ ଯେ ଦେବତା ଥାଏ, ସେ କ ଦାନବ ହୋଇପାରେ ନା ?

କମଳା—କାହିଁକି ନ ହେବ ଶଙ୍ଖନାଦ ! ମନୁଷ୍ୟ ଅବସ୍ଥାର ଦାସ । ମୋର ବିଶ୍ୱାସ, ଶକ୍ତିଧର ଯେ ଏତେ ଅତ୍ୟାଚାରୀ ହୋଇ ଉଠିଛି ତା ମୁଁ ଶୁଣିଛି । ତା'ର ଏ ଅଧଃପତନ ପାଇଁ ଦାୟୀ ତୋର ବଡ଼ମାମୁଁ ।

ଶଙ୍ଖନାଦ—ମା, ପ୍ରଜାମାନଙ୍କ ଉପରେ ଏତେ ଅତ୍ୟାଚାର ଓ ଉତ୍ପୀଡ଼ନ ହେଉଛି । ମୁଁ ଚାହେଁ ସୁଶାସନ, ମୁଁ ତ ସିଂହାସନ ଚାହେଁ ନା ।

କମଳା—ସୁଶାସନ ଚାହୁଁ ତ ? ତେବେ ଯାଅ ପ୍ରଜାମାନଙ୍କୁ ସୁଶିକ୍ଷା ଦିଅ । ସେମାନେ ଯେପରି ଶକ୍ତିଧର ସଙ୍ଗେ ଅସହଯୋଗ ନ କରନ୍ତି । ମୁଁ ଶକ୍ତିଧରକୁ ଚିହ୍ନେ, ସେ ହିଂସ୍ର ନୁହେଁ,ସେ ପ୍ରାଣହୀନ ନୁହେଁ, କାହିଁକି ଗୋଟିଏ ଯୁଦ୍ଧ ଅନଳ ଲଗାଇ ପ୍ରଜାକ୍ଷୟ କରିବ ? କେତେ ସ୍ୱାମୀହରା ସଙ୍ଗୀ ଲକ୍ଷ୍ମୀ, କେତେ ପୁତ୍ରହରା ଜନନୀ ଜନକ ହୃଦଫଟା ଅଭିଶାପ ଦେବେ ତୋତେ । ଯଦି ସିଂହାସନରେ ଲାଳସା ନାହିଁ, ତେବେ ଯୁଦ୍ଧ ବିଗ୍ରହ ଘଟାଇବା ଆବଶ୍ୟକ କଅଣ ?

ବଜ୍ରବାହୁ (ପ୍ରବେଶି)—ପିତା ! ମୁଁ ଶୁଣିଛି, ଶକ୍ତିଧର ଚୂଡ଼ାମଣି କନ୍ୟାକୁ ଜୋର କରି ବିବାହ କରୁଛି !

ରତ୍ନେଶ୍ୱର – ମୋତେ ଶୁଣାଇବା ଆବଶ୍ୟକ ନାହିଁ, ସେଇଥି କମଳାକୁ ଶୁଣା ।

ମୁକ୍ତକାମ – ( ପ୍ରବେଶି ) ମୁଁ ସଙ୍କଳ୍ପ କରିଛି କମଳା ! ଶକ୍ତିଧର ଯେବେ ମୋର ଶ୍ରୀରାଧାବଲ୍ଲଭ ପଠାଇ ନ ଦିଏ, ତେବେ ମୁଁ ନିଶ୍ଚୟ ଯୁଦ୍ଧ ଘୋଷଣା କରିବି । ତୁମ୍ଭର କୌଣସି ଆପତ୍ତି ଶୁଣିବି ନାହିଁ ।

କମଳା – ତା ହେଲେ ତୁମ୍ଭେ ତୁମ୍ଭର ପ୍ରତିଜ୍ଞା ଭଙ୍ଗ କରିବ ।

ମୁକ୍ତକାମ – ହଁ କମଳା ! ମୁଁ ସମ୍ପୂର୍ଣ୍ଣ ନିରସ୍ତ୍ର ଭାବେ ଯୁଦ୍ଧ କରିବି, ବିପକ୍ଷ ପକ୍ଷ ଅସ୍ତ୍ରକୁ ମୁଁ ପ୍ରାଣ ଦେଖାଇ ଛିଡ଼ା ହେବି ।

କମଳା – ତାର ଅର୍ଥ ତୁମ୍ଭେ ଆତ୍ମହତ୍ୟା କରିବ, ଏଇ ତ ?

ବଜ୍ରବାହୁ – ହଁ ! ମୁକ୍ତକାମକୁ ଯୁଦ୍ଧ କରିବାକୁ ପଡ଼ିବ ନାହିଁ । ସେ କେବଳ ଯୁଦ୍ଧ କ୍ଷେତ୍ରରେ ଛିଡ଼ା

ହୋଇ ଉଠିବେ ମୁଁ ସିଂହାସନ ଗ୍ରହଣ ! ତା ପର
ଯାହା କରିବାକୁ ହେବ ମୁଁ କରିବି । (ପ୍ରସ୍ଥାନ)

ରତ୍ନେଶ୍ୱର — ଶୁଣୁଛ ମୁକ୍ତକାମ ? ଶକ୍ତିଧର ଗୋଟାଏ
ଅସ୍ୱରନସ୍ତ ବ୍ରାହ୍ମଣ କନ୍ୟାକୁ ଜୋର କରି
ବିବାହ କରିବ ।

ମୁକ୍ତକାମ — ଶୁଣିଛି ପିତା !

ରତ୍ନେଶ୍ୱର — ସେ ଗୋଟାଏ ଅଜ୍ଞାତ କୁଳଶୀଳ
ଜାରଜ ହୋଇ ଗୋଟାଏ ବ୍ରାହ୍ମଣର ଜାତି ଧ୍ୱଂସ
କରିବ ?

କମଳା — ବାବା ! ଶକ୍ତିଧରର ବଂଶ ପରିଚୟ କେହି
ଜାଣନ୍ତି ନାହିଁ, ଏପରି ସ୍ଥଳେ ତାର ଜନ୍ମ
ସମ୍ବନ୍ଧେ ଏପରି କୁତ୍ସିତ ଇଙ୍ଗିତ କରୁଛନ୍ତି
କାହିଁକି ?

ରତ୍ନେଶ୍ୱର — ସେ ଯେବେ କୌଣସି ସମ୍ଭ୍ରାନ୍ତ ବଂଶଜ
ହୋଇଥାନ୍ତା, ତେବେ ଏତେଦିନ ପର୍ଯ୍ୟନ୍ତ ନିଜର
ପରିଚୟ ଗୋପନ କରି ରଖି ନ ଥାନ୍ତା । ସେ
କେଉଁ ବଂଶରେ ସମ୍ଭୂତ କେହି ଜାଣେ ନାହିଁ ।

( ଶୁକଦେବ ଚିଠି ନେଇ ପ୍ରବେଶ )

ମୁକ୍ତକାମ — ଏଇ ସେ ଶୁକଦେବ, ମୋର ଶ୍ରୀରାଧା
ବଲ୍ଲଭ ବାହାନ୍ତି ? ମୁଁ ତ ଚିଠି ବୁଝେଁ ନା ।
( ଚିଠି ନେଇ ପାଠକରି ଉତ୍ତେଜିତ ହୋଇ ପଡ଼
ଫିଙ୍ଗି ରାଧାରମଣ ! ରାଧାରମଣ ! କହି ପ୍ରସ୍ଥାନ )

ରତ୍ନେଶ୍ୱର — ( ଚିଠି ପଢ଼ି ସକ୍ରୋଧେ ବଜ୍ରବାହୁ !
ବଜ୍ରବାହୁ ! ଡାକି ଡାକି ପ୍ରସ୍ଥାନ )

ଶଙ୍ଖନାଦ — ( ଚିଠି ଧରିଲା )

କମଳା — ଏପରି କ କଥା ଲେଖାଅଛି ଶଙ୍ଖନାଦ,
ପଢ଼ଟା ପଢ଼ିଲୁ ।

ଶଙ୍ଖନାଦ — ( ପଡ଼ ପଡ଼ୁ ଉଡ଼ ଚାଲ ଉତ୍ତେଜିତ ଓ
ଭୂଷିତ କମରରୁ ବାହାରି କରି ଆତ୍ମହତ୍ୟା
କରିବାକୁ ପ୍ରସ୍ତୁତ )

କମଳା — ( ହାତ ଧରି ପକାଇ ) ଏ କଣ ଶଙ୍ଖନାଦ ?

ଶଙ୍ଖନାଦ — ମା ! ମୋ ହାତ ଛାଡ଼ ଦେ, ମୁଁ ଆଗେ
ଆତ୍ମହତ୍ୟା କରେ ତା ପରେ ତୁ ପଡ଼ ପଢ଼ିବୁ ।

କମଳା — ଏପରି କ କଥା ଲେଖି ପରେ ଶକ୍ତିଧର !
ମୋତେ ଅରେ ଚିଠିଟା ପଢ଼ିବାକୁ ଦେଲୁ !

ଶଙ୍ଖନାଦ — ନା, ମୁଁ ଏ ଚିଠି ତୋତେ ପଢ଼ିବାକୁ
ଦେବି ନାହିଁ । ଏଥିରେ କେବଳ··· ···।

କମଳା — ଶୁକଦେବ ! କହି ପାରିବ, ଏ ଚିଠିରେ
କଅଣ ଲେଖାଅଛି ?

ଶୁକଦେବ — ନାଁ ମା, କିଛି ଜାଣେ ନା । ମୋତେ ଏ
ଚିଠି ଓ ମୋ ପିଠିରେ ଦଶଟି ପାହାର ଦେଇଛି ।

କମଳା — କି ଆଶ୍ଚର୍ଯ୍ୟ ! ଶଙ୍ଖନାଦ, ମୋତେ ଯଦି
ସେ ଚିଠି ପଢ଼ିବାକୁ ନ ଦେଉ, ତେବେ କହ,
ସେଥିରେ କଅଣ ଲେଖାଅଛି ।

ମୁକ୍ତକାମ — ( ପ୍ରବେଶି ) ମୁଁ କହୁଛି କମଳା, ଶକ୍ତିଧର
ଲେଖିଛି, ରାଧାରମଣ ଜୀବନସତ୍ତ୍ୱେ ସିଂହାସନ ପାଇବ,
ମାତ୍ର ରାଧାରାଣୀ ଜୀବନସତ୍ତ୍ୱେ ହେବେଁ ରାଜଲକ୍ଷ୍ମୀ
କମଳା, କମଳା ! ନରପିଶାଚ ତୁମକୁ
ବୁଝେ, ମୁଁ ତାକୁ ··· ··· ···।

ଶଙ୍ଖନାଦ — ଯା, ବାବା ! ମୋତେ ଉପଧୂଳ ବେଳ
ହଦାୟୁ ବଳ ! ଯେବେ ବଳର ଅଶ୍ୱାରୋହ
ଶକ୍ତିଧରର ଗଳଟା କାଟି ଆଣିପାରେ, ତେବେ
ତ ଦେଖା, ନୋହିଲେ ଏଇ ଶେଷ ।

( ପ୍ରସ୍ଥାନ )

କମଳା — ଶଙ୍ଖନାଦ ! ଶଙ୍ଖନାଦ ! ! ( କ୍ରନ୍ଦନ )

ରତ୍ନେଶ୍ୱର — ଚୁପ୍ କର ବାଳିଶା, ତୁଏତ ତୋତେ
କାଟି ଫିଙ୍ଗିଦେଇ ପାରେ, କହ ମୁକ୍ତକାମ,
ବର୍ତ୍ତମାନ ତୁମେ ଯୁଦ୍ଧ କରି ପ୍ରସ୍ତୁତ କି ନା ?

ମୁକ୍ତକାମ — ହଁ ପିତା, ମୁଁ ଯୁଦ୍ଧକରି ପ୍ରସ୍ତୁତ ।

କମଳା — ନାଁ ନାଁ ସ୍ୱାମୀ ! ତୁମେ ଯୁଦ୍ଧକୁ ଯାଇପାରିବ
ନାହିଁ । କାହିଁକି ? କି କାରଣେ ତୁମେ ତୁମର
ଜୀବନ ଭୟ କରିବ ? ମୁଁ ନିଜେ ଯାଇ ଶକ୍ତିଧରକୁ
ପଚାରିବି, ସେ ମୋତେ କି କାରଣେ ଘୃଣେ ? ଯଦି
ଯୁଦ୍ଧ କରିବାକୁ ହୁଏ ବାବା, ମୁଁ ନିଜେ ଯୁଦ୍ଧ
କରିବି । ମୋ ପରି ସହସ୍ର ସହସ୍ର ପ୍ରଜାଙ୍କ ଜୀବନ
ନଷ୍ଟ କରିବାକୁ ଦେବି ନାହିଁ । ମୁଁ ରାଜା ହୁଅନ୍ତୁ,

ଆଶ୍ୱର୍ଯ୍ୟ ଘଟୁଛି, ଆଜ ସୁଭ ଖେତରରେ ସ୍ୱାମୀଙ୍କୁ ଧରାଇ ମୋର ସୀମନ୍ତର ସିନ୍ଦୂର ରେଖାଟି ଲଭାଇବ ! ନାଁ ନାଁ, ସ୍ୱାମୀ, ତା ହେବନାହିଁ, ଯାଅ ଯାଅ, ମୋର ଶଙ୍ଖନାଦକୁ ଫେରାଇ ଆଣ, ଶଙ୍ଖନାଦ ! ଶଙ୍ଖନାଦ ! (ପ୍ରସ୍ଥାନ)

( ମୃତ୍ୟୁକାମ ପଛେ ପଛେ ସମସ୍ତେ ପ୍ରସ୍ଥାନ )

—*—

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଧୂମକେତୁ ପ୍ରବେଶ )

ଧୂମକେତୁ—( କପାଳରେ କର ଦେଇ ) ହାୟ ! ହାୟ ! କ ବୁଦ୍ଧି କଲ, କ ଭୁଲ୍ କାର୍ଯ୍ୟ କଲ, ଭଗବାନ ମୋତେ କାହିଁକ ଏପରି କୁତ୍ସିତ ରୂପଟିଏ ଦେଇ ଜନ୍ମ ଦେଲେ, ଯାହା ବା କୁତ୍ସିତ ଥିଲ ଥିଲ ପୁଣି ଗୋଡ଼ା ଭାର୍ଯ୍ୟାକୁ ସୁନ୍ଦର ସ୍ତ୍ରୀଟିଏ ପାଇ ଅନ୍ତର ଲଜ୍ଜିତ ହେବାକୁ ପଡ଼ୁଛି ।

( ବେଣୁ ଉଲ୍କା ସୁନ୍ଦରୀ ଗୀତଟିଏ ଗାଇ ଆସିଲ )

ଉଲ୍କା - ଗୀତ

ଏଡ଼େ ଭାଗ୍ୟ ମୋ ହେବ କ ହେବ ତୁମ୍ଭର ସେବକା
ପ୍ରେମ ଫଳ ଫଳିବ କ ମୋ ଆଶା ଲତାରେ ।
ମରମ ବେଦନା ମୋର କଣ୍ଠ କେ ପାରିବ ବୁଝି
ତୁମ୍ଭ ବନା ଅବଗୀର କେ ଅଛି ସଂସାରେ ।
ତୁମ୍ଭର ଲାବଣ୍ୟ ଛଟା ଆଉ କ ଭୁଲି ପାରିବ
ଯେବେଣ ଅନାଇଲେ ବସିଯାଅ ମୋ ନେତ୍ରରେ ।

( ଧୂମକେତୁ ପ୍ରତ ) କ ରେ ! ଏଠି କାହିଁକ ଚୁପ୍ ହୋଇ ବସିଛୁ ?

ଧୂମକେତୁ—ଆଉ କଅଣ କରିବ ଥର ମେଲି ମେଲି ହେବ ନାଁ ଭୁଲର ଉଣ୍ଣ ହେଉ ହେଉ ହେବ ! କଅଣ କରିବ ମୋତେ କହ ଦେଉ ନାହିଁ । କଥା କହିଲେ ତ ରାଗିବୁ, କଥା ନ କହିଲେ ତ ରାଗିବୁ । ତା ହେଲେ ମୋତେ କଅଣ କରିବାକୁ ହେବ ତୁ କହିଦେ ।

ଉଲ୍କା—ମୋଟ ଉପରେ ମୁଁ ରାଗିବ, କାଟିବ, ମାରିବ, ମୋର ମନ ଖୁସି ଯାହା ତା କରିବ, ତୁ ହସି ହସି ସବୁ ସହ୍ୟ କରିବୁ । ଆଚ୍ଛା, କାହିଁକ ସହ୍ୟ କରିବୁ ତୁ ଜାଣୁ, ଯେ ହେତୁ ମୁଁ ଅପୂର୍ବ ସୁନ୍ଦରୀ, ତୁ ଅତ୍ୟନ୍ତ କୁତ୍ସିତ । ଆଚ୍ଛା, ସତ କହିଲୁ, ମୋପରି ସୁନ୍ଦରୀ ଭଲ ତୁ କେଉଁଠି ଦେଖିଛୁ ?

ଧୂମକେତୁ—ଆଚ୍ଛା ତୁ ସତ କହିଲୁ, ମୋ ପରି କୁତ୍ସିତ ପିଲା ମଣିଷଟିଏ ତୁ ଭଲ କେଉଁଠି ଦେଖିଛୁ ?

ଉଲ୍କା—ତୋ ମୁଣ୍ଡ ପୋଡ଼ୁ ।

ଧୂମ—ତୋ ଗୋଡ଼ ପୋଡ଼ୁ ।

ଉଲ୍କା—ଏ କଅଣ ଗୋଟାଏ ଗାଳ ?

ଧୂମ—ମୋତେ ତ ଗୋଟାଏ କଛୁ କହିବାକୁ ହେବ ? କଥା କହିଲେ ତ ରାଗିବୁ, କଥା ନ କହିଲେ ତ ରାଗିବୁ ।

ଉଲ୍କା—ଆଚ୍ଛା ଶୁଣ୍, ମୁଁ ତୋତେ ଗୋଟାଏ କଥା କହିବ, ତୁ ସିନା ଟଙ୍କା ଜୋରରେ ମୋର ସର୍ବନାଶ କରିଛୁ ।

ଧୂମ—ତୁ ଯେ ରୂପ ଜୋରରେ ମୋର ସର୍ବସ୍ୱ କାଢ଼ି ନେଇଛୁ ।

ଉଲ୍କା—ତୁ ମୋତେ ବିବାହ କଲେ ସୁଦ୍ଧା ତୁ ମୋର ସ୍ୱାମୀ ନୋହୁ । ମୁଁ ସୁନ୍ଦରୀ-ତୁ କୁତ୍ସିତ । ମୁଁ ବିଦୁଷୀ-ତୁ ମୂର୍ଖ, ମୁଁ ଜ୍ୟୋତ୍ସ୍ନା-ତୁ ଅନ୍ଧକାର । ମୁଁ ମଦର-ତୁ କଡ଼ଆ, ମୁଁ କଣ୍ଠ-ତୁ ନର୍ଦ୍ଦମା ।

ଧୂମ—ଛି ! ଛି ! ମୁଁ ନର୍ଦ୍ଦମା, ଆଚ୍ଛା, ଆଚ୍ଛା ବେଶ୍ କଥା ମୁଁ ପୁରୁଷ-ତୁ ନାରୀ, ମୁଁ ଶିବ-ତୁ ଦୁର୍ଗା ! ମୋର ଏ କଥା ବାଢ଼ି ଉଠେ କନ୍ତୁ ତୋର ସେପରି ନାହିଁ ।

ଉଲ୍କା—ଆଉ—

ଧୂମ - ତୁ ଯାହା କହିଲୁ ମୁଁ ସେଇଆ କହିଲ--- ଆଉ !

ଉଲ୍କା—ମୋଟ ଉପରେ ମୁଁ ତୋତେ ସ୍ୱାମୀ ବୋଲି ସ୍ୱୀକାର କରିବ ନାହିଁ, ତୋର ମୋର ଆକାଶ ପାତାଳ ପ୍ରଭେଦ ।

ଧୂମ—ତା ନହେଲେ ମୋତେ ସ୍ୱାମୀ ବୋଲି ସ୍ୱୀକାର କର, ମୁଁ ଓଡ଼ଣୀ ଦେଇ ବୋହୂ ହେଉଛି । ଜାଣିଛୁ ତ

ଶଙ୍ଖଧର ଯେଉଁ ପୋଡ଼ାମୁହିଁ ନାରୀକୁ ବିବାହ କରିବାକୁ ସ୍ଥିର କରିଛି, ଆଜ ମୋ ରୂପ ଯେବେ ଆଖିରେ ପଡ଼ିବ ତେବେ ମୋତେ···

ଝଲ୍କା—ତୋତେ ? ଶଙ୍ଖଧର ପୋଡ଼ାମୁହିଁ ନାରୀକୁ ନାହିଁ କି ବିବାହ କରିବାକୁ ବସିଛି ତା ଜାଣୁ ?

ଧୂମ—ଆଚ୍ଛା, ତୁ କଅଣ ଜାଣୁ କହ ତ ।

ଝଲ୍କା—ଘଜା ଶଙ୍ଖଧରର ଜାତି ଠିକ୍ ନାହିଁ, ସେଥିଲାଗି ତାକୁ କେହି କନ୍ୟା ଦେବାକୁ ରାଜି ହେଉ ନାହାନ୍ତି । ତେଣୁ ଜୋର କରି ଏହି ପୋଡ଼ାମୁହିଁ ନାରୀକୁ ବିବାହ କରୁଛି ।

ଧୂମ—ଆଚ୍ଛା, ଜୋର କରି ଯଦି ବିବାହ ହୁଅନ୍ତା, ତର୍କରତ୍ନ ଝିଅଟି ତ ଭାରି ସୁନ୍ଦରୀ, ତାକୁ କାହିଁକି ଅଗ୍ରାହ୍ୟ କଲା ?

ଝଲ୍କା—ଶୁଣିଛି, ଶଙ୍ଖଧର ଅତି ସୁପୁରୁଷ । ତର୍କରତ୍ନର କନ୍ୟାଟି ଅତି ସୁନ୍ଦରୀ ହେଲେ ମଧ୍ୟ ଶଙ୍ଖଧରକୁ ସୁନ୍ଦର ପଣରେ ବଳାଇ ଯିବନାହିଁ । ମୁଁ ଆଜ ଯଦି ନ ଥାନ୍ତି·····ତୁ ଟଙ୍କା ଲୋଭରେ ମୋର କି ସର୍ବନାଶ କରନ୍ତୁ ?

ଧୂମ—ତୁ ଯେ ରୂପ ଜୋରରେ ମୋତେ କବୁଲ କରି ରଖିଛୁ ।

ଝଲ୍କା—ଅଚ୍ଛା ଚାଲ, ଥରେ ରାଜବାଟୀକୁ ଯିବା ।

ଧୂମ—ମତଲବ ?

ଝଲ୍କା—ମତଲବ୍ ଆଉ କଅଣ ? ସେ ମୋତେ ଦେଖିଲେ, ମୋ ରୂପ ଥରେ ତା ଆଖିରେ ପଡ଼ିଲେ ନିଶ୍ଚୟ ସେ ମୋତେ ବିବାହ କରିବାକୁ ଇଚ୍ଛା କରିବ । ତୋ ସହିତ ମୋର ବିବାହ ହେବାର କୌଣସି ପ୍ରମାଣ ନାହିଁ !

ଧୂମ—ହାୟ ରେ କପାଳ, କି ଭୁଲ କର୍ମ କଲି ! ବିବାହ ବେଳେ ଦୁଇ ତିନିଟା ଉକିଲ ବସାଇ ରେଜେଷ୍ଟ୍ରୀ ମୋହରଟା ବାଡ଼େଇ ଦେଇଥିଲେ କଥାଟା ପକା ହୋଇଯାଇଥାନ୍ତା, ମୁଁ ତ ବୁଡ଼ିଛି, ହେଁ ହେଁ ହେଁ ।

ଝଲ୍କା—ଚୁପ ଚୁପ୍, ପାଟି କର ନା, ଶୁଣ । ମୁଁ ତୋତେ ଗୋଟାଏ କଥା କହୁଛି, ମୋ ସୁନାଟା ପଛ, ମୋ ଧନଟା ପଛ; ଯା ଏ, ଘରକୁ ଫେରି ଯା !

ନାହିଁକି ସେପରି ପାଗଳାମି କରୁଛୁ ? ମୁଁ ରାଣୀ ହେଲେ ତୋତେ ଖୁବ୍ ଟଙ୍କା ପଇସା ସାହାଯ୍ୟ କରିବି । ମୋର ଏ ଗହଣାଗୁଡ଼ାକ ଫେରାଇ ଆଣି ଧନ ଖଗି ଚଳିବୁ । ତୁ ଏ କଥା ବୁଝୁ ନାହୁଁ କାହିଁକି ?

ଧୂମ—ଆଚ୍ଛା, ତୁ ଯେ ବଳେ ବଳେ ଗୁଞ୍ଜି ହୋଇ ବିବାହ କରିବୁ, ଲୋକେ ତୋତେ ନିନ୍ଦା କରିବେ ନାହିଁ ?

ଝଲ୍କା—ମୁଁ ତ ତୋ ପରି ମୂର୍ଖ ନୁହେଁ । ଶଙ୍ଖଧର ଯେତେବେଳେ ପୋଡ଼ାମୁହିଁ ନାରୀକୁ ପସନ୍ଦ କରିଛି, ମୋ ରୂପ ଥରେ ତା ଆଖି ଆଗରେ ପଡ଼ିଲେ ସେ ପାଗଳ ହୋଇଯିବ । ଆଉ ମୋତେ ବିବାହ କରିବାକୁ ଜବରଦସ୍ତି କରିବ, ସେତେବେଳେ ମୁଁ କାନ୍ଦ କାନ୍ଦ କହିବି, ମୋର ସ୍ୱାମୀ ଅଛି, ମୋର ସଂସାର ଅଛି ! ମୁଁ ତାକୁ କଅଣ କହିବି ଶୁଣ୍ ।

ଗୀତ

ମୁଁ ସତୀ ପତିବ୍ରତା ନାରୀ

ପତି ମୋ ପରମ ଗୁରୁ ମୁହିଁ ସେବିକା ତାହାରି ।
ପତି ପାଦୋଦକ ବିନା ନାହିଁ ମୋ ଅନ୍ୟ କାମନା
ହେଉ ସେ ଅତି ଲୁଥିତ ମୁହିଁ ତାର ପାଦେ ପଡ଼ି ।

ଏ କାନ୍ଦଣା ମୋର ଲୋକେ ଶୁଣିଲେ ଜାଣିବେ ଯେ, ମୋର ଇଚ୍ଛା ଆଦୌ ନାହିଁ, ଅଥଚ ଶଙ୍ଖଧର ଯୋର କରି ବିବାହ ହୋଇପଡ଼ୁଛି । ସେଇଠୁ···

ଧୂମ—ସେଇଠୁ—ମୁଁ ରଜା ମୁଣ୍ଡରେ ଠେଙ୍ଗାଏ ଦେବି ନାହିଁ ?

ଝଲ୍କା—ଆହା, ଯେହିଁ ଖାଇ ତ ? ଚାଲ ଚାଲ ରାଜବାଟୀକି ଯିବା ।

ଧୂମ—ତୁ କଅଣ ମୋତେ ଏ ମଝି ଦରିଆରେ ଭସାଇ ଦେଇ ଯିବୁ ? ନା, ମୁଁ ତୋତେ ଛାଡ଼ିବି ନାହିଁ ।

ଝଲ୍କା— ଗୀତ

ଆଉ ଜାଣନା ମୋତେ ତୁ ଚିହ୍ନିପାରି
ଅକାରଣେ ତୋର ହାତଟା ଧରି
ହାଣ୍ଡିରେ ହେଉଛି ଲୋକହସା

ଧୂମ—ମିଳେ ମୋତେ ଦେ-ନା ଗାଈ
ଝଲ୍କା—ଛୁଟା ମୋର ଗାତ ନା ଚୂଲ
ଧୂମ—ବାଇଲି ଭଣ୍ଡର ମାଫକର ମୋର
ଗୁଡ଼ ଚେଦ ତୋର ଆଡ଼ବୁଝା ।
ଧୂମ—ଢକା ଦୋଷେ ଲଗୁଛ ପର
ଝଲ୍କା—କରବ ମୁଁ ନୂଆ ସଂସାର
ଧୂମ—ପୁରୁଣା ଖଣ୍ଡକ ବଢ଼ ମହୂପରି ନୂଆରେ ଠକିବୁ କଣ୍ଟେ ଯୋଷା ।
ଧୂମ—ନୂଆ ପ୍ରୀତି ଅଢ଼ାଇ ଦିନ
ଝଲକା—ପୁରୁଣା ପାଲଟା ବସନ
ଧୂମ—ନୂଆରେ କରିବୁ ମୁହିଁ ପୋଛୁ ପୋଛୁ ପୁରୁଣା ହୋଇବ ଗୋଡ଼ ଘଷା ।
( ଗୀତାନ୍ତେ ଝଲ୍କା ଖସିଗଲା, ଧୂମକେତୁ ପଶ୍ଚାତେ ଧାବନ )

—*—

## ଦ୍ୱିତୀୟ ଦୃଶ୍ୟ

(ଚୂଡ଼ାମଣି, ତର୍କରତ୍ନ, ନ୍ୟାୟାଳଙ୍କାର, ସ୍ମୃତିଭୂଷଣ)

ତର୍କରତ୍ନ—ନାହିଁ, ନାହିଁ ! ହେ ଚୂଡ଼ାମଣି ତୁମ୍ଭର ଏ ପ୍ରସ୍ତାବ ନିତାନ୍ତ ଅଯୁକ୍ତ ସଙ୍ଗତ ।

ଚୂଡ଼ାମଣି—ବିବେଚନା କରି ଦେଖନ୍ତୁ, ଶଙ୍ଖଧରର ବଂଶ ପରିଚୟ ଯେତେବେଳେ ଆମ୍ଭମାନଙ୍କୁ ଅଜ୍ଞାତ ସେତେବେଳେ ତାକୁ ଅବ୍ରାହ୍ମଣ କହିବା ତ ଠିକ୍ ନୁହେଁ ।

ତର୍କରତ୍ନ—ତେବେ ତାକୁ କଅଣ ବ୍ରାହ୍ମଣ ବୋଲି ସ୍ୱୀକାର କରିବାକୁ ହେବ ?

ନ୍ୟାୟାଳଙ୍କାର—ଅହେ ତର୍କରତ୍ନ ମହାଶୟ, ସ୍ଥିର, ଚୂଡ଼ାମଣିଙ୍କ କଥାଟା ମୁଁ ତୁମ୍ଭଙ୍କୁ ବୁଝାଇ ଦେଉଛି । ଅଜ୍ଞାତ ପରିଚୟର ଲକ୍ଷଣାଦି ଦ୍ୱାରା ପୂର୍ବକ ବର୍ଣ୍ଣ ନିରୂପଣ କରିବା ଅସଙ୍ଗତ ଓ ଅସମ୍ଭବ ନୁହେଁ । ଆମ୍ଭମାନଙ୍କ ଧର୍ମଶାସ୍ତ୍ରରେ ଏପରି କେତେକଟା ଦୃଷ୍ଟାନ୍ତ ମଧ୍ୟ ଅଛି ।

ତର୍କରତ୍ନ—ତେବେ ଆପଣ କହିବାକୁ ଚାହାନ୍ତି, ଆମ୍ଭେମାନେ ଶଙ୍ଖଧରକୁ ବ୍ରାହ୍ମଣ ବୋଲି ସ୍ୱୀକାର କରିବୁ ?

ନ୍ୟାୟାଳଙ୍କାର—କ୍ଷତି କଅଣ ? ଶଙ୍ଖଧର ସୁପୁରୁଷ, ତାର ବର୍ଣ୍ଣ ଅତି ଉଜ୍ଜ୍ୱଳ ଗୌର, ଲଲାଟ ପ୍ରଶସ୍ତ, ନାସାଗ୍ରଭାଗ କୁଞ୍ଚିତ, ଏ ସବୁ ଦେଖିଲେ ବୁଝାଯାଏ ସେ କୌଣସି ନୀଚ ବଂଶରେ ଜନ୍ମ ଗ୍ରହଣ କରି ନାହିଁ ବରଂ ଆମ୍ଭ ଚୂଡ଼ାମଣିଙ୍କ କନ୍ୟା ଶ୍ରୀମତୀ ନାଗିନୀ ଯେ କେଉଁ ବର୍ଣ୍ଣର ସମ୍ଭୂତା ତାହା ନିରୂପଣ କରିବା କଠିନ ହୋଇପାରେ । ହେଁ ହେଁ ହେଁ ହେଁ, ଆପଣମାନେ କିଛି ମନେ କରିବେ ନାହିଁ । ଚୂଡ଼ାମଣି ଆମ୍ଭର ସମ୍ବନ୍ଧ କି ନା, ସେଥିଲାଗି ପରିହାସରେ ହେଁ ହେଁ ହେଁ ହେଁ ।

ସ୍ମୃତିଭୂଷଣ—ମହାଶୟ ! ନାଗିନୀ ଯେ ଚୂଡ଼ାମଣିଙ୍କ କନ୍ୟା ଏ କଥାଟା ଆମ୍ଭର ଦୃଷ୍ଟୀଭୂତ ଓ ପ୍ରତ୍ୟକ୍ଷ, ପକ୍ଷାନ୍ତରେ ଶଙ୍ଖଧରର ଜନ୍ମ ବୃତ୍ତାନ୍ତ ଆମ୍ଭମାନଙ୍କୁ ସମ୍ପୂର୍ଣ୍ଣ ଅଜ୍ଞାତ ଓ ଅପ୍ରତ୍ୟକ୍ଷ । ଅତଏବ ତାର ବ୍ରାହ୍ମଣତ୍ୱର ଦାବି ସମ୍ପୂର୍ଣ୍ଣ ଅସମ୍ଭବ ।

ନ୍ୟାୟାଳଙ୍କାର—ଅହେ ସ୍ମୃତିଭୂଷଣ, ତୁମ୍ଭେ ତ ପିଲା ଲୋକ, ଆମ୍ଭପରି ଜଣେ ପ୍ରାଚୀନ ନ୍ୟାୟବାଗୀଶ ସମ୍ମୁଖରେ ପ୍ରତ୍ୟକ୍ଷାପ୍ରତ୍ୟକ୍ଷ ବିଚାର କରିବା ଅତି ସହଜରେ ନିଷ୍ପତ୍ତି ହୋଇପାରେ ନା, ଶ୍ରୀମତୀ ଯେ ଆମ୍ଭର ଚୂଡ଼ାମଣିଙ୍କ ବ୍ରାହ୍ମଣୀଙ୍କ ଗର୍ଭଜାତା ମାତ୍ର ଏତିକି ପ୍ରତ୍ୟକ୍ଷ ହୋଇପାରେ କିନ୍ତୁ ତଦୂର୍ଦ୍ଧ୍ୱ ଆଉ ବେଶି କିଛି······ହେଁ ହେଁ ହେଁ ହେଁ

ତର୍କରତ୍ନ—ଶୁଣନ୍ତୁ ଶୁଣନ୍ତୁ, ନ୍ୟାୟାଳଙ୍କାର ମହାଶୟ ! ଆପଣ ପ୍ରାଚୀନ ଓ ବହୁଦର୍ଶୀ । ଏପରି କଥାରେ ଆମ୍ଭେମାନେ ସମ୍ମତି ପ୍ରଦାନ କରିବା କି ? ତା କେବେ ନୁହେଁ ।

ନ୍ୟାୟ—ହେଁ ହେଁ ହେଁ ହେଁ, ସମ୍ମତି ପ୍ରଦାନ କରିବ ନାହିଁ, ଏ କଥା ତ ଜାଣୁ, କିନ୍ତୁ ଶଙ୍ଖଧର ଯେ ଆଦାୟ ନ କରି ଛାଡ଼ିବ ଏକଥା ମଧ୍ୟ ଜାଣୁ । ମୋତେ ଉପରେ ଆଦାୟ କରି ନେବାଟା ସେହି

ଠାରେ ସୁନିଶ୍ଚିତ, ସେଠାରେ ପ୍ରଦାନ କରିଦେବା ତ ବୁଦ୍ଧିମାନର କାର୍ଯ୍ୟ । କଅଣ କହୁଛନ୍ତି ଚୂଡ଼ାମଣି ?

ତର୍କରତ୍ନ—ମୋ ମତରେ ଚୂଡ଼ାମଣି ତାଙ୍କର କନ୍ୟାକୁ ସ୍ଥାନାନ୍ତରକୁ ପଠାଇଦିଅନ୍ତୁ ।

ନ୍ୟାୟାଳଙ୍କାର—ନାହିଁ ନାହିଁ, ନବ ଚୂଡ଼ାମଣି, ତଦ୍ଦ୍ୱାରା ତୁମ୍ଭର ସମ୍ପୂର୍ଣ୍ଣ ବିପଦ ଉପସ୍ଥିତ ହୋଇପାରେ । ଶଙ୍କରଧରକୁ ତ ଜାଣ, ସେ ଯଦି ନାଗିମାକୁ ନ ପାଏ, ତେବେ ଚୂଡ଼ାମଣିଙ୍କ ଗୃହିଣୀଙ୍କୁ ବିବାହ କରିବାକୁ ଯୋର କରିପାରେ । ଅତଏବ ତୁମ୍ଭର ସର୍ବନାଶ ହୋଇ ଯିବ ।

ଚୂଡ଼ାମଣି—ସେ ତ ଆଜି ବିବାହ କରିବାକୁ ଆସିବ, ମୋତେ ଉପାୟ କଅଣ କହନ୍ତୁ ।

( ଛଦ୍ମବେଶୀ ଶଙ୍କରଧର ପ୍ରବେଶ )

ଆପଣମାନଙ୍କର ଅନୁମତି ହେଲେ ମୁଁ ଗୋଟାଏ ପ୍ରସ୍ତାବ ଆଗତ କରିବାକୁ ଚାହେଁ ।

ନ୍ୟାୟ—କିଏ ଏ ଭଦ୍ରଲୋକ !

ଛଦ୍ମବେଶୀ—ମୁଁ ଜଣେ ଆଗନ୍ତୁକ ଅତିଥି ବ୍ରାହ୍ମଣ ।

ନ୍ୟାୟ—ବସନ୍ତୁ, ବସନ୍ତୁ, ଆପଣଙ୍କ ପ୍ରସ୍ତାବଟା ଆମେ ଶୁଣୁ—

ଛଦ୍ମ—ଏ ସବୁ ଯାହା ଘଟଣା ଘଟିଛି, ଆମ୍ଭେ ସମସ୍ତ ଜାଣିପାରି ଏଠାକୁ ଆସିଛୁ । ପ୍ରଥମେ ପଚାରୁଛି ଏଠାରେ ବିବାହ ଉପଯୁକ୍ତ କେହି ସତ୍ପାତ୍ର ଉପସ୍ଥିତ ଅଛନ୍ତି କି ନା ?

ନ୍ୟାୟ—ହଁ ହଁ ହଁ ନାହାନ୍ତି କଅଣ, ଏହି ତର୍କରତ୍ନଙ୍କ ପୁତ୍ର ସର୍ବେଶ୍ୱର ସ୍ମୃତିଭୂଷଣ ଏ ଗ୍ରାମର ଗୋଟିଏ ଉପଯୁକ୍ତ ପାତ୍ର ।

ଛଦ୍ମ—ତେବେ ବିବାହଟା ଏହି ସ୍ମୃତିଭୂଷଣଙ୍କ ସଙ୍ଗେ ହେଲେ ତ ।

ନ୍ୟାୟ—ସୁପ୍ରସ୍ତାବ ! ସୁପ୍ରସ୍ତାବ !

ତର୍କରତ୍ନ—କ୍ଷମନ୍ତୁ ନ୍ୟାୟାଳଙ୍କାର ମହାଶୟ ! ନାନା, ଏ ପ୍ରସ୍ତାବଟା ଆଉ କରିବେ ନାହିଁ । ଚୂଡ଼ାମଣିଙ୍କ କନ୍ୟା ଏପରି ଅଦ୍ଭୁତ ରୂପା ଓ ଲକ୍ଷ୍ମୀ, ତାକୁ ଆମ୍ଭର ସର୍ବେଶ୍ୱରକୁ ବିବାହ କରି— ନା, ନା, ନା ।

ଛଦ୍ମ—ସ୍ମୃତିଭୂଷଣ ମହାଶୟ ! କନ୍ୟାଟିକୁ ଜଣେ ବ୍ରାହ୍ମଣର ଜାତି ଧର୍ମ ରକ୍ଷା କରନ୍ତୁ ।

ସ୍ମୃତିଭୂଷଣ—ଆପଣ କି ରକମ ଭଦ୍ରଲୋକ, ବିବାହ କାର୍ଯ୍ୟରେ ପିତୃ ଆଜ୍ଞା ପାଳନ କରିବା ସନ୍ତାନର କର୍ତ୍ତବ୍ୟ ।

ଛଦ୍ମ—ହଁ, ଏ କ୍ଷେତ୍ରରେ କନ୍ୟାଟି ଯେତେବେଳେ ଅସୁନ୍ଦରୀ, ପିତାଙ୍କ ପାଳନ କରା ବିଧେୟ, କିନ୍ତୁ ସୁନ୍ଦରୀଟିଏ ହୋଇଥିଲେ ପାଳନ କରିବାକୁ ପଡ଼ନ୍ତା କି ନାହିଁ ବିଶେଷତଃ ଏ ଯୁଗପ୍ରଭ ।

ନ୍ୟାୟ—ଆପଣ ତ ବେଶ ସୁରସିକ ଦେଖୁଛୁ (ଏ ସମୟରେ ରାଜା ରତ୍ନେଶ୍ୱର ପହଞ୍ଚିଲେ)

ରତ୍ନେଶ୍ୱର—ଆପଣମାନେ କଅଣ ଠିକ୍ କଲେ ?

ଚୂଡ଼ାମଣି—ଆଉ କଣ ଠିକ୍ କରିବୁ, ଆପଣଙ୍କର ଜାମାତା ମୁକ୍ତିରାମ ଯେତେବେଳେ ରାଜା ଥିଲେ, ସେତେବେଳେ ଦେଶରେ ଶାନ୍ତି ଥିଲା, ବ୍ରାହ୍ମଣର ବ୍ରହ୍ମତ୍ୱ ଥିଲା । ବର୍ତ୍ତମାନ ସେ ରାମ ନାହିଁ କି ସେ ଅଯୋଧ୍ୟା ନାହିଁ ।

ନ୍ୟାୟ—ତା ତ ସତ, ବର୍ତ୍ତମାନ ଯେ ରକ୍ଷକ ସେ ଭକ୍ଷକ ହେଁ ହେଁ, ତେବେ ଏ ବିଦେଶୀ ଭଦ୍ରଲୋକଟି ଗୋଟିଏ ପ୍ରସ୍ତାବ ଆଗତ କରିଛନ୍ତି ।

ତର୍କ—ସେ ସବୁ ବାଜେ ପ୍ରସ୍ତାବ ଥାଉ । ଭାବ ଦେଖ, ନ୍ୟାୟାଳଙ୍କାର ମହାଶୟ ! ଶଙ୍କରଧର କି ଅତ୍ୟାଚାରୀ !

ରତ୍ନେଶ୍ୱର—ଆଚ୍ଛା ଚୂଡ଼ାମଣି ମହାଶୟ ! ଆପଣଙ୍କ କନ୍ୟାକୁ ଟିକେ ଏଠାକୁ ଡାକି ପାରିବେ କି ? ମୁଁ ତାକୁ ଦଟା ଗୋଟାଏ କଥା ପଚାରିବି ।

ନ୍ୟାୟ—ଆପଣ ଟିକେ ବସି ଯାଇଥାନ୍ତେ···

ରତ୍ନେଶ୍ୱର—ନା ନା, ମୁଁ ଛିଡ଼ା ଛିଡ଼ା ବୁଝିପିବି, କଅଣ କହୁଛ ଚୂଡ଼ାମଣି ।

ଚୂଡ଼ାମଣି—ଡାକିପାରେ, ଆପଣ ଦେଖନ୍ତୁ କଥା ହେଉ । ଏମାନେ ତ ଦେଖନ୍ତୁ ପଞ୍ଚାପଞ୍ଚୋଶୀ, ଛାତ କଅଣ ? (ପ୍ରକାଶ୍ୟେ) ଆଇଲୁ ମା ନାଗିମା—

(ନାଗିମା ପ୍ରବେଶ କରିଯୋଡ଼ ଠିଆ ହେଲା)

ରତ୍ନେଶ୍ୱର—ମା' ତୁ ବୋଧହୁଏ ସବୁ ଜାଣୁ। ଆଜି ରାତରେ ଶଙ୍ଖଧର ତୋତେ ଯୋର କରି ରାକ୍ଷସ ମତେ ବିବାହ କରିବ। ତୁ ବ୍ରାହ୍ମଣ କନ୍ୟା, ତୋର ଜାତିକୁଳ ଧ୍ୱଂସ କରିବ। ତୁ ଇଚ୍ଛା କଲେ ତାକୁ ସମୁଚିତ ଶାସ୍ତି ଦେଇପାରୁ।

ନାଗିନା—ମୁଁ—

ରତ୍ନେଶ୍ୱର—ହଁ ତୁ, ତୋର ପିତାକୁ ସେ ଅପମାନିତ କରିବ, ତୋର ଜାତି ଧ୍ୱଂସ କରିବ ତୁ ତାକୁ କ୍ଷମା ଦେଇ ପାରୁ ନା—

ନାଗିନା—କି ଶାସ୍ତି କପରି ଦେବେ ?

ରତ୍ନେଶ୍ୱର—ନେ ଏ ଛୁରିକା ଖଣ୍ଡ, ତୋ ପାଖରେ ରଖ। ଆଜି ବିବାହବାସରେ ତାର ବକ୍ଷ ସ୍ଥଳରେ ବିଦ୍ଧ କରିବୁ।

ନାଗିନା—ମୁଁ ସ୍ତ୍ରୀ ଲୋକ, ମୋ ଦ୍ୱାରା ଗୋଟାଏ ପୈଶାଚିକ ହତ୍ୟାକାଣ୍ଡ ଘଟାଇବାକୁ ଚାହାନ୍ତି କାହିଁକି ? ଆପଣ ରଜା, ଆପଣ ତାର ପ୍ରତିକାର ବ୍ୟବସ୍ଥା କରନ୍ତୁ।

ରତ୍ନେଶ୍ୱର—ଏତେ ଅଳ୍ପ ସମୟ ମଧ୍ୟରେ ଅନ୍ୟ କୌଣସି ଉପାୟ ନାହିଁ ମା, ସେ ବର୍ତ୍ତମାନ ରାଜା, ତାର ଅର୍ଥବଳ ଓ ଲୋକବଳ ଢେର୍ ବେଶି। ସେ ସଦଳବଳେ ଏଠାକୁ ଆସିପାରେ।

ନାଗିନା—ସେଥିଲାଗି ମୋ ଦ୍ୱାରା ଗୋଟାଏ ଘୃଣ ବିଶ୍ୱାସ-ଘାତକ କାର୍ଯ୍ୟ କରିବାକୁ ଚାହାନ୍ତି।

ରତ୍ନେଶ୍ୱର—ବୁଝି ଦେଖ ମା, ଏହା ଛଡ଼ା ଅନ୍ୟ ଉପାୟ କିଛି ନାହିଁ। ସ୍ତ୍ରୀ ଲୋକ ପକ୍ଷେ ଜାତି ଓ ଧର୍ମ ରକ୍ଷା କରିବା ପାଇଁ ଏ ଭଳି କାର୍ଯ୍ୟବସ୍ତୁ କିଛି ଅଗୌରବର କଥା ନୁହେଁ।

ନାଗିନା—ବେଶ୍, ତା ହେଲେ ଛୁରିକାଟିକୁ ମୋତେ ଦିଅନ୍ତୁ। ଅନ୍ୟ ଯେବେ କୌଣସି ଉପାୟ ନ ପାଏ, ତେବେ ମୁଁ ନିଜେ ଆତ୍ମହତ୍ୟା କରିବି କିନ୍ତୁ ସେ ଦେବତାର ବକ୍ଷରେ ଛୁରୀ ମାରିପାରିବି ନାହିଁ।

ରତ୍ନେଶ୍ୱର—କିଏ ଦେବତା ? ଶଙ୍ଖଧର !

ନାଗିନା—ସେ ଯେ ଦେବତା ଏଥିରେ କୌଣସି ସନ୍ଦେହ ନାହିଁ। ମୁଁ ହତଶ୍ରୀ ଦୁଃଖିତା ବୋଲି କେହି ମୋତେ ଗ୍ରହଣ କଲେ ନାହିଁ। ଏ ବୟସରେ ମୁଁ ଅବିବାହିତା, ଅନେକ ଶିକ୍ଷିତ ମହାପୁରୁଷ ମୋତେ ବିବାହ କରିବାକୁ ଆସିଛନ୍ତି; କିନ୍ତୁ ସୂଦ୍ ଘୃଣାରେ ମୁଖ ଫେରାଇ ଚାଲିଯାଇଛନ୍ତି। ମୁଁ ଲଜ୍ୟାରେ ମାଟି ସହିତ ମିଶି ଯାଇଛି।

ରତ୍ନେଶ୍ୱର—ତୁ କି ମନେକରୁ ନାଗିନା, ଶଙ୍ଖଧର ତୋତେ ବିବାହ କରିବ ?

ନାଗିନା—ହଁ ବିଶ୍ୱାସ କରେ, କାହିଁକି ଯେ ବିଶ୍ୱାସ କରେ ତାର ଯଥେଷ୍ଟ କାରଣ ଅଛି, ତା ଏଠାରେ ଆଲୋଚନା କଲେ ବ୍ୟକ୍ତିବିଶେଷ ଅପ୍ରିୟ ହେବ।

ରତ୍ନେଶ୍ୱର—ତା ହେଉ, ଆମ୍ଭେମାନେ ଶୁଣିବାକୁ ଚାହୁଁ।

ନାଗିନା—ଏଇ ଦେଖନ୍ତୁ, ତର୍କରତ୍ନ ମହାଶୟଙ୍କ ମୁଖ ଶୁଖିଯାଇଛି, ସେ ଶଙ୍ଖଧରକୁ ବ୍ରାହ୍ମଣ ବୋଲି ସ୍ୱୀକାର କରନ୍ତି ନାହିଁ ସତ; କିନ୍ତୁ ଆପଣା କନ୍ୟାଟିକୁ ବିବାହ ଦେବେ ବୋଲି ମଧ୍ୟସ୍ଥି ଦ୍ୱାରା ଉପହାର ପଠାଇଥିଲେ।

ତର୍କରତ୍ନ—କିଏ କହିଲା, କିଏ କହିଲା।

ନାଗିନା—ଆପଣଙ୍କ କନ୍ୟା ମୁହଁରୁ ଶୁଣିଛି। ଆଉ ମଧ୍ୟ ଏ କଥା ଶୁଣିଛି ଯେ, ଆପଣଙ୍କ କନ୍ୟାଟି ଅତ୍ୟନ୍ତ ସୁନ୍ଦରୀ ଯୋଗୁଁ ଶଙ୍ଖଧର ବିବାହ କରିବାକୁ ଅସ୍ୱୀକୃତ ହୋଇଛନ୍ତି। ସେ ସୁନ୍ଦରୀର ସ୍ପର୍ଦ୍ଧା ବଢ଼ାଇବାକୁ ଚାହାନ୍ତି ନାହିଁ, ବରଂ ତାର ମାନ ଦୂର କରିବାକୁ ଚାହାନ୍ତି।

ତର୍କରତ୍ନ—( ବିରକ୍ତେ ) ଏ ମାଇକିନିଅଟା ବଡ଼ ମିଥ୍ୟାବାଦୀ ହେ, ଚୂଡ଼ାମଣି କନ୍ୟାର ରୂପଟି ଯେ ଉତ୍ତମ, ଗୁଣ ବି ତତୋଧିକ। ଛି ଛି ଛି।

ନାଗିନା—ସେଇ ହେଉଛନ୍ତି ମୋର ବିଶ୍ୱାସ ଶଙ୍ଖଧର ଦେବତା, ଆପଣଙ୍କ ସୁନ୍ଦରୀ କନ୍ୟାକୁ ଅଗ୍ରାହ୍ୟ କଲେ ଆଉ ମୋ ପରି ରୂପ ଗୁଣହୀନାକୁ ବିବାହ କରିବାକୁ ଚାହାନ୍ତି କାହିଁକି ?

ଚନ୍ଦ୍ରବେଣୀ—କିଏ କହେ ନାଗିନା ତୁମେ ରୂପ ଗୁଣ ହୀନା। ତୁମେ ଆଜି ମୋ ଚକ୍ଷୁରେ ଅଦ୍ୱିତୀୟା

ହୋଇଉଠିଛ । ମୁଁ ତୁମକୁ ବିବାହ କରିବାକୁ ଚାହେଁ, ଆଉ ରାଣୀ କରି ସିଂହାସନରେ ବସାଇବାକୁ ଇଚ୍ଛାକରେ ।

ରତ୍ନେଶ୍ବର— (ସକ୍ରୋଧେ) କିଏ ତୁ ।

ଛଦ୍ମବେଶୀ— ମୁଁ ରାଜା ଶକ୍ତିଧର ।

ରତ୍ନେଶ୍ବର—(ତରବାରି ବାହାର କଲେ)

ଶକ୍ତିଧର—ସାବଧାନ ଦୁଷ୍ଟମତି, ମୋ ନିକଟରେ ଆକ୍ରମଣ କରିବାକୁ କୌଣସି ସାହସ କର ନାହିଁ । ଯଦି ନାଗିନୀ ମତେ କ୍ଷତ୍ରିୟ ଜାଣି ବିବାହ ହେବାକୁ ଇଚ୍ଛା କରେ । ମୋର ରାଣୀ ହୋଇ ସିଂହାସନରେ ବସିବାକୁ ଇଚ୍ଛା କରେ ଯଦି, କାହାର ଶକ୍ତି ନାହିଁ ଯେ ଏ ବିବାହରେ ବାଧା ଦେଇପାରେ ।

(ଧୃତ ସୈନ୍ୟମାନେ ଉପୁରେ ଅସ୍ତ୍ର ରଖିଲେ ରାଜା ମଉନ)

ନାଗିନୀ—ଦେବତା ! ମୁଁ ଆପଣଙ୍କ ପଦତଳେ କରଯୋଡ଼ି ପ୍ରାର୍ଥନା କରୁଅଛି, ଏ ଚିରଉପେକ୍ଷିତା ନାଗିନୀକୁ ଯେଉଁ ସମ୍ମାନ ଦେବାକୁ ଇଚ୍ଛା କରିଛନ୍ତି, ତହିଁକି ମୁଁ ନିତାନ୍ତ ଅନୁପଯୁକ୍ତା । ତଥାପି ଆପଣଙ୍କ ଦୟାର ନିଦର୍ଶନ ପାଇଁ ଆପଣଙ୍କ ମୂର୍ତ୍ତିକୁ ହୃଦୟରେ ରଖି ପୂଜା କରିବି, କିନ୍ତୁ ଲୌକିକ ବିବାହ କରିବି ନାହିଁ, ମୁଁ ମୋର ଜାତିକୁ ସମାଜ ଲାଞ୍ଛନା ଭୋଗ କରିବାକୁ ଦେବି ନାହିଁ । କରଯୋଡ଼ି ପ୍ରାର୍ଥନା କରୁଛି, ଆପଣ ଏ ସ୍ଥାନରୁ ଯେତେ ଶୀଘ୍ର ନଗଲେ ମୁଁ ଆତ୍ମହତ୍ୟା କରିବି । (ପ୍ରସ୍ଥାନ)

ଶକ୍ତିଧର— ଆଶୀର୍ବାଦ କରେ ନାଗିନୀ, ସୁଖରେ ଥା । (ପ୍ରସ୍ଥାନ)

ନ୍ୟାୟାଳଙ୍କାର—ଯାଉଛି ରେ ବାବା ଏକବାରେ ପିନ୍ଧକନା ତମ୍ବେଲ ଦେଖି ଯାଉଛି ରେ ବାବା ।

ରତ୍ନେଶ୍ବର—ବୁଦ୍ଧିମାନ୍ ନ୍ୟାୟାଳଙ୍କାର ମହାଶୟ ଜାଣ୍ୟ, ସ୍ବୟଂ ଶକ୍ତିଧରଙ୍କ ଗୋପନ ଆଳାପ ଅଛି, ଚାଲ ଚାଲ !

ଚୂଡ଼ାମଣି – ସତ୍ୟ କି ଶକ୍ତିଧର ସହିତ ମୋ କନ୍ୟାର ଗୋପନ ଆଳାପ ଅଛି, ଯଦି ଏକଥା ପ୍ରମାଣ ହଏ, ଆଜ ମାରି ଦେଇ ସାଙ୍ଗ କରିଦେବି । (ପ୍ରସ୍ଥାନ)

ରତ୍ନେଶ୍ବର—ଶକ୍ତିଧର ଏ ଅପମାନରେ ପ୍ରତିଶୋଧ ନେବି ନେବି ନେବି ।

---

## ତୃତୀୟ ଦୃଶ୍ୟ

( ସୁନନ୍ଦା ଗୀତଟିଏ ଗାଇ ଆସିଲା )

ଏସ ସୁମନମାନେ, ରାଧାରାଣୀଙ୍କୁ ପୂଜିବି ପ୍ରେମାଦରେ
ଉଲ୍ଲାସ ପ୍ରାଣେ ପୂଜିବି ବସି କାମନା ଅନ୍ତରେ !
ଚନ୍ଦନ ଚୂଆ କର୍ପୂର ଧୂପ ଦୀପ ଧରି କରେ
ଜାଗରେ ମୁଁ ପୂଜିବି ଦେବୀ ରଜନୀ ତୋ ପୟରେ

(ଧୀରେ ଆସି ରାଧା ରାଣୀଙ୍କ ସେବାରେ ନିଯୁକ୍ତ ହେଲା)

(କେତେଗୁଡ଼ିଏ କୁମାରୀ ଫୁଲମାଳାଧରି ଗୀତ ଗାଇଆସିଲେ)

(ଗୀତ)

ଏଇ ମାଳା ଯେ ପିନ୍ଧିବେ ଗଳେ
ତାର ଦେଖା ସନ୍ଧ ପାଇ କେସନେ
ନିଦ୍ରା ଭଙ୍ଗି ନାହିଁ ଆଜ ବୁଝି ତାର
ଜ୍ୟୋତ୍ସ୍ନାରେ ଫୁଲ ଶୟନେ ।
ଜାଗିବେ କି ସେ ଡାକିଲେ ପକ୍ଷି
ଭୋର ହେବାର ଅନେକ ବାକି
ଫୁଲ ଶୁଖିଲା ତେଣୁ ସେ କଳି—
ଦାଗ ପଡ଼ିଛି ଚନ୍ଦ୍ରାନନେ ।
ତେବେ କି ଲାଗି ଏ ମାଳାଟିରେ
ଭିଜାଇ ରଖି ନୟନ ନୀରେ
ହୃଦୟ ଜ୍ବାଳା ଶୁଖିଲା ମାଳା
ଜଳ ବୁଝି ଅଛି ନାହିଁ ନୟନେ ।

(ପ୍ରସ୍ଥାନ)

ଶକ୍ତିଧର—(ପ୍ରବେଶ) ସୁନନ୍ଦା !

ସୁନନ୍ଦା—ବାବା, ତୁମେ ରାଧ ରାଣୀଙ୍କୁ ସେଠାକୁ ପଠାଇ ଦେଇ ନଦେଲ ରାଧାରମଣଙ୍କୁ ଏଠାକୁ କେନ ଆସ ।

ଶକ୍ତିଧର—କାହିଁକି ? ତୋ ରାଧାରାଣୀ ରାଧାରମଣଙ୍କ ଲାଗି ଏତେ ବ୍ୟାକୁଳ ହୋଇ ପଡ଼ିଛନ୍ତି ।

ସୁନନ୍ଦା—ମୁଁ ସବୁ ସମୟରେ ଶ୍ରୀରାଧାଙ୍କ କାନ୍ଦଣା ଶୁଣିବାକୁ ପାଉଛି ବାବା ।

ଶଙ୍ଖଧର—ସତେ, ନା ସେ ପିଲ୍ଲାଟା ଆଗେ ଆଉ ତୁ ସେ କାନ୍ଦଣା ସ୍ୱର ଶୁଣିବାକୁ ପାଉ, କାହିଁ ? ମୁଁ ତ କେବେ ହେଲେ ଶୁଣିବାକୁ ପାଏ ନା ସୁନନ୍ଦା ।

ସୁନନ୍ଦା— ତୁ କାନ ପାତୁ ଯେ, ଶୁଣିବୁ ।

ଶଙ୍ଖଧର – ତୁ କେଉଁଠାରେ କାନ ପାତୁ ? ନିଜ ହୃଦୟରେ ତ ?

[ଶଙ୍ଖନାଦକୁ ବନ୍ଧନ କରି ଉଗ୍ରସେନ ପ୍ରବେଶ]

କିଏ ଏହି ଯୁବକ ଶଙ୍ଖନାଦ !

ଉଗ୍ରସେନ—ଅମ୍ଭର ଶିବିରଣ ପ୍ରତଶ ଆଡ଼ତ, ସ୍ୱାର ଉଦ୍ଦେଶ୍ୟ ଏ ଆପଣଙ୍କୁ ହତ୍ୟା କରିବ ।

ଶଙ୍ଖଧର – କିନ୍ତୁ ଏତେ ଡେରି କାହିଁକି ହେଲା ଶଙ୍ଖନାଦ, ତୁମର ବହୁ ପୂର୍ବ ଆସିବା ଉଚିତ ଥିଲା ! ତୁମର ବାବା କେବେ ଆସିବେ ? ନିମନ୍ତ୍ରଣ ଚିଠିଟ ପଠାଇ ଦେଇଛ ।

ଶଙ୍ଖନାଦ –(କ୍ରୋଧେ) ସଇତାନ୍ ! ମୋର ହାତର ବନ୍ଧାଟା ଖୋଲିଦେ ମୁଁ ତୋତେ··· ।

ଶଙ୍ଖଧର—ହାତର ବନ୍ଧାଟା ଖୋଲି ଦେଲେ ମୋ ସହିତ ପାରିବୁ ତ ଯୁବକ ? ନିଜର ଅସହାୟ ଅବସ୍ଥା ସ୍ମରଣ କରି ଶାନ୍ତ ହୁଅ, ସ୍ଥିର ହୁଅ ।

ଶଙ୍ଖନାଦ—ନିଶ୍ଚୟ ପାରିବି, ମୁଁ ତୋର ମୁଣ୍ଡଟା କାଟି ନେବାକୁ ଆସିଛି । ଦେ, ଦେ, ମୋର ହାତର ବନ୍ଧନଟା ଖୋଲି ଦେ !

ଶଙ୍ଖଧର—ପିଲାଙ୍କର ଜାଣୁନା ଯେ କୋଳି ଉତ୍ତେଜନାରେ କିଛି କାର୍ଯ୍ୟ ହୁଏ ନାହିଁ । ଧୈର୍ଯ୍ୟ ସହ୍ୟ ଆଉ ତା ସଙ୍ଗେ ଧୀର ସ୍ଥିର ଚତୁର ବୁଦ୍ଧି ।

ସୁନନ୍ଦା – ଏ କିଏ ବାବା !

ଶଙ୍ଖଧର – ମଲ୍ଲିକାମର ପୁଅ ଶଙ୍ଖନାଦ, ତୁ ସ୍ୱାକୁ କେବେ ଦେଖିଛୁ ?

ସୁନନ୍ଦା —ନା, ଆଜ୍ଞା ତା ହାତର ବନ୍ଧାଟା ଖୋଲିଦେଲେ ସେ କି ତୋତେ ମାରିବ ?

ଶଙ୍ଖଧର – ଦେଖୁନାହିଁ ତା'ର କି ଆକ୍ରୋଶ ମୋ ଉପରେ ! ତୁ ତ, ସଙ୍ଗରେ କଥାବାର୍ତ୍ତା କରି ତାର ମନ ପରିବର୍ତ୍ତନ କରାଇ ଦେ, ଭୟ ନାହିଁ ତାର ହାତ ବନ୍ଧା, ଅଛି ଆଉ ତାକୁ ବୁଝାଇ କହ ବେଶି କିଛି ଅସ୍ଥାଳନ କରିଲେ ,ପ୍ରାଣଦଣ୍ଡ ଦିଆଯିବ ।

ସୁନନ୍ଦା – ନା ବାବା ! ପ୍ରାଣଦଣ୍ଡ ଦିଅନା, ମୁଁ ତାଙ୍କୁ ବୁଝାଇଦେଉଛି ।

(ସୁନନ୍ଦା ଶଙ୍ଖ ନିକଟରେ ବସି ପ୍ରବୋଧ ଦେଲେ)

ଶଙ୍ଖଧର – ଆଉ କିଛି ନୂତନ ସମ୍ବାଦ ଅଛି ଉଗ୍ରସେନ ?

ଉଗ୍ରସେନ – ଅଛି, ବଜ୍ରବାହୁ ବହୁ ସୈନ୍ୟ ସମାବେଶ କରିଛି ।

ଶଙ୍ଖଧର – କେଉଁଠାରେ ?

ଉଗ୍ରସେନ – ନଦୀର ସେପାରେ, ଆଜକୁ ତିନିଦିନ ହେଲା ନଦୀ ଉପରେ ଗୋଟାଏ ସେତୁ ନିର୍ମାଣ କରିବା ଲାଗି ବହୁ ଶିଳ୍ପି ନିଯୁକ୍ତ କରିଛି । ସେତୁ ନିର୍ମାଣ କାର୍ଯ୍ୟ ବହୁଦୂର ଅଗ୍ରସର ନ ହେବା ପୂର୍ବରୁ ଆମ୍ଭେମାନେ ବାଧା ଦେବାକୁ ଚାହୁଁ ।

ଶଙ୍ଖଧର – ସେ କି କଥା ଉଗ୍ରସେନ, ନଦୀ ପାର ହେବା ଲାଗି ଗୋଟାଏ ସେତୁ ନିର୍ମାଣ ହେବ, ତଦ୍ୱାରା ଆମ୍ଭ ରାଜ୍ୟର ଶ୍ରୀବୃଦ୍ଧି ସାଧିତ ହେବ, ତୁମ୍ଭେ ବାଧା ଦେବାକୁ କାହିଁକି ଚାହଁ ।

ଉଗ୍ରସେନ – ସେତୁର ସାହାଯ୍ୟେ ତାର ସମସ୍ତ ସୈନ୍ୟ ଅକ୍ଳେଶରେ ଏ ପାରିକୁ ଆଣିପାରେ ।

ଶଙ୍ଖଧର – ତା ପୂର୍ବରୁ ତୁମ୍ଭେ ତୁମ୍ଭର ସୈନ୍ୟମାନଙ୍କୁ ସେ ପାରିକୁ ନେଇପାର ।

ଉଗ୍ରସେନ – ସେତୁଟା ସେ ତାର ।

ଶଙ୍ଖଧର – ହିଁ ସେ ତ କହୁଛି ଏ ରାଜ୍ୟ ତାର, ଏ ରାଜଧାନୀଟା ମଧ୍ୟ ତାର । ଉଗ୍ରସେନ ! ଯେ ଯେଉଁ ଜିନିଷଟି ତିଆରି କରେ ସେ ତା'ର ମାଲିକ ନୁହେଁ ମାଲିକ ସେହି ଯେ ଜିନିଷଟା ଅଧିକାର କରେ ଏତେ ବଡ଼ ଗୋଟାଏ ପ୍ରୟୋଜନୀୟ ଜିନିଷ ତିଆରି କରିବାକୁ ନ ଦେଇ ଭାଙ୍ଗି ପକାଇବା ତ ଭଲ ନୁହେଁ । ଅଧିକାର କରିବାଟା ହେଉଛି ବୁଦ୍ଧିମାନର କାର୍ଯ୍ୟ ।

ଉଗ୍ରସେନ – କେବେ କି ?

ଶଙ୍ଖଧର—ସେତୁ ନିର୍ମାଣ କାର୍ଯ୍ୟରେ କୌଣସି ବାଧା ଦିଅ ନା, କିନ୍ତୁ ତୁମ୍ଭେମାନେ ପ୍ରସ୍ତୁତ ଥାଅ,

ସେମାନେ ଆମର ଜନ୍ମଗତ ଅଧିକାର ନଷ୍ଟ ନ ହୁଏ ।

( କହୁ କହୁ ପ୍ରହରୀ କହିଲା ରାଜଲକ୍ଷ୍ମୀ କମଳା ଦେବୀ ଆସିଛନ୍ତି )

ରାଜଲକ୍ଷ୍ମୀ କମଳା ଦେବୀ ! ଯାଅ ! ଉଗ୍ରସେନ ସହସ୍ତେ ତାଙ୍କୁ ଏଠାକୁ ଘେନି ଆସ ।

ପ୍ରହରୀ - ତାଙ୍କର ମୂର୍ତ୍ତି ଅତି ଭୟଙ୍କର, ହାତେ ଅଛି ସୁଧାର ଭୃଙ୍ଗାର ।

ଶଙ୍ଖଧର - ଯା ଥାଉ, ଯା ଉଗ୍ରସେନ ତାଙ୍କୁ ସସମ୍ମାନେ ଏଠାରେ ପହଞ୍ଚାଇ ଦିଅ, ମୁଁ ସେ ତାଙ୍କୁ ଚାହିଁଛି ।
ଏବେ ଶୀଘ୍ର ଯାଇବା ଭବ ନ ଥିଲା ।

( ଉଗ୍ରସେନ ପ୍ରସ୍ଥାନ )

ଶଙ୍ଖଧର ସୁନନ୍ଦା କାନରେ କହିଲା ପୂଲ କଣ୍ଠି ଘେନିଆ, "ଯା ଶୀଘ୍ର" ସୁନନ୍ଦା ଚାଲିଗଲା ଏ ସମୟେ କମଳା ସମ୍ମୋଧେ ପ୍ରବେଶ ।

ଶଙ୍ଖନାଦ—ମା ! ମା ! ତୁମ୍ଭେ କାହିଁକି ଏ ନରକକୁ ଆସିଲ ?

କମଳା—ଶଙ୍ଖଧର ଏସମୟେ ତୁ ମୋତେ ଚାହୁଁ ?

ଶଙ୍ଖଧର— ହଁ ଚାହେଁ ।

କମଳା - ତେବେ ଶୁଣୁଚ ତୁମ, ମୁଁ ତ ଆସିଛି ।

ଶଙ୍ଖଧର—ତୁମ୍ଭେ ଆସିଛ ସୁଧାର ଭୃଙ୍ଗାର ହସ୍ତେ, ମୁଁ ଚାହିଁଛି ଏହି ଅନ୍ତିମ ଭକ୍ତି ପୂଲ ଦେଇ ମୋର ମାତୃ ପୂଜା କରିବି ।

( ସୁନନ୍ଦା ହସ୍ତୁ ଫୁଲ ନେଇ କମଳା ପଦରେ ଦେଲା )

କମଳା—( ଆଶ୍ଚର୍ଯ୍ୟ ହୋଇ ) ତୁ କି ଶଙ୍ଖଧର ?

ଶଙ୍ଖଧର—ମା ! ମୁଁ ତୋର ସନ୍ତାନ, ଇଚ୍ଛା ହୁଏ ତୁ ମୋତେ ବଧକର । ଏହି ତୋର ପଦ ଉପରେ ମୋର ମସ୍ତକ ରଖୁଛି, କିନ୍ତୁ ତା ପୂର୍ବରୁ ମୁଁ ଗୋଟାଏ କଥା କହିବାକୁ ଚାହେଁ ।

କମଳା—କି କଥା ?

ଶଙ୍ଖଧର—ତୁମ୍ଭେ ମୋତେ ଯେବେବେଳେ ହତ୍ୟା କରି ତୁମ୍ଭ ସ୍ୱାମୀ ନିକଟ ଯେତେବେଳେ ସେତେବେଳେ ଦେଖିବ ତୁମ୍ଭର ସ୍ୱାମୀଙ୍କର ମଧ୍ୟ ମୃତ୍ୟୁ ହୋଇଥିବ, ତୁମ୍ଭେ ବିଧବା ହୋଇଥିବ ।

କମଳା—ବିଧବା ହୋଇଥିବ ? ମୁଁ ସେ ତୋ କଥା କିଛି ବୁଝିପାରୁ ନାହିଁ ।

ଶଙ୍ଖଧର—ମୁଁ ତୁମକୁ ବର୍ତ୍ତମାନ କିଛି ବୁଝିବାକୁ ଦେବି ନାହିଁ । ତୁମ୍ଭ ନିକଟରେ ମୋର ଏହି ଅନୁରୋଧ ଯେବେ ତୁମ୍ଭେ, ତୁମ୍ଭର ସ୍ୱାମୀ ଓ ପୁତ୍ରର ମଙ୍ଗଳ ଚାହଁ ତେବେ ଏକପକ୍ଷ କାଳପାଇଁ ସ୍ୱଇଚ୍ଛାରେ ସ୍ୱଚ୍ଛନ୍ଦ ମନେ ମୋର ଅନ୍ତଃପୁରରେ ବନ୍ଦିନୀ ଥାଅ । ସନ୍ତାନଙ୍କରେ ମୋର କଥାରେ ବା କାର୍ଯ୍ୟରେ କୌଣସି ପ୍ରତିବାଦ କରନା । ବିଶ୍ୱାସ କର ମୁଁ ତୁମ୍ଭର ପରମ ହିତାକାଂକ୍ଷୀ । ମୋର ମୃତ୍ୟୁ ସଙ୍ଗେ ସଙ୍ଗେ ମୁକ୍ତିବାମର ମୃତ୍ୟୁ, ତୁମ୍ଭର ବୈଧବ୍ୟର ସୁନିଶ୍ଚିତ ।

କମଳା—ଶଙ୍ଖଧର !

ଶଙ୍ଖଧର—ମା !

କମଳା—ମୁଁ ଚିରଦିନ ତୋତେ ବିଶ୍ୱାସ କରେ, ଆଜି ମଧ୍ୟ ।

ଶଙ୍ଖଧର—ତେବେ ଚାଲ ମା ରାଜଲକ୍ଷ୍ମୀ, ମୋର ମାତୃ-ପୂଜାର ପବିତ୍ର ମନ୍ଦିର ଆଜି ଆଲୋକିତ କରିବେ । ମା !

( ପଦରେ ପ୍ରଣାମ କରି ଘେନିଗଲେ )

---

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ନାଗିଣୀ ଗୀତଟିଏ ଗାଇ ଗାଇ ଆସିଲା)

ନାଗିନୀ— ଗୀତ

ସେ କି ଗୋ ପଥ ଭୁଲି ଆସିବ ଚାଲି ଚାଲି
ଅଛନ୍ତି ଥିଲା ଖୋଲି ତା ପଛେ ଅନୁରାଗ ।
ମୁଖରେ ନାହିଁ ଭାଷା ଅଛନ୍ତି କଥା ମିଶା
ପ୍ରାଣର ଅଭାମେଦ ଭୂଷାର ଦେଲି ଢାଳ ।
ସେ ମୁଖ ଥିଲା ତୋଳି ଗୁନ୍ଥିବ ବୋଲି ମାଳ
ସେ ଫୁଲ ହେଲା ବାସି ସେବକ ପୂଜାଥାଳ ।

ନଅଶହ ମୁଁ ତବୋଷ　　　ଆଖି ଧରେ ବୋଲି
　　ବସିଲି ଅନୁସରି କେ କେଣେ ନେଲା ହରି ।
　　( ଝଲ୍‌କା ହସି ହସି ନାଗିନା ନିକଟ ଆସିଲା )

ନାଗିନା – ତୁମେ ଏଠାକୁ କାହିଁକି ଆସିଛ ? ତୁମର ଏଠାରେ କି କାର୍ଯ୍ୟ ?

ଝଲ୍‌କା—ଦରକାର ନ ଥିଲେ କି ଆସିଥାନ୍ତି, ତୁମକୁ ଗୋଟିଏ କଥା ପଚାରିବି ?

ନାଗିନା—କି କଥା ?

ଝଲ୍‌କା—ରାଜା ଶକ୍ତିଧରଙ୍କ ସଙ୍ଗେ ତୁମର ବିବାହ ହୋଇଛି ?

ନାଗିନା—କିଏ କହିଲା ? ମୁଁ ତ ତାଙ୍କର ଦାସୀ ହେବାର ଉପଯୁକ୍ତ ନୁହେଁ । ମୋ ପରି କୁତ୍ସିତା କୁଶ୍ରୀ ସ୍ତ୍ରୀ ତୁମେ ଭଲା କେଉଁଠି ଦେଖିଛ ?

ଝଲ୍‌କା—ଅଚ୍ଛା, ତୁମେ ଭଲା ମୋ ପରି ସୁନ୍ଦରୀ ସ୍ତ୍ରୀ କେଉଁଠି ଦେଖିଛ ?

ନାଗିନା —ନା, ବାସ୍ତବିକ ତୁମେ ଭାରି ସୁନ୍ଦରୀ ।

ଝଲ୍‌କା—ମୁଁ ରାଣୀ ହେଲେ ମୋତେ ବେଶ୍ ମାନିବ, ନୁହେଁ ?

ନାଗିନା —ହଁ, ନିଶ୍ଚୟ ମାନିବ ।

ଝଲ୍‌କା—ମୁଁ ରାଜା ଶକ୍ତିଧରଙ୍କୁ ଖୁବ୍ ଭଲ ପାଏଁ, ସେ ଏ କଥା ଶୁଣିଲେ ମୋତେ ଖୁବ୍ ଭଲ ପାଇବେ ?

ନାଗିନା —ହଁ, ନିଶ୍ଚୟ ଭଲ ପାଇବେ ।

ଝଲ୍‌କା—କାହିଁକି ତୁମେ ମୋ ଉପରେ ରାଗିଲ ନାହିଁ ?

ନାଗିନା　ରାଗିବି କାହିଁକି ? ( ହସିବା )

ଝଲ୍‌କା—ଲୋକେ କହନ୍ତି, ସେ ତୁମକୁ ବିବାହ କରିବେ ।

ନାଗିନା—କିନ୍ତୁ ମୁଁ ତ ତାଙ୍କୁ ବିବାହ କରିବାକୁ ଯୋଗ୍ୟ ନୁହେଁ ନା ।

ଝଲ୍‌କା—ସେ କି କଥା ?

ନାଗିନା—ମୁଁ ଭଲ କରି ଜାଣେ, ମୁଁ ତାଙ୍କର ଦାସୀ ହେବାର ଉପଯୁକ୍ତା ନୁହେଁ । ମୋ ଦୁଃଖରେ ତାଙ୍କର ସହାନୁଭୂତି ଅଛି । ମୋତେ ଅନୁଗ୍ରହ କରିପାରନ୍ତି; କିନ୍ତୁ ଭଲ ପାଇବେ ନାହିଁ । ମୋର ଅଛି ରୂପ, ନା ଅଛି ଗୁଣ ।

ଝଲ୍‌କା – ମୋତେ ବୋଧ ହୁଏ ଭାରି ଭଲ ପାଇବେ ? ମୋର ରୂପ ଓ ଗୁଣ ଏ ଦୁଇଟି ପୂର୍ଣ୍ଣମାତ୍ରାରେ ଅଛି ।

ନାଗିନା – ନିଶ୍ଚୟ ।

ଝଲ୍‌କା – ତୁମେ ମୋ ଉପରେ ରାଗିଲ ନାହିଁ ?

ନାଗିନା – ରାଗିବି କାହିଁକି ? ବାସ୍ତବିକ ତୁମେ ସୁନ୍ଦରୀ, ସେ ତୁମକୁ ଖୁବ୍ ଭଲ ପାଇବେ । ମୁଁ ତା ହେଲେ ଆସୁଛି ।　　　　( ପ୍ରସ୍ଥାନ )

ଝଲ୍‌କା – ମାଈକିନିଆଁଟା　ଏକବାର ବରଫ ଭଳିଆ ଥଣ୍ଡା, ଟିକେ ମାତ୍ର ରାଗ କଲା ନାହିଁ । ଲୋକେ ଯେ କହନ୍ତି, ଶକ୍ତିଧରଙ୍କୁ ସେ ବିବାହ କରିବ, ତେବେ ସେ କଥା ମିଥ୍ୟା ।

( ଏ ସମୟରେ କୃଷ୍ଣ ବେଶ ସାଜି ଧୂମକେତୁ ପ୍ରବେଶ )

ଧୂମ – କି ! କାହା ସଙ୍ଗରେ ଗପସପ ଚାଲିଥିଲା କି ? ଦେଖିଲୁ, ମୁଁ କିପରି କୃଷ୍ଣ ସାଜିଛି ।

ଝଲ୍‌କା –　　　　(ଗୀତ)
　　ଦୂରେ ଯା ଦୂରେ ଯା ତୋତେ
　　ଦେଖିଲେ ମୋର ହାଡ଼ ଜଳେ ।

ଧୂମ –　କୃଷ୍ଣ କଳା　　　ବୋଲି କି ବୁଧୀ
　　ଦେବି ମାଳା ବଂଶୀଧରର ଗଳେ ।

ଝଲ୍‌କା—　ଆରେ ଖେଣ୍ଡା କଳା କୁକୁର
　　ତୋର ସଙ୍ଗେ ମୋର କି ଦରକାର ?

ଧୂମ –　କରିବା ରାସ　　　ଏ ମୋହନ ବେଶ
　　ଯୁଗଳ ସାଜିବା କଦମ୍ବମୂଳେ ।

ଝଲ୍‌କା –　ପିଠାନା କହୁଛି ମୋତେ ପାଟି
　　ଭାଙ୍ଗିଦେବି ତୋର ଦାନ୍ତପାଟି ।

ଧୂମ –　ମାନମୟୀ ମୋର　　ମାନ ଦୂର କର
　　ପଡ଼ୁଛି ତୋର ଚରଣତଳେ ।
　　　　　( ଉଭୟଙ୍କ ପ୍ରସ୍ଥାନ )

— * —

### ଦ୍ୱିତୀୟ ଦୃଶ୍ୟ

( ବଜ୍ରବାହୁ ଏକାକୀ ପ୍ରବେଶ )

ବଜ୍ରବାହୁ—ନା, ଆସିବ ନାହିଁ । ଏତେ ସାହସ ହୋଇପାରେ ? ନା ନା, ଏଇ ଯେ ଆସୁଛି !

( ଶଙ୍ଖଧର ପ୍ରବେଶି )

ଶଙ୍ଖଧର—ତୁମ୍ଭେ ଇଚ୍ଛା କଲେ ମୋତେ ବଧ କରିପାର । ବଜ୍ରବାହୁ ! ମୁଁ ଆସିଛି, ସମ୍ପୂର୍ଣ୍ଣ ନିରସ୍ତ୍ର ଓ ଅପ୍ରସ୍ତୁତ ଭାବେ; କିନ୍ତୁ ଏ କଥା ନିଶ୍ଚୟ ଜାଣ, ଯଦି ତୁମ୍ଭେ ମୋ ସହିତ ବିଶ୍ୱାସଘାତକତା କାର୍ଯ୍ୟ କର, ତେବେ ତୁମ୍ଭର ସବୁ ଆଶା ଓ ଆକାଙ୍କ୍ଷା ସମୂଳେ ନଷ୍ଟ ହେବ ।

ବଜ୍ରବାହୁ—ମୋର କି ଆଉ ଆଶା-ଆକାଙ୍କ୍ଷା ଅଛି ଶଙ୍ଖଧର ? ତୁମେ ଯେଉଁଦିନ ସିଂହାସନ ଅଧିକାର କରିଛ, ସେହିଦିନ ଚକ୍ରାନ୍ତ ବିଶ୍ୱାସଘାତକର କାର୍ଯ୍ୟ କରି ନାହିଁ ?

ଶଙ୍ଖଧର—ହିଁ, କରିଛି । କାହିଁକି ଯେ କରିଛି, ତା ଆଜି ସମସ୍ତ ଖୋଲି କହିବି । ତୁମ ସୈନ୍ୟମାନଙ୍କ ସାହାଯ୍ୟରେ ମୁଁ ସିଂହାସନ ଅଧିକାର କରିଥିଲି ସତ୍ୟ; କିନ୍ତୁ ତୁମେ ତ ଜାଣ ମୋର ଲକ୍ଷ୍ୟ ଥିଲା ରାଜଲକ୍ଷ୍ମୀ କମଳା ଆଉ ତାର ଦର୍ଶନ ଥିଲା ପ୍ରାଣର ଏକମାତ୍ର ଶାନ୍ତି । ତୁମେ କେବେ ଥରେ ପରିହାସ କରିଥିଲ ମନେ ପଡ଼େ ?

ବଜ୍ରବାହୁ—ମନେ ପଡ଼େ ।

ଶଙ୍ଖଧର—କିନ୍ତୁ ମୁଁ ଜାଣେ କମଳା ତୁମ୍ଭର ସହୋଦରା ଭଗ୍ନୀ । ଏହି ସେହି କାରଣରୁ ମୋର ଧାରଣା ଥିଲା ତୁମ୍ଭେ ଯଦି ସିଂହାସନ ଅଧିକାର କରି, ତେବେ କମଳାଲାଭପାଇଁ ମୋତେ କୌଣସି ସାହାଯ୍ୟ କରିବ ନାହିଁ । ସେଥିଯୋଗୁ ମୁଁ ତୁମ୍ଭଙ୍କୁ କିଛି ଦିନ ପାଇଁ ସିଂହାସନରୁ ଅପସାରିତ କରିଦେଇ ସିଂହାସନ ଅଧିକାର କରିଛି । ମୁଁ ଆଜି ରାଜଲକ୍ଷ୍ମୀ କମଳା ଦେଖିବାକୁ ପାଇଛି । ମୋର ତ ସିଂହାସନରେ କୌଣସି ପ୍ରୟୋଜନ ନାହିଁ । ବନ୍ଧୁ, ତୁମ୍ଭେ ଯଦି ସ୍ୱୀକାର, ଆଜି ତୁମ୍ଭଙ୍କୁ ସିଂହାସନ ଫେରାଇଦେଇପାରେ; କିନ୍ତୁ ମୋତେ ଗୋଟାଏ ପ୍ରତିଶ୍ରୁତି ଦେବାକୁ ପଡ଼ିବ ।

ବଜ୍ରବାହୁ—କି…

ଶଙ୍ଖଧର—ମୁକ୍ତାରାମ ଯେପରି କମଳାକୁ ମୋ ନିକଟରୁ ଛଡ଼ାଇ ନେଇ ନ ପାରେ, ମୁଁ ତାକୁ ସମ୍ପୂର୍ଣ୍ଣ ନିଜସ୍ୱ ଭାବେ ଚାହେଁ ।

ବଜ୍ରବାହୁ—ତୁମ୍ଭେ ଜାଣ ନା ଶଙ୍ଖଧର, ମୁକ୍ତାରାମ ଆଜି କମଳାକୁ ହରାଇ ଉନ୍ମାଦ ! ତୁମ୍ଭେ ଯଦି କହ, ମୁଁ ତାର ଜୀବନଲୀଳା ଶେଷ କରିଦେଇପାରେ ।

ଶଙ୍ଖଧର—ନା ନା, ତୁମ୍ଭେ ତା ସଙ୍ଗେ ସଦ୍ଭାବ ରକ୍ଷା କରି ଚାଲ, ସେ କାର୍ଯ୍ୟଟା ମୁଁ କରିବାବେଳେ ସୁବିଧା-ସୁଯୋଗ ଦେଖି, ଉପସ୍ଥିତ ଗୋଟାଏ ବିଷୟରେ ତୁମ୍ଭର ପଥ ପରିଷ୍କାର କରିଦେଇଛି ବନ୍ଧୁ । ମୁଁ ସେ ଶଙ୍ଖନାଦକୁ ହତ୍ୟା କରିଛି ।

ବଜ୍ରବାହୁ—ଶଙ୍ଖନାଦକୁ ହତ୍ୟା କରିଛ ?

ଶଙ୍ଖଧର—ନିଶ୍ଚୟ ! ହତ୍ୟା କରିଛି, କାରଣ ମୁଁ ଜାଣେ, ଦିନେ ତୁମ୍ଭଙ୍କୁ ସିଂହାସନଟା ଫେରାଇଦେବାକୁ ପଡ଼ିବ । ଅତଏବ ତା ଯଦି ନିଷ୍କଣ୍ଟକ କରି ନ ଦିଏ, ତେବେ ବନ୍ଧୁର କାର୍ଯ୍ୟ ହେଲା କି ?

ବଜ୍ରବାହୁ—ଏଥର ସତ କହୁଛି ବନ୍ଧୁ, ତୁମ୍ଭଠାରେ ମୋର କୌଣସି ଅବିଶ୍ୱାସ ନାହିଁ । ମୁଁ ଏତେଦିନ ପର୍ଯ୍ୟନ୍ତ ତୁମ୍ଭଙ୍କୁ ଅବିଶ୍ୱାସ ଚକ୍ଷୁରେ ଦେଖୁଥିଲି; କିନ୍ତୁ ଆଜି ଦେଖୁଛି, ତୁମ୍ଭେ ମୋର ଅକୃତ୍ରିମ ବନ୍ଧୁ ।

ଶଙ୍ଖଧର—ମୋର ଉଦ୍ଦେଶ୍ୟ ଯେତେବେଳେ ସିଦ୍ଧ, ସେତେବେଳେ ତୁମ୍ଭେ ଯେ ମୋତେ ଚିରଦିନ ଅବିଶ୍ୱାସ କରିବ, ଏ ଧାରଣା ମୋର ଥିଲା ନାହିଁ ।

ବଜ୍ରବାହୁ—ମୋତେ ବର୍ତ୍ତମାନ କ'ଣ କରିବାକୁ ହେବ ବନ୍ଧୁ ?

ଶଙ୍ଖଧର—ସାହସ କରୁଛ, କର; ଆଉ ସେତିକିଟା ଖାଲି ଶୀଘ୍ର ଶୀଘ୍ର ଉଦ୍ଧାରକରିପକା, ଭବିଷ୍ୟତରେ ତୁମ୍ଭର ରାଜ୍ୟର ଗୋଟାଏ ସମ୍ପଦ ହୋଇ ରହିବ, ମୁଁ ତୁମ୍ଭଙ୍କୁ ଆକ୍ରମଣ କରିବି ନାହିଁ କିମ୍ବା ବାଧା ଦେବି ନାହିଁ । ମିଛେ ମିଛେ ରକ୍ତପାତର କଅଣ ପ୍ରୟୋଜନ ଅଛି ବନ୍ଧୁ ? ଆଗାମୀ ପୂର୍ଣ୍ଣିମା ଦିନରେ ତୁମ୍ଭର ରାଜ୍ୟାଭିଷେକ ଦିନ ଧାର୍ଯ୍ୟ ରହିଲା ।

ବଜ୍ର—ଆଚ୍ଛା, କମଳା କ ତୁମ୍ଭର ବଶତା ସ୍ୱୀକାର କରିଛି ?

ଶଙ୍ଖ—ନା, କରି ନାହିଁ । ସେଥିଲାଗିତ ଟିକେ ଅପେକ୍ଷା କରିବାକୁ କହୁଛି ବନ୍ଧୁ ।

ବଜ୍ର—ସେ ଯେପରି ତେଜସ୍ୱିନୀ, ତୁମେ ତାକୁ ସହଜେ ବଶୀଭୂତ କରିପାରିବ, ମୋର ଏକଥା ବିଶ୍ୱାସ ହେଉ ନାହିଁ ।

ଶଙ୍ଖଧର—ନିଶ୍ଚୟ ପାରିବି ବନ୍ଧୁ, ଖାଲି ତୁମ୍ଭର ସହ-ଯୋଗ ପାଇଲେ ହେଲା । ଏତେଦିନ ମଧ୍ୟରେ ତୁମ୍ଭଙ୍କୁ ମୁଁ କୌଣସି କଥା କହିପାରୁ ନ ଥିଲି । ସେପରି ସୁବିଧା ବା ସୁଯୋଗ ଘଟୁ ନ ଥିଲା । ସତ୍ୟ ଯେବେ ମୁଁ ତୁମ୍ଭଙ୍କୁ ଶତ୍ରୁ ମନେ କରିଥାନ୍ତି, ତେବେ କି ଏଣ୍ଡୁ ଗଣ୍ଡାର ସହରେ ଏକାକୀ ଅସହାୟ ଭାବେ ତୁମ୍ଭର ଶିବିର ନିକଟ ଆସିଥାନ୍ତି ?

ବଜ୍ର—ବନ୍ଧୁ ! ମୁଁ ଗୋଟାଏ କଥା ବୁଝିପାରୁ ନାହିଁ । ମୋର ସୈନ୍ୟମାନଙ୍କୁ କାହିଁକି ଏଠାରୁ ବିଦାୟ କରିଦେବି ?

ଶଙ୍ଖ—କାହିଁକି ? କାହିଁକି ?

ବଜ୍ର—ସୈନ୍ୟ ରକ୍ଷା ଓ ସେତୁ ନିର୍ମାଣପାଇଁ ବହୁ ଅର୍ଥବ୍ୟୟ ହୋଇଗଲାଣି । ଏ ପର୍ଯ୍ୟନ୍ତ ପିତା ଅଜାଣତରେ ଅର୍ଥ ସାହାଯ୍ୟ କରିଆସୁଥିଲେ; କିନ୍ତୁ ବର୍ତ୍ତମାନ ଆଉ ପାରି ଉଠି ହେଉ ନାହିଁ । ବୁଝୁଛ, କଅଣ କରିବି ।

ଶଙ୍ଖ—ତୁମ୍ଭେ ସୈନ୍ୟମାନଙ୍କୁ ବିଦାୟ କରିଦେଲେ ମୁକ୍ତାକାମ ଓ ତୁମ୍ଭର ବାବା ତୁମ୍ଭଙ୍କୁ ଅବିଶ୍ୱାସ କରିବେ ।

ବଜ୍ର—ହଁ, ତା' ତ କରିବେ, କିନ୍ତୁ ବ୍ୟୟ ନିର୍ବାହ କରିବି କିପରି ?

ଶଙ୍ଖ—ସେଥିପାଇଁ ଏତେ ଭାବନା କାହିଁକି ବନ୍ଧୁ ? ରାଜକୋଷ ତ ତୁମ୍ଭର, ଖୁବ୍ ଗୋପନ ଭାବେ ଉଠି ଲେଖି ମୋତେ ଜଣାଅ, ମୁଁ ତୁମ୍ଭଙ୍କୁ ଖୁବ୍ ଅର୍ଥ ସାହାଯ୍ୟ କରିବି ।

ବଜ୍ର—ଏଥର ସତ କହୁଛି ବନ୍ଧୁ ! ତୁମେ ମୋତେ ଯାହା କହିବ ମୁଁ ଅକ୍ଷରେ ଅକ୍ଷରେ ତାହା ହିଁ କରିବି ।

ଶଙ୍ଖ—ହଁ ରାତ୍ର ଅଧିକରୁ ବେଶି ହୋଇଗଲାଣି, ମୁଁ ଆସେ । ମଧ୍ୟେ ମଧ୍ୟେ ସାକ୍ଷାତର ବ୍ୟବସ୍ଥା କରିବାକୁ ହେବେ ନିଶ୍ଚୟ କରିବେ । ମୁଁ ଆସୁଛି···ହଁ ଆଉ ଗୋଟିଏ କଥା ତୁମ୍ଭେ ମୁକ୍ତାକାମକୁ ଖୁବ୍ ଉତ୍ତେଜିତ କରାଅ, ଯେପରି ସେ ତୁମ୍ଭର ସାହାଯ୍ୟ ନ ନେଇ ମୋତେ ଆକ୍ରମଣ କରିବାକୁ ଆସେ, ତା ହେଲେ ମୁଁ ତାକୁ ହତ୍ୟା କରିବାର ସୁବିଧାଟା ବେଶ୍ ପାଇବି । (ପ୍ରସ୍ଥାନ)

ବଜ୍ର—ଥରେ ସିଂହାସନରେ ବସି ନିଏ ଶଙ୍ଖଧର, ତୋତେ ଦେଖିନେବି । (ପ୍ରସ୍ଥାନ)

—✱—

## ତୃତୀୟ ଦୃଶ୍ୟ

(ସୁନନ୍ଦା ଫୁଲ ଗୁଚ୍ଛ ଗୁଚ୍ଛ ମଧ୍ୟେ ମଧ୍ୟେ ଶୁଙ୍ଘୁଥାଏ—ଏ ସମୟରେ ଶଙ୍ଖନାଦ ପ୍ରବେଶ । )

ଶଙ୍ଖନାଦ—କାଲି ରାତିସାରା ବୋଧହୁଏ ଶୋଇନାହଁ ସୁନନ୍ଦା ?

ସୁନନ୍ଦା—ଏ କଥା ତୁମେ କିପରି ଜାଣିଲ ରାଜକୁମାର !

ଶଙ୍ଖନାଦ—ମୁଁ କାଲି ରାତରେ ମଧ୍ୟ ଶୋଇନାହିଁ । ଅନେକ ଥର ଝରକା ଫିଟାଇ ଦେଖିଛି, ତୁମେ ମୋ ମା'ଙ୍କ ପଦପ୍ରାନ୍ତରେ ଚୁପ୍ ହୋଇ ବସିଥାଅ । ସତ କି ନା କହ ତ ?

ସୁନନ୍ଦା—(ଅଧୋବଦନରେ ରହିବା)

ଶଙ୍ଖ—କହ କହ !

ସୁନନ୍ଦା—ତୁମେ ଏପରି ଲୁଚି ଲୁଚି ଚାହଁ କାହିଁକି ? ଆଜି ମୁଁ ସବୁ ଝରକା ବନ୍ଦ କରିଦେଇ ଶୋଇବି ।

ଶଙ୍ଖନାଦ - ତୁମେ ଏତେକ୍ଷଣ ଜାଗିଥିଲ ଯେ !

ସୁନନ୍ଦା—ତା ତୁମେ କିପରି ଜାଣିଲ ?

ଶଙ୍ଖନାଦ—ଏଇ ଯେ ତୁମ ଚକ୍ଷୁରେ ଦୁଇଫୋଟା ଲୁହ ଶୁଖି ଲାଗିଛି ।

ସୁନନ୍ଦା—ମୋ ବାବା ଆଜି ଶତ୍ରୁଙ୍କୁ ରାଜାରାଣୀଙ୍କ ନିକଟ ପଠାଇ ଦେବେ, ଆଜି ଏ ମନ୍ଦିର ଶୂନ୍ୟ ହେବ । (ରୋଦନ)

ଶଙ୍ଖ—ସତ୍ୟ, ସୁନନ୍ଦା ତୁମର ବାପା କ ଆଶ୍ଚର୍ଯ୍ୟ ଲୋକ । ତାଙ୍କର କୌଣସି କଥା, କୌଣସି କାର୍ଯ୍ୟ

ବୁଝିବା ବଡ଼ କଠିନ, ତେବେ ମା ଜାଣନ୍ତି ସେ କେଉଁ ଦେବତା ।

ସୁନନ୍ଦା—ସତ୍ୟ, ରାଜକୁମାର ସେ ଯେ ଦେବତା-ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଶଙ୍ଖନାଦ—ଆମର କୁଆଡ଼େ ମୃତ୍ୟୁ ହୋଇଛି ?

ସୁନନ୍ଦା—ସେ କି କଥା !

ଶଙ୍ଖ—ସୁନନ୍ଦା, ଆଜି ଏ କଥା ପ୍ରଚାର ହୋଇଛି ଯେ ତୁମ ବାବା କୁଆଡ଼େ ମୋତେ ହତ୍ୟା କରିଛନ୍ତି । ଏ ମିଥ୍ୟା ପ୍ରଚାରର କୌଣସି ରାଜନୈତିକ ଉଦ୍ଦେଶ୍ୟ ଅଛି ।

ସୁନନ୍ଦା—ଅଚ୍ଛା, ରାଜକୁମାର, ତୁମେ ଏଠାରେ ଆଉ କେତେଦିନ ରହିବ ?

ଶଙ୍ଖନାଦ—ମା'ଙ୍କ ଠାରୁ ଶୁଣିଛି ଆସନ୍ତା ପୂର୍ଣ୍ଣିମା ପର୍ଯ୍ୟନ୍ତ ।

ସୁନନ୍ଦା—ତା'ପରେ ?

ଶଙ୍ଖନାଦ—ତା'ପରେ କେଉଁଠାକୁ ଯିବୁ କଅଣ କରିବୁ ସେ କଥା କିଛି କହିପାରୁନାହିଁ । ଆମ୍ଭେମାନେ ଗଲେ ତୁମ ମନରେ କଷ୍ଟ ହେବନାହିଁ ସୁନନ୍ଦା !

ସୁନନ୍ଦା—(ରୋଦନ)

ଶଙ୍ଖନାଦ—ଏ କଅଣ ? କାନ୍ଦିଲ କାହିଁକି ?

ସୁନନ୍ଦା—ମୋ ବାବା ଆଜି ରାଧାରାଣୀଙ୍କୁ ପଠାଇ ଦେବେ । ଯାଉଛି ତାଙ୍କୁ ଭଲକରି ସଜାଇଦେବି ।

ଶଙ୍ଖନାଦ—ତୁମେ ଓ ତୁମ ବାବାଙ୍କ ପରି···ଆଶ୍ଚର୍ଯ୍ୟ !

( ଶଲ୍ୟଧର ପ୍ରବେଶ )

ରାଜକୁମାର ! ମୁଁ ତୁମକୁ ଆଦେଶ କରୁଛି ତୁମ୍ଭେ ରାଜଅନ୍ତଃପୁର ବାହାରକୁ ଆସିବ ନାହିଁ । ତୁମର ମୃତ୍ୟୁ ରଟନାର ଉଦ୍ଦେଶ୍ୟ ଯେପରି ବ୍ୟର୍ଥ ନ ହୁଏ ।

ଶଙ୍ଖନାଦ—ଏ ନଗରକୁ କଅଣ ଆସିବ ନାହିଁ ?

ଶଲ୍ୟଧର—ନିଶ୍ଚୟ ନା, ଯାଅ ଅନ୍ତଃପୁରକୁ ଯାଅ ।

(ଶଙ୍ଖନାଦ ପ୍ରସ୍ଥାନ)

ଶଲ୍ୟଧର—ସୁନନ୍ଦା ! ତୁ ଚାଲ୍ ରାଜଲକ୍ଷ୍ମୀ କମଳା-ଦେବୀଙ୍କୁ ଡାକି ଆଣିବୁ···ନା ତୋର ଯିବାର ଆବଶ୍ୟକ ନାହିଁ ! ଏଇ ଯେ ସେ ଆସୁଛନ୍ତି ।

( କମଳା ପ୍ରବେଶ )

କମଳା—ମୁଁ ଜାଣିବାକୁ ଚାହେଁ ଶଲ୍ୟଧର ! କୁମାର ଶଙ୍ଖନାଦର ମୃତ୍ୟୁ ରଟନାର ଉଦ୍ଦେଶ୍ୟ କଅଣ ?

ଶଲ୍ୟଧର—ଆଜି ଏହି ନଗରରେ ଛଦ୍ମବେଶ ତ୍ୟାଗ କରି ମୋର ସମସ୍ତ ଉଦ୍ଦେଶ୍ୟ ଖୋଲି କହିବି । (ସୁନନ୍ଦା ପ୍ରତି) ସୁନନ୍ଦା ତୁ ଏଠାରୁ ଯା । ଶୁଣ ରାଜଲକ୍ଷ୍ମୀ, ଲୋକେ ମୋତେ ଚିହ୍ନନ୍ତି ନାହିଁ, ମୃଗାଙ୍କବାମ ପିତା ମୋତେ ରାସ୍ତାରୁ ଗୋଟାଇ ଆଣି ମନୁଷ୍ୟ କରିଥିଲେ । ଆଉ ଯୁଦ୍ଧବିଦ୍ୟା ମଧ୍ୟ ଶିଖାଇଥିଲେ । ସେହି ମହା-ପୁରୁଷଙ୍କ ମୃତ୍ୟୁପରେ ମୋର ଜୀବନର ସ୍ମରଣୀୟ ଦିନ ମୃଗାଙ୍କବାମର ରାଜ୍ୟାଭିଷେକ । ମନେ ପଡ଼େ ମୁଁ ତୁମକୁ ପ୍ରଥମେ ଦେଖିଥିଲି ସେହିଦିନ । ଦେଖିଥିଲି ତୁମର ଚକ୍ଷୁରେ ଓ ମୁଖରେ ଗୋଟାଏ ମହାନନ୍ଦମ ନାରୀତ୍ୱର ଅପୂର୍ବ ଜ୍ୟୋତି, ଯାହା କି କୌଣସିଠାରେ ଦେଖିବାକୁ ପାଇ ନାହିଁ । ସେହି-ଦିନୁ, ସେହି ଶୁଭମୁହୂର୍ତ୍ତରେ ମୋର ତରବାରି ସ୍ପର୍ଶକରି ପ୍ରତିଜ୍ଞା କରିଥିଲି—ଯେତେଦିନ ପର୍ଯ୍ୟନ୍ତ ବଞ୍ଚିଥିବି, ସେତେଦିନ ପର୍ଯ୍ୟନ୍ତ ତୁମର ଏହି ଆଲୋକମୟ ଚକ୍ଷୁ ଦୁଇଟିକୁ ଚିର ହାସ୍ୟମୟ ରଖିବି । ଯଦି ମୁଁ ହେଲେ କୌଣସି ଘଟଣା ଘଟାଇ ଦେବ ନାହିଁ, ଯାହାସ ଏ ସ୍ନିଗ୍ଧ ଚକ୍ଷୁରୁ ଏକବିନ୍ଦୁ ଅଶ୍ରୁ ଗଡ଼ିପାରେ ।

କମଳା—ତା ବୋଲି ମୋତେ କନ୍ଦାଉଛୁ ଶଲ୍ୟଧର ?

ଶଲ୍ୟଧର—ଦେବି କ୍ଷମାକର । ମୁଁ ତୁମକୁ କନ୍ଦାଇ ନାହିଁ, ତୁମକୁ କନ୍ଦାଉଛି ବଜ୍ରବାହୁ । ସେ ତୁମକୁ ଚିରଦିନ କନ୍ଦାଇବାକୁ ଇଚ୍ଛା କରିଥିଲା, ମୃଗାଙ୍କବାମକୁ ହତ୍ୟାକରି ସିଂହାସନ ଅଧିକାର କରିବାକୁ ଚେଷ୍ଟା କରିଥିଲା ।

କମଳା—ତା କି ସମ୍ଭବ ହୋଇପାରେ ଶଲ୍ୟଧର, ସେ ଯେ ମୋର ଭାଇ । ସେ ସିଂହାସନ ଚାହିଁପାରେ କିନ୍ତୁ ମୋର ବୈଧବ୍ୟ ଘଟାଇପାରେ ନା ।

ଶଲ୍ୟଧର—ମୁଁ ଜାଣେ, ତୁମ୍ଭେ ବିଶ୍ୱାସ କରିବ ନାହିଁ । ସେ କଥା ବର୍ତ୍ତମାନ ଥାଉ । ଯଦି କୌଣସି ଦିନ ପ୍ରମାଣ ଦେଇପାରେ ଯେ ବଜ୍ରବାହୁ ହିଁ ଉକ୍ତମ,

ସେଦିନ ବୁଝିବ ତୁମକୁ କିଏ କନ୍ଦାଉଛି—ବଜ୍ରବାହୁ, ନା ମୁଁ ।

କମଳା—ଆଚ୍ଛା ଶଙ୍ଖଧର, ତୁମେ ଯେ ମୋ ଉପରେ ଏତେ ଅନୁରକ୍ତ, ତା ତ ମୁଁ କିଛି ବୁଝି ପାରୁନାହିଁ ।

ଶଙ୍ଖଧର—ନାଁ ତ, ମୁଁ ବୁଝିବାକୁ ଦେଇ ନାହିଁ । ତୁମ ନିକଟରେ ମୋର କି ଅନୁରୋଧ ତା ମୁଁ ଏ ପର୍ଯ୍ୟନ୍ତ ସ୍ଥିର କରି ପାରିନାହିଁ । ବଜ୍ରବାହୁ ମୋ ଉଦ୍ଦେଶ୍ୟ ସମ୍ବନ୍ଧେ ଥରେ କହିଥିଲା—ତା ଅତି ତୁଚ୍ଛ, ତା'ଠାରୁ ଶୁଣି ମୁଁ ଭାବ ଭାବ ଚକ୍ଷୁର ଜଳରେ ଆବିଷ୍କାର କରିଛି । ମୋ ପ୍ରାଣରେ ଗୋଟାଏ ଦାରୁଣ କ୍ଷୁଧା ଅଛି—ମୁଁ ଏ ପର୍ଯ୍ୟନ୍ତ ଜନନୀର ମୁଖ ଦେଖି ନାହିଁ । ମୋର କନ୍ୟା ସୁନନ୍ଦା ଯେତେବେଳେ ତାର ମା'ର ପ୍ରସୂତ କୋଳରେ ଶୋଇ ମା ମା ବୋଲି ଡାକେ, ତେତେବେଳେ ମୋ ହୃଦୟରେ ଗୋଟାଏ ହାହାକାର ଜାଗି ଉଠିଲା—ଆରେ, ମୋର କାହିଁକି ମା ନାହିଁ ?

କମଳା—ଶଙ୍ଖଧର ! ତୁମର ପ୍ରାଣଟା ଯଦି ଏତେ କୋମଳ, ତୁମେ ମନୁଷ୍ୟମାନଙ୍କ ଉପରେ ଏତେ ଅତ୍ୟାଚାର କର କାହିଁକି ?

ଶଙ୍ଖଧର—ଜୀବନର ଶତ୍ରୁ ଅଭିଜ୍ଞତା, ଶିଖାଇଛି ମନୁଷ୍ୟକୁ ଘୃଣା କରିବା । ମୁଁ ଦେଖିଛି ପଶୁତ୍ୱ ହିଁ ସେହି ମାନବ ଚରିତ୍ରର ମୌଳିକ ଉପାଦାନ । ମନୁଷ୍ୟର ଶିକ୍ଷା ଓ ସଭ୍ୟତାକୁ ବୁଝିଛି ଗୋଟାଏ ଅବାସ୍ତବ ଭଣ୍ଡାମି ଛଡ଼ା ଅନ୍ୟ କିଛି ନୁହେଁ । ସୁଦ୍ ତୁମର ଏହି ଚକ୍ଷୁ ଦୁଇଟି ଛଡ଼ା ଜଗତରେ ଏପରି କୌଣସି ଜିନିଷ ଦେଖି ନାହିଁ ମା, ଯା ସୁନ୍ଦର, ଯା ପବିତ୍ର, ଯା ସ୍ୱର୍ଗୀୟ, ହୁଏ ତ ମୁଁ ଭୁଲ୍, ହୁଏ ତ ମୁଁ ଗୋଟାଏ ନରକ କିନ୍ତୁ ଯା ଦେଖିଛି ତା କହୁଛି ମା ।

କମଳା—ଛି ଛି ଶଙ୍ଖଧର, ଏ କି ମୋହ ତୁମର ?

ଶଙ୍ଖଧର—ହୋଇପାରେ, ଏ ମୋର ମୋହ ବା ମନର ବିକାର କିନ୍ତୁ ସତ କହୁଛି ମା, ମୁଁ ଅନେକ ସୁନ୍ଦରୀର ଚକ୍ଷୁ ମୁଖ ଲକ୍ଷ୍ୟ କରି ଦେଖିଛି ସେପରି ପ୍ରଚ୍ଛନ୍ନ କଦର୍ଯ୍ୟତାର ବାହାରର ଆବରଣ ମାତ୍ର । ଅନେକ ଧାର୍ମିକର ବକ୍ଷରେ ଆଘାତ କରି ଦେଖିଛି ସେ ସେଠାରେ ଅଧର୍ମର ମୂର୍ତ୍ତି ବିରାଜିତ, ମାତ୍ର ଗୋଟିଏ ଜିନିଷ ମୋର ଅଭିଜ୍ଞତାର ଅଗୋଚର ଥିଲା । ଯାହାକୁ ମୁଁ ଏ ପର୍ଯ୍ୟନ୍ତ ଆସ୍ୱାଦନ କରି ପାରିନାହିଁ । ସେ ହେଉଛି ମୋର 'ମା', ମୋର ଉପେକ୍ଷିତ ଜୀବନର ସହସ୍ର ବିତୃଷ୍ଣାର ମଧ୍ୟେ ଏହି ମାତ୍ର ଆକଣ୍ଠ ତୃଷା ମୋତେ ବଞ୍ଚାଇ ରଖିଛି । ମୁଁ ମୋର ମା'କୁ ଖୋଜେଁ, ମୁଁ ମୋର ମା'କୁ ଖୋଜେଁ ।

କମଳା—ମୋର ଅନୁରୋଧ ଶଙ୍ଖଧର, ତୁମେ ପ୍ରଜାମାନଙ୍କ ଉପରେ ଆଉ ଅତ୍ୟାଚାର କର ନାହିଁ ।

ଶଙ୍ଖଧର—ମୁଁ ତ ବୁଝିପାରୁ ନାହିଁ ଯେ ମନୁଷ୍ୟ ମୋତେ ଏତେ ଅତ୍ୟାଚାରୀ ବୋଲି କାହିଁକି କହନ୍ତି ? ମୋର ରାଜତ୍ୱ ସମୟରେ ମୁଁ କୌଣସି ଲୋକକୁ ପ୍ରାଣଦଣ୍ଡ ଦେଇ ନାହିଁ । ମୋ ସୈନ୍ୟମାନେ ଯୁଦ୍ଧଲାଗି ପ୍ରସ୍ତୁତ ଅଛନ୍ତି ସତ; କିନ୍ତୁ କାହା ଅଙ୍ଗରେ ଏ ପର୍ଯ୍ୟନ୍ତ ଅସ୍ତ୍ରାଘାତ କରି ନାହାନ୍ତି । ମୁଁ ପ୍ରଜାମାନଙ୍କୁ ଅଧୀନସ୍ଥ କରିବା ଲାଗି ସେମାନଙ୍କର ଘରଦ୍ୱାର ପୋଡ଼ି ଦେଇଥିଲି, ପୁଣି ମଧ୍ୟ ଖୁବ୍ ଭଲ ମଜବୁତ ଘର ତିଆରି କରି ଦେଇଛି । ଆଜି ଦିନେ ଗୋଟାଏ ପ୍ରତାରକ ବୈଷ୍ଣବକୁ ଦୁଇ ପାହାର ଚାବୁକ ମାରି ତାକୁ ଗୋଟାଏ ଭଲ ଚାକିରିରେ ଖଟାଇ ଦେଇଛି, ଏଥିରେ କି ମୁଁ ଅତ୍ୟାଚାରୀ ମା ।

କମଳା—ଶଙ୍ଖଧର, ତୁମକୁ ବୁଝିବା ବଡ଼ କଠିନ ।

ଶଙ୍ଖଧର—ସେ କଥା ସ୍ୱୀକାର କରୁଛି ରାଜଲକ୍ଷ୍ମୀ, ଲୋକ ଖୁବ୍ ଭଲ ଭାବେ ବୁଝିପାରେ ରାଜା ମନ୍ତ୍ରୀମାନଙ୍କୁ ତାଙ୍କର ସହାୟତା ଓ ସହୃଦୟତାର ସୁଯୋଗ ନେଇ ଠକାଇ ପାରେ, ଆଉ ମଧ୍ୟ ପ୍ରାଣ ନାଶର ଷଡ଼ଯନ୍ତ୍ର କରି ପାରେ । ସୁଦ୍ ସେହି କାରଣରୁ ମୁଁ ଲକ୍ଷ୍ମଣଦେବ ପାର୍ଶ୍ୱ ତାଙ୍କୁ ସିଂହାସନରୁ ତଡ଼ି ଦେଇ ସୁଦ୍ ସ୍ୱବୁଦ୍ଧି ସାହାଯ୍ୟରେ ଶାସନ କରିଛି ଏ ଦେଶଟା । ମୋର

ଉଦେଶ୍ୟ ପ୍ରନଷ୍ଟ ମୁକ୍ତକାମଙ୍କୁ ସିଂହାସନରେ ବସାଇବ । ନୂତନ କରି ତୁମର ରାଜ୍ୟାଭିଷେକ ଦେଖିବ, ଏ ରାଜ୍ୟରେ ସମ୍ପୂର୍ଣ୍ଣ ନିରୁପଦ୍ରବ ଭାବେ ରାଜତ୍ୱ କରିବେ ରାଜା ମୁକ୍ତକାମ । ମା ମୋର ପ୍ରାର୍ଥନା ପୂର୍ଣ୍ଣ କର, ଆଗାମୀ ପୂର୍ଣ୍ଣିମା ତିଥି ପର୍ଯ୍ୟନ୍ତ ତୁମ୍ଭେ ଏଠାରେ ବସିଥାଅ ।

କମଳା—କିନ୍ତୁ ଶଙ୍ଖଧର—

ଶଙ୍ଖଧର—ନା ନା, କୌଣସି କଥା ଶୁଣିବି ନାହିଁ । ଆଗାମୀ ପୂର୍ଣ୍ଣିମା ତିଥି ମଧ୍ୟରେ ମୁଁ ପ୍ରମାଣ କରିଇ ଦେଖାଇବି, ତୁମର ଏ ଦୁଃଖ ଭୋଗ ଲାଗି ଦାୟୀ କିଏ, ମୁଁ କି ରତ୍ନବାହୁ ?

କମଳା—ମୁଁ ଥରେ ମାତ୍ର ମୁକ୍ତକାମ ସଙ୍ଗରେ ସାକ୍ଷାତ କରି ଫେରି ଆସିବି ।

ଶଙ୍ଖ—ନା, ନା, ତା ହୋଇ ପାରିବ ନାହିଁ । ମୁଁ ରାଜା ମୁକ୍ତକାମଙ୍କୁ ଉତ୍ତେଜିତ କରିବି । ପରୀକ୍ଷା କରି ଦେଖିବି ତାଙ୍କର ଧର୍ମବୁଦ୍ଧି କେତେ, ଆଉ ତ୍ୟାଗ ବୁଦ୍ଧି କେତେ । ଲୋକେ କହନ୍ତି, ମୁକ୍ତକାମ ଜଣେ ଦେବତା । ଆଉ ମୁଁ ଗୋଟାଏ ପାଷଣ୍ଡ ପଶୁ । ତେଣୁ ମୁଁ ତାଙ୍କୁ ଗୋଟାଏ ଶ୍ରେଷ୍ଠ ଆଘାତ କରି ଦେଖିବି ସେ ଦେବତାର ବକ୍ଷରେ ମୋ ପରି ପଶୁର ଅସ୍ତ୍ର କି ନା । ଦେବୀ ! ତୁମେ ଜାଣ, ମୋ ସ୍ତ୍ରୀ ବିଷ ଖାଇ ମରିଥିଲା ?

କମଳା—ଜାଣିନି, କାହିଁକି ?

ଶଙ୍ଖଧର—ମୁଁ ଅଜ୍ଞାତ କୁଳଶୀଳ, ସେ ଥିଲା ବ୍ରାହ୍ମଣ କନ୍ୟା । ସମାଜର ଲାଞ୍ଛନା ସହ୍ୟ କରିପାରିଲା ନାହିଁ । ଠିକ୍ ସେହି କାରଣରୁ ମୁଁ ମନୁଷ୍ୟଙ୍କୁ ଘୃଣା ନ କରି ରହିପାରେ ନା । ମନୁଷ୍ୟ ଜାଣେ ମୁଁ ଗୋଟାଏ ଘୃଣିତ ପଶୁ । ମୁଁ ସେହି କାରଣରୁ ତୁମକୁ ଗୋଟାଏ ସପ୍ତାହ ଲାଗି ବନ୍ଦୀ କରି ତୁଳନା କରି ଦେଖାଇବି ମୁକ୍ତକାମର ଦେବତ୍ୱ କେତେ ବଡ଼ ଓ ମନୁଷ୍ୟର ତ୍ୟାଗ ବୁଦ୍ଧି ସୀମା ରେଖା କେଉଁ ପର୍ଯ୍ୟନ୍ତ ।

କମଳା—ସାତଦିନ ତୋ ନିକଟରେ ବନ୍ଦୀ ରହିଲେ—

ଶଙ୍ଖଧର—ଲୋକେ ତୁମର ଚରିତ୍ର ସମ୍ବନ୍ଧରେ ନାନାକଥା କହିବେ, ମୁଁ ଜାଣେ । କିନ୍ତୁ ତୁମେ ତ ଜାଣ ତୁମ୍ଭେ ମୋର ମା ଆଉ ମୁଁ ତୁମର ସନ୍ତାନ । ମନୁଷ୍ୟର ବିଷାକ୍ତ ଜିହ୍ୱା ମୁକ୍ତକାମଙ୍କୁ ଦଂଶନ କରିବ । ସେ ବିଷର ପ୍ରଭାବରେ ଯେତେବେଳେ ସେ ଦେବତା ଛଟପଟ ହେବେ, ସେତେବେଳେ ଏ ପଶୁର ମନରେ କି ଆନନ୍ଦ । ମା ! ସନ୍ତାନକୁ ସେ ଆନନ୍ଦରୁ ବଞ୍ଚିତ କର ନା, ମା ।

ଉଗ୍ରସେନ—( ପ୍ରବେଶି ) ଭଗବତ ପରି ରାଜା ରତ୍ନେଶ୍ୱର ଦ୍ୱାର ଦେଶରେ ଛିଡ଼ା ହୋଇ ତାଙ୍କର କନ୍ୟାର ସାକ୍ଷାତ ଚାହୁଁଛନ୍ତି ।

କମଳା—ବାବା ଆସିଛନ୍ତି ?

ଉଗ୍ରସେନ—ହଁ ।

ଶଙ୍ଖଧର—ଉଗ୍ରସେନ, ଟିକେ ବାହାରକୁ ଯାଅ, ମୁଁ ଏ ସମ୍ବନ୍ଧେ କର୍ତ୍ତବ୍ୟ ନିର୍ଦ୍ଧାରଣ କରି ତୁମକୁ ଡାକିବି ( ଉଗ୍ରସେନ ପ୍ରସ୍ଥାନ ) । ଦେବୀ, ତୁମ୍ଭେ ତୁମର ପିତାଙ୍କ ସାକ୍ଷାତ ଚାହଁ ? ତା କରି ପାରିବ କିନ୍ତୁ ମୋତେ ଗୋଟାଏ ପ୍ରତିଶ୍ରୁତି ଦେବାକୁ ହେବ । ମୋର କାର୍ଯ୍ୟ ଓ ଉଦେଶ୍ୟ ସମ୍ବନ୍ଧେ ଯେପରି କୌଣସି କଥା ତାଙ୍କ ନିକଟରେ ପ୍ରକାଶ କରିବ ନାହିଁ । କୁହ, ସାକ୍ଷାତ କରିବାକୁ ଚାହଁ ?

କମଳା—ହଁ, ପ୍ରତିଶ୍ରୁତି ଦେଉଛି । ତୁମ୍ଭେ ଥରେ ମାତ୍ର ବାବାଙ୍କୁ ଏଠାକୁ ଡାକି ଆଣ ।

ଶଙ୍ଖଧର—ଉଗ୍ରସେନ ! ଯାଅ ରାଜା ରତ୍ନେଶ୍ୱରଙ୍କୁ ଖୁବ୍ ଦୃଢ଼ ଭାବେ ଶୃଙ୍ଖଳିତ କରି ଏଠାକୁ ନେଇ ଆସ ।

କମଳା—ଶୃଙ୍ଖଳିତ କରି !

ଶଙ୍ଖଧର—ହଁ ହଁ ଶୃଙ୍ଖଳିତ କରି । ନଚେତ୍ ମୋତେ ଆକ୍ରମଣ କରି ପାରନ୍ତି । ତୁମର ଗଳା ଚିପି ମାରି ପାରନ୍ତି । ଯା ଉଗ୍ରସେନ । ଯେପରି କହିଲି ସେପରି କର ।

( ଉଗ୍ରସେନ ପ୍ରସ୍ଥାନ )

କମଳା—ଶକ୍ତିଧର, ତୁମ୍ଭେ ରଜା ମୃତ୍ତିକାମାନଙ୍କୁ ପରୀକ୍ଷା
କରୁଛ ନା ମୋତେ ଭୀଷଣ ପରୀକ୍ଷାରେ ପକାଉଛ ।
ବାବା ଯେବେ ମୋତେ—

ଶକ୍ତି—ମା, ମୁଁ ମୋର ସ୍ୱୀୟ ମୃତ୍ୟୁଶଯ୍ୟାରେ ଗୋଟିଏ
ଚମତ୍କାର ଦୃଶ୍ୟ ଦେଖିଥିଲି, ସେ ତାର କନ୍ୟା
ସୁନନ୍ଦାକୁ ବକ୍ଷରେ ଚାପି ମରିଥିଲା; କିନ୍ତୁ ମୋତେ
ଥରେ ମାତ୍ର ତା ନିକଟକୁ ଡାକି ନ ଥିଲା କିମ୍ବା
କିଛି ପଦେ କହି ନ ଥିଲା । ମା ନିକଟରେ ସନ୍ତାନ
ସେ କେତେ ପ୍ରିୟ, ତା ମୁଁ ବୁଝି ନାହିଁ । ଆଜି
ବୁଝିବି ମା, ଆଜି ବୁଝିବି ।

ରତ୍ନେଶ୍ୱର—( ପ୍ରବେଶି ସମ୍ବୋଧେ ) କମଳା !

କମଳା—ବାବା !

ରତ୍ନେଶ୍ୱର—ଏହି ନର ପିଶାଚ କୁମାର ଶଙ୍ଖନାଦକୁ
ହତ୍ୟା କରିଛି ।

କମଳା—( ଅଧୋବଦନେ ଦଣ୍ଡାୟମାନ )

ରତ୍ନେଶ୍ୱର—ଆଜି ଯାହା କି ଶୁଣୁଛି ତାହା ସତ୍ୟ ?

କମଳା—କି କଥା ବାବା !

ରତ୍ନେଶ୍ୱର—ତୁ କୁକ୍କୁର ନିକଟରେ ଆତ୍ମସମର୍ପଣ
କରିଛୁ । ପାପିଷ୍ଠୀ ! ମଲୁ ନାହିଁ, ଜୟସେନ ମୋ
ହାତ ଦୁଇଟା ବାନ୍ଧି ପକାଇଛି ନଚେତ୍ ମୁଁ
ତୋତେ···( ମାରିବାକୁ ଉଦ୍ୟତ ହେବାରୁ
ଶକ୍ତିଧର ବାଧା ଦେଲା ) ।

କମଳା—ଶକ୍ତିଧର ! ମୁଁ ସେ ସହ୍ୟ କରି ପାରୁ ନାହିଁ ।

ଶକ୍ତିଧର—(ଜୟସେନଙ୍କୁ) ରତ୍ନେଶ୍ୱରଙ୍କୁ ନେଇ ପାଟକ
ବାହାରେ ଶୃଙ୍ଖଳା ଖୋଲି ଦେଇ ବିଦାୟ କରିଦିଅ ।

( ଜୟସେନ ତାହାହିଁ କଲେ )

କମଳା—(କାନ୍ଦି) ଶକ୍ତିଧର ଏ କି ଭୀଷଣ ପରୀକ୍ଷା
ତୋର ?

ଶକ୍ତିଧର—ମା, ପ୍ରୟୋଜନ ହେଲେ ନିଜର ହାତରେ
ନିଜର ମୁଣ୍ଡ କାଟି ଏ ଅପରାଧର ପ୍ରାୟଶ୍ଚିତ୍ତ କରିବି
ମା ( ନତ ଜାନୁରେ ବସି ପଡ଼ିଲେ ) ।

—✱—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

( ଧୂମକେତୁ ଗଞ୍ଜା ଚିଲିମ ଧରି ମହାଦେବ
ସାଜି ଧ୍ୟାନରେ ବସିଲା ଭଳି ବସିଥାଏ
ଉଲ୍କା ପ୍ରବେଶି )

ଉଲ୍କା—ଖଣ୍ଡିଆ ! ମରଣ ନାହିଁ ? କେତେବେଳେ
କୃଷ୍ଣ ଠାକୁର, କେତେବେଳେ ମହାଦେବ ସାଜି
ବସିଛୁ ? ତୋର ମତଲବ କଅଣ ଖରାପ ହୋଇ
ଗଲାଣି କି ? ଯା ଯା ଘରକୁ ଫେରିଯା ।

ଧୂମ—ଚୁପ୍ ଚୁପ୍, ମୋର ଧ୍ୟାନ ଭଗ୍ନ କରନା ।
ଏକାବେଳକେ ମଦନ ଭସ୍ମ କରିଦେବି !

ଉଲ୍କା—ଜାଣିଛୁ ଏଟା ରାଜବାଟୀ ।
ଏଠାକୁ ରଜା ଶକ୍ତିଧର ଆସିପାରେ ।

ଧୂମ—ଆସୁନା ।

ଗୀତ

ଅଧୋ ନମିଳିତ ଆଖି ପ୍ରଭୁ ପଞ୍ଚାନନ
କରେ ସୁଖେ ପଞ୍ଚମୁଖେ ଗଞ୍ଜିକା ସେବନ
ସେ ପାଞ୍ଚ ପଦର ଆଜି ଯେତେ ଭକ୍ତ ଜବା
ମଦନ ପୋଡ଼ିଲେ ରତି ହୋଇବ ବିଧବା ।

ଉଲ୍କା—ରତିର ଗତି କି ହେବ ଗୋ,
ଆହେ ପଶୁପତି ରତିର କି ଗତି ହେବ ଗୋ ।
ସୁନାଟା ମୋର ଯା ଯା ଘରକୁ ଫେରିଯା, କାହିଁକି
ପାଗଳାମି କରୁଛୁ ? ମୁଁ ରାଣୀ ହେଲେ ତୋତେ
ଦରୱାନଗିରିଟା ଦେବି । ତୁ ସେଇଠି ବସି ମୋ
ମୁହଁକୁ ବଲବଲ କରି ଚାହିଁ ବସିଥିବୁ । ମୁଁ
ତୋତେ ପହରୱାଲା ସକାଳ ରଖିପାରେ କିନ୍ତୁ
ସ୍ୱାମୀ ବୋଲି ସ୍ୱୀକାର କରିପାରିବି ନାହିଁ ।

ଧୂମ—ବୁଝୁଛି, ତୋର ମତଲବଟା ଖରାପ ହୋଇଗଲାଣି ।

ଉଲ୍କା—ତୁହି ମୋର ମତଲବଟା ଖରାପ କରିଦେଲୁ ।

ଗୀତ

ଧୂମ—ତା ଥେଇ ଥେଇ ନାଚିବି ମୁଁ ସାଜି ଦିଗମ୍ବର
ଉଲ୍କା—ମର ମର ରେ ପୋଡ଼ାମୁହାଁ
ଭଲହେବ ନାହିଁ ତୋ ଘର ।

ଧୂମ—ମଦ ଗଞ୍ଜେଇ ଅଫିମ ଖାଇବ,
ଖାଇବ ବଟା ଭଙ୍ଗ
ଉଲ୍କା—ପର୍ବତ ମୁଣ୍ଡାରେ ଜାଣିଥା
ଖଣ୍ଡିଆ କାଢ଼ିଦେବି ସବୁ ରଙ୍ଗ ।
ଧୂମ—ମାନ କରନା ଭୁବି ଯେ
ମୋର ଜଳର ଭଗବତୀ
ଉଲ୍କା—ତା ହେଲେ ମୋର ଚରଣ—
ତଳେ ହେଉ ତୋର ଗତି ।

ଉଲ୍କା—ଏଇ ଦେଖ, ରଜା ଆସୁଛି । ଶୀଘ୍ର ତୁ ଏଠାରୁ ପଳା । ନୋହିଲେ ତୋ କପାଳରେ ଭଲ ନାହିଁ ।

ଧୂମ—ଆଚ୍ଛା, ମୁଁ ଟିକେ ଏ ଆଡ଼ଆଳକୁ ଯାଉଛି । ଶୁଣିଲୁ, ତୁ ରଜାକୁ ଜଅଣ କରିବୁ, ଆଉ ରଜା ତୋତେ ଜଅଣ କରିବ । ଆଉ ଯଦି କିଛି ବେଆଡ଼ା କାମ ଦେଖେଁ ଏ ଶିବ ତ୍ରିନୟନରୁ ଅଗ୍ନି ଜଳି ଉଠିବ । ଏକାବେଳକେ ମଦନ ଭସ୍ମ କରିଦେବ (ପ୍ରସ୍ଥାନ) ।

ଉଲ୍କା—(ଶକ୍ତଧରଙ୍କୁ ଦୂରରୁ ଦେଖି) ଆହା ରଜାର କି ରୂପ ! ଏ ରୂପକୁ କି ଯୋଡ଼ାମୂର୍ତ୍ତି ନାଗିମ ସାଜେ ?

ଗୀତ

ଏକ ଅପରୂପ ରୂପ    ଦେଖିଲି ଏ ନୟନ
କେଉଁ ସୁଯୋଗେ    କେଡ଼େ ସୌଭାଗ୍ୟେ
ପାଇଥିଲି ମୋ ଜନ୍ମ କି ଯୋଗେ
ଯାହାକୁ ମନେ ହୃଦ ଆସନେ
ବସାଇବାରେ ଥିଲି ଲଜ୍ଜିତ ।
ସତେ ସ୍ୱପ୍ନ ମେଣ୍ଟିବ ଆଶା
ପାଇବ ଆଜି ପ୍ରେମ ବରଷା
ଚକୋର ସ୍ୱପ୍ନ ଲଭିବ ଆଜ
ରକ୍ଷୁଣୀ ପାଇଲା କି ରତନ ।

( ଶକ୍ତଧରଙ୍କୁ ପ୍ରଣାମ କଲା )

ଶକ୍ତଧର—କିଏ ତୁମେ ?

ଉଲ୍କା—ମୁଁ ଜଣେ ପଥହରା ଅବଳା ।

ଶକ୍ତ—ତୁମର ଏଠାରେ କି କାର୍ଯ୍ୟ ?

ଉଲ୍କା—ଏ ସଂସାରେ ମୋର ଆପଣାର ବୋଲିବେ କେହି ନାହିଁ । ସେଥିପାଇଁ ରଜା ଶକ୍ତଧରଙ୍କ ନିକଟ ଆଶ୍ରୟ ଭିକ୍ଷା କରିବାକୁ ଆସିଛି । ଆପଣ କି ରଜା ଶକ୍ତଧର ?

ଧୂମ—(ନେପଥ୍ୟେ) ଦଫା ସରିଲା ରେ ବାବା ।

ଶକ୍ତଧର—ତୁମେ ରଜା ଶକ୍ତଧରକୁ ଚିହ୍ନ ? ତାଙ୍କୁ କେବେ ଦେଖିଛ ?

ଉଲ୍କା—ଦେଖି ନାହିଁ, ତେବେ ଶୁଣିଛି ସେ ଅତି ସଦାଶୟ—ଆଶ୍ରିତ ପ୍ରତିପାଳକ ।

ଶକ୍ତ—ଏତେ ବଡ଼ ମିଥ୍ୟା କଥା କେଉଁଠାରୁ ଶୁଣିଲ ସୁନ୍ଦରୀ ? ମୁଁ ତ ଶୁଣିଛି ସେ ବଡ଼ ଭୟାନକ ଅଧାର୍ମିକ ନାସ୍ତିକ ବ୍ୟଭିଚାରୀ ।

ଉଲ୍କା—ତେବେ ଆପଣ କି ରଜା ଶକ୍ତଧର ନୁହନ୍ତି ?

ଶକ୍ତ—ତୁମେ କଅଣ ଅନୁମାନ କର ?

ଉଲ୍କା—ମୋର ମନେ ହୁଏ ଆପଣ ।

ଶକ୍ତ—କାରଣ ?

ଉଲ୍କା—ଆପଣ ଅତି ସୁପୁରୁଷ ।

ଶକ୍ତ—ସତେ ? କିନ୍ତୁ ସୁପୁରୁଷ ଶକ୍ତଧର ନିକଟରେ ତୁମପରି ସୁନ୍ଦରୀ ସ୍ତ୍ରୀ ଆତ୍ମ ସମର୍ପଣ କରିବା ନିତାନ୍ତ ନିରାପଦ ନୁହେଁ । ତୁମେ କି ଶୁଣି ନାହଁ ଶକ୍ତଧର ଭୟାନକ ଅଧାର୍ମିକ, ପରସ୍ତ୍ରୀଅପହାରୀ ଦସ୍ୟୁ ।

ଉଲ୍କା—ମୁଁ ଆପଣଙ୍କ ରୂପ ଦେଖି ମୁଗ୍ଧ ହୋଇଛି । ମୋତେ ଆପଣଙ୍କ ପଦତଳେ ଆଶ୍ରୟ ଦିଅନ୍ତୁ ।

ଶକ୍ତ—ହାଃ ହାଃ ହାଃ ସୁନ୍ଦରୀ, ଏ ଦୁନିଆ ଗୋଟାଏ ଚିଡ଼ିଆଖାନା । ନାଗିନୀ କୁସ୍ତିତା, ସେ ମୋତେ ଅପସନ୍ଦ କରେ । ଆଉ ତୁମେ ସୁନ୍ଦରୀ ମୋତେ ପ୍ରତ୍ୟାଶା କରୁଛ । ବେଶ୍ ବେଶ୍, ମୁଁ ତୁମକୁ ଆଶ୍ରୟ ଦେବି, ବିବାହ କରିବି, ରାଣୀକରି ସିଂହାସନରେ ବସାଇବି । ତା ହେଲେ ତୁମେ ସୁଖୀ ହେବ ତ ?

ଧୂମ—( ନେପଥ୍ୟେ ) ସର୍ବନାଶ ! ଆଉ ରକ୍ଷା କରିବାର ଅବକାଶ ନାହିଁ । ବୁଢ଼ୋବାପ ଯେ ଏକାବେଳକେ ଫିକ୍କା ହୋଇଗଲେ ।

ଶକ୍ତି—ଅଚ୍ଛା ସୁନ୍ଦରୀ, ତୁମେ ତ ଖୁବ୍ ନାଚ ଗାଇ ଜାଣ । ଗୋଟିଏ ଗୀତ ଗାଅ ତ ଶୁଣିବା ।

ଉଲ୍‌କା—                (ଗୀତ)

ତବ ଚରଣତଳେ          ଆଶ୍ରୟ ମୋର
କର ହେ ଦେନା          ମୁଁ ଅଟେ ଯାନା,
ଧିକ ଜୀବନ          ଧିକ ଯୌବନ
ବିରହାନଳେ          ମରେ ଆକୁଳେ

ବନ୍ଧୁ ! ଲଗାଅ କୂଳେ,

ହେ ପ୍ରିୟ ମୋର          ଜୀବନ-ଶ୍ରେଷ୍ଠ
ପ୍ରେମର ସ୍ରୋତେ          ଆସିଛି ବହେ

ବନ୍ଧୁ ଲଗାଅ କୂଳେ ।

( ଏସମୟେ ଧୂମକେତୁ ନାଚି ନାଚି ଭିତରୁ ଆସିଲା )

ନାଦେରେ ଦେରେ ଦେରେ ତୁମ୍ ଦେରେ
ଦେରେ ଦେରେ ତାଥୁମ୍ ତାଥୁମ୍ ତା ନା ନା ।

( ୨-୩ ଥର ଭିତ୍ର ଭିତ୍ର ନାଚିଲା )

ଶଲ୍ୟଧର—କହୋ, ତୁମେ ପୁଣି କିଏ ?

ଧୂମ—ହାୟ, ବାବା, ରବଣ ରଜା ମୋ ସୀତାଟିକୁ ହରଣ କରି ନାହିଁ; ତା ପଦରେ ମୋର ଯଥାସର୍ବସ୍ୱ ଯାଇଛି । ମୁଁ ଆଜ ପଥର ଫଙ୍ଗାର ହୋଇ ବୁଲୁଛି । ତୁମ୍ଭେ ଯଦି ତାକୁ ଗ୍ରହଣ କର, ତେବେ ତୁମ୍ଭର ରାଜ୍ୟ ଯିବ, ଐଶ୍ୱର୍ଯ୍ୟ ଯିବ । ଅବଶେଷରେ ମୋ ପରି ଫଙ୍ଗାର ହୋଇ ଭେଁ ଭେଁ ହୋଇ ବୁଲିବ ।

ଶଲ୍ୟଧର—ତା ହେଲେ ଏ କି ରହସ୍ୟ ! ସୁନ୍ଦରୀ, ତୁମ୍ଭେ କି ବିବାହିତା ?

ଉଲ୍‌କା—ଆଜ୍ଞା, ସେହି କାରଣରୁ ତ ଆପଣଙ୍କ ନିକଟକୁ ଆସିଛି, ଆପଣ ରଜା । ଆପଣ ବିଚାର କରି ଦେଖନ୍ତୁ, ଏଟା ବିବାହ ନୁହେଁ ଗୋଟାଏ ଅତ୍ୟାଚାର । ଏପରି କଦାକାର କୁତ୍ସିତ ପୁରୁଷ କି ମୋର ସ୍ୱାମୀ ହେବାର ଯୋଗ୍ୟ ? ସ୍ୱାମୀ ହେଲେ ମଧ୍ୟ ମୁଁ ତାକୁ ସ୍ୱାମୀ ବୋଲି ସ୍ୱୀକାର କରିବି ନାହିଁ ।

ଶଲ୍ୟଧର—ତା ତ ସତ, ତୁମେ କିଏ ହୋ ବାବୁ ?

ଧୂମ—ମୁଁ ଶ୍ରୀମତୀ ଉଲ୍‌କା ସୁନ୍ଦରୀର ସାକ୍ଷାତ୍ ସ୍ୱାମୀ ଶ୍ରୀମାନ୍ ଧୂମକେତୁ । ଉପସ୍ଥିତ କ୍ଷେତ୍ରରେ ମୁଁ ମହାଦେବ ସାଜିଛି ।

ଶଲ୍ୟଧର—କାହିଁକି ?

ଧୂମ—କଅଣ ଆଉ କହିବି କୁହନ୍ତୁ, ମୋର ଯଥାସର୍ବସ୍ୱ ଦେଇ ମୁଁ ଉଲ୍‌କା ସୁନ୍ଦରୀର ମନ ତୃପ୍ତି କରି ପାରିଲି ନାହିଁ । ମୋର ଏହି କଳା ଆଲକାତରା ରଙ୍ଗ ଦେହ ହେଉଛି ଏହାର ଅସହ୍ୟ । ସେଥିପାଇଁ କେତେବେଳେ କୃଷ୍ଣ ଠାକୁର, କେତେବେଳେ ମହାଦେବ ସାଜି ଦେଖୁଛି ଯଦି ଏହାର ମନଟା ମନାଇପାରେ, ତେବେ ଜଗତରେ ମୁଁ ପରମ ସୁଖୀ, ଏ କଥାଟା ବେଶ୍ ପ୍ରମାଣ କରିପାରିବି ।

ଶଲ୍ୟଧର—କିନ୍ତୁ ଶୁଣ ଧୂମକେତୁ, ତୁମ୍ଭର ଅପରାଧ ଅତି ଗୁରୁତର । ତୁମ୍ଭେ ନିତାନ୍ତ କୁତ୍ସିତ, ଏକଥା ଜାଣି ମଧ୍ୟ ଅପୂର୍ବ ସୁନ୍ଦରୀଟିକୁ ଗ୍ରହଣ କରିଛ । ତୁମ୍ଭେ ସ୍ୱାର୍ଥପର ଓ ଅରସିକ, ତେଣୁ ମୁଁ ତୁମ୍ଭକୁ କଠିନ ଶାସ୍ତି ଦେବି ।

ଧୂମ—ଯେ ଆଜ୍ଞା ! ମୋତେ ପ୍ରାଣଦଣ୍ଡ ଦିଅନ୍ତୁ । ଆପଣ ହେଉଛନ୍ତି ରଜା, ମୁଁ ହେଉଛି ଜଣେ ପଥର ଫଙ୍ଗାର, ଆପଣ ଯେତେବେଳେ ମୋ ସ୍ତ୍ରୀଟିକୁ ନିତାନ୍ତ ପସନ୍ଦ କରି ପକାଇଲେଣି, ସେତେବେଳେ ଆଉ ମୋର ଉପାୟ କଣ ? ଆପଣଙ୍କ ବିଚାରରେ ମୋର ଅଦୃଷ୍ଟକୁ ଯାହା ଘଟିବ, ତା ମୁଁ ବୁଝିପାରୁଛି ।

ଶଲ୍ୟ—ଅଚ୍ଛା, ତୁମ୍ଭେ ତୁମ୍ଭର ସ୍ତ୍ରୀକୁ ଖୁବ ଭଲ ପାଅ, ନା ?

ଧୂମ—ଆଜ୍ଞା, ମୁଁ କୁତ୍ସିତ କି ନା, ସେଥିଲାଗି ମୋ ସ୍ତ୍ରୀଟିକୁ ମୋ ପ୍ରାଣ ଅପେକ୍ଷା ଅଧିକ ଭଲ ପାଏ । ଆପଣ ସ୍ତ୍ରୀକୁ ଆପଣଙ୍କ ନିକଟରେ ରଖନ୍ତୁ, ସ୍ତ୍ରୀର ସୌନ୍ଦର୍ଯ୍ୟଦର୍ପଟା ଚୂର୍ଣ୍ଣ ହେଉ ଆଉ ବୁଝୁ, କୁତ୍ସିତ ଅଛି ବୋଲି ସୁନ୍ଦରୀର ଏତେ ଗୌରବ ।

ଶଲ୍ୟ—ବାଃ ବାଃ ତୁମ୍ଭେ ତ ବେଶ୍ ତତ୍ତ୍ୱଜ୍ଞାନ ଲାଭ କରିଛ ଦେଖୁଛି ।

ଧୂମ—ଆଜ୍ଞା, ଦୟାମୟ ନିତାନ୍ତ ମୂର୍ଖ କି ନା, ସେ ଯାହା ମାଠାରୁ ବୁଦ୍ଧି ଶିଖନ୍ତି । ଆପଣ ତ ପଣ୍ଡିତ, ଆପଣ କଅଣ ଦେଖି ଶିଖିବେ ? ଆପଣ ଯେ ନାରିମାନଙ୍କୁ ଜାତିକ ବଜାଡ଼ କରିବାକୁ ବସିଥିଲେ, ସେ କଥା

ଅନ୍ୟ ଜଣେ ଜାଣୁ ନ ଜାଣୁ ମୁଁ ବେଶ୍ କରି ଜାଣି ନେଇଛି ।

ଶଲ୍ୟ—ଆଚ୍ଛା, କଅଣ କହ ତ ?

ଧୂମ—ଆପଣ ନେହାତ୍ତ ରାଜ, ଆଉ ସୁନ୍ଦର ସୁପୁରୁଷ । ନାଗିଆ ଆପଣଙ୍କ ନିକଟରେ ନିତାନ୍ତ ଅଯୋଗ୍ୟ । ଆଜକୁ ପ୍ରାୟ ଏକ ବର୍ଷ ହେଲା ମୁଁ ଉଲ୍କା ସୁନ୍ଦରୀକୁ ବିବାହ କଲଣି, କହିବାକୁ ଦୁଃଖ ହୁଏ । ହୁଦ୍ଧେ, କେବଳ ତାର ପଞ୍ଜେ ପଞ୍ଜେ ଗୋଡ଼ାଇଛି, ଏପର୍ଯ୍ୟନ୍ତ ତାର ସୁନ୍ଦର ମୁଖଖଣ୍ଡିକ ଦେଖିପାରି ନାହିଁ । ସେ ମୋତେ ଦେଖିଲେ ମୁହଁ ବୁଲାଇ ପଛ କରି ଛିଡ଼ା ହୁଏ, କଅଣ ଆଉ କରିବ କୁହନ୍ତୁ ?

ଶଲ୍ୟ—ବାଃ ବାଃ, ତୁମ୍ଭେ ତ ସୁଦ୍ ତତ୍ତ୍ୱଜ୍ଞାନୀ ନୁହଁ; ବେଶ୍ ସୁରସିକ ! ଅଚ୍ଛା, ତା ହେଲେ ମୁଁ ତୁମ୍ଭ ସ୍ତ୍ରୀ ମୁହଁରେ ଗୁଡ଼ାଏ ଅଲକାତରା ବୋଳିଦେଉଛି, ସେ ନିଶ୍ଚେ ତୁମ୍ଭ ମୁହଁକୁ ଚାହିଁବ ।

ଧୂମ—ରକ୍ଷା କରନ୍ତୁ, ଆଉ ମୋର ପ୍ରୟୋଜନ ନାହିଁ, ମୋର ମୋହ କଟିଯାଇଛି, ମୁଁ ସୁନ୍ଦର ବା ସୁନ୍ଦରୀର ଚରଣରେ ସାଷ୍ଟାଙ୍ଗେ ପ୍ରଣିପାତ କରୁଛି ।
(ପ୍ରଣାମ କରିବା)

ଶଲ୍ୟ—ତା ହେଲେ ତୁମ ସ୍ତ୍ରୀଟିକୁ ମୁଁ ଗ୍ରହଣ କରୁଛି ।

ଧୂମ—ଦୟା କରି ତାହା ହିଁ କରନ୍ତୁ । ନାଗିଆ ଝୁବ୍ ପିଆଣିଆ ଅବସ୍ଥା ବୁଝି ଉପଯୋଗ ଚନ୍ଦ୍ରା କରି ଆପଣଙ୍କ ଗଳାରେ ମାଳା ଦେବାକୁ ରାଜି ହେବ ନାହିଁ । ଆପଣଙ୍କର ତ ଗୋଟାଏ ଘଷି ଦରକାର, ତେବେ ତାକୁ ହିଁ ଗ୍ରହଣ କରନ୍ତୁ ।

ଶଲ୍ୟ—ପରର ବିବାହିତ ସ୍ତ୍ରୀକୁ ମୁଁ କପରି ରାଜି କରି ବିବାହ କରିବି ?

ଧୂମ—ଆପଣ କର୍ତ୍ତିବାବେ ତା କରିପାରିବେ । ମୁଁ ନାରାୟଣ ଶିଳା ହାତରେ ଧରି ମୋର ସମସ୍ତ ଦାବି ସ୍ୱୀକାର ପରିତ୍ୟାଗ କରିବି ।

ଶଲ୍ୟ—ସୁନ୍ଦରୀ, ତୁମ୍ଭର ମତ କଅଣ ? ସତ୍ୟ କି ତୁମ୍ଭେ ରାଣୀ ହେବା ଲାଗି ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଛ, ଆଉ ମୋର ରୂପଯୌବନ ଦେଖି ବିବାହ କରିବା ଲାଗି ଇଚ୍ଛୁକ ? କହ, ଲଜ୍ଜା କର ନା ।

ଉଲ୍କା—ଆଜ୍ଞା, କହୁଛି ତ, ସ୍ତ୍ରୀ ସଙ୍ଗେ ସ୍ୱାମୀ-ସ୍ତ୍ରୀଙ୍କର ସଂସାର-ଧର୍ମରକ୍ଷାକରିବା ମୋ ପକ୍ଷେ ନିତାନ୍ତ ଅସମ୍ଭବ । ଆପଣ ମୋତେ ···

ଶଲ୍ୟ—ଗ୍ରହଣ କରନ୍ତୁ, ଏଇଆ ତ କହିବାକୁ ଚାହଁ ? କିଏ ଅଛ, ଗୋଟିଏ ଗାଈଷ୍ଣ ଛୁରିକା ନେଇ ଆସ ତ ।

ଉଲ୍କା—ଯା ଯା ଖଣ୍ଡିଆ, ମରି ଯା ।

ଧୂମ—ଗାଈଷ୍ଣ ଛୁରିକା କଅଣ ହେବ ରାଜା ?

ଶଲ୍ୟ—ହଁ, ବିବାହର ଶୁଭ ଅଧିବାସ ହେବ, ତୁମ୍ଭର ଏ ସ୍ତ୍ରୀର ଚକ୍ଷୁଦ୍ୱୟଟି ନଷ୍ଟ କରିଦଆଯିବ ।

ଧୂମ—ସେ କଥା କାହିଁକି ?

ଶଲ୍ୟ—ବୁଝି ଦେଖ, ସେ ବିବାହିତା ନାରୀ ମୋ ରୂପ-ଯୌବନ ଦେଖି ମୁଗ୍ଧ ହୋଇଛି, ତାକୁ ମୁଁ ଯେତେବେଳେ ପତ୍ନୀରୂପେ ଗ୍ରହଣ କରିବ, ତାର ଚକ୍ଷୁଦ୍ୱୟଟି ନଷ୍ଟ ନ କରି ବିବାହ କରିବ କପରି ? ଏ ଜଗତରେ ମୁଁ ଯେ କେବଳ ପରମ ସୁନ୍ଦର ନୁହେଁ, ମୋଠାରୁ ଆହୁରି ସୁନ୍ଦର ଓ ସୁପୁରୁଷ ମଧ୍ୟ ଅଛନ୍ତି । କାଲି ଯଦି ଏ ଅନ୍ୟ କାହାର ରୂପ ଦେଖି ମୁଗ୍ଧ ହୁଏ, ତେବେ ମୋର ଉପାୟ ? ଅତଏବ ମୁଁ ସ୍ତ୍ରୀକୁ ଗ୍ରହଣ କରିପାରେ; କିନ୍ତୁ ସ୍ତ୍ରୀର ଚକ୍ଷୁଦ୍ୱୟଟିକୁ ଗ୍ରହଣ କରିପାରେ ନା; କାରଣ, ଏ ଅତ୍ୟନ୍ତ ଅବିଶ୍ୱାସୀ ।

ଉଲ୍କା—(ପଦତଳେ ପଡ଼ି) ହାୟ ରାଜା, ମୁଁ ତୁମ୍ଭର ପଦତଳେ ପଡ଼ୁଛି, ମୋତେ କ୍ଷମା କର, ମୁଁ ରାଣୀ ହେବାକୁ ଚାହେଁ ନା, ମୋର ଚକ୍ଷୁ ଦ୍ୱୟଟି ନଷ୍ଟ କର ନା ! ଆଲୋ ମାଲୋ, ମୋର କି ସର୍ବନାଶ !

ଶଲ୍ୟ—ସେ କଥା କି ଆଉ ଏତେବେଳେ ? ରାଜା ଦେଖ, ମୋର କି ଦୁର୍ଭାଗ୍ୟ ! ମୋତେ କେହି କନ୍ୟାଦାନ କରିବାକୁ ରାଜିହେଲେ ନାହିଁ, ନାଗିଆପରି ବୁଦ୍ଧି ତା ମୋତେ ଅପସନ୍ଦ କରୁଛି । ମୋର ତ ସ୍ତ୍ରୀଟିଏ ଦରକାର, ଅତଏବ ତୁମ୍ଭପରି ସୁନ୍ଦରୀଟିଏ ପାଇ ଛାଡ଼ିଦେବି କପରି ? ମୁଁ ତୁମ୍ଭକୁ ନିଶ୍ଚୟ ବିବାହ କରିବି, ରାଣୀ କରି ସିଂହାସନରେ ବସାଇବି । ତା ପୂର୍ବରୁ ତୁମ୍ଭର ଚକ୍ଷୁଦ୍ୱୟଟି ନଷ୍ଟ କରିବି ।

ଉଲ୍‌କା—( ଧୂମକେତୁକୁ ଧରି ) ତୁ ଚିକେ ରହିଁକୁ ବୁଝାଇଦିଅ ନା, ମୁଁ ତୋତେ ଘୃଣା କୁଆଡ଼େ ଯିବ ନାହିଁ । ମୁଁ ତୋତେ ଖୁବ୍ ଭଲ ପାଇବି, ଖୁବ୍ ଭକ୍ତି କରିବି । ତୋ ଗୋଡ଼ତଳେ ପଡ଼ୁଛି, ତୁ ଚିକେ ରାଜାକୁ ବୁଝାଇ ଦିଅ, ମୋର ଚକ୍ଷୁ-ଦର୍ପଣଟି ନଷ୍ଟ ନ କରନ୍ତୁ ।

ଧୂମ—( ଶଙ୍ଖପ୍ରତି ) ସତେ କଅଣ ଆପଣ ମୋ ସ୍ତ୍ରୀର ଚକ୍ଷୁଦର୍ପଣଟି ନଷ୍ଟ କରିଦେବେ ?

ଶଙ୍ଖ—ନିଶ୍ଚୟ, ନହୁବା ବିବାହ କରିବି କିପରି ? ସ୍ତ୍ରୀକୁ ମୁଁ ବିଶ୍ୱାସ କରିପାରେ; କିନ୍ତୁ ସ୍ତ୍ରୀର ଚକ୍ଷୁ-ଦର୍ପଣଟିକୁ ବିଶ୍ୱାସ କରିପାରେ ନା । ଏ ଉଦ୍ଧଙ୍କର ଅବିଶ୍ୱାସୀ ।

( ପ୍ରହରୀ ତୂରିକା ଆଣି ଶଙ୍ଖଧରଙ୍କୁ ଦେଲା )

ଏଣିକି ଆସ ସୁନ୍ଦରୀ, ଶୁଭ ବିବାହର ପ୍ରଥମ ସମ୍ମାନଟା ହୋଇଯାଉ ।

ଧୂମ—ହାଃ ହାଃ, ତୁ କୁଆଡ଼େ ରାଣୀ ହେବୁ ?

(ଗୀତ)

ଏମିତି କଥାକୁ ସେମିତି ଖଣ୍ଡ
କେମିତି ହେଲା କହ ଭଲ ।
ଯେମିତି କହୁଛୁ ସେମିତି ସାଥୀ
କହୁଛୁ ମୋତେ ତୁ ବଳବଳ ॥
ତୁ ଯେମିତି କହୁଛୁ ମୋତେ,
ତେଣୁ ଦଇବ ଦଣ୍ଡିଲା ତୋତେ,
ବୁଲି ବୁଲି କରି ସେହି ଅଗଣାକୁ
ଭଉଣୀ ଆସିବ ଜଣାଗଲା ॥
ଏ ଭଳି ଖୁସାମଦ କରନ୍ତେ,
ସେ ଭଳି ଗୋଡ଼ ଲମ୍ବାନ୍ତେ,
ମନେ ମନ ନେଇ ଦୁଇ ଦୁଳଭାଇ
ମିଳାଇଦେଲେ ମୋ ନାମ ଗଲା ॥

ଉଲ୍‌କା—ନାଁ ନାଁ, ମୁଁ ରାଣୀ ହେବାକୁ ଚାହେଁ ନା । ମୋର ଚକ୍ଷୁଦର୍ପଣଟି ନଷ୍ଟ କରନା, ମୋର କି ସର୍ବନାଶ ! ( ଧୂମକୁ ଧରିବା )

ଧୂମ—ମୁଁ ଜାଣେ, ତୁମ୍ଭେ ଉଦ୍ୟାନର ଅଟ୍ଟାଳିକାସ୍ଥ ଲୋକେ କୁହନ୍ତି, ତୁମ୍ଭେ ପାଷଣ୍ଡ ଲମ୍ପଟ, କିନ୍ତୁ ଆଜି ମୁଁ ଯାହା ଦେଖୁଛି, ତୁମ୍ଭେ ଅତି ଉଦାର ମହାପୁରୁଷ । ତୁମ ପଦ ଧରୁଛି ମୋର ସ୍ତ୍ରୀଟିକୁ କ୍ଷମା କରନ୍ତୁ । ତୁମ୍ଭେ ଅନ୍ଧର ଚକ୍ଷୁ ଫିଟାଇଦେଇ, ତୁମ୍ଭର ଏ ଶାଣିତ ଛୁରିକା ଦେଖି ମୋ ସ୍ତ୍ରୀର ଚକ୍ଷୁ ଫିଟିଯାଇଛି । ତେବେ ଆଉ କାହିଁକି ···?

ଶଙ୍ଖ—ନାଁ, ଏ ଦୁନିଆରେ ମୋର ଦୁଃଖ ଜାଣିବା ଲୋକ କେହି ନାହାନ୍ତି, ଏଯାଏ ଗୋଟିଏ ସୁନ୍ଦରୀ ପାଇ-ପାରିଲି ନାହିଁ, ନାଗିନୀ ମୋତେ ଚାହେଁ ନାଁ, ତେବେ ମୋର ଉପାୟ କଣ ? ସୁନ୍ଦରୀ ! ଚିକେ ଚୁପ୍ ।

ଉଲ୍‌କା—ନାଁ, ଆଜିଠାରୁ ମୋର ସ୍ୱାମୀକୁ ଖୁବ୍ ଭଲ ପାଇବି, ଖୁବ୍ ଭକ୍ତି କରିବି, ମୋତେ କ୍ଷମା କରନ୍ତୁ ।

ଶଙ୍ଖ—ମନୁଷ୍ୟର ଚକ୍ଷୁଟା ଫିଟିଗଲେ ସେ କ୍ଷମା ଚାହେଁ । ମୁଁ ଜୀବନରେ ସମସ୍ତଙ୍କୁ ହିଁ କ୍ଷମା କରିଛି, କ୍ଷମା, କ୍ଷମା, କି ଆଶ୍ଚର୍ଯ୍ୟ ! ତା ହେଲେ ତୁମ୍ଭେ ବିଦାୟ ହୁଅ, ତା ପୂର୍ବରୁ ତୁମ୍ଭର ସ୍ୱାମୀର ପଦ ଧରି କ୍ଷମା ମାଗିନିଅ ।

ଉଲ୍‌କା—( ସ୍ୱାମୀପଦ ଧରି ) ମୁଁ ତୋତେ ଖୁବ୍ ଭଲ ପାଇବି, କ୍ଷମା ଦେ ।

( ଧୂମକେତୁ ଓ ଉଲ୍‌କା ଉଭୟେ ରାଜାଙ୍କୁ ପ୍ରଣାମ କରି ଚାଲିଗଲେ )

ଶଙ୍ଖ—ନାରୀ-ଚରିତରେ ଏକ ଦିଗରେ ନାଗିନୀ, ଅନ୍ୟ ଦିଗରେ ଉଲ୍‌କା, ନାଗିନୀକୁ ମୁଁ ଭଲ ପାଏ, ଉଲ୍‌କାକୁ କରେ ଘୃଣା; କିନ୍ତୁ ରାଜଲକ୍ଷ୍ମୀ କମଳାକୁ ଭୟ କରେ, ଭକ୍ତି କରେ, ମାତୃଜ୍ଞାନରେ ପୂଜା କରେ । କେବେ ସେ ସୁଖ ତୃପ୍ତ ନୁହନ୍ତି । ରାଜଲକ୍ଷ୍ମୀ, ତୁମ୍ଭର ସେହି ସକରୁଣ ସ୍ନେହଦୃଷ୍ଟି ମୋତେ ବଞ୍ଚାଇ ରଖିଛି । ( ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

( ଗୋଟିଏ ବୃଦ୍ଧ ବରକୁ ନେଇ ନ୍ୟାୟାଳଙ୍କାର, ତର୍କରତ୍ନ, ଚୂଡ଼ାମଣି ଆଦିଙ୍କ ପ୍ରବେଶ )

ନ୍ୟାୟ—ତର୍କରତ୍ନ ମହାଶୟ ! ବରପାତ୍ରଟି ଯାହା ଯୋଗାଡ଼ କରିଛନ୍ତି, ଖୁବ୍ ମନ୍ଦ ନୁହେଁ; ବୟସ ଷାଠିଏ ମଧ୍ୟରେ ।

ତର୍କ—ନାଁ, ଏତେ ବେଶି ନୁହେଁ, ଟିକେ ରୋଗାକ୍ରାନ୍ତ ଥିବାରୁ ଚେହେରାଟି ବଦଳିଯାଇଛି ।

ନ୍ୟାୟ—ହିଁ, ଯେନ ତେନ ଗୋଟାଏ ବ୍ରାହ୍ମଣର ଜାତି-ଧର୍ମ ରକ୍ଷା କରିବା କଥା ତ, କିନ୍ତୁ କନ୍ୟାପାତ୍ରୀ ପ୍ରାପ୍ତ ହବାର ପରେ ପରେ ବୈଧବ୍ୟବ୍ରତ ପାଳନ କରିବା ଶ୍ରେୟ ।

ତର୍କ—ନାଁ ନାଁ, ଆପଣ କଅଣ କହୁଛନ୍ତି, ଶ୍ୱାସ ରୋଗୀ ଖୁବ୍ ଦୀର୍ଘଜୀବୀ ।

ବର—ଲଗ୍ନସରର ବେଶି ବିଳମ୍ବ କରୁଛନ୍ତି କାହିଁକି ? ମୁଁ ଅଧ ଟିକେ ବସିପାରୁ ନାହିଁ, ପୁଣି ନାଳବନ୍ତ ଖାଡ଼ାଟା ଏଇ ପେଟ ଗରମରେ ଧରିନେଇଛି ।

ତର୍କରତ୍ନ—ହଁ, ଶୀଘ୍ର ଯୋଗାଡ଼ ହେଉଛି । ଚୂଡ଼ାମଣି, ଆଉ ଛୁଡ଼ା ହେଲ କାହିଁକି ? ଶୀଘ୍ର କନ୍ୟା ନେଇ ଆସ, ତୋର୍ଇ ଭାରି ବ୍ୟସ୍ତ ହେଉଛନ୍ତି !

ଚୂଡ଼ାମଣି—ମୋତେ ଯେ ନଗଦ ଦୁଇ ଶହ ଟଙ୍କା ଦେବାର ଠିକ୍ ହୋଇଥିଲା, କାହିଁ ଦିଅନ୍ତୁ ।

ନ୍ୟାୟାଳଙ୍କାର—ହିଁ ଠିକ୍‌ କଥା, ବସିଗଲ ବାଳ ଉହେ ନାହିଁ ନେ ତର୍କରତ୍ନ ମହାଶୟ, ଟଙ୍କାଟା ଆଦାୟର ବ୍ୟବସ୍ଥା କରିଦିଅନ୍ତୁ ।

ତର୍କରତ୍ନ—ବର ମହାଶୟ, ଟଙ୍କାଟା···

ବର—(ନିଜର କର୍ତ୍ତାଙ୍କୁ ଚାହିଁ) ଆହେ ଟଙ୍କାଟା ଦେଇ-ଦିଅ, କାମଟା ଶୀଘ୍ର ସରିଯିବ ପରା !

କର୍ତ୍ତା—ନିଅ (ଏକ ଶହ ଟଙ୍କା ଦେଇ), ବଳିମାନ ଶହେଟଙ୍କା ପୁଣି କାର୍ଯ୍ୟ ଶେଷରେ ହିଁ ପାଇବ ।

ଚୂଡ଼ାମଣି—ନାଁ ନାଁ, ମୁଁ ସମୁଦାୟ ହାତରେ ନ ଧରିଲେ କାର୍ଯ୍ୟ କରିପାରିବି ନାହିଁ । ମୋର ଗୋଟିଏ ମାତ୍ର ସନ୍ତାନ, ଖାଲି ଋଣ ଥିବାରୁ ଏଥିରେ ନେଇ-ଦେଲି ।

ତର୍କରତ୍ନ—ଆହେ ଚୂଡ଼ାମଣି ! ତୋର୍ଇଟି କାମଧେନୁ ପରି, ଦୁହିଁପାରିଲେ ହେଲା, ପରେ ନେଲେ ଯେତେ କଅଣ ?

ନ୍ୟାୟାଳଙ୍କାର—ନାହିଁ ହେ, ଲେକ୍‌ଟୋକ୍ କାମଟା ଭଲ, ଅବସ୍ଥା ଦେଖି ବ୍ୟବସ୍ଥା ନ କଲେ ଭୂତ-ଭବିଷ୍ୟତ ଅଛି ।

ତର୍କରତ୍ନ—(କର୍ତ୍ତାପ୍ରତି) ହଁଅ, ଦୁଇପୂର ଟଙ୍କାଟା ଦେବ ଟି ? କାର୍ଯ୍ୟ ସରୁ, ଦେଖିକି ଦେଖାଯିବ ।

ବର—(କର୍ତ୍ତାପ୍ରତି) ସବୁ ଟଙ୍କା ମାଗୁଛନ୍ତି ? ଦେଇଦିଅ, ଦେଇଦିଅ । ଖୁବ୍ ଜୋରୁ ପୋଖଣ୍ଡ ଲଗିବ ଦେଲାଣି । ଆଉ ଏତେ ସମସ୍ତ ବେଦିରେ ବସିପାରିବି ନାହିଁ ।

କର୍ତ୍ତା—ନିଅ ଟଙ୍କା, ଚୂଡ଼ାମଣି ! (ଟଙ୍କା ଦେଲେ)

ତର୍କରତ୍ନ—ଯାଅ ଚୂଡ଼ାମଣି, କନ୍ୟାକୁ ନେଇଆସ ।

( ଚୂଡ଼ାମଣି କନ୍ୟା ଆଣିବାକୁ ଗଲେ)

ନ୍ୟାୟାଳଙ୍କାର—ବରକର୍ତ୍ତା ବରଙ୍କର କଅଣ ହୁଅନ୍ତି ହଇ ହେ କର୍ତ୍ତା ମହାଶୟ ? ଆପଣ ବରଙ୍କର କଅଣ ହୁଅନ୍ତି କି ?

କର୍ତ୍ତା—ବର ମହାଶୟ ଆମ୍ଭର ଜେଜେବାପା ହୁଅନ୍ତି ।

ନ୍ୟାୟାଳଙ୍କାର—ବାଃ ବାଃ, ବେଶ୍ ତ ! ( ଏ ସମୟରେ ନାଗିନୀକୁ ଚୂଡ଼ାମଣି ମାଉ ମାଣିକା ଆଣିଲେ )

ନ୍ୟାୟାଳଙ୍କାର—ଥାଉ ଥାଉ ଚୂଡ଼ାମଣି, ମାଉ ଧର କରନା ।

ତର୍କରତ୍ନ—ପଦହାର ତାର ଉପଯୁକ୍ତ ବ୍ୟବସ୍ଥା । ଦୁଇ ଦିନ ହେଲା ମୁଁ କଅଣ କମ୍ ବୁଝାଇଲିଣି ? ( ନାଗିନୀପ୍ରତି ) ଅଲେ, ପାଷଣ୍ଡି ଶକ୍ତିଧର ତୋତେ ବିବାହ କରିବ, ଏଠା ତୋତେ ଭଲ ହେବ ?

ବର—ଅଉ ମାଉ ନା, ବୁଝାଇ କହ । ମୁଁ ଆଉ କେତେ ଦିନ, ଘରଦ୍ୱାର ସବୁ ତୁମର ।

ନାଗିନୀ—ଶକ୍ତିଧର ପାଷଣ୍ଡ ନୁହେଁ, ତୁମ୍ଭେମାନେ ପାଷଣ୍ଡ । ଶକ୍ତିଧର ଜଣେ, ଅବଳା ଉପରେ ଏତେ ଅତ୍ୟାଚାର କରି ନ ପାରେ, ଯାହା କି ତୁମ୍ଭେମାନେ କରୁଅଛ ।

ଚୂଡ଼ାମଣି—ମୁହଁ ସଜିଦେବ ଟି । (ମାଡ଼ ଦେଲି)

ନାଗିନ—ପିତା, ମୋତେ ମାରୁ ମାରୁ ମାରିଦେବା, ମୁଁ କେବେ ବିବାହ କରିବ ନାହିଁ । ମୋତେ ଛାଡ଼ିଦିଅ ।

ତର୍କରତ୍ନ—ଲଗାଉନା ମାଡ଼, ନିଅ, ବାନ୍ଧ ନିଅ (ବାନ୍ଧ ବଢ଼ାଇଦେବା) । ନଚେତ୍ ପଦପ୍ରହାର, ଆଉ ବୃଦ୍ଧ କଅଣ ?

(ଚୂଡ଼ାମଣି ପଦ ପ୍ରହାର କରିବାସମୟେ ଶକ୍ତିଧରର ପ୍ରବେଶ )

ଶକ୍ତିଧର—ସାବଧାନ ବ୍ରାହ୍ମଣ ! ( ସମସ୍ତେ ଭୟରେ ଥରିଉଠିଲେ ) ବରଣାତ ବୋଧ ହୁଏ ଏହି ଜରାଜୀର୍ଣ୍ଣ ବୃଦ୍ଧ ? କହ ନାଗିନ, ବର୍ତ୍ତମାନ ବିବାହ କରିବାକୁ ତୁମର ମତ କଅଣ ?

ନାଗିନ—ମୁଁ ତ ଆପଣଙ୍କୁ ମନେ ମନେ ବିବାହ କରିଛି, ଆଉ ଲୌକିକ ବିବାହରେ ପ୍ରୟୋଜନ କଅଣ ? ମୋତେ କ୍ଷମା କରନ୍ତୁ ।

ଶକ୍ତିଧର—କିଏ ଅଛି, ଏ ବୃଦ୍ଧକୁ ଚଣ୍ଡାଳପଲ୍ଲୀକୁ ନେଇଯାଅ । ଆଉ ବ୍ରାହ୍ମଣଟା ନେଇଆସ ।

(ପ୍ରହରୀ ତାହା ହିଁ କଲା)

ଶକ୍ତିଧର—(ବ୍ରାହ୍ମଣ ପ୍ରତି) ପ୍ରତ୍ୟେକଙ୍କୁ ପଚାଶ ପ୍ରହାର, ଆସ ଜଣେ ଜଣେ ।

ବ୍ରାହ୍ମଣେ—କ୍ଷମା, କ୍ଷମା ।

ନାଗିନ—ଦେବତା, ମୋର ଅନୁରୋଧ, ଏଥର କ୍ଷମା ଦିଅନ୍ତୁ, ମୁଁ ପାଦତଳେ ପଡ଼ୁଛି ।

ଶକ୍ତିଧର—ଯାଅ ପାଷଣ୍ଡେ । (ପ୍ରସ୍ଥାନ)

—*—

## ଚତୁର୍ଥ ଦୃଶ୍ୟ

ରତ୍ନେଶ୍ୱର—(ପ୍ରବେଶି) ମୁକ୍ତିକାମ ! ମୁକ୍ତିକାମ ! !

ମୁକ୍ତିକାମ—(ପ୍ରବେଶି) ପିତା !

ରତ୍ନେଶ୍ୱର—କଅଣ ଠିକ୍ କରିଲେ ?

ମୁକ୍ତିକାମ—କଅଣ ଆଉ ଠିକ କରିବ ? ବଜ୍ରବାହୁ ଯେ କାହିଁକି ଏବେ ନିସ୍ତବ୍ଧ ହୋଇ ବସିଛି, ମୁଁ କିଛି ବୁଝିପାରୁ ନାହିଁ !

ରତ୍ନେଶ୍ୱର—ବଜ୍ରବାହୁ ବର୍ତ୍ତମାନ ଆସୁଛି । ମୁଁ ବର୍ତ୍ତମାନ ତୁମ ଦୁଇଜଣଙ୍କୁ ପଚାରେ, ତୁମ୍ଭେମାନେ ରକ୍ତ-ମାଂସରେ ଗଢ଼ା ମନୁଷ୍ୟ ନା ଆଉ କିଛି ?

ମୁକ୍ତିକାମ—କୁମାର ଶଙ୍ଖନାଦକୁ ଶକ୍ତିଧର ଯେ ହତ୍ୟା କରିଛି, ଏ କଥା କି ସତ୍ୟ ?

ରତ୍ନେଶ୍ୱର—ନିଶ୍ଚୟ ସତ୍ୟ ।

ମୁକ୍ତିକାମ—ଓଃ, କି ପୈଶାଚିକ ପ୍ରବୃତ୍ତି ! କିନ୍ତୁ କମଳା କି ଏପର୍ଯ୍ୟନ୍ତ ଜୀବିତ ଅଛି ?

ବଜ୍ରବାହୁ—(ପ୍ରବେଶି) ହଁ ଅଛି, ଶକ୍ତିଧର ନିକଟରେ ଆତ୍ମସମର୍ପଣ କରି ପରମ ଶାନ୍ତିରେ କାଳାତିପାତ କରୁଛି ।

ରତ୍ନେଶ୍ୱର—ଛି, ବଜ୍ରବାହୁ !

ବଜ୍ରବାହୁ—ସତ୍ୟ କଥାକୁ ଏତେ ଗୋପନ କାହିଁକି ?

ମୁକ୍ତିକାମ—ବଜ୍ରବାହୁ, ତୁମ୍ଭେ ମିଥ୍ୟାବାଦୀ ।

ବଜ୍ରବାହୁ—ତୁମ୍ଭେ ତ ମୋତେ ଚିରଦିନ ମିଥ୍ୟାବାଦୀ ବୋଲି ସନ୍ଦେହ କର । ଯେଉଁଦିନ ତୁମଙ୍କୁ ଶକ୍ତିଧରକୁ ସିଂହାସନଚ୍ୟୁତ କରିବାଲାଗି କହିଥିଲି, ତୁମ୍ଭେ କହିଥିଲ, ମୁଁ ସିଂହାସନ ପାଇଁ ଲାଳାୟିତ ହୁଏଁ । ଆଜି କୁମାର ଶଙ୍ଖନାଦ ନିହତ ଆଉ ରାଜଲକ୍ଷ୍ମୀ କମଳା କୁଳଧର୍ମ ତ୍ୟାଗ କରି ସେହି ପାଷଣ୍ଡ ଶକ୍ତିଧରର ଅଙ୍କଶାୟିନୀ । ଛି, କି ଲଜ୍ଜା, କି ଅପମାନ !

ମୁକ୍ତିକାମ—ସାବଧାନ ବଜ୍ରବାହୁ ! ରସନା ସଂଯତ କରି କଥା କହ । ମୁଁ ପୁନଶ୍ଚ କହୁଛି, ତୁମ୍ଭେ ମିଥ୍ୟାବାଦୀ । ମୁଁ ତୁମର କୌଣସି କଥାକୁ ବିଶ୍ୱାସ କରେ ନା ।

ବଜ୍ରବାହୁ—ବିଶ୍ୱାସ କରିବାରେ କୌଣସି ପ୍ରୟୋଜନ ନାହିଁ । ମୋର ଭବିଷ୍ୟ ଯେତେବେଳେ ଅସ୍ଥିର, ସେତେବେଳେ ମୋର ତୁମ ସଙ୍ଗରେ କୌଣସି ପ୍ରୟୋଜନ ନାହିଁ । ତୁମର ଚିରବିଶ୍ୱାସିନୀ ପତ୍ନୀ ଆଜି ବ୍ୟଭିଚାରିଣୀ । ମୋର ସେଥିରେ ଯାଏ-ଆସେ କେତେ ?

ମୁକ୍ତିକାମ—ବଜ୍ରବାହୁ, ତୁମ୍ଭେ ଧୈର୍ଯ୍ୟର, ସୀମା ଟପି ଯାଉଛ ।

ବଜ୍ରବାହୁ—ତୁମ୍ଭେ ମୋର କ'ଣ କରିପାର ? ତୁମ୍ଭର ଏ ରକ୍ତଚକ୍ଷୁକୁ ମୁଁ ଭୟ କରେ ନା ।

ରତ୍ନେଶ୍ୱର—କଅଣ କହୁଚ ବଜ୍ରବାହୁ ! ଅଭାଗିନୀ କମଳାପାଇଁ ତୁମ୍ଭେ କି ଲଜ୍ଜିତ ନୁହଁ ?

ବଜ୍ରବାହୁ—କିନ୍ତୁ ଏ ଅପରାଧର ଦାୟୀ କିଏ ? ଶଙ୍ଖନାଦର ମୃତ୍ୟୁ ଆଉ କମଳାର ଏ ଅପକଳଙ୍କ-ପାଇଁ ଦାୟୀ କିଏ ହୋଇବ ? ମୁକ୍ତିକାମ ସେ ପରମ ଧାର୍ମିକ, ସେ ଆଜ ତାର ପ୍ରତିଜ୍ଞା ଅକ୍ଷୁଣ୍ଣ ରଖିବାକୁ ଚାହେଁ । ତାର ଇଚ୍ଛା, ବଜ୍ରବାହୁ ସିଂହାସନ ଉଦ୍ଧାର କରୁ, ଅବଶେଷରେ ସେ ଜଗାଦରେ ମାଳିକ ହୋଇ ବସିବ । ଏ ନିର୍ଲଜ୍ଜ ବଳଧାର୍ମିକତା ଅସହ୍ୟ ।

ମୁକ୍ତିକାମ—(ସକ୍ରୋଧେ) ବଜ୍ରବାହୁ ! ଏ ମନ୍ଦିର ମୋର, ତୁମ୍ଭେ ବର୍ତ୍ତମାନ ଏ ସ୍ଥାନ ପରିତ୍ୟାଗ କର । ମୁଁ ତୁମ୍ଭର କୌଣସି କଥା ଶୁଣିବାକୁ ଚାହେଁ ନା, ତୁମ୍ଭର ମୁଖଦର୍ଶନରେ ପାପ ।

ରତ୍ନେଶ୍ୱର—ତୁମର ଶଙ୍ଖନାଦ ନିହତ, ରାଜଲକ୍ଷ୍ମୀ କମଳା ଆଜ ବନ୍ଦିନୀ । ତୁମ୍ଭେ ଦୁଇଜଣ ବ୍ୟକ୍ତି-ଗତ ମର୍ଯ୍ୟାଦାବୋଧରେ ଆଉକୁ ଯାଇ ଆତ୍ମକଳହ କରିବାକୁ ଉଦ୍ୟତ, ଛି ଛି !

ମୁକ୍ତିକାମ—ନାଁ ପିତା, ବଜ୍ରବାହୁ ମୋର ସାଧୁତା ସମ୍ବନ୍ଧେ ଯେ କଟୋକ୍ତି କରିଛି, ତାର ପ୍ରାୟଶ୍ଚିତ୍ତ ନ ହେଲେ ମୁଁ ତାର ମୁଖ ଦର୍ଶନ କରିବି ନାହିଁ ।

ବଜ୍ରବାହୁ—ଯାହା ସତ୍ୟ, ଯାହା ପ୍ରତ୍ୟକ୍ଷ, ତା କେହିମାତ୍ର ଅସ୍ୱୀକାର କରିବ ନାହିଁ, ଆକାଶରେ ଚନ୍ଦ୍ର ସୂର୍ଯ୍ୟ ସତ୍ୟର ମହିମା ପ୍ରଚାର କରୁଛନ୍ତି । ମନୁଷ୍ୟର ଶ୍ୱାସ-ପ୍ରଶ୍ୱାସରେ ମଧ୍ୟ ସତ୍ୟର ମହିମା ବର୍ତ୍ତମାନ ଅଛି, ସତ୍ୟ ହିଁ ଏକମାତ୍ର ଧର୍ମ ।

ମୁକ୍ତିକାମ—ଚୁପ୍ କର ଭଣ୍ଡ ମିଥ୍ୟାବାଦୀ ! (ରତ୍ନେଶ୍ୱର ପ୍ରତି ) ପିତା ! ଆପଣ କି…

ରତ୍ନେଶ୍ୱର—ବଜ୍ରବାହୁର ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ ।

ମୁକ୍ତିକାମ—ପିତା ! ଆପଣ କଅଣ କହୁଛନ୍ତି ? କମଳା କି ଶଲ୍ୟଧର ନିକଟରେ ଆତ୍ମସମର୍ପଣ କରିଛି ?

ରତ୍ନେଶ୍ୱର—ହିଁ, କମଳା ମୋର ଉଚ୍ଚ ମଥା ନତ କରିଦେଇଛି ।

ମୁକ୍ତିକାମ—ଦାଣ୍ଡପାଟରେ କିଏ କୌଣସି ଗୋଟାଏ କଥା କହିଲେ ତା କି ବିଶ୍ୱାସଯୋଗ୍ୟ ? ଆପଣ କଅଣ ଆପଣଙ୍କ କନ୍ୟାକୁ ଚିହ୍ନି ନାହାନ୍ତି, ସେ ବରଂ ଆତ୍ମହତ୍ୟା କରିପାରେ; କିନ୍ତୁ ଆତ୍ମସମର୍ପଣ କରିପାରେ ନା ।

ରତ୍ନେଶ୍ୱର—ନାଁ, ତା କହିନାହିଁ, ମୁଁ ସ୍ୱଚକ୍ଷୁରେ ଦେଖିବାକୁ ପାଇଛି, ସେ ଦୁଷ୍ଟରଙ୍ଗା କୁଳତ୍ୟାଗିନୀ ପ୍ରଫୁଲ୍ଲିତ ଚିତ୍ତରେ ଶଲ୍ୟଧର ନିକଟରେ ଛିଡ଼ା-ହୋଇଛି । ଶଙ୍ଖନାଦର ମୃତ୍ୟୁରେ ତାର ମୁଖ-ମଣ୍ଡଳରେ ଟିକେ ମାତ୍ର ବିଷାଦର ଛାୟା ପଡ଼ିନାହିଁ । ସେ କଥା ଭାବିଲେ ମୋର ମଥା ଘୂରିଯାଉଛି, ମୁଁ ଆଉ କିଛି କହିପାରୁ ନାହିଁ । ଉଗ୍ରସେନ ମୋର ହାତ ଦୁଇଟା ବାନ୍ଧିପକାଇଥିଲା ନଚେତ୍ ମୁଁ ତାକୁ…

ମୁକ୍ତିକାମ—ଆପଣଙ୍କର ମସ୍ତିଷ୍କର କଅଣ ବିକୃତି ଘଟିଛି କି ? କମଳା ବର୍ତ୍ତମାନ ଶଲ୍ୟଧରର ଅନ୍ତଃପୁରରେ, ଆପଣ ସେଠାକୁ ଗଲେ କିପରି ?

ରତ୍ନେଶ୍ୱର—ସେ କଥା ମଧ୍ୟ କହୁଛି । ବଜ୍ରବାହୁଠାରୁ ଏସମସ୍ତ ଘଟଣା ଶୁଣି ମୁଁ ବିଚଳିତ ହୋଇଉଠିଲି ଓ ନିଜର ଜୀବନକୁ ବିପଦାପନ୍ନ କରି ଶଲ୍ୟଧରର ଗଡ଼ଦ୍ୱାରରେ ଉପସ୍ଥିତ ହୋଇ କମଳାର ଦର୍ଶନ ଅପେକ୍ଷା କରିଥିଲି । ଶଲ୍ୟଧର ଏ କଥା ଜାଣିପାରି ଉଗ୍ରସେନଦ୍ୱାରା ମୋତେ ଶୃଙ୍ଖଳିତ କରି ରାଜବାଟୀଭିତରକୁ ନେଇଗଲା ।

ମୁକ୍ତିକାମ—କମଳା ସଙ୍ଗେ ଆପଣଙ୍କର କୌଣସି କଥା-ବାର୍ତ୍ତା ହୋଇଛି ?

ରତ୍ନେଶ୍ୱର—ଶଙ୍ଖନାଦର ହତ୍ୟାକାଣ୍ଡଠାରୁ ତାର ତାହାର ସମ୍ବନ୍ଧେ ନାନା ପ୍ରଶ୍ନ କରିଥିଲି, କିନ୍ତୁ ସେ ବୁଢ଼ା ଲଜ୍ଜାରେ ମୁଖାବନତ କରି ଦୁଇ ଟୋପା ଅଶ୍ରୁ ଗଡ଼ାଇ ପକାଇଥିଲା । ମୁଁ କ୍ରୋଧରେ ପ୍ରଜ୍ୱଳିତ ହୋଇ ଉଠିଲି ସେଇ ଶୃଙ୍ଖଳିତ ହସ୍ତରେ କମଳାକୁ ମାରିବାକୁ ଅଗ୍ରସର ହେଲି ।

ପଲରେ ଶକ୍ତିଧର ବାଧା ଦେଇ ମୋର
ଶୃଙ୍ଖଳ ଖୋଲି ଦ୍ୱାରଦେଶରେ ବଦାସ୍ୱ ଦେଲ !

ବଜ୍ରବାହୁ — ସ୍ତ୍ରୀ ଜାତକୁ ବିଶ୍ୱାସ କରଯାଏ ନା ମୁକ୍ତିକାମ,
ସେଥିଲାଗି ମୁଁ ଖାଲିକୁମାର ।

ମୁକ୍ତିକାମ — ତୁମ୍ଭେ ଗୋଟିଏ ପଣ୍ଡିତ ପଶୁ !

ରତ୍ନେଶ୍ୱର — ମୁକ୍ତିକାମ ! ତୁମ୍ଭର କଅଣ ବର୍ତ୍ତମାନ
ବିବାଦ କରିବାର ସମୟ ?

ମୁକ୍ତିକାମ — ଆପଣଙ୍କ କଥା ଯେବେ ସତ୍ୟ ହୁଏ ପିତା,
ତେବେ ବୁଝିଲି, ଏ ଜଗତରେ ବିଶ୍ୱାସ ବୋଲି
କିଛି ବସ୍ତୁ ନାହିଁ । ଶାନ୍ତ ବ୍ରତ୍ୟ ଗୋଟାଏ ଆକାଶ-
କୁସୁମ, ସଂସାରର ଧର୍ମ ଗୋଟାଏ ପ୍ରବଞ୍ଚନା । ବଜ୍ର-
ବାହୁଙ୍କୁ ମୁଁ ଚିରଦିନ ଅବିଶ୍ୱାସ କରିଆସୁଛି,
ଆଜ ଯେବେ ତାର ସହୋଦରା ଭଗ୍ନୀକୁ
ଅବିଶ୍ୱାସ କରିବାକୁ ହୁଏ, ତେବେ ମୋର
କୌଣସି ଦୁଃଖ ନାହିଁ ପିତା; କିନ୍ତୁ କହୁଛି, କାଲି
ସୂର୍ଯ୍ୟୋଦୟ ହେବ, ବଜ୍ରବାହୁ ! କାଲି ସୂର୍ଯ୍ୟୋଦୟ
ହେବ ।

ରତ୍ନେଶ୍ୱର — ମୁକ୍ତିକାମ ! କର୍ତ୍ତବ୍ୟ ନିର୍ଦ୍ଧାରଣ କର ।
ବିପଦବେଳେ ଧୈର୍ଯ୍ୟହରା ହୁଅ ନାହିଁ ।

ମୁକ୍ତିକାମ — କର୍ତ୍ତବ୍ୟ ! ତାହାର କର୍ତ୍ତବ୍ୟ ? କିଏ
କହନ୍ତି ? କମଳା ଯଦି ସ୍ୱ-ଇଚ୍ଛାରେ ତାର ପ୍ରେମିକ
ନିକଟରେ ଆତ୍ମସମର୍ପଣ କରିଥାଏ, ତେବେ ମୁଁ
ମୁକ୍ତ, କିନ୍ତୁ ମୁଁ ଶଙ୍ଖନାଦକୁ ଭୁଲିପାରିବି ନାହିଁ ।
ମୋର ପୁତ୍ରହନ୍ତାକୁ ମୁଁ କଠିନ ଶାସ୍ତି ଦେବି, ଯାହା
ଦେଖି ଜଗତ ସ୍ତମ୍ଭିତ ହୋଇଯିବ ।

(ଜଣେ ଗୁପ୍ତଚରଙ୍କ ସେନା ପ୍ରବେଶ)

ପ୍ରହରୀ — ରାଜା ! ଆପଣଙ୍କ ଗୁପ୍ତଚରଙ୍କ କହନ୍ତି । ରାଜା
ଶଙ୍ଖଧର ରାଜଲକ୍ଷ୍ମୀ କମଳା ଦେବୀଙ୍କୁ ପାଇ ତା'ର
ବନମଧ୍ୟେ ରାଜାରାଣୀଙ୍କୁ ପଠାଇଦେଇଛନ୍ତି ।

ମୁକ୍ତିକାମ — (ରତ୍ନେଶ୍ୱରଙ୍କୁ ସାଙ୍ଗରେ ନେଇ ମନ୍ଦିରକୁ
ଚାଲିଗଲେ)

ରତ୍ନେଶ୍ୱର — ମୁକ୍ତିକାମ ! ମୁକ୍ତିକାମ ! !

ମୁକ୍ତିକାମ — (ପ୍ରବେଶି) ତୁମ୍ଭେମାନେ ସମସ୍ତେ ଏଠାରୁ
ଯାଅ, ମୁଁ ତୁମ୍ଭମାନଙ୍କଠାରୁ କିଛି ଶୁଣିବାକୁ
ଚାହେଁ ନା ବିଶ୍ୱାସଘାତକମାନଙ୍କ । ଏ ମୁହୂର୍ତ୍ତରେ
ଏଠାରୁ ଅନ୍ତର ହୁଅ । ରାଧାରମଣ ! ରାଧାରମଣ !
ମୋର ପ୍ରାଣଧିକା ପ୍ରିୟତମାର ବନମଧ୍ୟେ
ମୋତେ ଆଣି ରାଧାରାଣୀ ଦେଇଛ, ଆଜ ମୋଠାରୁ
କଅଣ ଚାହଁ ? ଥାଅ ଥାଅ, ଯୁଗ-ଯୁଗାନ୍ତକାଳ ଏହି
ମନ୍ଦିରରେ ପ୍ରତିଷ୍ଠିତ ଥାଅ, କିନ୍ତୁ ତୁମ୍ଭର ଗୁପ୍ତଚରଙ୍କୁ
ବିଶ୍ୱାସ କରିବ ନାହିଁ, ବିଶ୍ୱାସ କରିବ ନାହିଁ ।
(ପ୍ରସ୍ଥାନ)

---

## ପଞ୍ଚମ ଅଙ୍କ

### ପ୍ରଥମ ଦୃଶ୍ୟ

(ଶଙ୍ଖନାଦ ଓ ସୁନନ୍ଦା ଖେଳି ଖେଳି ପ୍ରବେଶ)

ଶଙ୍ଖନାଦ — ସୁନନ୍ଦା ! ସୁନନ୍ଦା ! କୁଆଡ଼େ ଗଲ
ସୁନନ୍ଦା ?

ସୁନନ୍ଦା — କାହିଁକି ଡାକୁଛ ରାଜକୁମାର ? ମୁଁ ଯେ
ଏଇଠି ଲୁଚିଥିଲି, ରାଜକୁମାର ମୋତେ ଖୋଜି
ପାଇବେ କି ନା ?

ଶଙ୍ଖନାଦ — ଦୁଷ୍ଟାମି ଶିଖିଛ ସୁନନ୍ଦା ! ମୁଁ ତୁମକୁ
ଗୋଟାଏ କଥା ପଚାରିବି, ଜାଣିଥିଲେ ଏକା ସତ
କହିବ ।

ସୁନନ୍ଦା — କି କଥା ?

ଶଙ୍ଖନାଦ — ମୋ ସମ୍ବନ୍ଧେ ତୁମର ବାବା ତୁମକୁ କଅଣ
କହୁଥିଲେ ?

ସୁନନ୍ଦା — କହୁଥିଲେ, ତୁ ରାଜକୁମାର ସଙ୍ଗେ ବେଶୀ
ମିଳାମିଶା କରିବୁ ନାହିଁ ।

ଶଙ୍ଖନାଦ — କାହିଁକି ?

ସୁନନ୍ଦା — ତୁମେ ଯେ ରାଜକୁମାର ।

ଶଙ୍ଖନାଦ — ତୁମେ ଯେ ରାଜକୁମାରୀ ।

ସୁନନ୍ଦା — ରାଜକୁମାର, ତୁମେ ଯେ ଭୁଲ ବୁଝିଛ, ମୋର
ପିତା ସାମାନ୍ୟ ପଥର ଭିକାରୀ । ଏ ରାଜ୍ୟ ତୁମର,
ଅସନ୍ତା ପୂର୍ଣ୍ଣିମା ରାତିରେ ଆମ୍ଭମାନଙ୍କୁ ତୁମ୍ଭେ
ଏଠାରୁ ତଡ଼ିଦେବ ।

ଶଙ୍ଖନାଦ — କିଏ କହିଲା ?

ସୁନନ୍ଦା — ବାବା ।

ଶଙ୍ଖନାଦ — ନା ସୁନନ୍ଦା, ତୁମ୍ଭକୁ ଏଠାରୁ କେହି ଛଡ଼ାଇଦେବେ ନାହିଁ । ତୁମେ ଚିରଦିନ ମୋ ନିକଟରେ ରହିବ ।

ସୁନନ୍ଦା — ତା କି ହୋଇପାରେ ? ମୋର ବାବା ଯାଇଗଲେ ମୁଁ କାହା ପାଖରେ ରହିବି ? ମୋର ବାବାଙ୍କର ଆଉ କିଏ ଅଛି ?

ଶଙ୍ଖନାଦ — କାହିଁକି, ମୋ ନିକଟରେ ରହିବ ନାହିଁ ? ମୁଁ ତୁମକୁ କେତେ ଭଲ ପାଉଛି ।

ସୁନନ୍ଦା — ଛି ରାଜକୁମାର ! ଏ କଥା ମନରେ ଆଣନା, ମୁଁ ମୋର ବାବାଙ୍କୁ ଛାଡ଼ି କେଉଁଠାରେ ରହିପାରିବି ନାହିଁ ।

ଶଙ୍ଖନାଦ — (ଗୀତ)

ମଧୁବୋଳା ତୋର ବନ୍ଧୁଲି ଅଧରେ
ସ୍ୱାଦ ଏ କଥା ପଦଟି,
ସ୍ୱାଦୁତା ପାଇଁ ବନ୍ଧୁରେ ମୁହିଁ
ବନ୍ଧା ତୋ ପାଖେ ସଦାଟି ।

ସୁନନ୍ଦା — କି ଅଜଣା ମନ୍ତ୍ର ଶୁଣାଅ ମୋ କର୍ଣ୍ଣେ
କର୍ତ୍ତବ୍ୟେ ଦଅ ବାଧାଟି,
ଅବାଧ ଗତିରେ ଗୋଡ଼ ଖସିଗଲେ
କି ଆଘାତ ହୃଦେ ବାଜେଟି ।

ଶଙ୍ଖନାଦ — ହୃଦୟ-କାନନେ କି ଭଲ ଆସନ
ତୋପାଇଁ ବାନ୍ଧି ରଖିଛି,

ସୁନନ୍ଦା — ଛାଡ଼ ହାତ ମୋର ହେ ରାଜକୁମାର !
ନ ଦଅ ଆଉ ବାଧାଟି ।

( ସୁନନ୍ଦା ଚାଲିଯିବାକୁ ଉଦ୍ୟତ )

ଶଙ୍ଖନାଦ — ଯାଅନା ଯାଅନା ସୁନନ୍ଦା ! ଗୋଟିଏ କଥା ଶୁଣ ।

ସୁନନ୍ଦା — କି କଥା ?

ଶଙ୍ଖନାଦ — ମୁଁ ତୁମକୁ ବିବାହ କରିବାକୁ ଚାହେଁ ।

ସୁନନ୍ଦା — ତା କି ହୋଇପାରେ ? ବାବା କହନ୍ତି, ତୁମେ ମୋର ବଡ଼ ଭାଇ । ଭଉଣୀ କ'ଣ ବିଭା ହୁଏ ରାଜକୁମାର ? ଏ କଥା ଆଉ ମନରେ ଆଣ ନାହିଁ ।

ଶଙ୍ଖନାଦ — (ସୁନନ୍ଦାର ହାତ ଧରିନେବା)

ସୁନନ୍ଦା — ପୁଣି କାହିଁକି ମୋର ହାତ ଧରିଲ ରାଜକୁମାର ? ତୁମେ କେବଳ ମୋତେ କନ୍ଦାଇବାକୁ ଭଲପାଅ ରାଜକୁମାର । (କ୍ରନ୍ଦନ)

ଶକ୍ତିଧର — (ପ୍ରବେଶି) କାହିଁକି କାନ୍ଦୁଛୁ ସୁନନ୍ଦା ?

ସୁନନ୍ଦା — ମୁଁ କହୁଛି ଭାଇକି ଭଉଣୀ ବିବାହ ହୁଏ ନାହିଁ । ତେବେ ସୁଦ୍ଧା ରାଜକୁମାର ମୋତେ ବିବାହ କରିବାକୁ ଚାହାନ୍ତି ।

ଶକ୍ତିଧର — ତା ହେଲେ ତ ଘୋର ବିପଦ । ଶଙ୍ଖନାଦ, ତୁମେ ଜାଣ, ଏ ସୁନନ୍ଦା କିଏ ? ତାର ବାବାର କୌଣସି ବଂଶପରିଚୟ ନାହିଁ, ତୁମେ ପରମ ଧାର୍ମିକ ରାଜା ମୁକ୍ତିକାମଙ୍କର ପୁତ୍ର—ଏ କଥାଟା ଭୁଲି ଯାଅ ନାହିଁ ? (ଶଙ୍ଖନାଦ ଚାଲିଗଲା)

କମଳା — କଅଣ ହୋଇଛି ?

ଶକ୍ତିଧର — ଶଙ୍ଖନାଦ ସୁନନ୍ଦାକୁ ବିବାହ କରିବାକୁ ଚାହୁଁଛି; ସେଥିପାଇଁ ସୁନନ୍ଦା କାନ୍ଦୁଛି ।

କମଳା — କାନ୍ଦୁଛୁ କାହିଁକି ସୁନନ୍ଦା ? ଶଙ୍ଖନାଦ ଯେତେବେଳେ ଏ ରାଜ୍ୟରେ ରାଜା ହେବ, ତୁ ହେବୁ ଏ ରାଜ୍ୟର ରାଣୀ ।

ସୁନନ୍ଦା — ତା ହେବ କିପରି ? ଭାଇକି ଭଉଣୀ କଅଣ ବିଭା ହୁଏ ? ମୁଁ ଶୁଣିଛି, ତୁମେ ମୋ ବାବାଙ୍କୁ ତଡ଼ିଦେବ । ମୁଁ ବାବାଙ୍କୁ ଛାଡ଼ି କେଉଁଠି ରହିପାରିବ ନାହିଁ । (ପ୍ରସ୍ଥାନ)

କମଳା — ଆହା ! କେଡ଼େ ସୁନ୍ଦର, କେଡ଼େ ମଧୁର ତାର ଅନ୍ତରବୃତ୍ତି ! ଶକ୍ତିଧର, ଶଙ୍ଖନାଦ ସଙ୍ଗେ ତାକୁ ବିବାହ ଦେବାକୁ ପଡ଼ିବ ।

ଶକ୍ତିଧର — ସେ କଥା ବର୍ତ୍ତମାନ ଥାଉ ରାଜଲକ୍ଷ୍ମୀ, ମୁଁ ବଳଦେବ ହୁ ନିକଟକୁ ଲୋକ ପଠାଇଛି, ସେ ବର୍ତ୍ତମାନ ଆସିବ ତାର ସମସ୍ତ ଇଚ୍ଛା ତୁମକୁ ଶୁଣାଇବ, ତେଣୁ ଗୋପନ ସାକ୍ଷାତର ବ୍ୟବସ୍ଥା କରିଛି ।

କମଳା — ସେ କି ଏଠାକୁ ଆସିବ ?

ଶକ୍ତିଧର — ନିଶ୍ଚୟ ଆସିବ, ସେନାକର୍ମୀଣ ଓ ସୈନ୍ୟ-ରକ୍ଷା ପାଇଁ ମୁଁ ବହୁତ ଅର୍ଥ ତାକୁ ସାହାଯ୍ୟ କରିଛି । ତାର ପୂର୍ଣ୍ଣ ବିଶ୍ୱାସ ମୋଠାରେ ରହିଛି ।

କମଳା—ସେ ଯେ ଏକେ ସ୍ଥାନ, ଏକେ ଯାତ, ସେ କଥା ମୁ କହିପାରୁ ନାହିଁ ଶଙ୍ଖଧର ।

ଶଙ୍ଖଧର—ସେ କଥା ତ ବହୁବାର ଶୁଣିଛୁ ଦେବ ! ଆଉ ତ ବେଶି ସମୟ ଅପେକ୍ଷା କରିବାକୁ ହେବ ନାହିଁ, ଶିବେ ଆଜ୍ଞାଳରେ ଛୁଡ଼ା ହେଲେ ବୁଝି-ପାରିବ, ବଜ୍ରବାହୁର ସ୍ବରୂପ କ ରକମ । ସ୍ବାର୍ଥସିଦ୍ଧି-ଲାଗି ମନୁଷ୍ୟର ପୈଶାଚିକ ପ୍ରବୃତ୍ତି ଯେ କେତେ ପ୍ରବଳ ହୋଇପାରେ, ତା'ର ଜ୍ୱଳନ୍ତ ପ୍ରମାଣ ତୁମକୁ ଆଜି ଦେଖାଇବ ।

କମଳା—ମୁଁ ଯେ ସହିପାରୁ ନାହିଁ ଶଙ୍ଖଧର ! ଏହା କ ସମ୍ଭବ ହୋଇପାରେ ? ସେ ଯେ ମୋର ଭାଇ, ସହୋଦର ଭାଇ !

ଶଙ୍ଖଧର—ସହୋଦର ଭାଇ, ରକ୍ତର ସମ୍ବନ୍ଧ; ଦେବ ! ମୁଁ ସ୍ୱଚକ୍ଷୁରେ ଦେଖିଛୁ, ମନୁଷ୍ୟର ଦକ୍ଷିଣ ହସ୍ତ ବାମ ହସ୍ତକୁ ମାରୁଛି, ନିଜର ପ୍ରଭୁତ୍ୱ ଓ ପ୍ରାଧାନ୍ୟ ପ୍ରତିଷ୍ଠା କରୁଛି, ମନୁଷ୍ୟର ଦନ୍ତ ବନ୍ତ ଯାଉ ସେ ପ୍ରତିମୁହୂର୍ତ୍ତରେ ତାର ଜିହ୍ୱାକୁ ଦଂଶନ କରିବାକୁ ଚାହେଁ । ସେ ଜିହ୍ୱା ଅଗତ ଶରୀରରେ ବଞ୍ଚିରହିଛି; ସେ ନିଜର ସତର୍କତାରେ ଦନ୍ତର ଅନୁଗ୍ରହରେ ନୁହେଁ ଦେବ ! ଦନ୍ତର ଅନୁଗ୍ରହରେ ନୁହେଁ ।

କମଳା—ଚୁପ୍ କର ଶଙ୍ଖଧର ! ଏସବୁ କଥା କହିଲେ ତୁଚ୍ଛ ସ୍ୱାର୍ଥ-ଚିନ୍ତା ସେପରି ତୁଚ୍ଛ ହୋଇଯାଏ, ଆଉ ସଂସାରକୁ ଗୋଟାଏ ଶ୍ମଶାନ ବୋଲି ମନେ କରିବାକୁ ହୁଏ ।

ଶଙ୍ଖଧର—ବନ୍ଦ କରିଦେଲୁ ବା ହତ୍ୟା କରିଦେଲୁ, ମୁଁ ବଜ୍ରବାହୁକୁ ଶାସ୍ତି ଦେଇପାରନ୍ତି; କିନ୍ତୁ ତା ହୋଇଥିଲେ ମୁଁ ହୋଇଥାନ୍ତି ପୂର୍ଣ୍ଣ ଅବିଶ୍ୱାସୀ । ବଜ୍ରବାହୁ ଯେ ତୁମର ଭାଇ, ମୁଁ ତ କେହି ନୁହେଁ; ମୁଁ ଗୋଟାଏ ପିତୃ-ମାତୃହୀନ ପଥର ଭିକାରୀ ।

ଭଦ୍ରସେନ—( ପ୍ରବେଶି ) ବଜ୍ରବାହୁ ଆସିଛୁ ।

ଶଙ୍ଖଧର—ଯାଅ, ଶୀଘ୍ର ଏ ସ୍ଥାନରେ ଉତ୍ସରିଯାଅ । ହିଁ, ତୁମେମାନେ ପ୍ରସ୍ତୁତ ଥାଅ, ତାକୁ ବନ୍ଦ କରିବା ଆଉ ଶୀଘ୍ର ଆବଶ୍ୟକ । ଯାଅ । ( କମଳାପ୍ରତି ) ଯାଅ ଭଉଣୀ ! ଶିବେ ଅନ୍ତଃପୁରକୁ ଯାଅ । ସେଠାରେ ଛୁଡ଼ାହୋଇ ବୁଝିପାରିବ ବଜ୍ରବାହୁର ସ୍ବରୂପ କ ରକମ । ହଁ, ଆଉରି ଶୁଣ, ଧର୍ମନାଥ ଯେପରି ଏଠାକୁ ନ ଆସେ ।

( କମଳା ପ୍ରସ୍ଥାନ କଲେ, ବଜ୍ରବାହୁକୁ ଆଣିଲ ଭଦ୍ରସେନ ଗୁଲିଗଲ )

ଶଙ୍ଖଧର—(ବଜ୍ର ହସ୍ତଧରି) ଆସ ବନ୍ଧୁ, ସବୁକ ସବୁ ଶୁଭ ତ ?

ବଜ୍ରବାହୁ—ହଁ ଶୁଭ । ମୁକ୍ତିକାମ କିନ୍ତୁ'ବ ହୋଇ ଧାଇଁଛି, ସେ ନିଜ ହାତରେ ତାର ସ୍ୱତନ୍ତ୍ରତାକୁ ଶାସ୍ତି ଦେବ, ଆମମାନଙ୍କର କୌଣସି ସାହାଯ୍ୟ ଚାହେ ନା ।

ଶଙ୍ଖଧର—ତା'ପର ?

ବଜ୍ରବାହୁ—ତା'ପର ଆଉ କଅଣ ? ବର୍ତ୍ତମାନ ନୂତନ କରି ସୈନ୍ୟ ସଂଗ୍ରହ କରିବା ତା'ପକ୍ଷେ ନିତାନ୍ତ ଅସମ୍ଭବ । କେବଳ କେତେକୁଡ଼ିଏ ମୂର୍ଖ ପ୍ରଜାଙ୍କୁ ସଙ୍ଗରେ ନେଇ ଆସିପାରେ; କିନ୍ତୁ ସେମାନେ ସେତୁ ପାର ହେବେ କପରି ? ସେତୁଟା ଯେ ମୋର ।

ଶଙ୍ଖଧର—ତେବେ ବର୍ତ୍ତମାନ ମୁକ୍ତିକାମକୁ ହତାକରି ପାରିଲେ ଖୁବ୍ ଭଲ ହୁଅନ୍ତା ।

ବଜ୍ରବାହୁ—ମୁଁ ତ ସେ କଥା ତୁମକୁ ବହୁବାର କହିଛି, ତୁମେ ଯତ୍ନ କର, ମୁଁ ବର୍ତ୍ତମାନ ତାର ଜୀବନଲୀଳା ଶେଷ କରି ଦେଇପାରେ ।

ଶଙ୍ଖଧର—ନା ବଜ୍ରବାହୁ ! ତୁମେ ତା କରନା, ମୁଁ ଏଠାକୁ ନେଇ ବନ୍ଦ କରିଆଣି ଖୁବ୍ ନୃଶଂସଭାବେ ହତ୍ୟା କରିବ !

ବଜ୍ରବାହୁ—ସେ ଇଚ୍ଛା ତୁମର ଜାଣେ ବୋଲି ତ ଏ ପର୍ଯ୍ୟନ୍ତ ତାକୁ ବଞ୍ଚାଇ ରଖିଛି । ଆଚ୍ଛା, କମଳା କ ତୁମର କଥାଟା ସ୍ୱୀକାର କରୁଛି ?

ଶଙ୍ଖଧର—ନିଶ୍ଚୟ କରିଛି । ସ୍ତ୍ରୀ ଲୋକ ତ ଆଉ କେତେ ଦିନ ସ୍ଥିରହୋଇ ରହିପାରେ

ବଜ୍ରବାହୁ—ଏଇଥିଲାଗି ସ୍ତ୍ରୀ ଜାତକୁ ମୁଁ ଅତ୍ୟନ୍ତ ଘୃଣା କରେ । ତେଣୁ ମୁଁ ଚିରକୁମାର ।

କମଳା—(ପ୍ରବେଶି) ତୁ ଶର କୁମାର ? ଶୈତାନ ତୁ ଅତି ଦୁର୍ଗନ୍ଧମୟ ଶବ ନରକ । ତୁ ଅତି ଘୃଣିତ, ନର ପିଶାଚ ! ଶକ୍ତିଧର ! ତୋର ମାତୃ ଆଦେଶ ପାଳନକର ବର୍ତ୍ତମାନ ଏ ନର ପିଶାଚକୁ ବଧକର ।

ବଜ୍ରବାହୁ—(ବିସ୍ମିତହୋଇ) ଏ କଅଣ ଶକ୍ତିଧର ?

ଶକ୍ତିଧର ଏଇ ତ ସଂସାର ବନ୍ଧୁ ! ଲୋଭେ ପାପ, ପାପେ ମୃତ୍ୟୁ, ଅତଃପରଃ ତୁମ୍ଭେ ମୋର ବନ୍ଦୀ ।

ବଜ୍ରବାହୁ—(କ୍ରୋଧେ) ବିଶ୍ୱାସଘାତକ ।

ଶକ୍ତିଧର – ବିଶ୍ୱାସ, ହଃ ହଃ ହଃ, ବିଶ୍ୱାସ !

ବଜ୍ରବାହୁ – ପ୍ରସ୍ଥାନର ପଥ ପରିଷ୍କାର ନ କରି ଶତ୍ରୁ ବ୍ୟୂହରେ ପ୍ରବେଶ କରି ନ ଥାନ୍ତି । ଶକ୍ତିଧର ! ଏ ରାଜପ୍ରାସାଦରେ ମୋର କିଛି ଅପରିଚିତ ନୁହେଁ । ଅନ୍ତଃପୁର ପଛ ପାଚେରି ଡେଇଁ ପଳାଇବି । ସେଠାରେ ମୋର ଦ୍ରୁତଗାମୀ ଅଶ୍ୱ ବନ୍ଧା ହୋଇଛି । ପାରତ ମୋର ଗତି ରୁଦ୍ଧ କର । (ଯିବାବେଳେ ଶକ୍ତିଧର ତାର ପଗଡ଼ି ଧରିପକାଇ ଝରନ୍ତ ଦେଲା )

ଶକ୍ତିଧର – ଉଗ୍ରସେନ ! ଉଗ୍ରସେନ,··· !

( ଉଗ୍ରସେନ ପ୍ରବେଶ )

ଅନ୍ତଃପୁର ପଛ ପାଚେରି ଡେଇଁ ପଳାଇଛି । ସେଠାରେ ତାର ଦ୍ରୁତଗାମୀ ଅଶ୍ୱ ବନ୍ଧାଅଛି । ଯାଅ, ଶୀଘ୍ର ଯାଅ, ତାକୁ ବଧ କର ନଚେତ୍ ସବୁ ବ୍ୟର୍ଥ !

କମଳା – ଶକ୍ତିଧର ! ମୁଁ ଆଉ କୌଣସି ପ୍ରମାଣ ଲୋଡ଼େଁ ନା । ମୁଁ ବେଶ୍ ବୁଝିପାରୁଛି, ରାଜା ମୁକ୍ତକାମର ଜୀବନ ଆଜ ବିପନ୍ନ । ସେ ଯେଉଁଠାରେ ଥାନ୍ତୁ, ତାଙ୍କୁ ଖୋଜ ଦେଖାଅ ।

ଶକ୍ତିଧର – ନୀରବ )

କମଳା – ଶକ୍ତିଧର ! ମୋର କୌଣସି କଥା କ ଶୁଣିପାରୁ ନାହଁ ?

ଶକ୍ତିଧର –(ଅନ୍ୟମନସ୍କଭାବେ) ହଁ, କଅଣ କହୁଛ ?

କମଳା – ମୁଁ କହୁଛି, ରାଜା ମୁକ୍ତକାମଙ୍କୁ ଅବିଳମ୍ବେ ଖୋଜ ଆଣ, ତାଙ୍କ ଜୀବନ ଆଜ ବିପନ୍ନ, ବଜ୍ରବାହୁ ତାଙ୍କୁ ହତ୍ୟା କରିପାରେ ।

ଉଗ୍ରସେନ—(ପ୍ରବେଶି) ଅଶ୍ୱ ଦଉଡ଼ାଇ ବହୁ ଦୂର ଚାଲିଯାଇଛି । ତାର ଗତିରୁଦ୍ଧ କରିବା ସମ୍ପୂର୍ଣ୍ଣ ଅସମ୍ଭବ ।

ଶକ୍ତିଧର – ତା'ହେଲେ ଶୀଘ୍ର ଯାଅ, ସୈନ୍ୟମାନଙ୍କୁ ଆଦେଶ ଦିଅ, ଅବିଳମ୍ବେ ସେତୁଗୁଡ଼ାକୁ ଅଧିକାର କରନ୍ତୁ ; ବଜ୍ରବାହୁ ଯେପରି ସେତୁର ଉପର ଦେଇ ସୈନ୍ୟ ଚଳାଇ ଆସି ନ ପାରେ । ଯାଅ, ଶୀଘ୍ର ଯାଅ ।

କମଳା – ଶକ୍ତିଧର ! ତେବେ ତୋର ମନରେ କୌଣସି ଦୁରଭିସନ୍ଧି ଅଛି ନା କଅଣ ? ଆଜ ମୁଁ ତୁମକୁ ବିଶ୍ୱାସ କରିପାରୁ ନାହିଁ । ମୁଣ୍ଡ ମୋର ଘୂରିଯାଉଛି !

ଶକ୍ତିଧର – କାହିଁକି ମା ?

କମଳା – କାହିଁକି ? ତୁମ୍ଭେ ବର୍ତ୍ତମାନ ରାଜା ମୁକ୍ତକାମର ସନ୍ଧାନରେ ଲୋକ ପଠାଉ ନା କାହିଁକି ? ବଜ୍ରବାହୁ ତାଙ୍କୁ ହତ୍ୟା କରିପାରେ ।

ଶକ୍ତିଧର—ନା, ତା କରିବ ନାହିଁ । ପଳାଇବା ସଙ୍ଗେ ସଙ୍ଗେ ବଜ୍ରବାହୁର ମତଲବ ବଦଳିଯାଇଛି । ବର୍ତ୍ତମାନ ତାର କାର୍ଯ୍ୟ ହେଉଛି ମୁକ୍ତକାମ ପକ୍ଷର ସଦ୍ଭାବ ସ୍ଥାପନ କରିବା ; ନଚେତ୍ ତାର ଅନ୍ୟ କୌଣସି ଉପାୟ ନାହିଁ ମା !

କମଳା – ତୁମର କୌଣସି କଥା ମୁଁ ସେପରି ଆଜ ବିଶ୍ୱାସ କରିପାରୁ ନାହିଁ । ମନେ ହୁଏ, ତୁମ୍ଭେ ସମସ୍ତେ ବିଶ୍ୱାସଘାତକ ।

ଶକ୍ତିଧର – ବିଶ୍ୱାସ କର ମା, ସନ୍ତାନକୁ ବିଶ୍ୱାସ କର । ମୁକ୍ତକାମର ଜୀବନ ଆଜ ବିପନ୍ନ ନୁହେଁ—ବିପନ୍ନ ତୁମର ଏହି ସନ୍ତାନର ଜୀବନ । ବଜ୍ରବାହୁ ଓ ମୁକ୍ତକାମ ମଧ୍ୟରେ ଯେ ଭେଦନୀତି ଖଟାଇ-ଆସିଥିଲି, ତା ଏକବାର ଆଜ ବ୍ୟର୍ଥ ହୋଇ-ଯାଇଛି । ବର୍ତ୍ତମାନ, ବର୍ତ୍ତମାନ ତା'ର ମିଳନ ହେବ । ସେ ମିଳନରେ ଯୋଗଦାନ କରିବେ ରାଜା ରତ୍ନେଶ୍ୱର । ଯୁଦ୍ଧ ଅନିବାର୍ଯ୍ୟ, ମୋର ମୃତ୍ୟୁ ଅନିବାର୍ଯ୍ୟ ।

କମଳା – ତେବେ ଶଙ୍କାବକୁ ତାର ବାବାଙ୍କ ନିକଟକୁ ପଠାଇଦିଅ ।

ଶଙ୍ଖଧର -ନା ନା, ବଜ୍ରବାହୁ ଶଙ୍ଖନାଦକୁ ହତ୍ୟା କରିବ । ଶଙ୍ଖନାଦ ଯେ ବଞ୍ଚିଛି, ସେ ମୁକ୍ତକାମ ଆଗରେ ଏ କଥା ପ୍ରମାଣ କରିଦେବ ନାହିଁ, ହେଲଣାରେ ନା !

କମଳା—ତା'ହେଲେ ଉପାୟ ?

ଶଙ୍ଖଧର—ମୋର ମୃତ୍ୟୁ ହେଲେ ହେଉ ରାଜଲକ୍ଷ୍ମୀ, ତୁମର ସତୀତ୍ୱ ଓ ପବିତ୍ରତାର ଏକମାତ୍ର ସାକ୍ଷୀ ଶଙ୍ଖନାଦ । ତାକୁ ଖୁବ୍ ସାବଧାନରେ ରଖ, ନୋହିଲେ ତୁମର ଜୀବନ ବିପନ୍ନ, ମୁକ୍ତକାମ ତୁମ୍ଭଙ୍କୁ ଅବିଶ୍ୱାସ କରିବ ।

( ସୁନନ୍ଦା ଶଙ୍ଖନାଦକୁ ଘେନି ପ୍ରବେଶ, ଶଙ୍ଖନାଦ-ମୁଣ୍ଡରୁ ଛୁରିକାଘାତରେ ରକ୍ତ ବାହାରୁଥାଏ । )

କମଳା—ଏ କ'ଣ ଶଙ୍ଖନାଦ ? ଏ କିପରି ହେଲା ?

ଶଙ୍ଖନାଦ—ଅନ୍ତଃପୁର ହେଇ ବଜ୍ରମାମୁଁ ବାହାରିଯିବା ଦେଖି ମୁଁ ତାଙ୍କ ସମ୍ମୁଖରେ ଛିଡ଼ାହେଲି । ସେ ମୋତେ ହଠାତ୍ ତରବାରିଦ୍ୱାରା ଆଘାତ କଲେ । ମା ! ମୁଁ ପ୍ରସ୍ତୁତ ନ ଥିଲି, ତଥାପି ଆତ୍ମରକ୍ଷା କରିଛି । ଏହାର ଅର୍ଥ କଅଣ ମା ?

ଶଙ୍ଖଧର—ବୁଝିଲ ରାଜଲକ୍ଷ୍ମୀ ! ବର୍ତ୍ତମାନ ବଜ୍ରବାହୁର ଅନ୍ତରର ଉଦ୍ଦେଶ୍ୟ ।

ଶଙ୍ଖନାଦ  ରକ୍ତସ୍ରାବରେ ଶରୀର ବଡ଼ ଅବଶ ହେଉଛି ମା ! ମୁଁ ତୋ କୋଳରେ ମଥା ରଖି ବିଶ୍ରାମ ନେବି ମା ! (କମଳା କୋଳକୁ ଆଣିଲ) । ଏ କି ଆଶ୍ଚର୍ଯ୍ୟ ଘଟଣା ମା ? ମୁଁ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ବଜ୍ରମାମୁଁଙ୍କ ନିକଟ ଦଉଡ଼ିଗଲି, ସେ କାହିଁକି ମୋତେ ଏପରି ଆଘାତ କଲେ ?

କମଳା—( କାନ୍ଦି କାନ୍ଦି ) ଶଙ୍ଖନାଦ ! ତୋର ବଜ୍ରମାମୁଁ ମନୁଷ୍ୟ ନୁହେଁ, ସେ ପଶୁ, ଅତି ଘୃଣିତ ପଶୁ ।

ଶଙ୍ଖଧର—ଚତୁର ଜନ ଶୋଚ୍ଛପଟା ରାଜଲକ୍ଷ୍ମୀ ! ଆଜ ହେଲା ତ୍ରୟୋଦଶୀ, କାଲି ହେବ ଏ ନାଟକର ଯବନିକାପାତ । କାଲି ସୂର୍ଯ୍ୟୋଦୟ ପୂର୍ବରୁ ଶୁଣି ପାରିବ ମୋର ବା ବଜ୍ରବାହୁର ମୃତ୍ୟୁ ହୋଇଛି । ଆମ୍ଭର ଏହି ଦୁଇ ଜଣଙ୍କ ମୃତ୍ୟୁ ଉପରେ ନିର୍ଭର କରିଛି—ମୁକ୍ତକାମ ସଙ୍ଗରେ ତୁମର ପୁନର୍ମିଳନ ବା ଚିରବିଚ୍ଛେଦ । ସୁନନ୍ଦା, ଶଙ୍ଖନାଦକୁ ଅନ୍ତଃପୁରକୁ ନେଇ ଶୁଶ୍ରୂଷା କର ।

( ସୁନନ୍ଦା ଓ ଶଙ୍ଖ ପ୍ରସ୍ଥାନ )

କମଳା—ଏ ଯୁଦ୍ଧର ଫଳ କଅଣ ହେବ ଶଙ୍ଖଧର ?

ଶଙ୍ଖଧର—ହୁଏତ ବଜ୍ରବାହୁର ମୃତ୍ୟୁ, ନ ହୁଏ ତ ମୋର ମୃତ୍ୟୁ । ମୁକ୍ତକାମର ଜୀବନରେ କୌଣସି ଆଶଙ୍କା ନାହିଁ ମା, ତୁମ୍ଭେ ନିଶ୍ଚିନ୍ତ ଥାଅ ।

କମଳା—ଯୁଦ୍ଧର ବର୍ତ୍ତମାନ ଅବସ୍ଥା କଅଣ ?

ଶଙ୍ଖଧର—ପ୍ରକୃତ ଯୁଦ୍ଧ ତ ବର୍ତ୍ତମାନ ହୋଇ ନାହିଁ, ଉଭୟ ପକ୍ଷର ଚେଷ୍ଟା ଚାଲିଛି କିପରି ସେତୁଟା ଅଧିକାର କରିହେବ । ଯେ ପାରିବ, ତାର ଜୟ ଓ ଯେ ନ ପାରିବ, ତାର ପରାଜୟ ସୁନିଶ୍ଚିତ ।

ସାଂବାଦିକ—ରାଜା,ଉଗ୍ରସେନ ଅତି ଅପୂର୍ବ କୌଶଳରେ ସେତୁଦ୍ୱାର ଅବରୋଧ କରି ବସିଛି । ବଜ୍ରବାହୁ ସେତୁ ଉପରେ ସୈନ୍ୟ ଚଳାଇ ଆସିପାରୁ ନାହିଁ । ( ପ୍ରସ୍ଥାନ )

ଶଙ୍ଖଧର—ମା ! ଆଜ ବୋଧ ହୁଏ ମୋର ଜୀବନର ଶେଷଦିନ । ଲୋକେ ଜାଣନ୍ତି ମୁଁ ପାଷଣ୍ଡ, ମୁଁ ନାସ୍ତିକ, ଅତ୍ୟାଚାରୀ । ଲୋକେ ଜାଣନ୍ତି ନାହିଁ ମୋର ହୃଦୟର ପରିଚୟ, ପ୍ରାଣର ଆକାଂକ୍ଷା ଓ ଅନ୍ତରର ବେଦନା !

ସାଂବାଦିକ—ରାଜା ମୁକ୍ତକାମ ସହସା ଯୁଦ୍ଧକୁ ଅଗ୍ରସର ହୋଇଛନ୍ତି ।

ଶଙ୍ଖଧର—ମା, ମୋର ଡାକରା ଆସିଛି, ଆଉ ତ ବେଶି ସମୟ ଅପେକ୍ଷା କରିପାରିବ ନାହିଁ, ସଂକ୍ଷେପେ ମୋଟାମୋଟି କଥା କହିଯାଉଛି । ଲୋକେ ମୋର ବାସ୍ତବ ପରିଚୟ ଜାଣନ୍ତି ନାହିଁ; କିନ୍ତୁ ମୁଁ ଜାଣେ, କେହି ଜଣେ ମହାପୁରୁଷର ଶର୍ମିଳ ଚରିତରେ ଏକ ବୁନ୍ଦା କାଳି ଲେପନ କରିବ ନାହିଁ ବୋଲି ଏପର୍ଯ୍ୟନ୍ତ ଗୋପନ କରି ରଖିଥିଲି, ମାତ୍ର ଆଜ ଆଉ ପାରିବି ନାହିଁ । ଅନ୍ତତଃ ତୁମ ନିକଟରେ ପ୍ରକାଶ କରିବାଟା ନିତାନ୍ତ ପ୍ରୟୋଜନ ହୋଇପଡ଼ିଛି । ମୋର ସୁନନ୍ଦାକୁ ତୁମ ନିକଟରେ

[illegible]; କିନ୍ତୁ ସାବଧାନ, ଶଙ୍ଖନାଦ ସଙ୍ଗରେ ତାର ପ୍ରତିବାଦ ଯେପରି ନ ହୁଏ ।

କମଳା—ସେ କପଟ କଥା, ସେ ଯେ ପରସ୍ପର ମଧ୍ୟରେ ଅତ୍ୟନ୍ତ ଭଲ ପାଆନ୍ତି ।

ଶଙ୍ଖଧର—ଏକମାତ୍ର ବିବାହ ଛଡ଼ା ମିଳାଇବା ଶ୍ରେୟର କି ଅନ୍ୟ କୌଣସି ଉପାୟ ନାହିଁ ମା ? ମୋର ମୃତ୍ୟୁପରେ ସେମାନଙ୍କୁ ବୁଝାଇଦିଅ, ସେ ଦୁହେଁ ଭାଇ ଭଉଣୀ, ତାଙ୍କ ମଧ୍ୟରେ ରକ୍ତର ସମ୍ବନ୍ଧ ଅଛି ।

କମଳା—କ'ଣ କହୁଛ ଶଙ୍ଖଧର, ରକ୍ତର ସମ୍ବନ୍ଧ ?

ଶଙ୍ଖଧର—ରକ୍ତର ସମ୍ବନ୍ଧ, ମୁକ୍ତକାମର ଯେ ପିତା, ମୋର ମଧ୍ୟ ସେ ପିତା । ତୁମ୍ଭେ ମୋର ଜ୍ୟେଷ୍ଠ ଭ୍ରାତୃବଧୂ । ମା ! ଏ ମୁହୂର୍ତ୍ତରେ ଜାତରକ୍ଷି କୁହ, ଏ ଜନ୍ମକଥା କାହାରି ଆଗରେ ପ୍ରକାଶ କରିବ ନାହିଁ, ଏପରି କି ମୁକ୍ତକାମ ଆଗରେ ମଧ୍ୟ ନୁହେଁ ।

କମଳା—ଶଙ୍ଖଧର ! ମୁଁ ତୋର ଜ୍ୟେଷ୍ଠଭ୍ରାତୃବଧୂ ? (କ୍ରନ୍ଦନ)

ସାମ୍ବାଦିକ—ରାଜା ! ଶତ୍ରୁସୈନ୍ୟ ରାଜଦୁର୍ଗମଧ୍ୟକୁ ପ୍ରବେଶ କରିଆସୁଛନ୍ତି, ଆମ୍ଭର ସୈନ୍ୟ ଛିନ୍ନ ଓ ଧ୍ୱସ୍ତ ହୋଇଯାଉଛନ୍ତି । ତେବେ ବୃଦ୍ଧ ଉଗ୍ରସେନ ଅତି କୌଶଳରେ ଯୁଦ୍ଧ କରୁଛନ୍ତି । (ପ୍ରସ୍ଥାନ)

ଶଙ୍ଖଧର—ମା ! ମୋର ଆହ୍ୱାନ ଆସିଛି; ଏ ଆହ୍ୱାନ ଯୁଦ୍ଧର ନୁହେଁ, ମୃତ୍ୟୁର । ଏ ସଂସାରରେ ଗୋଟିଏ ମାତ୍ର ବନ୍ଧନ ଥିଲା, ମୋର କନ୍ୟା ସୁନନ୍ଦା । ତାକୁ ଯିବାବେଳେ ସାକ୍ଷାତ କରିବି ନାହିଁ; ସେ ମୋତେ ଦେଖିଲେ କାନ୍ଦିବ । ମା, ତାକୁ ପ୍ରବୋଧ ଦେବ । ବିଦାୟ ଦିଅ ମା, ପଦଧୂଳି ଦେଇ ବିଦାୟ ଦିଅ ।

(ଯିବା ସମୟରେ ନାଗିନା ଧରିଲା)

ନାଗିନା—ଦେବତା, ମୁଁ ଯେ ଆସିଛି ତୁମର ପଦଧୂଳି ନେବାପାଇଁ ।

ଶଙ୍ଖଧର—ନାଗିନ ! ଏତେବେଳେ କାହିଁକି ଆସିଲୁ ? ମୁଁ ଯାତ୍ରା ସୁରୁ କରୁଛି ସେଇ ପଥେ, ସେ ପଥେ ମନୁଷ୍ୟର ଆଶା-ଆକାଂକ୍ଷା କିଛି ସଙ୍ଗରେ ଯିବ ନାହିଁ । ମୋର କହିବାର ଯା ଅଛି, ସବୁ ପଛରେ ପଡ଼ି ରହିଯିବ, ଯିବ ସଙ୍ଗରେ ଏହି ବ୍ୟର୍ଥ ଜୀବନର ଛାତିଫଟା ଦୀର୍ଘନିଃଶ୍ୱାସ ।

ନାଗିନା—ଆଜି ଗୋଟାଏ ଜୀବନ ଯିବ ସତ୍ୟ, ଏହି ଘର ଉପେକ୍ଷିତା ନାଗିନାର ଆତ୍ମା, ନିବେଦିତ ପ୍ରାଣ । ତୁମ୍ଭେ କି ମନେ କର, ନାଗିନା ତୁମର ମୃତ୍ୟୁପରେ ଏକଦିନ ବଞ୍ଚିପାରେ ?

ଶଙ୍ଖଧର—ତା' ହେଲେ ନାଗିନ ଅପେକ୍ଷା କର, ଯଥା-ସମୟରେ ମୋର ମୃତ୍ୟୁ-ସଂବାଦ ପାଇବ ।

(ପ୍ରସ୍ଥାନ କଲାବେଳେ ସୁନନ୍ଦା କାନ୍ଦି କାନ୍ଦି ବାବା ବାବା କହି ଧରିପକାଇଲା ଏବଂ ଶଙ୍ଖଧର ସୁନନ୍ଦାକୁ କୋଳ କଲେ ।)

ଶଙ୍ଖଧର—ନାଗିନ ! ଏ ମାତୃହରା କନ୍ୟାକୁ ଥରେ କୋଳ କର । ସୁନନ୍ଦା, ତୁ ତୋର ମା'କୁ ଚିହ୍ନିଛୁ ?

ସୁନନ୍ଦା—ମୋର ମା କିଏ ? ମୋର ଯେ ମା ଥିଲା, ସେ ଅତି ସୁନ୍ଦର ! ମୋର ମା କାହିଁ ?

ସାମ୍ବାଦିକ—ରାଜା ଉଗ୍ରସେନ ଆହତ ।

ଶଙ୍ଖଧର—(ସତ୍ରାସେ) ଉଗ୍ରସେନ ଆହତ ! ମରିବ କର୍ମୀ ନିର୍ଲୋଭ ସନ୍ନ୍ୟାସୀ, ମୋର ଜୀବନର ଚିର ଶୁଭଙ୍କର ଅଭିନ୍ନହୃଦୟ ବନ୍ଧୁ ଯାଅ ନା, ରହ ରହ, ତୁମର ବନ୍ଧୁ ତୁମ୍ଭ ସଙ୍ଗେ ଯିବ । ନାଗିନ, ମୁଁ ଯେବେ ନ ଫେରେ, ତେବେ ଏ ମାତୃହରା କନ୍ୟାର ଭାର ତୋତେ ଦେଇଗଲି । (ପ୍ରସ୍ଥାନ)

ସୁନନ୍ଦା—ମୋତେ ଛାଡ଼ିଦିଅ, ମୋ ବାବା ଯେଉଁଆଡ଼େ ଗଲେ, ମୁଁ ସେଆଡ଼େ ଯିବି । ମୋ ବାବା ଯୁଦ୍ଧକୁ ଗଲେ, କିଏ କାଳେ ତାଙ୍କୁ ମାରି ପକାଇବ ! ମୋତେ ଛାଡ଼ ।

ନାଗିନା—ଛି ସୁନନ୍ଦା ! ତୁମର ବାବା ଯେ ବୀର, ତାଙ୍କୁ କି କିଏ ମାରିପାରେ ? ସେ ବର୍ତ୍ତମାନ ଜୟ କରି ଫେରିବେ ।

ସାମ୍ବାଦିକ—ରାଜା ମୁକ୍ତକାମ ରାଜଗଡ଼କୁ ପଶିଆସୁଛନ୍ତି । ରାଜା ଶଙ୍ଖଧରଙ୍କ ଆଦେଶ, କେହି ତାଙ୍କୁ ବାଧା ଦେବେ ନାହିଁ ।

କମଳା—ଯାଅ, ସିଂହଦ୍ୱାର ବନ୍ଦ କରିଦିଅ । (ପ୍ରସ୍ଥାନ)

—*—

## ଦ୍ୱିତୀୟ ଦୃଶ୍ୟ

ବଜ୍ରବାହୁ ଓ ଶଲ୍ୟଧରର ଯୁଦ୍ଧ, ତରବାରୀକ୍ରୀଡ଼ା)

—*—

## ତୃତୀୟ ଦୃଶ୍ୟ

(ଶଙ୍ଖନାଦ ଶୃଙ୍ଖଳିତଭାବେ ପ୍ରବେଶ—ତା ପଛେ ପଛେ ସୁନନ୍ଦା)

ସୁନନ୍ଦା - ତୁମେ ଏଠାରେ କିପରି ହୋଇ ଛିଡ଼ା ହେଇଛ ଯେ ?

ଶଙ୍ଖନାଦ—ଆଉ କଅଣ କରିବି ସୁନନ୍ଦା, ମୁଁ ତ ଜୀବନରେ କୌଣସି ଦିନ ମା'ଙ୍କ ଆଦେଶ ଅମାନ୍ୟ କରି ନାହିଁ !

ସୁନନ୍ଦା—ତୁମର ମା'ଙ୍କୁ ଯଦି ତୁମର ବାବା ହତ୍ୟା କରନ୍ତି, ତେବେ··· ?

ଶଙ୍ଖନାଦ—ତା'ହେଲେ ମାତୃଦେହ ହେବ, ଚକ୍ଷୁର ଜଳରେ ହୃଦୟ ଭସାଇବି ।

( କମଳାକୁ ବନ୍ଧନ କରି ମୃତ୍ୟୁକାମ ପ୍ରବେଶ )

ମୃତ୍ୟୁକାମ—(ଶଙ୍ଖନାଦକୁ ଦେଖି କମଳାକୁ ଛାଡ଼ି ଶଙ୍ଖନାଦକୁ ଜୁଣ୍ଟାଇପକାଇଲେ ) ଶଙ୍ଖନାଦ, ତୁ ବଞ୍ଚିଛୁ ?

ଶଙ୍ଖନାଦ—(କମଳାଙ୍କ ବନ୍ଧନ ଖୋଲି) ବାବା ! କେଉଁ ଅପରାଧରେ ମୋ ମା'ଙ୍କୁ ବନ୍ଦ କରିଛ ?

ମୃତ୍ୟୁକାମ—ଶଙ୍ଖନାଦ ! ତୋର ମା ଯେ ପାପିଷ୍ଠା, ମୁଁ ତାକୁ ଅଗ୍ନିରେ ପୋଡ଼ି ମାରିବି । ଏ ଜୀବନରେ ଆଉ ମୁଖ ଦର୍ଶନ କରିବି ନାହିଁ ।

ଶଙ୍ଖନାଦ—ବାବା ! ତୁମେ ଭୁଲ ବୁଝିଛ, ପାପିଷ୍ଠା ମୋର ମା ନୁହେଁ, ପାପିଷ୍ଠ ମାମୁଁ ବଜ୍ରବାହୁ । ସେ ମୋତେ ହତ୍ୟା କରିବାକୁ ବସିଥିଲେ । ଏଇ ଦେଖନ୍ତୁ, ମୋର ମୁଣ୍ଡରେ ଆଘାତ କରିଥିଲେ । କେବଳ ଶଲ୍ୟଧରର ସାହାଯ୍ୟରେ ଆଜି ଏ ମୁଁ ବଞ୍ଚିଛି । ଦେଖିଥିବାକୁ ତାର ଅନୁଗ୍ରହକୁ ବଞ୍ଚିଛୁଁ ।

ମୃତ୍ୟୁକାମ—ସେ ତ କଥା ଶଙ୍ଖନାଦ, ମୁଁ ଯେ କିଛୁ ବୁଝିପାରୁ ନାହିଁ ।

( କମଳା ଧୀରେ ଧୀରେ ଉଠାଦେବାନ୍ତ । )

ମୃତ୍ୟୁକାମ - କେଉଁଆଡ଼େ ଯାଉ କମଳା ?

କମଳା—ସ୍ୱର୍ଗଲୋକେ । ମୁଁ ବର୍ତ୍ତମାନ ଯେଉଁଠାକୁ ଯିବି, ତା'ପରେ ନଭେ ଅଗ୍ନିଜାଳ ଖୋଜୁଥିବ । ତୁମେ କାହିଁକି ଦାସତ୍ୱ କରିବ ବୈଷ୍ଣବ-ଚୂଡ଼ାମଣି ? ଅନେକ ସାର୍ଥ ଅଛି ।

ମୃତ୍ୟୁକାମ—ସ୍ୱର୍ଗଲୋକକୁ ଯିବାପାଇଁ କାହିଁକି ଚାହିଁ ?

କମଳା—ଶଲ୍ୟଧରକୁ ବଞ୍ଚାଇବାକୁ ! ସେ ଯେ ତୁମର··· ନାଁ ନାଁ, ସେ ଯେ ତୁମର କେହି ନୁହେଁ, ସେ ଗୋଟାଏ ପିତୃମାତୃହୀନ ପଥର ଭିକାରୀ । ଏ ଜଗତରେ ତା'ର ଆପଣାର କେହି ନାହିଁ । ତେବେ ସୁଦ୍ଧା ତା'ର ମହତ୍ତ୍ୱ ଯେ କେତେ, ତା ତୁମେ ଜାଣ ନା । ବଜ୍ରବାହୁ ଯଦି ତାକୁ ହତ୍ୟା କରେ, ତା ହେଲେ ଦେଶ ପୋଡ଼ି ଭସ୍ମ ହୋଇଯିବ— ଏଠାରେ ପଡ଼ିରହିବ ଗୋଟାଏ ମହା ଶ୍ମଶାନ ।

ଶଲ୍ୟଧର—( ରକ୍ତାକ୍ତ ଦେହରେ ) ମା ! ମୁଁ ବଜ୍ରବାହୁକୁ ହତ୍ୟା କରିଛି ! ମୃତ୍ୟୁକାମ ! ତୁମର ରାଜ୍ୟ ଆଜି ନିଷ୍କଣ୍ଟକ ।

ମୃତ୍ୟୁକାମ—(ଆଶ୍ଚର୍ଯ୍ୟ) ଏ କଅଣ କମଳା ?

କମଳା—ମୋର ମୁହଁକୁ ଅନାଇପାରୁଛ, ଲଜ୍ଜା କରୁ ନା ? ତୁମେ ଯେ ପରମ ବୈଷ୍ଣବ, ରାଧାରମଣ ତୁମର ଉପାସ୍ୟ ଦେବତା । ରାଧାରମଣଙ୍କ ପଦ ଚୁମ୍ବି ପ୍ରତିଜ୍ଞା କରିଥିଲ, ଏ ଜୀବନରେ କାହା ଉପରେ ଅସ୍ତ୍ରାଘାତ କରିବ ନାହିଁ—ଏହା ହୋଇ ଗୋଟାଏ ସୁଦ୍ଧାନର ସାଙ୍ଗରେ ସହସ୍ର ସହସ୍ର ପ୍ରଜାଙ୍କ ପ୍ରାଣ ନାଶ କଲ ?

ମୃତ୍ୟୁକାମ—ମୁଁ ଯେ କିଛୁ ବୁଝିପାରୁ ନାହିଁ ଶଲ୍ୟଧର ? ମୋତେ ବୁଝାଇଦିଅ, ଆଉ କଅଣ ଶୁଣିଛୁ— କମଳା ତୁମର ମା ।

ଶଲ୍ୟଧର—ହଁ ମା', ମୁଁ ଯେ ପଶୁ, ପଶୁର ତ ଗୋଟାଏ ମା' ଥାଏ, ମୋର କାହିଁକି ମା ନାହିଁ ?

କମଳା—କଅଣ ବୁଝିବାକୁ ଚାହଁ ? ମୋ ମନରେ ଅହଙ୍କାର ଥିଲା, ତୁମେ ମୋତେ ଅବିଶ୍ୱାସ କରି-ପାରିବ ନାହିଁ । ତୁମେ ଯିବା ଶଲ୍ୟଧରକୁ ଚହ୍ନି ନାଁ, ମୋତେ କଅଣ ଚହ୍ନି ନାହଁ ? (ରୋଦନ)

( ସହସା ରତ୍ନେଶ୍ୱରଙ୍କ ପ୍ରବେଶ )

ରତ୍ନେଶ୍ୱର—ମୁକ୍ତବାସ ! ଏପର୍ଯ୍ୟନ୍ତ କନକାକୁ ଦେଖା ଦେଇ ନାହିଁ ? ମୁଁ ( ଅସ୍ତ୍ର ଉଞ୍ଚାଇବା ଓ ଶକ୍ତିଧର ବାଧାଦେବା ) । ଏହାର ଅର୍ଥ ମୁଁ କଏ କିଛି ବୁଝିପାରୁ ନାହିଁ ।

ମେଘନାଦ—ଅଜା ମହାଶୟ ! ମୁଁ ଆପଣଙ୍କୁ ସବୁ ବୁଝାଇଦେଉଛି । ଶକ୍ତିଧର ମନୁଷ୍ୟ ନୁହେଁ, ଦେବତା, ମୋର ମା ସ୍ୱର୍ଗୀୟା ଦେବୀ । ଶୁଣନ୍ତୁ, ବଜ୍ରାମାନୁ ଯେଉଁଠି ଦେଖିବା, ସେ ପାଷଣ୍ଡ ଓ ନରକ ! (ପ୍ରସ୍ଥାନ)

ରତ୍ନେଶ୍ୱର—ସତେ ବଜ୍ରାଘାତ ! (ପ୍ରସ୍ଥାନ)

ମୁକ୍ତବାସ—ଶକ୍ତିଧର ! ମୋତେ କ୍ଷମା କର ।

ଶକ୍ତିଧର—ରଜା ! ତୁମେ ତ ଜାଣ, ମୋର କୌଣସି ବଂଶପରିଚୟ ନାହିଁ; କିନ୍ତୁ ତୁମର ସ୍ୱର୍ଗୀୟ ପିତା ମୃତ୍ୟୁ ସମୟରେ ମୋତେ ତାଙ୍କ ମୃତ୍ୟୁଶଯ୍ୟାରେ ବସାଇ ମୋ କର୍ଣ୍ଣରେ ଗୋଟାଏ ଗୁପ୍ତମନ୍ତ୍ର ଦେଇଥିଲେ, ସେହି ମନ୍ତ୍ରବଳରେ ମୁଁ ଆଜି ମନୁଷ୍ୟ ହୋଇଉଠିଛି । ମୋର ହୃଦୟ-ରକ୍ତରେ ପବିତ୍ରତାର ଆସ୍ୱାଦନ କରୁଛି ! ତୁମେ ତ ଜାଣ ନା ମୁକ୍ତବାସ, ମୋ ପ୍ରାଣରେ ଆଜି କି ଆନନ୍ଦ । ଏ ରାଜ୍ୟ ଆଜିଠାରୁ ତୁମର । ମୁଁ ଆସେ ମା ! ବିଦାୟ, ଆଜି ମୁକ୍ତିର ବନ୍ଧନ ଓ ଶକ୍ତିର ମୁକ୍ତି !

( ତରବାରି ଫିଙ୍ଗି ସୁନନ୍ଦା ନାଗିନାକୁ ଘେନି ପ୍ରସ୍ଥାନ )



# ନିର୍ମଳ-ପ୍ରଭା

## ଗୀତାଭିନୟ

### ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ନିର୍ମଳ—ମନ୍ତ୍ରି ! କଣ୍ଠା ଆଜ ବାମନେତ୍ର ମମ ସ୍ଫୁରେ ଘନ ଘନ । କେ ଜାଣେ କି ଅମଙ୍ଗଳ ଘଟିବାରେ ଅଛି ।

ପ୍ରଭାକର—ମନ୍ତ୍ରି ! କୌଣସି ବିପଦର ଆଶଙ୍କା ।

ନିର୍ମଳ - ନା ବନ୍ଧୁ, ତୁମ୍ଭେ ଯେତେବେଳେ ମୋ ନିକଟରେ ଅଛ, ମୋର କୌଣସି ବିପଦକୁ ଭୟ ନାହିଁ ।

ପ୍ରଭାକର—ବନ୍ଧୁ ! ବାମନେତ୍ର ଅଧୋଭାଗରେ ଅଧିସ୍ଥାନ ସ୍ଫୁରିଲେ ଅଙ୍ଗପୀଡ଼ା, ଊର୍ଦ୍ଧ୍ୱସ୍ଥାନ ସ୍ଫୁରିଲେ ମାନହାନି, ନେତ୍ରପ୍ରାନ୍ତେ ଧନହାନି ଓ କୋଣେ ବନ୍ଧୁନାଶ ।

ନିର୍ମଳ - ସେଥିପାଇଁ ଶୋଚନା ନାହିଁ, ଯାହା ଘଟିବାର ଅଛି, ଅବାଧରେ ସହ୍ୟ କରିବା ।

ପ୍ରହରୀ—ମହାରାଜ ! ଦେଖିଲେଣି ନା, ଏ କିଏ ? ଦୂତ ବାହକ ଅଶ୍ୱ ବେଗରେ ଆସୁଛି ।

(ଦୂତ ପ୍ରବେଶି ଅଭିବାଦନ)

ନିର୍ମଳ—ଦୂତ ! କିବା କାର୍ଯ୍ୟେ ଆଗମନ ତୋର ! ପ୍ରକାଶ, ସନ୍ଦେହ ହୁଏ ମନରୁ ଆମ୍ଭର, ପିତା ମାତା ଭଲ ତ ଥିଲେ ?

ଦୂତ—ଯୁବରାଜ ! ସମସ୍ତ ମଙ୍ଗଳ, କେବଳ ଆପଣଙ୍କୁ ରାଜସଭାକୁ ନେବାପାଇଁ ରାଜାଙ୍କର ଅନୁମତି ନେଇ ଆସିଛି ।

ନିର୍ମଳ—ମନ୍ତ୍ରି ! କିବା ଅଭିଳାଷେ ଡକାଇଲେ ତାତ ଉଠିଲାଣି ସନ୍ଦେହ ମୋ ମନେ, ତୁମ୍ଭ ଆମ୍ଭ ମିତ୍ର ଭାବ ତୁଟାଇବା ଆଶେ ଅନୁକ୍ରମେ କରୁଛନ୍ତି ଚେଷ୍ଟା । କେଜାଣି କି କପାଳରେ ଘଟୁଅଛି ଆଜ । ଜାଣ ମିତ୍ର, ଯେ ପର୍ଯ୍ୟନ୍ତ ଅଛୁ ମୁହିଁ ପ୍ରାଣରେ ଜୀବିତ, ସେ ପର୍ଯ୍ୟନ୍ତ ନ ପାରେ ମୁଁ ତୁମ୍ଭ ସ୍ନେହ ତ୍ୟଜି, ଯିବି କେବେ ପିତାଙ୍କ ନିକଟ ।

( ରାଜାଙ୍କ ନିକଟେ ପ୍ରବେଶି ପ୍ରଣିପାତ )

ରାଜା—ବାପ ନିର୍ମଳ ! ମୋର ଏ ବୃଦ୍ଧ ବୟସେ କଣ୍ଠା ଦେଇ ଏତେ କଥା, ଏ ରାଜ୍ୟଶ୍ରୀ ତୁଚ୍ଛ କେବେଣେ ରାଜ ମୁକୁଟ ମଣ୍ଡିତ ହେବା ନ ଶୋଭଇ ଆଉ, କାଳ ପ୍ରାତେଃ ଯୌବରାଜ୍ୟେ ଅଭିଷିକ୍ତ କରାଇବ ତୋତେ, କରିଛି ମାନସେ, ଆସ ବାପ, କୋଳକୁ ମୋହର ।

ନିର୍ମଳ—ତାତ ! ମୁକୁଟ ମଣ୍ଡିତ ରାଜଶିର ନୋହେ ଶାନ୍ତିର ଆସ୍ପଦ । ସଦାବେଳେ ଚିନ୍ତାକୁଳେ ଦଗ୍ଧ ଥାଏ ହୃଦ । ସିଂହାସନେ ଗଲେ ଗର୍ବ ଦମ୍ଭ ଅଭ୍ୟାସ ଆକର୍ଷଣେ ବାନ୍ଧିପାରେ ହୃଦ, ପୁଣି ବାଧାଦେବ ବନ୍ଧୁତାରେ ମୋର । ଲୋଡ଼ା ନାହିଁ ତାତ, କର ଅନ୍ୟ ପ୍ରତିକାର ।

ରାଜା—ମୂର୍ଖ ! ଅନ୍ୟ ପ୍ରତିକାର କରିବ । ମୁଁ ପିତା, ତୁ ପୁତ୍ର । ତୁ ମୋର କଥା ଅମାନ୍ୟ କରୁଛୁ ସାମାନ୍ୟ ସାଧବ ପୁତ୍ରର ସଙ୍ଗରେ ପଡ଼ି । ମୋର ଆଜ୍ଞାର ଅବଜ୍ଞା, ଆଜ୍ଞା କେ ଲୋକେ ରକ୍ଷା କରିବ ଦେଖିବ ।

ଗୀତ

(ଜୟ ଦୁର୍ଗ ଏ କ ବଟେଶ୍ୱର — ବୃତ୍ତେ)

ଜମିଲ ତୁ କୁଳଙ୍ଗାର କ ଜଲ୍ ମୋ ବଥା ଭାଳେ ।
ଧିକ ସେ ବିଧାତା ତୋତେ ଜନ୍ମ ଦେଲ ମୋର କୋଳେ ।

ରେ ମୂର୍ଖ ! ତୋତେ ବିଧାତା ମୋ କୋଳରେ ଜନ୍ମ ଦେଇଥିଲା, ସେ ଏଡ଼େ ଅବିବେକ ।

ଗୀତ

ଦେଖକୁ ଦେଖ ମୋ ବୁଦ୍ଧି ବିଭ୍ରମ କଲଣି ବିଧି,
ଦେଖ ମୂଢ଼ ରଜଂଗାଦ ଭଞ୍ଜିବ ଅବନେଦଭ । ୧ ।

କୁଳାଙ୍ଗାର ! ତୋତେ ବିଧାତା ବପଷ ଦେଇଲାଣି; ନଚେତ୍ ଏପରି କୁବୁଦ୍ଧି ଘଟନ୍ତା ନାହିଁ । ରାଜଦ୍ରୋହୀ ହେବାର ଶାସ୍ତି ବର୍ତ୍ତମାନ ଭୋଗକର ।

ଗୀତ

ରଜ କୁଳର କଳଙ୍କ ସୃଷ୍ଟି ନାହିଁ ତୋର ମୁଖ,
ଦୁରାତ୍ମା ତୁ ଅବିବେକ ସୁଖ ନାହିଁ ତୋ ଭଗାଳେ । ୨ ।

ମୂର୍ଖ ! ଏ ରାଜବଂଶରେ ତୁ ଗୋଟିଏ ଅକୁଳା ଜନ୍ମ ହୋଇଥିଲ । ଦୁରାତ୍ମା, ତୋର ଆଉ ମୁଖାବଲୋକନ କରିବ ନାହିଁ ! ( ଦୂତ ପ୍ରତି )

ଗୀତ

ବିଳମ୍ବ ନ କର ଦୂତେ ନେଇଯାଅ ଏ ମୁହୂର୍ତ୍ତେ ।
ଦେଶାନ୍ତରେ ଛାଡ଼ ଦୂତେ ବାଳକୃଷ୍ଣ ସଦା ଭଣେ । ୩ ।

କୁଳାଙ୍ଗାର ! ରାଜଦ୍ରୋହୀ ! ନାହିଁ ତୋତେ ଭଲଗତ ଆଉ । ଦୂତ ! ଅବିଳମ୍ବେ ଦେଶାନ୍ତରେ ଛାଡ଼ ଏ ପାଷଣ୍ଡ, ଅଯୋଗ୍ୟ ଏ, କୁଳଟି ରାଜପଦେ ଯୋଗ୍ୟ ।

ଦୂତ — ଯେ ଆଜ୍ଞା ମହାରାଜ ।

ନମିଳ — ଭବା ଦୋଷେ ଦେଉଛନ୍ତି ଏ ଅଧିନେ ଦଣ୍ଡ, ଦେଇ ଥରେ ଦର୍ଶନ ମୋହର ।

ଗୀତ

( ଗୀତପଟ ଧ୍ରୁ — ବୃତ୍ତେ )

ଜୟ ଜୟ (ହେ) ତାତ ନ ଦେଖ,
                    ମିତ ଭଲ ତୁମ୍ଭ ଚରଣେ ।
ଦେଖୁଛ କ୍ଷାନ୍ତ ଜମ୍ମ ଭରତ,
                    ଜଣ୍ଟଳ ନ ଜୀବନେ । ପଦ ।

ତାତ ! ଆପଣଙ୍କ ଚରଣ ତଳୁ ଏ ଅଧୀନ ଅନ୍ତର ହୋଇ ସତେ ଜଣ ବଞ୍ଚିପାରିବ ।

ରଜା — ମୂର୍ଖ, ଜଣ୍ଟଳେ ଜେତେ ମଲେ ଜେତେ, ମୁଁ ତୋର ଅବିନୟ ଦେଖିବାକୁ ଚାହେଁ ନା ।

ନମିଳ —

ଗୀତ

ପ୍ରାଣ ଅଧିକ କର ଆଜ ତୁଅ ଭଗାରି ।
ତାତ କୁହେ ମୁଁ ଅର ଗୁହାରି ଶୁଣନ୍ତୁ ଯଣେ ।

ପିତା ! ଏ ସାମାନ୍ୟ କଥାରେ ଏତେ ଗୁରୁତର ଶାସ୍ତି ! ମୁଁ ତ କୌଣସି ଅପରାଧ କରିନାହିଁ । ଯଦି ଭ୍ରମକଶତଃ ଶ୍ରୀପଦ୍ମରେ କୌଣସି ଦୋଷ କରିଥାଏ, ତାହା ବାତ୍ସଲ୍ୟ ପ୍ରେମରେ କ୍ଷମା କରନ୍ତୁ ।

ରଜା — ଯଦି କ୍ଷମା ଚାହୁ, ତୁରନ୍ତ ଆଜଠାରୁ ସେହି ଶଠ ଭଣ୍ଡିକପୁଣ୍ୟ ପ୍ରଭାକର ମଇଁତର ସଙ୍ଗ ।

ନମିଳ — ଜନ୍ମ ପିତଃ, ଛାଡ଼ିବାକୁ ଏଡ଼େ ନମିଳ ପ୍ରେମ ତବ ଏତେ ଯନ୍ତ୍ର କମା ? କହିନାହୁଁ କ କରୁନାହୁଁ ମିଳ ଦେଖ ଅନସ୍ତ୍ର ଭାହାର । କ୍ଷଣ ତାହା ସ୍ପଷ୍ଟ କହିନାହୁ ପ୍ରବଞ୍ଚନା ଭାବ୍ରି ସଦା ସ୍ପଷ୍ଟ ବ୍ୟବହାର, ଧନ୍ଦ୍ରିଛୁ ଚରଣେ ତାତ ନ କର ଭାରଣ ଆଜ ଯାହା ପ୍ରାଣର ନିପୁତ ।

ଗୀତ

ମିତ୍ର ଗାବ ଜୀବନ ତ ତେ ନାହିଁ ଟି ଆନ ।
ବାଳକୃଷ୍ଣ ଭଣେ ଆଜ୍ଞା ଦିଅ ଯେ ପ୍ରାଣେ । ୨ ।

ମିତ୍ର ବିନା କ୍ଷଣେ ମୁହଁ ନ ପାରଇ ବଞ୍ଚି, ଜୀବନେ ମରଣେ ଏକା ସେହି ବାନ୍ଧବ ମୋହର ।

ରଜା — ଦୂତ ! ନେଇଯାଅ ଅକୁଳାକୁ ଶତ୍ରୁ ମୋହର ।

ଦୂତ — ଯେ ଆଜ୍ଞା ମହାରାଜ ।

—*—

ପାର୍ଶ୍ୱ

( ମଃଷ୍ଟି ବେନୁଆ ମା — ବୃତ୍ତେ )

ପୁରୁଷ — ସୁନା ଦୋହର ଭ୍ରଣା ଭରୁ ମନ ଭାହିଁଲ ।
ସ୍ତ୍ରୀ — ଟଣାଟଣି ଦେଲ ଏ ତ ଜଣା ନାହିଁ କି ?
ସ୍ତ୍ରୀ — ଛିଁ ଛିଁ ବେ ଅମିତ ଭରେଣି ତ କଥା ।
ପୁ — ତୋ ହଂସା ଉଡ଼ୁଛି ବଡ଼ ଭାହିଁ ପାରିଲ ।

ସ୍ତ୍ରୀ—ସୁନା ବାପ ମୋହର ନାହାନ୍ତି ତ ଘରେ ।
ପୁ—ବଖଲ ଚଡ଼କ ଦେବ ମୁଣ୍ଡ ଉପରେ ॥
ସ୍ତ୍ରୀ—ରେ' ଦଉଲ ମୋତେ କଣ ଲେଖିବ ଅମିନ ।
ପୁ—ଆଉକ ଖଞ୍ଜା ହୋଇଛୁ ପର ବନ୍ଧୁ ର ॥
ସ୍ତ୍ରୀ—ହଉ ରେ ତୋତେ କଣ ଉପର ତଳେ ଲେଖିବ ଅମିନ ?
ପୁ—ଆଲୋ, ମୁଁ ଥାଉ ଥାଉ ତୁ କଣ ହେବୁ ସର୍ବସାଧାରଣ ।
ସ୍ତ୍ରୀ—ସର୍ବସାଧାରଣ ହେଲେ ମୋର କଣ ହେବ ତ୍ରୁଟି ।
ପୁ—ଆଲୋ ଘର ସମ୍ପତ୍ତି କ ଘର ନ ଖାଇବ ଗାଁ ବାଲା ନେବେ ବାଣ୍ଟି ।
ସ୍ତ୍ରୀ—ହଉରେ, ସୁନାବାପ ଯେବେ ଉଦ୍ଧଷେ ତେବେ କଣ ହେବ ।
ପୁ—ଆଲୋ ସେ ଆସୁ, ମୁଁ କଣ ସହଜେ ଛାଡ଼ୁଛି । ଆବେଦନ ଗୋଏ ଖୋଜନ, ଗୋଏ ତେଲଣ ନୋହିଲେ ଅଦାଲତ ଯାଏ ଯିବ ।

( ଉଭୟଙ୍କ ପ୍ରସ୍ଥାନ )

—*—

( ଦ୍ୱିତୀୟ ଦୃଶ୍ୟ )

ନର୍ମଦ—ମଳୟ ! ଏବ ହୋଇଗଲାଣି ଆସି ଦିବା ଅବସାନ । ଦିନକର ମହାନନ୍ଦେ ଅସ୍ତାଚଳେ କଲେଣି ଗମନ । ସନ୍ଧ୍ୟାଦେବୀ ମନର ଇଚ୍ଛାରେ ପିନ୍ଧି କଳା ଛିଟ ଶାଢ଼ୀ ଧରା କୋଳେ ହେଲେ ଉପସ୍ଥିତ । କୁମୁଦିନୀ ଧନ୍ୟ ସରସୀ ଜଳରେ ଟେକିଲେଣି ମଥା । ଦକ୍ଷ ପ୍ରଭ ଆଗେ, କୋଟି କୋଟି ତାରା ବିମଣ୍ଡିତ ନକ୍ଷତ୍ର ଖଚିତ ଗଗନରେ ହିମାଂଶୁ ଉଦିତ ହେଲେଣି । ଏଣେ ଶର୍ବରୀର ମାତମନେ ଅରୁଣା ହେଲେଣି ଲତାରଣ୍ୟତ । ବଡ ମିତ୍ର ! କ ଇଛାପୂ କରତ ଏଣିକି ।

ଗୀତ

( ଆଜ ସିନ୍ଧ—ଭୃଙ୍ଗେ )

ଗଲେଣି ଅସ୍ତାଚଳେ ଦେବ ଦିନମଣି ।
ଚିତ୍ରପୁରା ଲତା:ରଣ୍ୟ ଅରୁଣା ହେଲାଣି । ୧ ।

ମଳୟ ! ବର୍ତ୍ତମାନ ଶର୍ବରୀଙ୍କର ଆଗମନରେ ଚତୁର୍ଦ୍ଦିଗ ଅନ୍ଧକାରମୟ । ଆଉ ତ ପଥ ଦେଖାଯାଉ ନାହିଁ ।

ପ୍ରଭ—ହଁ ମଳୟ, ରାତି ମାଡ଼ ଆସିଲାଣି ।

ନର୍ମଦ— (ଗୀତ)

ନକ୍ଷତ୍ର ମଣ୍ଡିତ ଚନ୍ଦ୍ର ଶୋଭ ଗଗନରେ
ହସି ହସି ଚାହିଁଲେଣି ଧରଣୀ ମଣ୍ଡଳେ । ୧ ।

ମଳୟ ! ଦେଖିଲ, ଏ ସୁନୀଳାକାଶେ ଚନ୍ଦ୍ର ତାରକାଗଣେ ନକ୍ଷତ୍ରମାନେ ମଣ୍ଡିତ ହୋଇଥିବାରୁ ପ୍ରକୃତି ଦେବୀ କପରି ହସିଲାପରି ଦେଖାଯାଉ ଅଛନ୍ତି ।

ପ୍ରଭ—ମଳୟ ! ସେ ଶୋଭାରୁ ଆମ୍ଭମାନଙ୍କୁ କଣ ମିଳିବ !

ନର୍ମଦ— ଗୀତ

ନିଶା ଦେବୀର ଆଗମେ ନିଶାଚରଗଣରେ ।
କୋଳାହଳେ ଯେଣ୍ଟା ବାସୁଁ କଲେଣି ଗମନ ।୨।

ମଳୟ, ଦେଖିଲ ହିଂସ୍ର ଜନ୍ତୁମାନେ କପରି ଚିତ୍କାର କରି ସେ ସାହାର ବସାମାନଙ୍କରୁ ଖାଦ୍ୟ ଅନ୍ୱେଷଣ କରି ବାହାରିଲେଣି ।

ପ୍ରଭ—ମିତ୍ର, ବର୍ତ୍ତମାନ ଆମ୍ଭେମାନେ କେଉଁଆଡ଼େ ଯିବା ।

ନର୍ମଦ— (ଗୀତ)

ପଥଶ୍ରମ ନିଦ୍ରା, ତନ୍ଦ୍ରା ଲାଗିଲାଣି ମୋତେ ।
କଡ ଭ ଉପାୟ ମିତ୍ର ବାଳକୃଷ୍ଣ ଚନ୍ଦ୍ରେ । ୩ ।

ମଳୟ ! ପଥଶ୍ରମ ବାଧାରେ ମୋହ ଶରୀର ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଲାଣି । ମୁଁ ଆଉ ଚାଲିପାରିବ ନାହିଁ । ଏଣେ ବ ଅନ୍ଧାରରେ ପଥ ଆଉ ଦେଖା ଯାଉନାହିଁ । ମୁଁ ଏଠାରେ ବିଶ୍ରାମ କରୁଛି, ତୁମ୍ଭେ ଟିକଏ ବସ । ପରେ ତୁମ୍ଭେ ବିଶ୍ରାମ ନେବ, ମୁଁ ବସିବ ।

ପ୍ରଭ—ହଉ ମଳୟ ! ବିଶ୍ରାମ କରନ୍ତୁ ।

(ଗୋଟିଏ ଅପ୍ସରୁଣୀର ପ୍ରବେଶ)

ଅପ୍ସରୁଣୀ—(ସ୍ୱଗତ) ଉଃହୋ, ଆଉ କେତେଦିନ ବଞ୍ଚିବ ମୁଁ ନରକାରେ ରହି । ଉଃଆମର ଦେହ ପ୍ରାପ୍ତ ନ ଖାଇଲି ଆହାର ଗୋଟିଏ । ଆଜ ବସ ସବୁଛି ମୋ କର୍ମ ଦେଖ । ଯାଉ !-ଏ କଣ, ନରମାଂସ ଗନ୍ଧ କୁଏ ନାହିଁ ! କେହି ବ ପଥିକ ପଥଶ୍ରାନ୍ତେ ରହିଛି ଏ

କଲେ । ଯାଇ ଦେଖେଁ (ଇତସ୍ତତଃ ନିରୀକ୍ଷଣ କରି, ଏଇ ତ ସେ ବଟବୃକ୍ଷ ସମୀପରେ ଦୁଇଜଣ । ଜଣେ ନିଦ୍ରାରେ ଅବଶ ଅନ୍ୟଟି ଜାଗ୍ରତ । ତେବେ ବଡ଼ ସୁଯୋଗ ପଡ଼ିଛି ମୋତେ । ଲୁପ୍ତ ହେବ ନଷ୍ଟେ ଆଜ ତାପିତ ପରାଣ । ଦେଖେ କିଦ୍‌ କେଣେ ଯିବ ତାଙ୍କ ପାଶ ।

(ମାୟାରେ ଷୋଡ଼ଶୀ ଯୁବତୀ ରୂପରେ ଗମନ)

ପ୍ରଦ୍ୟ—(ସ୍ୱଗତ) ଏ କଣ, ଜଙ୍ଗଲଟା ମାଡ଼ମାଡ଼ ହେଉଛି କାହିଁକି । କେଉଁ ଆଡ଼ୁ ଜଣେ ଆସିଲା ପରି ଅଦୃଶ୍ୟରେ ପଲ୍ଲବର ମର ମର ଶବ୍ଦ ଶୁଣାଯାଏ । ଦେଖାଯାଉ, ଚନ୍ଦ୍ରାଲୋକିତ ପଡ଼ୁଛି, ଅବଶ୍ୟ ରୂପଟି ଦେଖିପାରିବି । ଏଇ ତ ଜଣେ ସୁନ୍ଦରୀ ସ୍ତ୍ରୀ ଦୃଷ୍ଟେ ଆସୁଛି, ସ୍ୱାର ରୂପଲାବଣ୍ୟ କୋଟି ମନ୍ମଥ ବାମାକୁ ନିନ୍ଦା କରୁଛି । ଏ ଏତେ ରାତ୍ରରେ ଏ ଜଙ୍ଗଲ ମଧ୍ୟକୁ ଆସିଲା କିପରି ?

ମା: କାମିନୀ—(ସ୍ୱଗତ) ଏମାନେ କେଉଁ ରାଜପୁତ୍ର ହେବେ ଟି, ଏମାନେ ଯୌବନର ଦ୍ୱାର ଦେଶରେ ଉପଗତ । ଏମାନେ ମୋତେ ଦେଖିଲେ ନିଶ୍ଚୟ ମଦନ ଜ୍ୱାଳାରେ ଅସ୍ଥିର ହୋଇ ପଡ଼ିବେ । ଯାଉଛି, ଭ୍ରୂଭଙ୍ଗୀ ଦ୍ୱାରା ପ୍ରେମର ଆକାଙ୍କ୍ଷା ଦେଖାଇ ସେମାନଙ୍କୁ ଆହାର କରିବି ।

ପ୍ରଦ୍ୟ—କିଏ ତୁମ୍ଭେ ସୁନ୍ଦରି ! ତୁମ୍ଭର ପରିଚୟ ?

ମା: କାମିନୀ—ନାଗର । ମୋର ଘର ଏ ଜଙ୍ଗଲ ମଧ୍ୟରେ, ମୁଁ ଗୋଟିଏ ରାଜକନ୍ୟା । ମୋର ପିତା ମାତା ମରିଗଲାରୁ ଭ୍ରାତାମାନେ ନିର୍ବାସିତ କରିଛନ୍ତି । ଏଣୁ ମୁଁ ଏକାକିନୀ ଏ ନିବିଡ଼ ଜଙ୍ଗଲ ମଧ୍ୟରେ ବାସ କରୁଛି ।

ପ୍ରଦ୍ୟ—ଏତେ ରାତ୍ରରେ ଜଙ୍ଗଲରେ ଭ୍ରମଣ କରୁଛ, ତୁମ୍ଭକୁ ଭୟ ଲାଗୁ ନାହିଁ ।

ମା: କାମିନୀ—ଭୟ କଣ, କିମ୍ପାଁ ଆଦର ରହିଛି । ଭୟ ଯେବେ କରିବ ତାକିବ ଉପରି । ନାଗର, ତୁମ୍ଭକୁ ଦେଖି ମୋ ମନରେ ଗୋଟିଏ ଆଶାର ସଞ୍ଚାର ହେବାରୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଇଚ୍ଛା କରେ ।

ପ୍ରଦ୍ୟ—କି ପ୍ରଶ୍ନ ପ୍ରକାଶ କର ।

(ଗୀତ)

(ହେ ଆମା—ରୁଢ଼େ)

ମା: କା:—ହେ ନବନାଗର କର୍ଣ୍ଣା ବନରେ
କସିଛ ଏତେ ନଶାର

ପ୍ରଦ୍ୟ—ଶୁଣଲେ ତରୁଣୀ କସ ତୁ ବଖାଣି କମ୍ପି
ଆମ୍ଭର ନାରଖାର ॥

ମା: କା:—ହେ ନାଗର ! ଏତେ ରାତ୍ରରେ ଏ ଜଙ୍ଗଲ ମଧ୍ୟରେ ତୁମ୍ଭେ ଏକାକୀ ବସିଛ କାହିଁକି ? ପୁଣି ଏ ଯେ କୋଳରେ ଶୋଇଛନ୍ତି ସେ କିଏ ?

ପ୍ରଦ୍ୟ—ସୁନ୍ଦରୀ ! କର୍ମ ଦୋଷରୁ ଏ ଦଶା ଭୋଗ କରିବାକୁ ପଡ଼ୁଛି ।

ମା: କା:— (ଗୀତ)

ରାଜସୁତ ପରିଏ ବେଶ
ବନେ କମ୍ପା ପାଉଛ କ୍ଲେଶ,

ପ୍ରଦ୍ୟ—ଶୁଣ ରେ ନାରୀଶ ପିତା କରି ରୋଷ
ଦେଇଛନ୍ତି ଦେଶାନ୍ତର ।

ମା: କା:—ନାଗର ! ତୁମ୍ଭମାନଙ୍କ ରୂପରୁ ମୁଁ ଅନୁମାନ କରୁଛି, ତୁମ୍ଭେ ରାଜପୁତ୍ର, ତେବେ ଏ କାନନ ମଧ୍ୟରେ ଏପରି କଷ୍ଟ ଭୋଗ କରୁଛ କାହିଁକି ?

ପ୍ରଦ୍ୟ—ସୁନ୍ଦରୀ ! ପିତାଙ୍କର ଗୋଟିଏ ଆଦେଶ ପାଳନରେ ତ୍ରୁଟି କରିଥିବାରୁ ଏ ଦଣ୍ଡ ଭୋଗ କରୁଛୁଁ ।

ମା: କା:— ଗୀତ

ଭଲେଁ ମୋର ହେଲା ସୁଫଳ
ଭେଟିଲି ଯା ପ୍ରିୟର,

ପ୍ରଦ୍ୟ—କହ ରମଣୀ ଅଶୟ ମୋହର
କିବା ଅଭିଳାଷ ତୋର । ୨ ।

ମା: କା:—ନାଗର ! ଆଜି ରାତ୍ରଟା ମୋର ବଡ଼ ସୁଯୋଗରେ ଆସିଥିଲା, ଯାହା ଆପଣଙ୍କୁ ଭେଟିଲି । ଏଇ ମୋର ମହାନନ୍ଦ ଓ ଗର୍ବର କଥା ।

ପ୍ରଦ୍ୟ—ସୁନ୍ଦରି ! ପ୍ରକାଶ କର ଆମ୍ଭଦ୍ୱାରା ତୁମ୍ଭର କି କାର୍ଯ୍ୟ ସାଧିତ ହୋଇପାରେ ।

ମା: ଭା:— ଗୀତ

ତରୁଣୀ ମୂର୍ତ୍ତି ଅବଳା,
 ଭୂଞ୍ଜାନ୍ତୁ ମୋ ବିରହ ଜ୍ୱାଳା ।

ପ୍ରଭା—ହେ ପ୍ରେମଶିକା ଆଉ ନ ବଳା
 ଉଠ ମଳୟ ମୋହର ।

ମା: ଭା:—ନାଗର ତୁମ୍ଭେ ନବଯୁବା ମୁଁ ନବୀନ ଯୁବତୀ । ଆସନ୍ତୁ ଏ ଜଳଳ ମଧ୍ୟରେ ପ୍ରେମାଳାପ କରି ଜୀବନ ଧନ୍ୟ କରିବା ।

ପ୍ରଭା—ହେ ସୁନ୍ଦର ! କ୍ଷଣେ ଅପେକ୍ଷା କର, ମଳୟ ଉଠନ୍ତୁ ।

ମା: ଭା:— ଗୀତ

ପ୍ରୀତି ରଣ ସିନାହିଁ ସ୍ୱପ୍ନ,
 ନ ଜାଣ କି କର ପ୍ରକଟ ।

ପ୍ରଭା—ନାହିଁ ଆଯୁଷ ମିତ୍ର ବନା ତ
 ନ କରେ ଜଳ ଆହାର । ୪ ।

ମା: ଭା:—ନାଗର ମୁଁ ସେପରି ବଟପୀ ନୁହେଁ । ମୁଁ କେବଳ ଆପଣଙ୍କ ରୂପରେ ମୁଗ୍‌ଧା । ଏଣୁ ଆପଣଙ୍କ ବାହୁଦ୍ୱାର ଆଲିଙ୍ଗନ କରି ଜାଲୁ ଯୁଗଳରେ ଆଶ୍ରୟ ଦିଅନ୍ତୁ ।

ପ୍ରଭା—ତା କେବେ ହେଲେ ହୋଇ ନ ପାରେ, ମଳୟ ଉଠିବା ପର୍ଯ୍ୟନ୍ତ ଅପେକ୍ଷା କର ।

( ମା: ଭା: ସୁଯୋଗରେ ପ୍ରଭା ହସ୍ତରୁ ମୁଦ୍ରିକା ଉତ୍ତାର ଅନ୍ତର୍ହିତ ହେବା )

ପ୍ରଭା—ମଳୟ ! ଉଠନ୍ତୁ ମୋତେ କଦ୍ରୁ ଆକ୍ରୋଶ ଦେଖାଉଛନ୍ତି ।

( ଜର୍ମିଳ ଜାଗ୍ରତ ହୋଇ ବସିବା ସମୟେ ପୁନଃ ମା: ଭା: ଆବିର୍ଭାବ ପୂର୍ବକ ପ୍ରୀତି ଭିକ୍ଷା )

ଜର୍ମିଳ—କି ଆଶ୍ଚର୍ଯ୍ୟ କଥା, ଏ ସ୍ତ୍ରୀ କିଏ ମୋତେ ବରଜନ କରୁଛି ।

ଗୀତ—( ବନେ ଗାଇ—ତୁଲେ )

ନବ ଜୀବନ ରେ କହୁ କହୁ ଅସମ୍ଭବ କଥା ।
ତାହାର ଦୁଲାଳୀ ଦାସୀ ତାହାର ତୁ ଦାସୀକା ।୧।

ହେ ସୁନ୍ଦର ! ତୁମ୍ଭେ ତାହାର କନ୍ୟା, ତାହାର ସ୍ତ୍ରୀ । ଏପରି ଅନୁଚିତ କଥା ମୁଖରେ ଆଣିବା ଅନୁଚିତ ।

ମା: ଭା:—ନାଗର ! ସେ ସବୁ ସତ୍ୟ ତ ମୁଁ ସ୍ୱୀକାର ପ୍ରକାଶ କରୁଛି, ବର୍ତ୍ତମାନ ଆପଣଙ୍କୁ ମୋର ମନେ ମନେ ପତିରୂପେ ବରଣ କରି ପ୍ରେମାଭିଳାଷ ପ୍ରକାଶ କରୁଛି ।

ଜର୍ମିଳ— ଗୀତ

ପାଣ୍ଡ ପ୍ରଦେଶରେ ମୋର
 ଲେଖା ନାହିଁ ରମାକର,
ପରିଶ୍ରମ ତୋ ସକଳ
 ମୋ ସଙ୍ଗେ ଲଢିବା ବୃଥା । ୧ ।

ସୁନ୍ଦରି ! ମୁଁ ଅବିବାହିତ ନୁହେଁ, ମୋର ସ୍ତ୍ରୀ ଅଛି, ମୁଁ ଏକଦାର ବ୍ରତାବଲମ୍ବୀ, ଅନ୍ୟ ସ୍ତ୍ରୀ ଗ୍ରହଣ କରିବ ନାହିଁ ।

ମା: ଭା:—ଯୁବକ ! ତୁମ୍ଭେ ରାଜପୁତ୍ର ଶତ ଶତ ସ୍ତ୍ରୀର ମନ୍ଦିରେ ମଣି ହୋଇପାର, ଏଣୁ ବୃଥା ଛଳନା କରୁଛ କାହିଁକି ?

ଜର୍ମିଳ— ଗୀତ

ଅଛି ମୋର ଦୃଢ଼ ବ୍ରତ,
 ପ୍ରୀତି କି ନ ଦେବ ଶଙ୍କ ।
ରହ କ୍ଷଣେ ଉଠ ମିତ୍ର,
 କଲେ ସେ କରୁ ରକ୍ଷା । ୨ ।

ସୁନ୍ଦରି ! ମୁଁ ପ୍ରତିଜ୍ଞା କରିଛି ପର ସ୍ତ୍ରୀ ପ୍ରତି ପାପଦୃଷ୍ଟି ଦେବନାହିଁ । ଯେବେ ଏପରି ବାଧ୍ୟକର ମଳୟଙ୍କଦ୍ୱାରା ତୁମର ଅଭିଳାଷ ପୂର୍ଣ୍ଣ କରାଇବ ।

ମା: ଭା:—ନାଗର କହିବାକୁ ଲଜ୍ଜା ହେଉଛି ।

ଜର୍ମିଳ—କି କଥା ?

ମା: ଭା:— ଗୀତ

ମିତ୍ର ସଙ୍ଗେ କରି ପ୍ରୀତି ପାଇବାକୁ ସୁଖ ଶାନ୍ତି ।
ତବରୂପ ହୃଦେ ଶାନ୍ତି ଅଧୋଗାମୀ କରୁଛି ମୋର ।୩।

ନାଗର ! ଜାଣି ପାରୁଛି କଟୁ ପେଟ ପୂରିବନାହିଁ । ତୁମ୍ଭ ମଳୟଙ୍କ ସଙ୍ଗତ ପ୍ରଣୟରେ ମୋର ମନର ଅବସାଦ ନ ମେଣ୍ଟି ଥିବାରୁ ତୃପ୍ତି ନ ଲଭି ପୁନର୍ବାର ଆପଣଙ୍କୁ ସେ କାର୍ଯ୍ୟରେ ଅନୁରୋଧ କରୁଛି ।

ଜର୍ମିଳ— ଗୀତ

ମିଥ୍ୟା ନ କହ ସୁନ୍ଦରୀ, ମିତ୍ର ମୋ ହୃଦେ ସେପରି
ପ୍ରୀତିକଲ୍ପ ବୃକ୍ଷତଳେ ସବେ ମନେ ଜାଣିବା । ୪ ।

ସୁନ୍ଦର "ଅସମ୍ଭବ ନବକ୍ତବ୍ୟଂ ବକ୍ତବ୍ୟଂ ଯଦ ସମ୍ଭବ, ଶୀଳା ତରନ୍ତ ପାନୀୟଂ ଗୀତଂ ଗାୟନ୍ତ ବାନରାଃ" ଅର୍ଥ ହ ପଥରଖଣ୍ଡ ପାଣିରେ ଭାସୁଛି ତହିଁ ପରେ ମର୍କଟମାନେ ଗୀତ ଗାଉଛି, ଏହିପରି ଅସମ୍ଭବକୁ କଣ ସମ୍ଭବ ବୋଲି କହୁଛ କି ?

ମା: ଭା: — ଗୀତ

ଏମନ୍ତ ଅନେକ ଭ୍ରମର ଭ୍ରମନ୍ତି ନାନା ପ୍ରସ୍ତର
ଅମାନ୍ୟକ କୁହେଁ ଗୀର ଦେଖନ୍ତୁ (ଏ) ମୁଦ ତା ତାର ! ୫ ।

ନାଗର ! ସମ୍ଭବ କି ଅସମ୍ଭବ ଥରେ ଦେଖି ନିଅନ୍ତୁ, ମଇଁଷ ଭ୍ରମର ମୋ ସଙ୍କେତ ସ୍ମାରିକାର ଦୂରଣ ଦେଖିବା ସମୟରେ ଏହି ମୁଦ୍ରାଟି ମୋତେ ଅର୍ପଣ କରିଅଛନ୍ତି ।

ଗୀତ

ଆସ ଆସ ନନ୍ଦନନ୍ଦ, ଶୀଘ୍ରକ କର ପଦ୍ମଣ
ମଦମ୍ଭି ବନ୍ଧେ କାମବାଣ ବାଳାମଣିଙ୍କ ବରସୁର ।
ଆସ କର ଅସହ୍ୟ ହେଲାଣି ପ୍ରାଣ ।

ନର୍ମଦା — ନା ମଇଁଷ, ତୋର ମୋ ଠାରେ ଏତେ ଛନ୍ଦ, ସୁନ୍ଦରୀ ଙ୍କୁ ସର୍ବନାଶ କଲୁ ।

ଗୀତ

କପଟ ଜନ୍ତୁ ମଇଁଷ ପାଷ ପ୍ରେମେ ହେଲ୍ଲ ରତ
ନ ଜାଣ ମୋତେ କହୁଛ ବାନର ଏହି ଭାଷା । ୬ ।

ସୁନ୍ଦରୀ ! କ୍ଷମାକରୁ, ଯାହାକୁ ଯଉଁଭୁଲରେ ବରଣ କରିଛ, ପ୍ରାଣ ଅର୍ପଣ କରିଛ, ତାକୁ ଶରବନ ନମିତ୍ତ ତୁମକୁ ସମର୍ପି ଦେଉଛି, କ୍ଷଣେ ଅପେକ୍ଷା କର । ମଇଁଷ, ମଇଁଷ !

(ମା: ଭା: ପ୍ରସ୍ଥାନ)

ପ୍ରକୃ — ମଇଁଷ, ସବୁ କଣ ଶେଷ ହୋଇଗଲାଣି ।

ନର୍ମଦା — ନା, ସବୁ ଶେଷ ହୋଇ ନାହିଁ, ମାତ୍ର ତୁମର ଦୁଃଖ କାହିଁକି ପାଉଛନ୍ତି !

ପ୍ରକୃ — ମଇଁଷ, ଆଜ ପୁଣି ଏ କି କଥା, ମୋର କଣ ଦୁଃଖ କଣ ପାଉଛି ।

ନର୍ମଦା — (ଗୀତ)

[ ଅଜଣା ଅଗା ଗୁଡେ ]

ହେ ମଇଁଷ, ହୃଦଲ ଗୁଡ
ତେବେ ନ ମୋହ ଭବ ଆଉଠାରୁ ଜୁଟିଲ ।
ଡ଼ମିଆ ତାଭନ ଦେଖି ହେଲି ଭ୍ରମ
କହୁଚେ ମୋହ କଥା ନ କଲ୍ ଭଲ ।

ମଇଁଷ ! ସାମାନ୍ୟ ସ୍ତ୍ରୀର ଚକ୍ରାନ୍ତରେ ପଡ଼ି ମୋତେ ପାସୋରିଦେଲୁ । ମୁଁ ତୋହ ଲାଗି ରାଜସିଂହାସନ ଉପେକ୍ଷା କଲି, ମାତ୍ର ତୁ —

ପ୍ରକୃ — ମଇଁଷ ! ଏ କି କଥା ମୋର କଣ ମନ ବନ୍ଧୁଛନ୍ତି ନା ତରହ ପରୀକ୍ଷା କରୁଛନ୍ତି । ଏପରି କୁତ୍ସିତ କଥା ଭୁଣ୍ଡକୁ ଆଣନ୍ତୁ ନାହିଁ ।

ନର୍ମଦା — (ଗୀତ)

ତୋହଲାଗି ରାଜଗାଦ ହେଲ ଶୁଣାଲେ ସମ୍ବାଦ,
ପିତାରେ ହେଲ କବାଣ ମୋ କର୍ମେ ଥିଲା ।
ବିଧାତାର ବ୍ରନ୍ଦର ଭୁଲ କରନ୍ତୁ ଘର,
ଅଭିଶାପ ପିତାର ମୋତେ ପଡ଼ିଲା ।

ମଇଁଷ ! ତୁମ୍ଭଲାଗି ପିତା ମାତା ରାଜ୍ୟ ସମ୍ପଦ ଦାସଦାସୀ ସମସ୍ତ ତ୍ୟାଗିଲି, ତୁମ୍ଭେ ପୁଣି ଶେଷରେ ମୋ ଗଳାରେ ଛୁରୀ ଦେଲ । ତାହାକୁ କହିବ, ସେ ମୋ ନିଜ ଅର୍ଜିଲି କର୍ମ । ଆଉ କ ପିତାଙ୍କର ଅଭିଶାପ ।

ପ୍ରକୃ — ମଇଁଷ ! ମୁଁ ଦୋଷୀ ନୁହେଁ, କୁଆରେ କାହିଁକି ଏତେ କଥା କହୁଛ ।

ନର୍ମଦା — (ଗୀତ)

ବେଣ୍ଣା ପାନେ ପଡ଼ ଦୁଃଖ ଗଲି ମିଛ ଭବ ଏହ
ଏନିକ ଜୁଆରେ ତୋର କର୍ମ ଅର୍ଜିଲି ।
ବାଳକୃଷ୍ଣର ଉକତ ଅନ୍ତର ଦୁଃଖ ମିଛ
କାହିଁ ପାଇଁ ବିଧାତା ମୋତେ ସୃଜିଲା ।୧।

ମଇଁଷ ! ଲୋକ ଏବେ ନିଜ ପଥ । ଜଣାଗଲା ଏବେହିବେ ମିତ୍ରତାର ଗୁଣ । ଜାଣ ମିତ୍ର, ତୁମ୍ଭ ଲାଗି ଯାହା ଯାହା ସହ୍ୟ କରିଅଛି କଷ୍ଟ, ତନୁ ସେ କଥା ନ ଚିନ୍ତିଲ କ୍ଷଣେ । ସ୍ତ୍ରୀର ରମଣୀର ରୂପ ଜାଲରେ ଦଗ୍ଧଗଲ ଚିର ବାଳକତା । ଅବିଶ୍ୱାସୀ ତୁମ୍ଭେ, ମହାପାପ ତବ ମୃତ୍ୟୁବରଣେକନେ ।

ପ୍ରକୃ — (ଗୀତ)

( ହେ ମାତୃତ — ଗୁଡ଼େ )

ହେ ମଇଁଷ, ମୁଁ ଏତେ ଛନ୍ଦ ଜାଣେ ନାହିଁଟି
ବୃଥା ଅପବାଦେ କ୍ରୋଧ କର କାହିଁପାଇଁଟି ।୧।

ମଇଁଷ ! ମୋତେ ବୃଥାରେ ଏ ଦଣ୍ଡ ଦେଉଛନ୍ତି । କେବେ ମୁହିଁ ଦୋଷୀ ନୁହେଁ ।

ଗୀତ

ଆଜନ୍ମ ମୁଁ ସଦତରେ ନ ଜାଣ ତ ମିତ୍ରବର,
ଆଜ କମ୍ପା କର ପର ହୃଦ ଭଏ ବହୁଟି ।୧।

ମଳୟ ! ମୁଁ ପିଲାଦିନରୁ ଆପଣଙ୍କର ସାଙ୍ଗ, ଆପଣ କଣ ମୋର ଆଚରଣ ଜାଣି ନାହାନ୍ତି ?

ଜର୍ମିଜ – ଆଚରଣ ଜାଣେ ସତ୍ୟ, କହୁଲ କଲ ଏ ମୁଦ୍ରାଟି ଜାର, କେଉଁଠାରୁ ମୋତେ ମିଳଲ ।

ପ୍ରଭା – ମଳୟ ! ମୁଦ୍ରାଟି ମୋର, ଆପଣଙ୍କ ଶଯ୍ୟାକକ୍ଷରେ ଜଣେ ଉନ୍ମାଦନା ରମଣୀ ଆସି ମୋ ନିକଟରେ ପ୍ରେମଭିକ୍ଷା କରୁଥିଲା । ମୁଁ ତା କଥାରେ ସମ୍ମତ ନ ହେବାରୁ ସେ ମୋର ହସ୍ତଧରି ଟଣାଟଣି କଲା । ତହୁଁ ମୁଁ ରାକ୍ଷସୀକୁ ଠେଲି ଦେବା ସମୟରେ ସେ ମୋର ମୁଦ୍ରାଟି ନେଇ ଯାଇଛି ।

ଜର୍ମିଜ – ବେଶ ବୁଝିଲି, ଆଉ ଅଧିକେ ପ୍ରୟୋଜନ ନାହିଁ । ସାମାନ୍ୟ ଅଳଙ୍କାର ଜଳ ସୃଷ୍ଟି ପ୍ରଭୃତ ଜଳଠାରୁ ଅଧିକ, ଏତ ବଡ଼ ଆଶ୍ଚର୍ଯ୍ୟର କଥା, ମିଥ୍ୟାବାଦୀ ତୁମ୍ଭେ ।

ପ୍ରଭା – (ଗୀତ)

ସେ ପାପିଷ୍ଠା ଦୁଷ୍ଟା ଭ୍ରଷ୍ଟା  କରୁଥିଲା ପ୍ରୀତ ଚେଷ୍ଟା
ନ କରିବାରୁ ତା କଥା ଦୋଷ ଦେଲ ମୁହିଁ ଟି ।୨।

ମଳୟ ! ମୁଁ ସେ ରାକ୍ଷସୀ କଥାରେ ପ୍ରବୃତ୍ତ ନ ହେବାରୁ ସେ ଆପଣଙ୍କୁ ଏପରି ଲଗାଇ କହୁଛି ।

ଜର୍ମିଜ – ଆଚ୍ଛା, ତୁମର ସେ ସ୍ତ୍ରୀ ସହିତ ଏତେ ଟଣାଟଣି ହେଲା, ମୋତେ ନ କହିଲ କାହିଁକି ? ନିଶ୍ଚୟ ତୁମ୍ଭେ ଦୋଷୀ ।

ପ୍ରଭା – (ଗୀତ)

ଧମୁଛୁ ତବ ପଦରେ  ଦେଖ ନ ବଦ ଭାବରେ
ହେ ଅବା ରଖ ସଖାରେ ବାଳକୃଷ୍ଣ କହୁ ।

ଏ ତ କଥା ମିତ୍ର ! ପୂର୍ବିଲ ଉଦ୍ଧ୍ୱ ହବା ପବତ ଶିଖରେ, ଭର୍ତ୍ତିଲେ ସୂର୍ଯ୍ୟର ଜନ୍ମ ପଶ୍ଚିମ ଆକାଶେ, ସ୍ୱର୍ଗ ମର୍ତ୍ତ୍ୟ ପ୍ରଭେଦ ତ ହେଲ ଏ ମୁହୂର୍ତ୍ତେ । ବନ୍ଧୁକୃତ୍ତ ଜବା ମମତା ମୋହର, ଟୋପେ ଉଲକଣା, ମଳୟ ! ତୁମର ଏ କଠୋର ବାକ୍ୟ ଶେଲାଘାତ ପ୍ରାପ୍ତ କରୁଛି ମୋ ହୃଦ । କ୍ଷମାକର ।

ଜର୍ମିଜ – ହେଲେ କେତେ କଥା କହୁଥା । ତେ ଶଠତ ବାକ୍ୟ ମୁହିଁ ବୁଝେଟି ସନ୍ତୁଷ୍ଟ । ଅବିଶ୍ୱାସୀ ତୁହି, ତୋର ସାଥେ ଅଛୁ ଯାହା ମୁଁ ପ୍ରାଣରେ ଘାତକ । ଜଳବ ସଦାସ୍ୱ ନିବେଷ୍ଟ ହୋଇଛୁ ଭାବରେ । ମିଥ୍ୟାବାଦୀ କାପୁରୁଷ, ଦର୍ଶନେ ତୋ ମହାପାପ, ଦୂରହୁଅ ପାଷଣ୍ଡ, କାଳସର୍ପ ସଙ୍ଗେ ବାସ ମୃତ୍ୟୁର ଆଶଙ୍କା ।

— ✱  (ପ୍ରସ୍ଥାନ)

## ଚିତ୍ତାବୃତ୍ତ ଦୃଶ୍ୟ

ପ୍ରଭା— (ଗୀତ)

( ନ ଜାଦ ହ୍ଲଲରେ – ଭୃତ୍ତେ )

ହାଲରେ ମଳୟ ତୋର ମନେ ଥିଲା ଏହା ରେ ।
ଅଗାଧ ଜଳରେ ବୁଡ଼ାଇଲୁ ଭର ନାହା ରେ ।
ଆଉ ପିତ ନାହିଁ
ତୋ ବିହୁନେ ମୋର ସୁଖ ନାହିଁ ।୧।

ମଳୟ ! ତୋତେ ହରାଇ ଆଉ କଣ ଜୀବନରେ ସୁଖ ଅଛି । କଣ କରିବ ? ରାକ୍ଷସୀ ତୁ କଣ ନ କଲୁ ।

(ଗୀତ)

କାଳସର୍ପିଣୀ ପିଶାଚୀ ଛଡ଼ାଇଲୁ ସାହାରେ ।
ଭବ କାରାଗାରେ ମୋତେ ଆଉ ନାହିଁ ସହାରେ ।
ମିତ୍ର ତ କହିବ,
ଗଲ୍ପ ଗାବ ତୋ କଥାକୁ ଭାବ ଭାବ ।୨।

ମିତ୍ର, ତୁମ୍ଭ ବିନା ଆଉ ବ୍ରହ୍ମାଣ୍ଡରେ ସ୍ଥାନ ନାହିଁ । ରାକ୍ଷସୀ ତୁ କଣ କପଟରେ ଆମ୍ଭର ମିତ୍ରତା ଭାଙ୍ଗିବା ସକାଶେ ଆସିଥିଲୁ ? ବର୍ତ୍ତମାନ କଣ କରିବ ?

ଗୀତ

ହାତରେ ନ ମାରି ମିତ୍ର ଭଳେ ମାରୁ ପାହାରେ ।
ବାଳକୃଷ୍ଣ ବୋଲେ ତୁହି ସାକ୍ଷୀ ତଥିବାହାରେ ।
ଧର୍ମ ସାକ୍ଷୀ ତୁହି ।
ତୁହିଁ କେବେ ମୁହିଁ ମିତ୍ରଦ୍ରୋହୀ ।୩।

ମଳୟ, ଏ ପ୍ରାଣ ନ ନେଇ ଦହଦହା କଲୁ କାହିଁକି ? ଭଲ ମିତ୍ର, ତୁମର ପଥ ନିଶ୍ଚୟ ଖୋଜିବ । ଆଉ ଏ ବେଶରେ ପ୍ରୟୋଜନ ନାହିଁ । ଛଦ୍ମବେଶେ ସଙ୍ଗେ ସଙ୍ଗେ ଥିବ ।

— ✱ –

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

ରାଜା ସୁରସେନ—ମନ୍ତ୍ରୀନ୍, ମୋର ଦକ୍ଷିଣ ଚକ୍ଷୁଟା ମୁହୁର୍ମୁହୁ ସ୍ପନ୍ଦିତ ହେଉଛି କାହିଁକି ?

ମନ୍ତ୍ରୀ—ମହାରାଜ ! ଏହା ଗୋଟିଏ ଶୁଭ ଲକ୍ଷଣ, କାରଣ ଦକ୍ଷିଣାକ୍ଷି ଅଧୋଭାଗେ ସୁଖଲାଭ, ଊର୍ଦ୍ଧ୍ୱେ ସନ୍ନିହିତ ଲାଭ, ନେତ୍ରପ୍ରାନ୍ତେ ଧନଲାଭ, କୋଣେ ବନ୍ଧୁଲାଭ ।

ରାଜା—ତାହିଁ, ଦୂତ ଏପର୍ଯ୍ୟନ୍ତ ଆସି ନାହିଁ କମା, ମୂର୍ଖ କଳକାର୍ଯ୍ୟ ... ଉହିଅଛି କାହିଁ ?

ମନ୍ତ୍ରୀ—ଯାଇଛି ସେ ନଗର ଭ୍ରମଣେ, ଫେରନାହିଁ, ଆସୁଥିବ ।

(ଦୂତ ପ୍ରବେଶ ପୂର୍ବକ ଅଭିବାଦନ)

ରାଜା—କହ ଦୂତ ରାଜ୍ୟର ଖବର, କି ନିମନ୍ତେ ଏତେ କ୍ଷଣ ଯାଏ ଯାଇଥିଲୁ କାହିଁ ।

ଦୂତ—ମହାରାଜ ! ଆପଣଙ୍କର ଜାମାତା ନିର୍ମଳ କୁମାର ଗ୍ରାମ ସୀମାରେ ବସି ଆପଣଙ୍କ ସାକ୍ଷାତ ଅପେକ୍ଷା କରୁଛନ୍ତି ।

ରାଜା—ଦୂତ ! କିଏ ନିର୍ମଳ ? ସେ କପଟୀ ଆସି ଉପନୀତ ହେଲା, ମଙ୍ଗରେ ତାର ସେହି ମଲିହ ଅଛି ନା ?

ଦୂତ—ନା ମହାରାଜ ! ସେ ଯେ ଏକାକୀ ଉପସ୍ଥିତ ।

ରାଜା—ବୁଝିଲି, ସେ ଯେଉଁ ମଲିହ ନିମିତ୍ତ ରାଜ୍ୟ ସମ୍ପଦ ତ୍ୟାଗକରି ଇତସ୍ତତଃ ପରିଭ୍ରମଣ କରୁଥିଲା, ସେହି ମଲିହ ପାଇଁ ବଳି ହେବାକୁ ଆମ୍ଭେମାନେ ମନେ ପଡ଼ିଲୁ ।

ଗୀତ—( ଆଜ ପିବ ଭିକାରକୁ—ବୃନ୍ଦେ )

ଏ ଗାଉ ନେଇ ଉଠି ହେଉଛି ମୋହର ।
କହୁ ପୁଣ୍ୟ ଥିଲେ କରୁ ପ୍ରବେଶେ ଦୁଆର । ୧ ।

ଦୂତ ! ୯ ଘଣ୍ଟାରେ ଲକ୍ଷ୍ମୀପୁ ଉଠି ଦେଲି, ନିର୍ମଳ ମୋର ଦ୍ୱାରକୁ ଆସିବ, ଏହା ମୁଁ ସ୍ୱପ୍ନରେ ଭୁଲି କରି ନ ଥିଲି ।

(ଗୀତ)

ଯାହାକୁ ବାହାନେ ବରଣ କରି ଆଣି ସୁତ ।
କହୁ କାଳୁ ତାର ତନୁ ଥିଲି ମୁଁ ଚିନ୍ତିତ । ୧ ।

ଦୂତ ! ନିର୍ମଳ ସାଧକ ସୁତ ପ୍ରଭୁକର ସହିତ ମିତ୍ରତା ସ୍ଥାପନ କରିବା ନିମନ୍ତେ ସମସ୍ତ ବୈଭବ ତ୍ୟାଗ କରିଥିଲେ, ମାତ୍ର ଆଜି ବୁଝି ତାର ମନ ପରିବର୍ତ୍ତନ ଘଟିଛି । ଏହା ବଡ଼ ଆଶ୍ଚର୍ଯ୍ୟର କଥା ।

(ଗୀତ)

ଯାଅ ମଣ୍ଡପରେ ନେଇ ବଦନରେ ଅସ୍ଥାନ ।
ବାଳ ବୋଲେ ମୋ ଲୀଳାକୁ କର ସମର୍ପଣ ।

ଦୂତବର ! ଅବିଳମ୍ବେ ଅଶ୍ୱ ଗଜ ସାଜ ଜାମାତାଙ୍କୁ ଆଣରେ ବହନ । କହୁ କାଳୁ ଚିନ୍ତାକୁଳେ ଚିନ୍ତିତ ଥିଲି ମୁଁ ଅନ୍ତରେ; କିନ୍ତୁ ଆଜି ବଡ଼ ସୁଦିନ୍ୟ ଦିବସ ଯେ ମୋର ନୟନର ପିତୁଳି ଅଳକ ଲୀଳାବତୀ ଦାସୀ ସହ ମହାସମାରୋହେ କନ୍ଦୁ ତାର ପାଦ । ରାଜ୍ୟରେ କର ଘୋଷଣା ଉତ୍ସାହିତ ହୋନ୍ତୁ ସର୍ବେ ଏ ମଙ୍ଗଳ ଦିନେ ।

---

## ଦ୍ୱିତୀୟ ଦୃଶ୍ୟ

( ଭକ୍ତ ଯୋଗୀ ବେଶେ ପ୍ରବେଶି ଗୀତ )

( ତୋହର ଲାଗିରେ—ବୃନ୍ଦେ )

ଭଜୁ ଜନା ରାମ ନାମ ଭୁଲି ମନ
ଭଜୁ ଜନା ରାମ ନାମ
ମ ଭଜ ଥାଇଲେ ମୃତ୍ୟୁ ମାନବରେ
ବାନ୍ଧି ନେବ ତାକୁ ଯମ । ୧ ।

ହା ବିଧାତା, ମୋର ଏ ଘଟଣା କପାଳରେ ଏହି ଦୁର୍ଦ୍ଦଶା ଭୋଗ କରିବାକୁ ଲେଖିଥିଲୁ ।

ଗୀତ

ଯାହା ଲାଗି ମନ ପ୍ରାଣ ସମର୍ପିଲି
ସେହି ତ କରିଦେଲା ଆନ
ଏ ଅଭାଗା ପ୍ରାଣେ କିବା ପ୍ରୟୋଜନ
ଧାତା ତୁ ଦେଲୁ ଦଣ୍ଡ । ୨ ।

ହା ବିଧାତା ! ଯାହା ଲାଗି ମନ ପ୍ରାଣ ଅକାତରେ ଦାନ ଦେଇଥିଲି, ସେ ଆଜ ମୋତେ ଏ ଦୁଃଖ ସାଗରରେ ଭସାଇ ଦେଇ ଚାଲିଗଲା ।

ପଦ୍ମ— ଗୀତ

ତୋ ପୀରତି ମୋ ହୃଦେ ଚଳି
ବକ୍ଷ ମୋର ଯାଉଛି ଫାଟି
ଏ ଦାରୁଣ ଜ୍ୱାଳା କେ ସହିବରେ । ୨ ।

ଲୀଳା ! ତୁ ଯେଉଁ ପ୍ରେମରେ ମୋତେ ବସାଇ-ଦେଇଛୁ, ମୁଁ ବି ଯେଉଁ ଅସ୍ଥିର ହୋଇଯାଉଛି, ସେ କଥା ଭାବିଲାବେଳକୁ ଏ ପ୍ରାଣଟା କ'ଣ ହୋଇ-ଯାଉଛି ।

ଲୀଳା— ପଦ୍ମଅ, ସେକଥା ତୁ ଆଜ୍ଞେ ଚଳ କି ?

ପଦ୍ମ— ଗୀତ

ଆସିଲେଣି ତୋ ପ୍ରାଣେଶ୍ୱର
ତାଙ୍କୁ ଦେଖି କରିବୁ ଦର ।
ବାଳାମଣି, ମନ କେ ମୋହିବ । ୩ ।

ଲୀଳା ! ଆଜ ଯେତେବେଳେ ତୋର ସ୍ୱାମୀ ଆସିଲେଣି ସେତେ କ'ଣ ଆଉ ତୁ ଏ ସାମାନ୍ୟ ଚଣ୍ଡାଳକୁ ଚିହ୍ନିବୁ ? ଲୀଳା ! ମୋତେ ହେଲେ ଟିକିଏ ଜହର ଦେ, ମୁଁ ଖାଇଦେଇ ମରିଯାଏ । ତୋ ସହିତ ପ୍ରେମାଳାପ କରିବା ପ୍ରାୟ ପାଞ୍ଚ ବର୍ଷ ହେଲା । ସେ ଦିନଠାରୁ ମୁଁ ଯାହା କି ସୁଖ ଉପଭୋଗ କରିଯାଉଥିଲି, ଆଜ ବିଧାତା ସେସବୁ ଭାଙ୍ଗିଦେଲା ।

ଲୀଳା— ପଦ୍ମଅ ! ଯେତେବେଳେ ମୁଁ ବିରହାନଳରେ ଦଗ୍ଧ ହୋଇଯାଉଥିଲି, ସେ ସମୟରେ ତୁ ତୋର ପ୍ରେମବାରି ସେଚନେ ମୋର ତାପିତ ହୃଦୟକୁ ଶୀତଳ କରିଛୁ । ସେ ତ ଚାରିବର୍ଷ ହେଲା ମୋତେ ପାଶୋରିଦେଇ କୋଉଁଠିକି ସାଧବ ସୁତ ସହିତ ମିତ୍ରତା ସ୍ଥାପନ କରି ମୋତେ ଥରେ ବି ପଚାରି ନାହାନ୍ତି । ଆଜ ବୁଢ଼ାକୁ ଆସିଛନ୍ତି ବୋଲି କ'ଣ ମୁଁ ଭାବିବି ? ଏହା କେବେ ନୁହେଁ, ତୁମ୍ଭେ କେବଳ ମୋହର ଜୀବନର ଆଶାଲତା ।

ଯୋଗୀ (ସ୍ୱଗତ) ଆଉ ସନ୍ଦେହର କାରଣ ନାହିଁ, ଏ ନିଶ୍ଚୟ ମୋହର ସ୍ତ୍ରୀ ।

ପଦ୍ମ— ପୁଣି ତ ଶଳା କି ବୁଢ଼ାଏ ବଡ ବଡ ହେଉଛି, ଶଳାଟି, ଏ ଠେଙ୍ଗାକୁ ଅନେଇଥା ।

ଲୀଳା— ଗୀତ— (ଭକ୍ତ ମୋର ହୃଦ୍ରେ)

ତୁମ୍ଭ ମୋର ଜୀବନ, ତୁମ୍ଭ ମନ ମୋହନ
ତୋହଠାରୁ ଅଧିକ, ନୋହେ ମୋ ପ୍ରାଣାଧିକ
କହିଁ ତୁ ରେ ସମ୍ମୁଖ, ହେଉ ରେ ସ୍ନେହାଧିକ
ତୁମ୍ଭ ହୃଦଚନ୍ଦନ । ୧ ।

ପଦ୍ମଅ ! ବାରଆଡ଼ୁ ବାର କଥା ମନରେ ଭାବୁଛୁ; କିନ୍ତୁ ତୋହ ଛଡ଼ା ମୋର ଆଉ କେହି ନାହିଁ ।

ପଦ୍ମ – କେ ଜାଣି, ମୋତେ ତ ବିଶ୍ୱାସ ହେଉ ନାହିଁ, ଦାଣ୍ଡ ନିର୍ମଳ ବାବୁ ପଦଶ୍ରୀବେଳଙ୍କୁ ମୋ ରକ୍ତ ଶୁଖିଯାଉଛି ।

ଲୀଳା— ଗୀତ

ତୋ ବିନୁ ନାହିଁ ଆନ ତୁ ପ୍ରାଣ କଳା ଧନ
ବାନ୍ଧିଛି ତୋହ ପ୍ରେମ ଏ ଜୀବ ଆଧାରନ
ତୁମ୍ଭ ଗଳାରତନ । ୨ ।

ପଦ୍ମଅ ! ତୁମ୍ଭ ମୋର ଜୀବନର ସର୍ବସ୍ୱ । ତୋଠାରେ ମୋର କେତେ ସ୍ନେହ, ଯଦି ହୃଦୟ, ହୃଦୟ ଚିରି ଦେଖାଇବାର ହୋଇଥିଲେ ଦେଖାଇଦେଇଥାନ୍ତି ।

ଗୀତ

ସଖୀ ଆଜେଣେ ଯାନ୍ତ ଗୋରଚନ୍ଦ୍ର ନିର୍ମଳ
ସୂତ୍ରେ ମୁଁ ପ୍ରାଣେ ଦୃଢ଼ କରି ରଖିବି ବ୍ରତ
ମୂଢ ତୁ ରେ ବମନ । ୩ ।

ପଦ୍ମଅ ! ତୁ ଭାବନା କରିବାର ଆବଶ୍ୟକ କ'ଣ ? ମୁଁ ନିଶ୍ଚୟ ଆଜ ରାତିମଧ୍ୟରେ ତାଙ୍କର ବିନାଶର ଚେଷ୍ଟା କରିବି ।

ଯୋଗୀ—ଉଃ ହୋ କଣ ଶୁଣିଲି, ରାକ୍ଷସୀ କ'ଣ କହୁଛି ? ମଇଁ, ତୋର ଏହି ଦୁର୍ଦ୍ଦଶା ଦେଖିବାକୁ କ'ଣ ଏଠାକୁ ଆସିଥିଲି ?

ପଦ୍ମଅ—ଶଳା, କ'ଣ ହେଉଛି ହେଉ ।

ଲୀଳା— ଗୀତ

ଯାହାଲାଗି ଭାବନା ତାକୁ କରିବ ତୁନା
ନ କର ତୁ ଭାବନା ପୂର୍ଣ୍ଣ ହେବ କାମନା
ବାଳାମଣିର ବଚନ । ୪ ।

ପ୍ରାଣାଧିକ ପଦ୍ମ ! ତୋହ ପ୍ରେମ ବାନ୍ଧିଅଛି ମୋତେ । ଆଜ ସନ୍ଧ୍ୟାପରେ ଜଣକୁ ମଧ୍ୟରେ ମୋର

ଚଚମ୍ପା—ଜାଣ୍ଟି ? (ଇତସ୍ତତଃ ନିରୀକ୍ଷଣ କରି ) ଲୀଳା !
ଶଳା ଯୋଗୀଟା ଶୋଇଥାଇ ସେପଟୁ ଦେଉଛି, ତେମେ ଚାଲ ।

ଲୀଳା—ଚଚଆ ! ତୁ ଟିକିଏ ମୋ ହାତକୁ ଧର । ମୋ ହାତ ଥରୁଛି ।

ଯୋଗୀ—କଣ କରିବ ? ରାକ୍ଷସି ! ଚଣ୍ଡାଳ କଥାରେ ପଡ଼ି ତୋର ସ୍ୱାମୀକୁ ଚୋରିପାରୁ ନାହିଁ ।

ଲୀଳା—କିଏ, କିଏ ?

ଚଚମ୍ପା—ସେଇ ଶଳାଟି ହେ ସେଇ ଶଳାଟି । ତୁମ୍ଭେ ଏପଟେ ହେଲେ ମୁଁ ଯାଉଛି ।

ଲୀଳା—(ତୁରୀ ମାରି ବାହୁଡ଼ିବାସମୟେ ଯୋଗୀ ଲୀଳା ବସ୍ତ୍ରକୁ ଧରି) ରାକ୍ଷସୀ, କ'ଣ କଲୁ ?

(ଚଚଆର ପଳାୟନ)

ଯୋଗୀ— ଗୀତ

(ପ୍ରାଣ ଚଲା ରେ—ବୃନ୍ଦେ)

ସ୍ୱାମୀ ମୋ ପାପିଷ୍ଠା ଦୁଷ୍ଟା ଏ କି କାଣ୍ଡ କଲୁ ଲୋ ।
କିବା ଦୋଷେ ମୋ ମଇଥେ ଏତେ ଦଣ୍ଡ ଦେଲୁ ଲୋ ।
ରାକ୍ଷସୀ ? ତୁ ମୋ ମଇଥକୁ ମାରିଦେଲୁ ? ପାଷାଣ୍ଡୀ !
ତୋର ସେ କି ଦୋଷ କରିଥିଲା ?

ଗୀତ

ଦୁର୍ଜ୍ଜଣ୍ଡୀ ପାଷାଣ୍ଡୀ ଚଣ୍ଡାଳରେ ମନ୍ତ୍ର ଦେଲୁ ରେ ।
ବ୍ରହ୍ମାଣ୍ଡକଳଙ୍କି ରାଜପୁତ୍ରେ ନ ବୁଝିଲୁ ରେ । ୧ ।

ପାଷାଣ୍ଡି ! ଚଣ୍ଡାଳ କଥାରେ ପଡ଼ି ତୋର ସ୍ୱାମୀକୁ ନିଧନ କଲୁ ? ହା ମଇଥ ! ମୋତେ ଏଣ୍ଡ ଦୁଃଖ ଦେଖାଇବାକୁ କ'ଣ ଏଠାକୁ ଆସିଥିଲୁ ?

ଗୀତ

ହାୟ ରେ ମଇଥ ମଲୁ
ମୋତେ ଯା ନ କେଲୁ ରେ ।
ବାଳାମଣୀ ବୋଲେ ପ୍ରାଣ
ତାକକଷ୍ଟେ ଦେଲୁ ରେ । ୨ ।

ମଇଥ ! ତୁ ମଲୁ, ମୋତେ ସଙ୍ଗରେ ନ ନେଲୁ କାହିଁକି ? କ'ଣ କରିବ ?

ଲୀଳା—ଏଥି ସେକିଠାରେ ଅଛ ରକ୍ଷା କର ରକ୍ଷା କର ।

( ଧୂମକେତ ଦୂତର ପ୍ରବେଶ )

ରାଜା—ଦୂତ, ଏ କି ଶବ୍ଦ, କର ଦେଖ ସନ୍ଧାନ କିଏ କେଉଁ ବିପଦରେ ପଡ଼ି ଡାକୁଛି କାତର ?

( ଦୂତ ଦେଖି ପୁନଃ ପ୍ରବେଶ )

ଦୂତ—ମହାରାଜ, ସର୍ବନାଶ !

ରାଜା—କ'ଣ ସର୍ବନାଶ ।

ଦୂତ—ସ୍ୱୟମ୍ବରପରେ ଗ୍ରାମୂଳ କୁଆଁରକୁ କିଏ ହାଣି-ଦେଇଛି । କେମାଦେଖି କାନ୍ଦ କାନ୍ଦ ଚକ୍ରୁନ୍ତି ।

ରାଜା—ଆଁ, ସତ୍ୟ କି ଏ କଥା ? ଚାଲ ବେଗେ, ଦେଖେ କି ଆଶ୍ଚର୍ଯ୍ୟ କଥା !

( ସ୍ୱୟମ୍ବରେ ରାଜା ପ୍ରବେଶ )

ଲୀଳା—ପିତା, ପିତା ! ଏ ହତଭାଗିନୀର ଆଶା-ଭରସା ସବୁ ଲୋପ ପାଇଲା ।

ରାଜା—କହ ଲୀଳା ଅଧୈର୍ଯ୍ୟ ହେଉଛୁ କାହିଁ ? ଦୂତ ! ନିର୍ମମ କାହାର କଣ କରିଥିଲା ଯେ, ତାକୁ ଏ ଦଶା କଲା ?

ଦୂତ—ଆପଣ କେମାକୁ ପଚାରନ୍ତୁ !

ଲୀଳା— ଗୀତ

( ଅହୋ ମୋର ସାରଦଆ—ଦୁବଳ )

କି କହିବ ପିତାର ମୋ କରମ କଥା ।
କହିଲବେଳକୁ ଭୂମି ପାଉଛି ମଥା । ୦ ।

ପିତା ! ଯେ କଥା କହିଲବେଳକୁ ମୋର ମସ୍ତକ ଘୂରିଯାଉଛି, ବକ୍ଷ ଫାଟିଯାଉଛି ଦେଉଛି । ମୋ କର୍ମରେ କ'ଣ ଧାତା ଏପରି ଲେଖିଥିଲା ?

ଗୀତ

ଜନ୍ମକାଳେ ଗଳେ ଛୁରୀ
ନ ଦେଲ କାହିଁ ପିତାର
କରେ ମୋତେ ନାହିଁକାର ମନ ବିଧାତା । ୧ ।

ପିତା, ଜନ୍ମକାଳରେ ମୋ ଗଳାରେ ଛୁରୀ ଦେଇଥିଲେ ବର୍ତ୍ତମାନ ଏ ଦୁଃଖଦଶାରେ ପଡ଼ି ନ ଥାନ୍ତି ।

ରାଜା—ଲୀଳା, କହ କିଏ ଏପରି କାଣ୍ଡ କଲା ? ଦୂତ ! ନିର୍ମମ କିଏ ଏତେ ଦୁଃଖ ଦେଖାଇବାକୁ ମୋ ପୁରକୁ ଆସିଥିଲା ? ଲୀଳା, କହ କାହାଦ୍ୱାରା ଏ କାଣ୍ଡ ଘଟିଛି ?

ଗୀତ

କାହିଁ ଆସି ଏ ନୃଶଂସ   ମୋ ବାପକୁ କଲ ଧ୍ୱଂସ
ଲଭିବ କେଉଁ ଗୌରବ ବାଳକର ହତ୍ୟା । ୨ ।

ପିତା, ଏହି ଦୁର୍ବୃତ୍ତ ଯୋଗୀଟା ଆପଣଙ୍କ ଦ୍ୱାର-ଦେଶରେ ବସିଥିଲା, ମୁଁ ବାହାରକୁ ଯିବାସମୟରେ ଘରମଧ୍ୟକୁ ପଶି ଆସି ପ୍ରାଣନାଥଙ୍କୁ ମାରି ମୋତେ ନେବାକୁ ବଳାତ୍କାର କରୁଛି ।

ପ୍ରହ୍ଲ—ମାଆ, ତୁ ପିତା ସଙ୍ଗରେ ନ ନେଇ ଏକା କାହିଁ ଚାଲିଗଲୁ, ମାତ୍ର ତୋ ନିକଟ ଯିବାର ବାଟ ଫିଟିଛି ।

ରାଜା—ଲଜ୍ଜା ! ଏହି ମୂର୍ଖ ସଂହାରିଛି ଦୁଷ୍ଟ ? ରେ ବର୍ବର ଭଣ୍ଡ ତପସ୍ୱୀ, ତୋର ଏତେ ବଡ଼ ଆସ୍ପର୍ଦ୍ଧା ? ତୁ ଶୃଗାଳ ହୋଇ ସିଂହ-ଗହ୍ୱରରେ ପଶି ଏତେ କାଣ୍ଡ ଲଗାଇଦେଇଛୁ । ଦୂତ, ବାନ୍ଧ ଶୀଘ୍ରେ ଏ ପାଷାଣ୍ଡେ ।

ଗୀତ

( ସବୁ ଦୂତ—ବୃନ୍ଦେ )

କାହିଁ ଆସିଲ ଏ ଦୋଷୀ ଭଣ୍ଡ ପାଷାଣ୍ଡଟା ।
ଦଣ୍ଡକ ମାତ୍ରେ ଧ୍ୱଂସିଦେଲ ହାଣିମୁଣ୍ଡଟା । ୧ ।

ଦୂତ, ଏ ମୂର୍ଖ ଉଦର ମଧ୍ୟରେ କ କାଣ୍ଡ କରୁ ନ ଦେଲ !

ଗୀତ

ଦୁର୍ବୃତ୍ତ ପିଣ୍ଡକୁ ନେଇ
କଣ୍ଟାରେ ଦିଅ ଭସାଇ ।
ଦଣ୍ଡା ଥରକରେ ମୋର
କଲ ଦେଲେ କାଣ୍ଡଟା । ୨ ।

ଦୂତ, ପାଷାଣ୍ଡକୁ ବର୍ତ୍ତମାନ ଶୂଳ ସ୍ଥାନକୁ ନେଇ ତା ମସ୍ତକ ଛେଦନ କର ।

ପ୍ରହ୍ଲ—ମହାରାଜ ! ଅବସ୍ଥରେ ଦେଖୁଅଛନ୍ତି ଏ ଅଧୀନେ କଷ୍ଟ । ତୁହେ କେବେ ଦୋଷୀ ମୁହିଁ ।

ରାଜା—ପାଷାଣ୍ଡ, ତୋର ଆଉକି ବୁଝିବାକୁ ବାକିନା,

ଗୀତ

ଏକମ୍ ନ କର କଷ୍ଟେ
ଦଣ୍ଡଆସି ତାଙ୍କ ସ୍କନ୍ଧେ ।
ବାଳକୃଷ୍ଣ ବୋଲେ ସ୍କନ୍ଧେ
ଜାଣିଦିଅ ଖଣ୍ଡାଟା । ୩ ।

ଦୂତ ! ଡାକ ଶୀଘ୍ର ଘାତୁକକୁ, ଏକମ୍ ନ କର ନେଇ ଶୂଳସ୍ଥାନେ ! ଲଜ୍ଜା ! ଯା ତୁହି ଘରେ, ଧର୍ମ କଥା କହିବା କାହାକୁ ! ଦୂତ ! ଜାମାତାପିଣ୍ଡକୁ ସୁଗନ୍ଧ ଚନ୍ଦନ ଆଣି ସତ୍କାରର ବ୍ୟବସ୍ଥା ଶୀଘ୍ର କର ।

( ଘାତୁକ ପ୍ରବେଶ )

ରାଜା—ଘାତୁକ, ଦଲାମଣ୍ଡପକୁ ଏ ପାଷାଣ୍ଡକୁ ନେଇ ଶୂଳ ଦେ ।

ଘାତୁକ—ଯେ ଆଜ୍ଞା ମହାରାଜ ! ଚାଲ ମୂର୍ଖ !

ପ୍ରହ୍ଲ—ହା ବିଧାତା, ଜନା ମେଦେ କର୍ମର ଫଳ । ଭଗବାନ୍ ! ଏ ଅଧମପ୍ରତି ଆପଣଙ୍କର ଟିକଏ ମାତ୍ର ଦୟା ନାହିଁ ? କଣ କରିବ, ରକ୍ଷା ଆଉ ନାହିଁ ମୋତେ ।

ଗୀତ—ଦୟାମୟ ହେ ବୃନ୍ଦେ

ଘନ ବାନ୍ଧବ ହେ ଦୟା ତବ ନାହିଁ କ ପାଦେ ।
ଏ ଭବବନ୍ଧନେ ପଡ଼ି ଗଡ଼ ମରେ ଜଗଣେ । ୧ ।
କରୁଣାସିନ୍ଧୁ କରୁଣା ମୋତେ ବାହିଁକ ଜଣା ।
ସଦାଧୀନ ମୁଁ ତୋ ଜଣା 'ପ୍ରା'ନ ଦିଅ ଚରଣେ । ୨ ।

ଦୟାନିଧି, ଦୟାପ୍ରତ ନାହିଁ କି ତୁମର, ଦୟାସିନ୍ଧୁ ନାମ କଣ ବୃଥାରେ କହିଛ ? ଏ ଅନ୍ତଦେବକେ ଟିକେ ମାତ୍ର ଭରସା ଦେଉ ନାହାନ୍ତି !

ଗୀତ

ଭକତ-ବତ୍ସଳ ନାମ ଶୁଣିଛି ଜଗତେ କ ନା ।
ମୋ ବେଳେ ଗୁଣ ବମନ ଦଣ୍ଡିତ କ କେମନେ । ୩ ।

ଭଗବାନ୍, ମୋ ବେଳକୁ କଣ ନିଷ୍ଠୁର ହୋଇଗଲ, ଏ ଚଣ୍ଡାଳ ହସ୍ତରେ କି'ଣ ଜୀବନ ଯିବ ?

ଗୀତ

ତୁ ଅନାଦି ଆନନ୍ଦ କେ ବର୍ଣ୍ଣିପାରିବ ଲେଖ ।
ଆଶ୍ରା ଦିଅ ପଦ୍ମପାଦେ ବାଳକୃଷ୍ଣ ଚରଣେ । ୪ ।

ହରେ ! ମରିବାକୁ କିଛି ଚିନ୍ତା ନାହିଁ; କିନ୍ତୁ ଯେପରି ଶମନ-ଦଣ୍ଡରୁ ରକ୍ଷା ପାଇବି ଏହି ମାତ୍ର ପ୍ରାର୍ଥନା । ଚାଲ ଘାତୁକ ।

ଘାତୁକ — ଚାଲ ଚାଲ ! ତାପସବେଶ ଧାରଣ କରି ଏ ଜଘନ୍ୟ କାର୍ଯ୍ୟ, ତଥାପି ପୁଣି ଏତେ ଅବଲମ୍ବ ? ମୂର୍ଖ ! ଅଳ୍ପ କାଳ ଦାନ ନେଇଥିଲୁ, ଏ ବୁଦ୍ଧି ଭଲ ନାହିଁ କି କଲୁ ? ଏବେ ସରିଲା, ଚାଲ, ଚାଲ ।

—*—

## ତୃତୀୟ ଅଙ୍କ

### ପ୍ରଥମ ଦୃଶ୍ୟ

( ଘାତୁକ, ଦୂତ, ପ୍ରହ୍ଲା )

ଘାତୁକ — ଦୂତ ! ତୁ ଏଠାରେ ବସ, ମୁଁ ମୋର କାର୍ଯ୍ୟ କରୁଛି । ରେ ମୂର୍ଖ, ମରିବାନିମନ୍ତେ ଅଗ୍ରସର ହୁଅ ।

ପ୍ରହ୍ଲା — ଘାତୁକ ! ନିଶ୍ଚୟ କ'ଣ ମୋତେ ମାରିବୁ ? ମୁଁ ନିର୍ଦ୍ଦୋଷ ।

ଘାତୁକ — ତୁ ନିର୍ଦ୍ଦୋଷ ହୁଅ ବା ଦୋଷୀ ହୁଅ, ସେ ବିଚାର କ'ଣ ମୋଠାରେ ଅଛି ? ମୁଁ ଆଜ୍ଞାବାହୀ ଭୃତ୍ୟ ମାତ୍ର, ଯାହା ଆଜ୍ଞା ପାଇବି, ତାହା ନିଶ୍ଚୟ ପାଳନ କରିବି ।

ପ୍ରହ୍ଲା — ଗୀତ

( ମାଳବଶ୍ରୀ—ରୂପକ )

ଆଜ ଭବରଙ୍ଗ-ଲୀଳା-ଖେଳ ସରିଲା !
ଭବକର୍ଣ୍ଣଧାର ହେ କରୁଣା କର ।
ଶରଣଜନେ କି ଦୟା ନୋହିଲା ? ୧ ।

ହରେ ! ଏ ଅଭାଗା ପ୍ରତି ଏକାବେଳକେ ପାଷାଣ ପାଲଟିଗଲ । ଘାତୁକ ! ମୁଁ ଦୋଷୀ ନୁହେଁ । ମୋର ଏଠିକି ପ୍ରାର୍ଥନା, ମୋତେ ଟିକିଏ ସମୟ ଦେ । ମୁଁ ମରିବା ପୂର୍ବରୁ ଥରେ ହେଲେ ମୋ ଇଷ୍ଟଙ୍କୁ ସ୍ମରଣ କରିନିଏ ।

ଘାତୁକ — ମରଣ କାଳେ ଇଷ୍ଟସ୍ମରଣ ! ହଉ ହେଲା, ସେଥିରେ ମୋର ବା କ୍ଷତି କଣ ? ଟିକିଏ ଡେରି ହେବ, ସେଥିରେ ମୋର ଯାଏ କେତେ, ଆସେ କେତେ ।

ପ୍ରହ୍ଲା — (ଗୀତ)

ମାଳାତଳେ ଅଛନ୍ତି ହରି, ଶୁଭୁ ନାହିଁ ଦାସ-ଗୁହାରି
ବିନା ଦୋଷେ ଦଣ୍ଡ ଦେଉଛନ୍ତି ପାଷାଣ୍ଡ —
ଚଣ୍ଡାଳଙ୍କ ହସ୍ତେ ଜୀବ ଯା ଗଲା । ୨ ।

ହରେ ! ଆପଣ କ'ଣ ବୈକୁଣ୍ଠ ଛାଡ଼ି ଚାଲିଗଲେଣି ନା ଆପଣଙ୍କ କର୍ଣ୍ଣ ବଧିର ହୋଇଗଲାଣି ? ଆପଣ ପରା ଅଗାଧ ଜଳରେ ଦ୍ୱିରଦର ଡାକ ଲକ୍ଷ୍ମୀଙ୍କ ସଙ୍ଗତ ପଶାଖେଳରେ ରତ ଥିବାସମୟରେ ଶୁଣି ତାର ଆତଙ୍କ ମୋଚନ କରିଥିଲେ, ତେବେ ଆଜ କାହିଁକି ଏ ହତଭାଗା ପ୍ରତି ଏ ନିଷ୍ଠୁର ବ୍ୟବହାର ? ମଉଜ ! ତୋ ଯୋଗ୍ୟ ଏ ଦଶା !

ଗୀତ

ପର କରି ଗଲୁ ମଉଜ, ଆଜ ତୋର ଲୋଡ଼ୁଛି ପଥ
ହେଲା ପୂର୍ଣ୍ଣ ବ୍ରତ ଛାଡ଼ିଲା ଜୀବ ତ ।
ଭଣେ ବାଳକୃଷ୍ଣ ହେଲା ବୁଡ଼ିଲା । ୩ ।

ମଉଜ ! ପୂର୍ବରୁ ମୋତେ ଘୃଣା ଚକ୍ଷୁରେ ଚାହୁଁଥିଲ ବୋଲି ମୋତେ ସଙ୍ଗରେ ନ ନେଇ ଏକାକୀ ସ୍ୱଚ୍ଛନ୍ଦରେ ଅକ୍ଷୟ ସ୍ୱର୍ଗବାସ କରିବ ବୋଲି ଚାଲିଗଲ; କିନ୍ତୁ ଦେଖ, ଆଜ ନିଶ୍ଚୟ ଯାଇ ତୁମ୍ଭ ସହିତ ସାକ୍ଷାତ କରିବି । ଘାତୁକ ! କର ତୋର ସ୍ୱକାର୍ଯ୍ୟ ସାଧନ । ହରେ !

( ଘାତୁକ ଛୁରି ମାରିବା ସମୟେ ଛୁରି ଖସିପଡ଼ିବା )

ଘାତୁକ — କି ଆଶ୍ଚର୍ଯ୍ୟ ବ୍ୟାପାର ! ଏହି ଛୁରିକା ଘାତରେ ଲକ୍ଷ ଲକ୍ଷ ଜୀବଙ୍କର ବିନାଶ ହୋଇଛି, ମାତ୍ର କି ନିମିତ୍ତ ମୋ ହାତରୁ ଖସିଗଲା ? ଦୂତ, ଟିକିଏ ଛୁରିଟି ଆଣି ଦେଲୁଟି ।

ଦୂତ — ନାହିଁ ରେ ଭାଇ, ମୋଦ୍ୱାରା ସେ କଥା ଘଟିବ ନାହିଁ । ତୋ କାମ ତୁ କର । ଏବେ ତ ତୋ କାର୍ଯ୍ୟରେ ବ୍ୟାଘାତ ହେଲୁ ତୋର ଯାହା ହେବ, ତହିଁରେ ପୁଣି ମତେ ପଠାଉଛୁ ଛୁରିପାଇଁ ! ମୁଁ କଣ ତୋ ଛୁରି ଛୁଇଁ ଜାତିରୁ ପତିତ ହୋଇ ଗ୍ରାମଣ୍ଡିଆ ହେବି ନା କଣ ?

(ଘାତୁକ ଛୁରି ଆଣିବାକୁ ଯାଇ ନରସିଂହ ଆସିବା-ସମୟେ ସର୍ପାଘାତରେ ପତନ )

ଘାତୁକ — ମଲି ରେ ବାପା, ପ୍ରାଣ ଗଲା, ସର୍ପାଘାତ ।

ଦୂତ—ମଲ୍ଲ ରେ ଗଲା, ଏ ମାରବ କଣ, ଆଗେ ଦାନ୍ତ
    କଲୁଛି ବେଲଣି । ଯାଉଛି, ମହାରାଜାଙ୍କ ଏ ଖବର
    ଜଣାଇବ । ମହାରାଜ ସର୍ବନାଶ, ସର୍ବନାଶ !
ରାଜା—କ'ଣ ସର୍ବନାଶ ? ଦୂତ, ଯୋଗୀ ମରିଛି ?
ଦୂତ—ନା ମହାରାଜ, ଶାଭୁକ ମରିଛି ।
ରାଜା—କାହାଦ୍ୱାରା, କପରି ?
ଦୂତ—ମହାରାଜ, ଶାଭୁକ ଚୁର ମାରିବା ସମୟରେ ତା ହାତରୁ ଚୁର ଖସିଯାଇ ଜଙ୍ଗଲରେ ପଡ଼ିଲା । ଶାଭୁକ ସେଠାରୁ ଚୁର ଆଣିବା ସମୟେ ତାକୁ ସର୍ପ ଦଂଶନ କଲା; ସେ ସେଠାରେ ମୃତ ।
ରାଜା—ବଡ଼ ଆଶ୍ଚର୍ଯ୍ୟ କଥା ! ଯୋଗୀ କାହିଁଗଲା ?
ଦୂତ—ଯୋଗୀ ଶୂଳଖମ୍ବରେ ।
ରାଜା—ଶୀଘ୍ର ଯୋଗୀକୁ ନେଇଆସ । ଏଥିରେ ନିଶ୍ଚୟ କୌଣସି ମର୍ମ ଅଛି ।

( ଦୂତ ତଥାକରଣ )

ପ୍ରଭା—ବ ରେ ଦୂତ, ଆଉ କେଉଁଠିକି ନେଉଛୁ । ଦଉ, ତୋ ଇଚ୍ଛା, ଯାହା କରିପାର ।
ରାଜା—ହେ ଯୋଗୀ ! ତୋ ଧର୍ମ ତୋତେ ସହାୟ ଥିବା ଜଣାଯାଉଛି । ଏଥିର ଗୂଢ଼ମର୍ମ କଣ କହ । ପ୍ରକୃତରେ ଏ ଘଟଣାରେ କିଏ ଦୋଷୀ, ତାହାର ପ୍ରକୃତ କାରଣ କଣ କହିପାରିବ କି ?
ଯୋଗୀ—ରାଜନ୍ ! ପ୍ରକୃତ ହେଉ ବା ଅପ୍ରକୃତ ହେଉ ମୋର ମୃତ୍ୟୁ ହିଁ ଶ୍ରେୟ ।
ରାଜା—ପ୍ରକାଶ କର ।

ପ୍ରଭା— ଗୀତ

( ଖଣ୍ଟା କର—ବୁଝେ )

କେତେ ମୁଁ କହିବ ନୃପ ହେ ମୋ କର୍ମ,
    ଅବବେକ ଦୈବ ଶସ୍ତ ।

ରାଜନ ! ମୋତେ ବର୍ତ୍ତମାନ ଜଳବ ଶସ୍ତ ହୋଇଛି, ମୁଁ ବା କଣ ଦୁଃଖ ପ୍ରକାଶ କରିବି ।

ଗୀତ

ଅଦୃଷ୍ଟ ସ୍ୱରୂପ ଗର୍ଭିଣୀ ନାହିଁ ଫଳ ।
ଧର୍ମାଧର୍ମକୁ ବିଚାର ନ କରି ଭ୍ରମନ୍ତି ଲୋକ । ୧ ।

ରାଜନ୍ ! "ଧର୍ମ ସଞ୍ଚିତଂ ତପୋବଲକ୍ଷିତଂ ସତ୍ୟଂ ଚ ଦୂରଂ ଗତଂ । ଲୋକା ଧର୍ମହତା ବିଭାସ୍ତ ଲୁବ୍ଧତା ନାସ୍ତିକଶ୍ଚ ମାନବାଃ, ନବୀର୍ଯ୍ୟା ପୃଥ୍ୱୀ ନରୌଷଧି ରସା ସର୍ବ୍ବ ମହତ୍ତ୍ୱଂ ଗତଃ, ଭୂପାଳା ନରଧର୍ମକର୍ମ ରହିତା ବିପ୍ରାଃ କୁମାର୍ଗରତାଃ ଭାର୍ଯ୍ୟା ଭର୍ତ୍ତୃ ବିରୋଧିନୀ ପରେରତା ପୁତ୍ରା ପିତୃଦ୍ୱେଷିଣୋ, ହା କଷ୍ଟ ଖଳୁ ବର୍ତ୍ତତେ କଳିଯୁଗେ ଧନ୍ୟା ନରା ଯେ ମୃତାଃ ।" ଏ ଯୁଗ କାଳରେ କାହାର ଧର୍ମାଧର୍ମ ବା ଆଗ-ପଛ ବିଚାର ନାହିଁ ।
ରାଜା—ନିଶ୍ଚୟ କଥା । ଦୂତ, ପ୍ରକୃତରେ ମୁଁ ସ୍ୱାର୍ଥ ଲାଗି କୌଣସି ଉତ୍ତମ କରୁ ନ ବୁଝି ଏତ ତରଫା ବିଚାର କରିଥିଲି । ଯୋଗୀ, ସେଟା ମୋର ସମ୍ପୂର୍ଣ୍ଣ ଭୁଲ ।
ଯୋଗୀ— ଗୀତ

ଯେ ରମଣୀ ପ୍ରେମାସକ୍ତ,
    ସେ ନ ଜାଣେ କାନ୍ତ-ଶୋକ ।
ଲଣ୍ଠା ମଣଇ ତା କାନ୍ତ,
    ଖଣ୍ଡକରେ ସବା ଲକ୍ଷ୍ୟ । ୨ ।

ରାଜନ ! ଯେ ରମଣୀ ପରପ୍ରେମାସକ୍ତ ଥାଏ, ସେ ନିଜ ସ୍ୱାମୀକୁ ନିଜ ହସ୍ତରେ ଛେଦନ କରିପାରେ ।
ରାଜା—ଦୂତ ! ତେବେ ଏ କାଣ୍ଡ କଣ ଜ୍ଞାତ ହୋଇଛି । ଯୋଗୀ ! ମୋର ଯେ ସମସ୍ତ ଅବିଚାରଜନିତ ଦୋଷ, ତାହା ନିଜ କ୍ଷମା ଓ ସୌଜନ୍ୟ ଗୁଣରେ କ୍ଷମା ଦେଇ ଆତ୍ମ-ତପସ୍ୟ ଦେଇ ଏ ଅଧୀନକୁ ଆଶ୍ୱାସିତ କରନ୍ତୁ । ମୁଁ ସମସ୍ତ ବୁଝିସାରିଲିଣି, ଆଉ କେହି କହିବା ପ୍ରୟୋଜନ ନାହିଁ ।
ପ୍ରଭା— ଗୀତ

ମୁହିଁ ସେହି ସାଧୁ-ସୁତ
    ତୁମ୍ଭ ଜାମାତା-ମନ୍ଦ ।
ତାର କଲେବେ ହେ ନୃପ;
    ହୋଇଛି ଘନ ଅରଷ । ୩ ।

ରାଜନ୍ ! ମୁଁ ଆପଣଙ୍କ ଜାମାତା କର୍ମଳ କାବୁଲର ମନ୍ଦ ପ୍ରଭାକର । ସେ ସାମାନ୍ୟ କଥାରେ ମୋତେ ତ୍ୟାଗ କରି ଆସି ଏଠାରେ ଆପଣଙ୍କ କନ୍ୟା ଓ ଜଣେ ସାମାନ୍ୟ ବୃତ୍ତାଳକାର ନଜର ହେଲେ ।

